# ଶ୍ରୀମଦ୍ଭାଗବତ

## ସଚିତ୍ର

## ଅଷ୍ଟମସ୍କନ୍ଧ

ସଂସ୍କୃତଶ୍ଳୋକ, ଗଦ୍ୟାନୁବାଦ

ଭକ୍ତକବି ଜଗନ୍ନାଥ ଦାସଙ୍କ ପଦ୍ୟାନୁବାଦ

ଓ

ଟୀକା ସମ୍ବଳିତ

ସମ୍ପା

ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ

ପ୍ରଥମ ମୁଦ୍ରଣ


ପ୍ରାପ୍ତିସ୍ଥାନ—ଅରୁଣୋଦୟ ପ୍ରେସ,

ପୋ: ଅ OLD NEW


ମୂଲ୍ୟ

# ମୁଖବନ୍ଧ



ଶ୍ରୀମଦ୍‌ଭାଗବତର ପ୍ରଥମସ୍କନ୍ଧ ସନ ୧୩୫୦ ସାଲ ଭାଦ୍ରଦ ୧୮ ନ । ମୃ । ୧୯୪୩ ମସିହା ସେପ୍ଟେମ୍ବର ମାସ ତା ୩ ରିଖ ଶୁକ୍ରବାର ଗଣେଶଚତୁର୍ଥୀ ଦିନ ପ୍ରକାଶିତ ହୋଇଥିଲା । ଆଜି ସନ ୧୩୫୫ ସାଲ ଭାଦ୍ର ଦ ୨୨ ନ ୧୯୪୮ ମସିହା ସେପ୍ଟେମ୍ବର ତା ୭ ରିଖ ସୋମବାର ଗଣେଶଚତୁର୍ଥୀ ଦିନ ବିଶ୍ୱନିୟନ୍ତା ଭଗବାନ୍ ଶ୍ରୀକୃଷ୍ଣଙ୍କର ଅପାର କରୁଣାରୁ ପ୍ରକାଶିତହେଲା । ଏହି ପାଞ୍ଚବର୍ଷ ମଧ୍ୟରେ ବିଶ୍ୱର ପରିସ୍ଥିତି ଯେପରି ଘଟିଅଛି, ସେଥିରେ ତାଙ୍କରକରୁଣା ଭିନ୍ନ ଏ ଦୁସ୍ତର ସାଗର ତରିବା ମୋପରି ନଗଣ୍ୟ ପକ୍ଷରେ ସମ୍ଭବ ହୋଇ ନଥାନ୍ତା । ଆହୁରି ଚଞ୍ଚଳ ଏ ସ୍କନ୍ଧମାନ ପ୍ରକାଶକରି ପାରିଥାନ୍ତି

ଏକଥା କହିବା, କେବଳ ଭଗବାନଙ୍କର ଇଚ୍ଛା ଓ ନିର୍ଦ୍ଦେଶକୁ ନ ମାନିବା । ସେ ମନୁଷ୍ୟକୁ ଯେପରି ନିୟୋଗ କରୁଛନ୍ତି, ତାହାର କର୍ମ ନିୟନ୍ତ୍ରଣ କରୁଛନ୍ତି ମନୁଷ୍ୟ ସେହିପରି ପରିଚାଳିତ ହେଉଅଛି । ମନୁଷ୍ୟ ନିମିତ୍ତ ମାତ୍ର । "ଯଥା ନିଯୁକ୍ତୋଽସି ତଥା କରୋମି" ମନୁଷ୍ୟ ହୃଦୟରେ ଏହା ସର୍ବଦା ଜାଗ୍ରତ ରହିବା ଉଚିତ । ତଥାପି ଆମ୍ଭମାନଙ୍କ ହୃଦୟ ଗ୍ରାହକଗଣଙ୍କୁ ଜଣାଇ ଦେବାକୁ ଚାହୁଁ ଯେ କାଗଜ ଯଥା ସମୟରେ ପ୍ରଚୁର ପରିମାଣରେ ନ ମିଳିବା ଅଷ୍ଟମସ୍କନ୍ଧର ପ୍ରକାଶରେ ବିଳମ୍ବର ଅନ୍ୟତମକାରଣ ।

ନବମସ୍କନ୍ଧ ବର୍ତ୍ତମାନ ଯନ୍ତ୍ରସ୍ଥ । ସେହି ପରମ କରୁଣାମୟ ହରିଙ୍କ କୃପାହେଲେ ଆଉ ତିନୋଟିସ୍କନ୍ଧ ଯଥାସମୟରେ ପ୍ରକାଶିତ ହେବ ।

ନିବେଦକ—

ଗ୍ରନ୍ଥକାର ।



# ଅଷ୍ଟମ ସ୍କନ୍ଧର ସଂକ୍ଷିପ୍ତ ବିବରଣୀ

ଅଷ୍ଟମସ୍କନ୍ଧ ୨୪ଟି ଅଧ୍ୟାୟରେ ବିଭକ୍ତ । (୧) ପ୍ରଥମ ଭାଗ ଅର୍ଥାତ୍ ପ୍ରଥମ ଅଧ୍ୟାୟରୁ ଚତୁର୍ଥ ଅଧ୍ୟାୟ ଶେଷ ପର୍ଯ୍ୟନ୍ତ ଗ୍ରାହ କବଳରୁ ଗଜେନ୍ଦ୍ରର ମୁକ୍ତି ପ୍ରସଙ୍ଗ । (୨) ପଞ୍ଚମ ଅଧ୍ୟାୟରୁ ଦ୍ୱାଦଶ ଅଧ୍ୟାୟ ପର୍ଯ୍ୟନ୍ତ ସମୁଦ୍ରମନ୍ଥନ ଓ ତହିଁରୁ ସୁରଭି, ଲକ୍ଷ୍ମୀ ଓ ଅମୃତ ପ୍ରାପ୍ତି ବର୍ଣ୍ଣିତ ହୋଇଅଛି । ଅମୃତ ପାନ ନିମିତ୍ତ ଅସୁରମାନଙ୍କର ଚେଷ୍ଟା ଓ ଶ୍ରୀହରି ମୋହିନୀ କନ୍ୟାରୂପେ ରାକ୍ଷସମାନଙ୍କୁ ମୁଗ୍ଧ କରି ଦେବତାମାନଙ୍କୁ ଅମୃତ ପାନ କରାଇଥିଲେ । ସେହି ମୋହିନୀ ବେଶ ଦର୍ଶନ କରିବାକୁ ଶିବ ପାର୍ବତୀ ଆଗମନ କରି ଶିବ ବିଷ୍ଣୁଙ୍କର ମୋହିନୀ ରୂପ ଦର୍ଶନରେ ବିଚଳିତ ହୋଇଥିଲେ । (୩) ତଦନନ୍ତର ସପ୍ତମନୁ ବୈବସ୍ୱତ ମନ୍ୱନ୍ତର ଓ ବାମନାବତାର ଓ ବଳି ମୋକ୍ଷଣ ପ୍ରସଙ୍ଗ ତ୍ରୟୋଦଶ ଅଧ୍ୟାୟରୁ ତ୍ରୟୋବିଂଶ ଅଧ୍ୟାୟ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଅଛି । (୪) ଚତୁର୍ବିଂଶ ଅଧ୍ୟାୟରେ ମତ୍ସ୍ୟାବତାର ପ୍ରସଙ୍ଗ ବର୍ଣ୍ଣିତ ।

# ସୂଚୀପତ୍ର

# ଚିତ୍ରସୂଚୀ





# ଶ୍ରୀମଦ୍ଭାଗବତ

## ଅଷ୍ଟମସ୍କନ୍ଧ



### ପ୍ର ଥ ମ ଅ ଧ୍ୟା ୟ୍ ।

ଅଥାଷ୍ଟମେ ଚତୁର୍ବିଂଶତ୍ୟଧ୍ୟାୟୈର୍ମନୁବର୍ଣ୍ଣନମ୍ ।
ତଦ୍ଭୂତୈ ଋଷିଦେବେନ୍ଦ୍ରୈର୍ମୂର୍ତ୍ତିଭିଶ୍ଚ ହରେଃ ସହ ॥
ତତ୍ର ତୁ ପ୍ରଥମେ ସ୍ୱାୟମ୍ଭୁବଃ ସ୍ୱାରୋଚିଷସ୍ତଥା ।
ଉତ୍ତମସ୍ତାମସଶ୍ଚୈତ ଚତୁର୍ମନୁକ୍ରରୁପଣଂ । ୦ । ( ଶ୍ରୀଧରସ୍ୱାମୀ )

---

**ମନ୍ୱନ୍ତର ବର୍ଣ୍ଣନ ।**

ଅଷ୍ଟମ ସ୍କନ୍ଧରେ ମନୁବଂଶ ବର୍ଣ୍ଣନା କରାଯାଇଅଛି, ପ୍ରଥମ ଅଧ୍ୟାୟରେ ସ୍ୱାୟମ୍ଭୁବ ଓ ସ୍ୱାରୋଚିଷ-
ପ୍ରଭୃତ ମନୁଙ୍କ ବିଷୟ ବର୍ଣ୍ଣନା କରାଯାଇ ଅଛି । • ।

---

ଅଷ୍ଟମସ୍କନ୍ଧେ ଚଉବିଂଶ । ଅଧ୍ୟାୟେ ବର୍ଣ୍ଣେ ମନୁବଂଶ ॥ ପ୍ରଥମ ଅଧ୍ୟାୟରେ ତହିଁ । ଚାରିମନୁର କଥା କହି ।
ସ୍ୱାୟମ୍ଭୁବ ଯେ ସ୍ୱାରୋଚିଷ । ଆଵର ଉତ୍ତମ ତାମସ ॥

ଶ୍ରୀ ରାଜୋବାଚ ।

ସ୍ୱାୟମ୍ଭୁବସ୍ୟେହ ଗୁରୋ ବଂଶୋଽୟଂ ବିସ୍ତରାଚ୍ଛ୍ରୁତଃ ।
ଯତ୍ର ବିଶ୍ୱସୃଜାଂ ସର୍ଗୋ ମନୂନନ୍ୟାନ୍ ବଦସ୍ୱ ନଃ । ୧ ।
ମନ୍ୱନ୍ତରେ ହରେର୍ଜନ୍ମ କର୍ମାଣି ଚ ମହୀୟସଃ ।
ଗୃଣନ୍ତି କବୟୋ ବ୍ରହ୍ମଂସ୍ତାନି ନୋ ବଦ ଶୃଣ୍ୱତାମ୍ । ୨ ।
ଯଦ୍ୟସ୍ମିନ୍ନନ୍ତରେ ବ୍ରହ୍ମନ୍ ଭଗବାନ୍ ବିଶ୍ୱଭାବନଃ ।
କୃତବାନ୍ କୁରୁତେ କର୍ତ୍ତା ହ୍ୟତୀତେଽନାଗତେଽଦ୍ୟ ବା । ୩ ।

---

**ଶ୍ରୀ ରାଜା କହିଲେ :—**

ଗୁରୋ ! ଆପଣ ପୂର୍ବେ ବିସ୍ତାରିତ ଭାବରେ ସ୍ୱାୟମ୍ଭୁ ଓ ମନୁବଂଶ ବର୍ଣ୍ଣନା କରିଅଛନ୍ତି । ଯେଉଁ ବଂଶରେ ମରୀଚି ପ୍ରଭୃତି ପ୍ରଜାପତିମାନଙ୍କ ଔରସରେ ଓ ମନୁ କନ୍ୟାମାନଙ୍କ ଗର୍ଭରେ ପୁତ୍ରମାନେ ଉତ୍ପନ୍ନ ହୋଇଥିଲେ, ତାହା ମଧ୍ୟ ବର୍ଣ୍ଣନା କରିଅଛନ୍ତି । ବର୍ତ୍ତମାନ୍ ଅନ୍ୟାନ୍ୟ ମନୁବଂଶ ମୋ ନିକଟରେ ବର୍ଣ୍ଣନା କରନ୍ତୁ । ୧ ।

ହେ ବ୍ରହ୍ମନ୍ ! ସେହି ମନ୍ୱନ୍ତରରେ ଶ୍ରୀହରିଙ୍କର ସର୍ବଶ୍ରେଷ୍ଠ ଜନ୍ମ ଏବଂ କର୍ମ ପ୍ରସଙ୍ଗ ପଣ୍ଡିତମାନେ କୀର୍ତ୍ତନ କରିଥାନ୍ତି । ଶ୍ରବଣେଚ୍ଛୁ ମୋ ନିକଟରେ ଆପଣ ତାହା ବର୍ଣ୍ଣନା କରନ୍ତୁ । ୨ ।

ହେ ବ୍ରହ୍ମନ୍ ! ବିଶ୍ୱସ୍ରଷ୍ଟା ଅତୀତକାଳରେ ଯେଉଁ ମନ୍ୱନ୍ତରରେ ଯେଉଁ କର୍ମମାନ କରିଅଛନ୍ତି, ଭବିଷ୍ୟତରେ କରିବେ ଓ ବର୍ତ୍ତମାନ କରୁଅଛନ୍ତି ସେ ସବୁ ମୋତେ କହନ୍ତୁ । ୩ ।

---

ଶ୍ରୀସୂତ ଉବାଚ ।
ହରଷେ ଅଭିମନ୍ୟୁ ସୁତ
ପ୍ରେମ ପୁଲକେ କୃତକୃତ୍ୟ
ଶୁକଚରଣେ କର ଦେଇ
ବୋଲଇ ନିସ୍ତରିଲି ମୁହିଁ
ଶ୍ରୀ ରାଜୋବାଚ—
ବିଷ୍ଣୁ-ଚରିତ ତୁମ୍ଭ ମୁଖେ
ଶୁଣିଲି ଅଦୃଷ୍ଟ ସୁପାକେ
ଦେଖ ମୁନି ଦୟାକରି ମୋତେ
ମରଣୁ ତରିବି ଯେମନ୍ତେ
ମୋହରେ ଦୟା ବହି ଯେବେ
ପ୍ରସନ୍ନ ଚିତ୍ତେ କହ ତେବେ
ପୂର୍ବେ ଯେ ସ୍ୱାୟମ୍ଭୁବ ମନୁ
ପ୍ରତ୍ୟକ୍ଷେ ପଦ୍ମଯୋନି ତନୁ
ତାହାଙ୍କ ବଂଶେ ଯେ ଚରିତ
ଯେ ପୂର୍ବେ ଭୂତ ଭବିଷ୍ୟତ
ବିସ୍ତାରେ ତୁମ୍ଭ ମୁଖୁଁ ଶୁଣି
ତରିବି ଭବ ତରଙ୍ଗିଣୀ
ଯେ ବଂଶେ ବିଶ୍ୱସୃଜଗଣ
ମନୁ ଦୁହିତା ଗର୍ଭେ ପୁଣ
ପୁତ୍ର ପୌତ୍ରାଦ୍ୟ ଏ ଜଗତେ
ଯେବା ଚରିତ କଲେ ଯେତେ
ଯେ ମନୁବଂଶେ ଯେତେ କୃତ୍ୟ
ଅଦ୍ଭୁତ ବିଷ୍ଣୁର ଚରିତ
ଅଦ୍ୟାପି କବି ଋଷି ଜନେ
ଅଶେଷ ଶାସ୍ତ୍ର ଅନୁମାନେ
ରଚିଲେ ବିଷ୍ଣୁ ଗୁଣଗାଥା
ଅଶେଷ କର୍ମ୍ମ ହରି କଥା
ଯେ କଥା କର୍ଣ୍ଣରନ୍ଧ୍ରେ ପଶେ
ଅଶେଷ କଳ୍ମଷ ବିନାଶେ
ଯେ ମନୁ ଅନ୍ତରେ ଯେ କଥା
ବିଷ୍ଣୁ-ଚରିତ ସାଧୁ ଗାଥା
ଯେ ବର୍ତ୍ତମାନ ପୂର୍ବ ଭୂତେ
ଯେବା କରିବେ ଭବିଷ୍ୟତେ
ସକଳ କହ ମୁନିବର
ଏ ଦୁଃଖ-ସାଗରୁ ଉଦ୍ଧର ॥ ୧-୩

ଶ୍ରୀ ଋଷିରୁବାଚ ।

ମନବୋଽସ୍ମିନ୍ ବ୍ୟତୀତାଃ ଷଟ୍ କଳ୍ପେ ସ୍ୱାୟମ୍ଭୁବାଦୟଃ ।
ଆଦ୍ୟନ୍ତେ କଥିତୋ ଯତ୍ର ଦେବାଦୀନାଞ୍ଚ ସମ୍ଭବଃ । ୪ ।
ଆକୂତ୍ୟାଂ ଦେବହୂତ୍ୟାଞ୍ଚ ଦୁହିତ୍ରୋସ୍ତସ୍ୟ ବୈ ମନୋଃ ।
ଧର୍ମ୍ମଜ୍ଞାନୋପଦେଶାର୍ଥଂ ଭଗବାନ୍ ପୁତ୍ରତାଂ ଗତଃ । ୫ ।
କୃତଂ ପୁରା ଭଗବତଃ କପିଳସ୍ୟାନୁବର୍ଣ୍ଣିତମ୍ ।
ଆଖ୍ୟାସ୍ୟେ ଭଗବାନ୍ ଯଜ୍ଞୋ ଯଚ୍ଚକାର କୁରୁଦ୍‌ବହ । ୬ ।
ବିରକ୍ତଃ କାମଭୋଗେଷୁ ଶତରୂପାପତିଃ ପ୍ରଭୁଃ ।
ବିସୃଜ୍ୟ ରାଜ୍ୟଂ ତପସେ ସଭାର୍ଯ୍ୟୋ ବନମାବିଶତ୍ । ୭ ।

---

ଶ୍ରୀଶୁକଦେବ କହିଲେ—

ହେ ରାଜନ୍ ! ଏହି କଳ୍ପରେ ସ୍ୱାୟଂଭୁବ ମନୁଙ୍କର ଛଅଜଣ ଅତୀତ ହୋଇଅଛନ୍ତି । ତନ୍ମଧ୍ୟରୁ ଯାହାଙ୍କ ଠାରୁ ଦେବଗଣଙ୍କର ଉତ୍ପତ୍ତି ସେହି ପ୍ରଥମ ସ୍ୱାୟଂଭୁବ ମନୁଙ୍କ ପ୍ରସଙ୍ଗ ଆପଣଙ୍କ ନିକଟରେ କହିଅଛି । ୪ ।

ହେ କୁରୁକୁଳ ତିଳକ ! ଧର୍ମଜ୍ଞାନ ପ୍ରଭୃତି ଉପଦେଶ ଦେବା ନିମିତ୍ତ ଶ୍ରୀହରି ସ୍ୱାୟମ୍ଭୁବ ମନୁକନ୍ୟା ଆକୂତି ଓ ଦେବହୂତି ଗର୍ଭରେ କପିଳ ଓ ଯଜ୍ଞରୂପେ ଆବିର୍ଭୂତ ହୋଇଥିଲେ । ପୂର୍ବେ କପିଳଙ୍କ ପ୍ରସଙ୍ଗ ବର୍ଣ୍ଣନା କରିଅଛି । ବର୍ତ୍ତମାନ ଯଜ୍ଞରୂପୀ ଭଗବାନଙ୍କ ପ୍ରସଙ୍ଗ ବର୍ଣ୍ଣନା କରୁଅଛି । ୫,୬ ।

ଶତରୂପାଙ୍କର ସ୍ୱାମୀ ସ୍ୱାୟଂଭୁବ ମନୁ କାମ ଓ ଭୋଗରେ ଅନାସକ୍ତ ହୋଇ ରାଜ୍ୟ ପରିତ୍ୟାଗ ପୂର୍ବକ ତପଶ୍ଚରଣ ନିମିତ୍ତ ଭାର୍ଯ୍ୟାଙ୍କ ସହିତ ବନ ମଧ୍ୟରେ ପ୍ରବେଶ କଲେ । ୭ ।

---

ବାଦରାୟଣିରୁବାଚ—

ଏମନ୍ତେ ପରୀକ୍ଷିତ ଆଗେ
ଶୁକ କହନ୍ତି ଅନୁରାଗେ
ପ୍ରଥମ କଳ୍ପେ ମୁଁ ସମ୍ବାଦ
କହିଲି ସ୍ୱାୟମ୍ଭୁବ ଆଦି
ଏ ଷଟ ମନୁବଂଶ ଯେତେ
ଦେବାଦି ମନୁଷ୍ୟ ପର୍ଯ୍ୟନ୍ତେ
ଆଦ୍ୟନ୍ତ ମଧ୍ୟ କଲେ ଯେତେ
ପୂର୍ବେ ମୁଁ କହିଅଛି ତୋତେ ॥ ୪

ଆକୂତି ଦେବହୂତି ବେନି
ମନୁ-ଦୁହିତା ବେନି ଭଗ୍ନୀ
ଧର୍ମ୍ମ-ଜ୍ଞାନର ଉପଦେଶେ
ପରମ ବ୍ରହ୍ମ ନିଜ ଅଂଶେ
ଯଜ୍ଞବରାହ କଲେ ପୂର୍ବେ
ଜନ୍ମିଲେ ଦେବହୂତି ଗର୍ଭେ
କପିଳ ରୂପେ କଲେ ଯେତେ
ପୂର୍ବେ ମୁଁ କହିଅଛି ତୋତେ
ଆକୂତି ଗର୍ଭେ ଯଜ୍ଞରୂପେ
ଯେ ଅବା କଲେ ପୂର୍ବ କଳ୍ପେ

ସେ କଥା ଶୁଣ ନୃପବର
ହରି-ଚରିତ ସୁଧାସାର ॥ ୫,୬
ଯେ ସ୍ୱାୟମ୍ଭୁବ ମନୁରାଜା
ସୃଷ୍ଟି ସର୍ଜ୍ଜନେ ମହାତେଜା,
ସେ ପତ୍ନୀ ଶତରୂପା ସଙ୍ଗେ
ବିରକ୍ତ ହୋଇ କାମଭୋଗେ
ବନେ ପଶିଲେ ତପଅର୍ଥେ
ସେ ପତିବ୍ରତାର ସମେତେ ॥ ୭

ସୁନନ୍ଦାୟାଂ ବର୍ଷଶତଂ ପଦୈକେନ ଭୁବଂ ସ୍ପୃଶନ୍ ।
ତପ୍ୟମାନସ୍ତପୋ ଘୋରମିଦମନ୍ୱାହ ଭାରତ । ୮ ।

ଶ୍ରୀମନୁରୁବାଚ ।

ଯେନ ଚେତୟତେ ବିଶ୍ୱଂ ବିଶ୍ୱଂ ଚେତୟତେ ନ ଯମ୍ ।
ଯୋ ଜାଗର୍ତ୍ତି ଶୟାନେଽସ୍ମିନ୍ ନାୟଂ ତଂ ବେଦ ବେଦ ସଃ । ୯ ।
ଆତ୍ମାବାସ୍ୟମିଦଂ ବିଶ୍ୱଂ ଯତ୍କିଞ୍ଚିଜ୍ଜଗତ୍ୟାଂ ଜଗତ୍ ।
ତେନତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନମ୍ । ୧୦ ।
ଯଂ ପଶ୍ୟତି ନ ପଶ୍ୟନ୍ତଂ ଚକ୍ଷୁର୍ଯସ୍ୟ ନ ରିଷ୍ୟତି ।
ତଂ ଭୂତନିଳୟଂ ଦେବଂ ସୁପର୍ଣ୍ଣମୁପଧାବତ । ୧୧ ।

---

ହେ ଭାରତ ! ସୁନନ୍ଦା ନଦୀ ତୀରରେ ଶତବର୍ଷ ପର୍ଯ୍ୟନ୍ତ ଏକପଦରେ ଭୂମିସ୍ପର୍ଶ କରି ତପସ୍ୟା କରିଥିଲେ । ସେ ଏହପରି କହିଅଛନ୍ତି । ୮ ।

ଶ୍ରୀମନୁ କହିଲେ—

ଯେଉଁ ଚିତ୍ ସ୍ୱରୂପ ଆତ୍ମାଦ୍ୱାରା ଏହି ବିଶ୍ୱ ଚୈତନ୍ୟଯୁକ୍ତ ହୁଏ ଅଥଚ ବିଶ୍ୱ ଯାହାଙ୍କୁ ଚୈତନ୍ୟମୟ କରି ନ ପାରେ ଏବଂ ବିଶ୍ୱ ସୁପ୍ତ ହେଲେ ଯେ ଜାଗ୍ରତ ଥାନ୍ତି, ଲୋକେ ଯାହାଙ୍କୁ ନ ଜାଣିଲେ ମଧ୍ୟ ସେ ସମସ୍ତଙ୍କୁ ଜାଣନ୍ତି । ୯ ।

ଲୋକେ ଯେଉଁ ଭୂତ ସମୂହ ଦେଖି ପାରନ୍ତି ସେ ସମସ୍ତ ଈଶ୍ୱର ସତ୍ତା ଓ ଚୈତନ୍ୟ ଦ୍ୱାରା ବ୍ୟାପ୍ତ ସୁତରାଂ ସେ ଈଶ୍ୱର । ସେ ଯାହା ପ୍ରଦାନ କରିଅଛନ୍ତି, ତଦ୍ୱାରା ଭୋଗ ସମ୍ପାଦନ କର । ଆପଣା ନିମିତ୍ତ ପରଧନ ଆକାଙ୍‌କ୍ଷା କର ନାହିଁ । ୧୦ ।

ସେ ସମସ୍ତଙ୍କୁ ଦେଖୁଅଛନ୍ତି କିନ୍ତୁ ସେ ସମସ୍ତ ଲୋକ ଚକ୍ଷୁର ଅଗୋଚର । ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟ ସମୂହ ନଷ୍ଟ ହେଲେ ମଧ୍ୟ ଯାହାଙ୍କର ଜ୍ଞାନନାଶ ହୁଏ ନାହିଁ, ପ୍ରାଣିମାନଙ୍କର ଆଶ୍ରୟ ସ୍ୱରୂପ ସେହି ଅସଙ୍ଗ ଦେବଙ୍କୁ ଭଜନା କର । ୧୧ ।

---

ସୁନନ୍ଦା ତୀରେ ଏକ ପାଦେ
ଭକ୍ତ ସେ ହୋଇ ଦୃଢ଼ ବନ୍ଧେ
ଗଗନଗତେ ମୁଖ କରି
ଚହିଁଲ ତତ୍ତ୍ୱକୁ ନିବାରି
ସୁଘୋର ତପେ ରହି ବନେ
ସେ ରାଜା ବିଚାରଇ ମନେ ॥ ୮
ଯେ ହରି ଏ ବିଶ୍ୱ ସଂସାରେ
ଚେତନା ରୂପେ ହୃଦେ ପୂରେ

ଚେତନ ଅଚେତନ ରୂପୀ
ଜାଗ୍ରତ ସ୍ୱପ୍ନ ମଧ୍ୟ ବ୍ୟାପି
ବ୍ରହ୍ମା ନ ଜାଣେ ତାର ଅନ୍ତ
ତେଣୁ ସେ ବୋଲାଇ ଅନନ୍ତ ॥ ୯
ଏ ବିଶ୍ୱ ଆତ୍ମା ଯେହୁ ହୋଏ
ବିରାଜେ ସ୍ୱୟଂ ସର୍ବ ଦେହେ
ସର୍ଜ୍ଜଇ ପାଳଇ ସଂହରେ
ବାଳକ ଯେସନେ ବିହରେ ॥ ୧୦

ଦୃଶ୍ୟ ଅଦୃଶ୍ୟ ରୂପେ ମିଶେ
ଦେଖନ୍ତି ପ୍ରାଣିଙ୍କି ନ ଦିଶେ
ସକଳ ରୂପେ ଯାର ବାସ
ବିରାଜେ ଯେସନେ ଘଟାକାଶ
ସେ ସର୍ବ ପ୍ରାଣିଙ୍କ ମନ୍ଦିର
ଜୀମୂତମଧ୍ୟେ ଯେସନେ ନୀର
ସୁପର୍ଣ୍ଣ ପୃଷ୍ଠେ ଯାର ସ୍ଥିତି
ତା ପାଦେ ରହୁ ମୋର ମତି ॥୧୧

ନ ଯସ୍ୟାଦ୍ୟନ୍ତୌ ମଧ୍ୟଞ୍ଚ ସ୍ୱଃ ପରୋ ନାନ୍ତରଂ ବହିଃ ।
ବିଶ୍ୱସ୍ୟାମୂନି ଯଦ୍‌ଯସ୍ମାଦ୍‌ବିଶ୍ୱଞ୍ଚ ତଦୃତଂ ମହତ୍ । ୧୨ ।
ସ ବିଶ୍ୱକାୟଃ ପୁରୁହୂତ ଈଶଃ ସତ୍ୟଃ ସ୍ୱୟଂଜ୍ୟୋତିରଜଃ ପୁରାଣଃ ।
ଧତ୍ତେଽସ୍ୟ ଜନ୍ମାଦ୍ୟଜୟାତ୍ମଶକ୍ତ୍ୟା ତାଂ ବିଦ୍ୟୟୋଦସ୍ୟ ନିରୀହ ଆସ୍ତେ ।୧୩ ।
ଅଥାଗ୍ରେ ଋଷୟଃ କର୍ମାଣୀହନ୍ତେଽକର୍ମ ହେତବେ ।
ଈହମାନୋ ହି ପୁରୁଷଃ ପ୍ରାୟୋଽନୀହାଂ ପ୍ରପଦ୍ୟତେ । ୧୪ ।
ଈହତେ ଭଗବାନୀଶୋ ନ ହି ତତ୍ର ବିସଜ୍ଜତେ ।
ଆତ୍ମଲାଭେନ ପୂର୍ଣ୍ଣାର୍ଥୋ ନାବସୀଦନ୍ତି ଯେଽନୁ ତମ୍ । ୧୫ ।

---

ଯାହାଙ୍କର ଆଦି, ଅନ୍ତ, ମଧ୍ୟ, ଆତ୍ମୀୟ, ପର, ଅନ୍ତର, ବାହାର ନାହିଁ । କିନ୍ତୁ ଯାହାଙ୍କଠାରୁ ବିଶ୍ୱର ଏହି ସମସ୍ତ ଆଦିଅନ୍ତ ପ୍ରଭୃତି ଉତ୍ପନ୍ନ, ସେହି ବିଶ୍ୱ ଯାହାଙ୍କର ସ୍ୱରୂପ; ସେ ସତ୍ୟ ଏବଂ ପରିପୂର୍ଣ୍ଣ ବ୍ରହ୍ମ । ୧୨ ।

ସେ ବିଶ୍ୱ କାୟ ସ୍ୱରୂପ, ବହୁନାମ ଯୁକ୍ତ, ଈଶ୍ୱର, ସତ୍ୟ, ସ୍ୱରୂପ, ସତ୍ପ୍ରକାଶ ଜନ୍ମାଦି ବିରହିତ ଓ ପୁରାଣ ପୁରୁଷ । ନିଜର ମାୟାଶକ୍ତି ଦ୍ୱାରା ସେ ଏହି ଜଗତର ସୃଷ୍ଟି, ସ୍ଥିତି, ପ୍ରଳୟ କରନ୍ତି ଏବଂ ପୁନର୍ବାର ବ୍ରହ୍ମବିଦ୍ୟାଦ୍ୱାରା ମାୟା ପରିତ୍ୟାଗ କରି ସ୍ୱୟଂ ନିଷ୍କ୍ରିୟ ଭାବରେ ଅବସ୍ଥାନ କରନ୍ତି ।୧୩।

ଏହିପରି ଭଗବାନ୍ କର୍ମସମୂହ ସମ୍ପାଦନ କରି ନିଷ୍କ୍ରିୟ ହୋଇଥିବାରୁ ଋଷିମାନେ ମଧ୍ୟ ପ୍ରଥମେ ନିଷ୍କ୍ରିୟତା ପ୍ରାପ୍ତି ନିମିତ୍ତ କର୍ମାନୁଷ୍ଠାନ କରନ୍ତି । ମନୁଷ୍ୟମାନେ ମଧ୍ୟ କର୍ମ କରୁ କରୁ ଶେଷରେ ନିଷ୍କ୍ରିୟ ହୁଅନ୍ତି । ୧୪ ।

ଆତ୍ମ ସାକ୍ଷାତ୍‌କାର ଦ୍ୱାରା ପୂର୍ଣ୍ଣକାମ ଭଗବାନ୍ କର୍ମସମୂହର ଅନୁଷ୍ଠାନ କରନ୍ତି କିନ୍ତୁ ସେହି କର୍ମରେ ଆସକ୍ତ ହୁଅନ୍ତି ନାହିଁ ଯେଉଁ ଲୋକେ ସେହି ଭଗବାନଙ୍କର ଅନୁସରଣ କରନ୍ତି, ସେମାନେ ମଧ୍ୟ କର୍ମକରି ସୁଦ୍ଧା ତହିଁରେ ଆସକ୍ତ ହୁଅନ୍ତି ନାହିଁ । ୧୫ ।

---

ଆଦ୍ୟନ୍ତ ମଧ୍ୟ ଯାର ନାହିଁ
ସ୍ୱ-ପର ଭେଦ ଅବା କାହିଁ
ନ ମିଶେ ଅନ୍ତର ବାହାରେ
ଏ ମାୟା ମୋହନ ସଂସାରେ
ଏ ବିଶ୍ୱମୟ ଯେ ପ୍ରମାଣ
ସତ୍ୟ ସ୍ୱରୂପ ପୂର୍ଣ୍ଣବ୍ରହ୍ମ ॥ ୧୨
ସେ ବିଶ୍ୱକାୟ ପୁରୁହୂତ *
ବିଶ୍ୱ ସର୍ଜ୍ଜନେ ଉପଗତ
ବିମୋହି ମୋହ ପାଶେ ଛନ୍ଦ
ଯାର କ୍ରୀଡ଼ାରେ ବିଶ୍ୱବନ୍ଦୀ

ସତ୍ୟ ପରମ ଜ୍ୟୋତି ଅଜ
ପୁରାଣ ପୁରୁଷ ବିରାଜ
ଜୀବର ଜନ୍ମ-ଆଦି ଯେତେ
ଧରେ ଆତ୍ମ-ଶକ୍ତି ଆୟତ୍ତେ
ନିରୀହ ଚେଷ୍ଟା ବିବର୍ଜ୍ଜିତ
ସ୍ୱରୂପେ ଯେତେବେ ହୋଏ ସ୍ଥିତ ।୧୩।
ଏ ଭାବ ଜାଣି ଋଷି ଜନେ
କର୍ମ୍ମ ଇଚ୍ଛନ୍ତି ଦୃଢ଼ମନେ
ଯେ ଭାବେ କର୍ମ୍ମହିଁ ନ ଫଳେ
ସେ ଭାବେ ଭଜନ୍ତି ନିଷ୍ଫଳେ

ଈଶ୍ୱର ଭାବେ କର୍ମ୍ମ କଲେ
ନିର୍ଗୁଣ ଲଭନ୍ତି ସେ ଭଲେ ॥ ୧୪
ଆତ୍ମାର ପୂର୍ଣ୍ଣ ଲାଭ ଅର୍ଥେ
ଯେ ତାଙ୍କୁ ଭଜନ୍ତି ଜଗତେ
କେବେହେଁ ଭ୍ରଷ୍ଟ ସେ ନୁହନ୍ତି
ଅନ୍ତେ ଲଭନ୍ତି ବ୍ରହ୍ମଗତି ॥ ୧୫

* "ପୁରୁହୂତ— ବହୁ ନାମଧାରୀ

ତମୀହମାନଂ ନିରହଂକୃତଂ ବୁଧଂ ନିରାଶିଷଂ ପୂର୍ଣ୍ଣମନନ୍ୟଚୋଦିତମ୍ ।
ନୃନ୍ ଶିକ୍ଷୟନ୍ତଂ ନିଜବର୍ତ୍ମ ସଂସ୍ଥିତଂ ପ୍ରଭୁଂ ପ୍ରପଦ୍ୟେଽଖିଳଧର୍ମଭାବନମ୍ । ୧୬ ।

ଶ୍ରୀ ଶୁକ ଉବାଚ ।

ଇତି ମନ୍ତ୍ରୋପନିଷଦଂ ବ୍ୟାହରନ୍ତଂ ସମାହିତମ୍ ।
ଦୃଷ୍ଟ୍ୱାସୁରା ଯାତୁଧାନା ଜଗ୍ଧୁମଭ୍ୟଦ୍ରବନ୍ କ୍ଷୁଧା । ୧୭ ।
ତାଂସ୍ତଥାବସିତାନ୍ ବୀକ୍ଷ ଯଜ୍ଞଃ ସର୍ବଗତୋ ହରିଃ ।
ଯାମୈଃ ପରିବୃତୋ ଦେବୈର୍ହତ୍ୱା ଶାସତ୍ ତ୍ରିବିଷ୍ଟପମ୍ ।୧୮।
ସ୍ୱାରୋଚିଷୋ ଦ୍ୱିତୀୟସ୍ତୁ ମନୁରଗ୍ନେଃ ସୁତୋଽଭବତ୍ ।
ଦ୍ୟୁମତ୍ ସୁଷେଣରୋଚିଷ୍ମତ୍ପ୍ରମୁଖାସ୍ତସ୍ୟଚାତ୍ମଜାଃ । ୧୯ ।

---

ସେହି ସର୍ବ କର୍ମକାରୀ, ଅହଙ୍କାର ଶୂନ୍ୟ, ସର୍ବଜ୍ଞ, ନିଷ୍କାମ, ପୂର୍ଣ୍ଣ, ସ୍ୱାଧୀନ, ଲୋକଶିକ୍ଷାଦାତା, ଆତ୍ମ ସ୍ୱଭାବରେ ଅବସ୍ଥିତ ଓ ସର୍ବକର୍ମ ପ୍ରବର୍ତ୍ତକ ଭଗବାନଙ୍କୁ ଆଶ୍ରୟ ସ୍ୱରୂପ ପ୍ରାପ୍ତ ହୁଅନ୍ତି । ୧୬ ।

ଶ୍ରୀଶୁକଦେବ କହିଲେ—

ଏପରି ମନ୍ତ୍ର ଏବଂ ଉପନିଷଦ୍ ବାକ୍ୟ ଉଚ୍ଚାରଣକାରୀ ସମାହିତଚିତ୍ତ ମନୁଙ୍କୁ ଅବଲୋକନ କରି ଅସୁର ଓ ରାକ୍ଷସମାନେ କ୍ଷୁଧାର୍ତ୍ତ ହୋଇ ତାହାଙ୍କୁ ଭକ୍ଷଣ କରିବାକୁ ଉଦ୍ୟତ ହେଲେ । ୧୭ ।

ସେମାନଙ୍କୁ ଏପରି କାର୍ଯ୍ୟରେ ପ୍ରବୃତ୍ତ ହେବାର ଦେଖି ସର୍ବବ୍ୟାପୀ ଯଜ୍ଞରୂପୀ ଭଗବାନ୍ ନିଜ ପୁତ୍ର ଯାମଗଣ ପରିବୃତ ହୋଇ ସେମାନଙ୍କୁ ବଧ କଲେ ଏବଂ ସ୍ୱୟଂ ଇନ୍ଦ୍ର ହୋଇ ସ୍ୱର୍ଗରାଜ୍ୟ ଶାସନ କଲେ । ୧୮ ।

ଅଗ୍ନିଙ୍କର ପୁତ୍ର ସ୍ୱାରୋଚିଷ ଦ୍ୱିତୀୟ ମନୁ ହୋଇଥିଲେ । ତାହାଙ୍କର ଦ୍ୟୁମତ୍, ସୁଷେଣ, ରୋଚିଷ୍ମତ୍ ପ୍ରଭୃତି ପୁତ୍ର ଜାତ ହୋଇଥିଲେ । ୧୯ ।

---

ସକଳ ଆତ୍ମାର ଈଶ୍ୱର
ସ୍ୱଭାବେ ନାହିଁ ଅହଂକାର
ପୂର୍ଣ୍ଣ ଅନାଦି ନିରଞ୍ଜନ
କାହାରି ନୋହେ ସେ ଅଧୀନ
ସ୍ୱଭାବେ ନିଜ ମାର୍ଗେ ରହେ
ଲୋକ ଶିକ୍ଷାରେ ତାଙ୍କୁ ଦେହେ
ଏଣୁ ସେ ସଂସାରର ସାର
ତା ପାଦେ ମୋର ନମସ୍କାର ॥୧୬

ଶ୍ରୀଶୁକ ଉବାଚ—

ଏମନ୍ତେ ବ୍ରହ୍ମ ଭଗବତେ
ସେ ସ୍ୱାୟମ୍ଭୁବ ଦୃଢଚିତ୍ତେ
ଚିନ୍ତା କରନ୍ତେ ତପ ବନେ
ସୁଦୃଢ ସମାଧି ଜୀବନେ
ଅସୁର ଯାତୁଧାନଗଣେ
ବେଗେ ମିଳିଲେ ଘୋର ବନେ
ଭକ୍ଷିବାପାଇଁ କ୍ଷୁଧା ତ୍ରାସେ
ବେଗେ ମିଳିଲେ ତାର ପାଶେ ॥
ତାହାଙ୍କୁ ଦେଖି ନରହରି
ଯଜ୍ଞପୁରୁଷ ରୂପ ଧରି
ନିବାରି ଯାତୁଧାନ ଗଣେ
ସ୍ୱର୍ଗ ପାଳିଲେ ନାରାୟଣ ॥ ୧୮
ସେ ମନୁ ଅନ୍ତେ ସ୍ୱାରୋଚିଷ
ଦ୍ୱିତୀୟ ମନୁ ସେ ବିଶେଷ

ତତ୍ରେନ୍ଦ୍ରୋ ରୋଚନସ୍ତ୍ୱାସୀଦ୍ଦେବାଶ୍ଚ ତୁଷିତାଦୟଃ ।
ଊର୍ଜ୍ଜସ୍ତମ୍ଭାଦୟଃ ସପ୍ତ ଋଷୟୋ ବ୍ରହ୍ମବାଦନଃ । ୨୦ ।
ଋଷେସ୍ତୁ ବେଦଶିରସସ୍ତୁଷିତା ନାମ ପତ୍ନ୍ୟଭୂତ୍ ।
ତସ୍ୟାଂ ଯଜ୍ଞେ ତତୋ ଦେବୋ ବିଭୁରତ୍ୟଭିବଶ୍ରୁତଃ । ୨୧ ।
ଅଷ୍ଟାଶୀତିସହସ୍ରାଣି ମୁନୟୋ ଯେ ଧୃତବ୍ରତାଃ ।
ଅନ୍ୱଶିକ୍ଷନ୍ ବ୍ରତଂ ତସ୍ୟ କୌମାରବ୍ରହ୍ମଚାରିଣଃ । ୨୨ ।
ତୃତୀୟ ଉତ୍ତମୋ ନାମ ପ୍ରିୟବ୍ରତସୁତୋ ମନୁଃ ।
ପବନଃ ସୃଞ୍ଜୟୋ ଯଜ୍ଞହୋତ୍ରାଦ୍ୟାସ୍ତତ୍ସୁତା ନୃପ । ୨୩ ।

---

ସେହି ମନ୍ୱନ୍ତରରେ ରୋଚନ ନାମକ ଇନ୍ଦ୍ର ତୁଷିତାଦି ଦେବଗଣ, ଊର୍ଜ୍ଜ-ସ୍ତମ୍ଭ ବ୍ରହ୍ମବାଦୀ ସପ୍ତଋଷି ବିଦ୍ୟମାନ ଥିଲେ । ୨୦ ।

ବେଦଶିରା ନାମକ ଋଷିଙ୍କର ତୁଷିତା ନାମ୍ନୀ ପତ୍ନୀ ଥିଲେ । ସେହି ମନ୍ୱନ୍ତରରେ ତୁଷିତାଙ୍କ ଗର୍ଭରେ ବେଦଶିରାଙ୍କ ଠାରୁ ବିଭୁ ନାମକ ଦେବତା ଜନ୍ମ ଗ୍ରହଣ କରିଥିଲେ । ୨୧ ।

କୁମାର ବ୍ରହ୍ମଚାରୀ ସେହି ବିଭୁଙ୍କ ନିକଟରୁ ବ୍ରତ ଆଚରଣ କାରୀ ଅଷ୍ଟାଶୀତି ସହସ୍ର ମୁନିମାନେ ବ୍ରତ ଶିକ୍ଷା କରିଥିଲେ । ୨୨ ।

ଉତ୍ତମ ନାମକ ପ୍ରିୟବ୍ରତଙ୍କ ପୁତ୍ର ତୃତୀୟ ମନୁ ହୋଇଥିଲେ । ହେ ରାଜନ୍ ! ପବନ, ସୃଞ୍ଜୟ, ଯଜ୍ଞହୋତ୍ରାଦି ତାହାଙ୍କର ପୁତ୍ର ଥିଲେ । ୨୩ ।

---

ଅଗ୍ନିର ପୁତ୍ର ଯେ ସ୍ୱଭବେ
ରାଜହି କଲା ବିଶ୍ୱ ଲଭେ
ଦ୍ୟୁମାନ ସୁଷେଣ ରୋଚଷ
ଏ ଆଦି ପୁତ୍ର ତାର ଦଶ
ସେ ମନୁକାଳେ ସୁରନାଥ
ରୋଚନ ନାମେ ବଳବନ୍ତ
ତାହାର କାଳେ ଦେବଗଣ
ତୁଷିତ ନାମେ ଉଚ୍ଚାରଣ
ଋଷିଏ ଉର୍ଜ୍ଜ ସ୍ତମ୍ଭ ଆଦି
ଏ ସପ୍ତଋଷି ବ୍ରହ୍ମବାଦୀ ॥ ୧୯-୨୦

ଯେ ବେଦ-ଶିରା ନାମେ ମୁନି
ତୁଷିତା ନାମେ ତା ରମଣୀ
ସେ ପତ୍ନୀ ଗର୍ଭେ ବିଭୁରୂପେ
ବିଷ୍ଣୁ ଜନ୍ମିଲେ ଆଦି କଳ୍ପେ
ପୂର୍ବେ ଯେ ବାଳଖିଲ୍ୟାରୂପେ
ଅଠାଶୀ ସହସ୍ର ଆଦି କଳ୍ପେ ॥ ୨୧
ଯୋଗ ଅଭ୍ୟାସେ ଊର୍ଦ୍ଧ୍ୱରେତା
ବିଷ୍ଣୁ ଭଜନେ ବଳବନ୍ତା
ବିଭୁର ଶିକ୍ଷା ଶିରେ ଧରି
ସେ ମୁନିଗଣେ ବ୍ରହ୍ମଚାରୀ

କୁମାର-ବ୍ରତ ଆଚରିଲେ
ତେଣୁ ବାଳକ ସେ ହୋଇଲେ ॥
ତୃତୀୟ ମନୁ ଯେ ଉତ୍ତମ
ଯେ ପ୍ରିୟବ୍ରତର ନନ୍ଦନ
ତାର ସୃଞ୍ଜୟ ଯଜ୍ଞ ହୋତ୍ର
ଏ ଆଦି ପୁତ୍ରେ ବଳବନ୍ତ
ସେ କଳ୍ପେ ସପ୍ତଋଷି ଜନ
ବଶିଷ୍ଠ ଋଷିଙ୍କ ନନ୍ଦନ
ପ୍ରମଦ ଆଦି ସପ୍ତସୁତେ
ସତ୍ୟ ଆଦି ଯେ ଦେବଯୂଥେ

ବଶିଷ୍ଠତନୟାଃ ସପ୍ତ ଋଷୟଃ ପ୍ରମଦାଦୟଃ ।
ସତ୍ୟା ବେଦଶ୍ରୁତା ଭଦ୍ରା ଦେବା ଇନ୍ଦ୍ରସ୍ତୁ ସତ୍ୟଜିତ୍ । ୨୪ ।
ଧର୍ମ୍ମସ୍ୟ ସୁନୃତାୟାନ୍ତୁ ଭଗବାନ୍ ପୁରୁଷୋତ୍ତମଃ ।
ସତ୍ୟସେନ ଇତି ଖ୍ୟାତୋ ଜାତଃ ସତ୍ୟବ୍ରତୈଃ ସହ । ୨୫ ।
ସୋଽନୃତବ୍ରତଦୁଃଶୀଳାନସତୋ ଯକ୍ଷରକ୍ଷସାନ୍ ।
ଭୂତଦ୍ରୁହୋ ଭୂତଗଣାଂଶ୍ଚାବଧୀତ୍ ସତ୍ୟଜିତ୍ସଖଃ । ୨୬ ।
ଚତୁର୍ଥ ଉତ୍ତମଭ୍ରାତା ମନୁର୍ନାମ୍ନା ଚ ତାମସଃ ।
ପୃଥୁଃ ଖ୍ୟାତର୍ନରଃ କେତୁରିତ୍ୟାଦ୍ୟା ଦଶ ତତ୍ସୁତାଃ । ୨୭ ।
ସତ୍ୟକା ହରୟୋ ବୀରା ଦେବାସ୍ତ୍ରିଶିଖ ଈଶ୍ୱରଃ ।
ଜ୍ୟୋତର୍ଧାମାଦୟଃ ସପ୍ତ ଋଷୟସ୍ତାମସେଽନ୍ତରେ । ୨୮ ।

---

ଏହି ମନ୍ୱନ୍ତରରେ ବଶିଷ୍ଠଙ୍କର ପ୍ରମଦାଦି ପୁତ୍ରମାନେ ସପ୍ତର୍ଷି ହୋଇଥିଲେ । ସତ୍ୟ, ଦେବଶ୍ରୁତ ଓ ଭଦ୍ରଗଣ ଦେବତା ହୋଇଥିଲେ ଏବଂ ସତ୍ୟଜିତ ଇନ୍ଦ୍ର ହୋଇଥିଲେ । ୨୪ ।

ଏହି ମନ୍ୱନ୍ତରରେ ଧର୍ମଙ୍କର ସୁନୃତା ନାମ୍ନୀ ଭାର୍ଯ୍ୟାଙ୍କ ଗର୍ଭରେ ଭଗବାନ୍ ପୁରୁଷୋତ୍ତମ ସତ୍ୟବ୍ରତଗଣଙ୍କ ସହିତ ଉତ୍ପନ୍ନ ହୋଇ ସତ୍ୟସେନ ନାମରେ ଖ୍ୟାତ ହୋଇଥିଲେ । ୨୫ ।

ଏହି ସତ୍ୟସେନ ସତ୍ୟଜିତ୍ ନାମକ ଇନ୍ଦ୍ରଙ୍କର ସଖାହୋଇ ମିଥ୍ୟାବ୍ରତ, ଦୁଃଶୀଳ, ଅସତ୍, ଯକ୍ଷ, ରାକ୍ଷସାଦିଙ୍କୁ ଓ ଭୂତଦ୍ରୋହୀ ପ୍ରାଣିମାନଙ୍କୁ ବଧ କରିଥିଲେ । ୨୬ ।

ଉତ୍ତମଙ୍କର ଭ୍ରାତା ତାମସ ଚତୁର୍ଥମନୁ ହୋଇଥିଲେ । ପୃଥୁ, ଖ୍ୟାତ, ନର, କେତୁ ପ୍ରଭୃତି ଦଶଜଣ ତାହାଙ୍କର ପୁତ୍ରଥିଲେ । ଏହି ତାମସ ମନ୍ୱନ୍ତରରେ ସତ୍ୟକ, ହରି ଓ ବୀରମାନେ ଦେବତା ଥିଲେ । ତ୍ରିଶିଖ, ଇନ୍ଦ୍ର ଏବଂ ଜ୍ୟୋତଧାମାଦି ସପ୍ତର୍ଷି ଥିଲେ । ୨୭, ୨୮ ।

---

ସତ୍ୟଜିତ ଯେ ଦେବରାଜା
ହରି ଭକତେ ମହାତେଜା ୨୩, ୨୪
ସୁନୃତ ଧର୍ମ୍ମ ପତ୍ନୀ ଗର୍ଭେ
ପୁରୁଷୋତ୍ତମ ନାମେ ପୂର୍ବେ
ଜନ୍ମିଲେ ସତ୍ୟବ୍ରତ କୁଳେ
ଶୁଣ ତୁ ଯେବା କର୍ମ୍ମ କଲେ
ଯକ୍ଷ ରାକ୍ଷସ ଭୂତ ଗଣ
ପ୍ରାଣିଙ୍କି କରନ୍ତି ଭକ୍ଷଣ

ତାହାଙ୍କୁ ମାରି ସତ୍ୟସଙ୍ଗେ
ଧର୍ମ୍ମ ରଖିଲେ ସତ୍ୟଯୁଗେ । ୨୫, ୨୬
ଚତୁର୍ଥେ ପ୍ରିୟବ୍ରତ ସୁତ
ତାମସ ଉତ୍ତମର ଭ୍ରାତ
ପୃଥୁ କେତୁ ଯେ ଖ୍ୟାତ ନର
ଏ ଆଦି ଦଶ ତା କୁମର
ତାର ଅନ୍ତରେ ସ୍ୱର୍ଗପୁରେ
ତ୍ରିଶିଖ ନାମେ ସୁରେଶ୍ୱରେ

ସତ୍ୟକ ଆଦି ଦେବଗଣ
ଋଷିଙ୍କ ନାମ ଏବେ ଶୁଣ
ମୁନିଏ ଜ୍ୟୋତର୍ଧାମଆଦି
ତାମସ ଅନ୍ତରେ ପ୍ରସିଦ୍ଧି ॥ ୨୭, ୨୮

ଦେବା ବୈଧୃତୟୋ ନାମ ବିଧୃତେସ୍ତନୟା ନୃପ ।
ନଷ୍ଟାଃ କାଳେନ ଯୈର୍ବେଦା ବିଧୃତାଃ ସ୍ୱେନ ତେଜସା । ୨୯ ।
ତତ୍ରାପି ଜଜ୍ଞେ ଭଗବାନ୍ ହରିଣ୍ୟାଂ ହରିମେଧସଃ ।
ହରିରିତ୍ୟାହୃତୋ ଯେନ ଗଜେନ୍ଦ୍ରୋ ମୋଚିତୋ ଗ୍ରହାତ୍ । ୩୦ ।

ଶ୍ରୀ ରାଜୋବାଚ ।

ବାଦରାୟଣ ଏତତ୍ତେ ଶ୍ରୋତୁମିଚ୍ଛାମହେ ବୟମ୍ ।
ହରିର୍ଯଥା ଗଜପତିଂ ଗ୍ରାହଗ୍ରସ୍ତମମୂମୁଚତ୍ । ୩୧ ।
ତତ୍କଥାସୁ ମହତ୍ ପୁଣ୍ୟଂ ଧନ୍ୟଂ ସ୍ୱସ୍ତ୍ୟୟନଂ ଶୁଭମ୍ ।
ଯତ୍ର ଯତ୍ରୋତ୍ତମଃ ଶ୍ଳୋକୋ ଭଗବାନ୍ ଗୀୟତେ ହରିଃ । ୩୨ ।

---

ହେ ରାଜନ୍ ! ତାମସ ମନ୍ୱନ୍ତରରେ ସତ୍ୟବାଦିଙ୍କ ବ୍ୟତୀତ ବଶିଷ୍ଟ ପରାକ୍ରମଶାଳୀ ବୈଧୃତଗଣ ଦେବତା ହୋଇଥିଲେ । ସେମାନେ ବିଧୃତଙ୍କର ପୁତ୍ର । କାଳକ୍ରମେ ଯେତେବେଳେ ବେଦ ବିନଷ୍ଟ ହେଲା ସେତେବେଳେ ଏହି ଦେବତାମାନେ ନିଜ ନିଜର ତେଜରେ ତାହାକୁ ଧାରଣ କରିଥିଲେ । ୨୯ ।

ଏ ମନ୍ୱନ୍ତରରେ ଭଗବାନ୍ ବିଷ୍ଣୁ ହରିମେଧଙ୍କ ଔରସରେ ହରିଣୀ ଗର୍ଭରେ ଜନ୍ମଗ୍ରହଣ କରିଥିଲେ ଏବଂ ହରି ନାମରେ ବିଖ୍ୟାତ ହୋଇଥିଲେ । ସେ କୁମ୍ଭୀର ମୁଖରୁ ଗଜେନ୍ଦ୍ରକୁ ରକ୍ଷା କରିଥିଲେ । ୩୦ ।

ରାଜା ପରୀକ୍ଷିତ କହିଲେ—

ହେ ବାଦରାୟଣ ! ଗ୍ରାହଗ୍ରସ୍ତ ଗଜେନ୍ଦ୍ରଙ୍କୁ ହରି କିପରି ମୁକ୍ତ କରିଥିଲେ ତାହା ମୋତେ କହନ୍ତୁ ।୩୧।

ହେ ବ୍ରହ୍ମନ୍ ! ଯେଉଁଠାରେ ଉତ୍ତମ ଶ୍ଳୋକ ଭଗବାନ୍ ହରିଗାଥା ଗୀତ ହୁଏ ସେସ୍ଥାନ ଅତ୍ୟନ୍ତ ପବିତ୍ର ଓ ସେ ବ୍ୟକ୍ତି ଧନ୍ୟ, ଶୁଭ ଓ ମଙ୍ଗଳକର । ୩୨ ।

---

ବୈଧୃତ ନାମେ ଦେବଗଣ
ଶୁଣ ହେ ତାହାଙ୍କ ପ୍ରମାଣ
କାଳେ ବେଦ ଯେ ନାଶ ଗଲେ
ସେ ମନ୍ୱନ୍ତରେ ସେ ରଖିଲେ ।୨୯
ସେ ମନ୍ୱନ୍ତରରେ ଅଚ୍ୟୁତ
ହରିଣୀ ଉଦରେ ସମ୍ଭୂତ
ତେଣୁ ବୋଲିଲେ ହରି ନାମ
ରୂପେ ମୋହିତ କୋଟି କାମ
ଯେ ହରିନାମ ଏ ସଂସାରେ
ଅଶେଷ ଦୁରିତ ସଂହରେ
ଯେ ରୂପେ ଗଜେନ୍ଦ୍ର ମୋକ୍ଷଣ
କୁମ୍ଭୀର ଦର୍ପ ନିବାରଣ

ଜଳେ କୁମ୍ଭୀର ମୁଣ୍ଡ ହାଣି
ଗଜ ରଖିଲେ ଚକ୍ରପାଣି
ଯା ନାମ ଭୁବନ-ମଙ୍ଗଳ
ଦୁରିତ-ବନ ଦାବାନଳ ॥ ୩୦
ଏ କଥା ଶୁକ ମୁଖୁଁ ଶୁଣି
ପାଣ୍ଡବ ବଂଶ ଚୂଡ଼ାମଣି
ଆନନ୍ଦେ ହୋଇ କୃତକୃତ
ବୋଲେ ନୃପତ ପରୀକ୍ଷିତ—

ରାଜୋବାଚ—

ହେ ମୁନି ଦୁର୍ଲଭ ବଚନ
ଶୁଣି ସାନନ୍ଦ ମୋର ମନ

କେମନ୍ତେ ପ୍ରଭୁ ନରହରି
ଗଜ ରଖିଲେ ଗ୍ରାହ ମାରି
କୁମ୍ଭୀର କେଉଁ ଜଳେ ଥିଲା
ଗଜକୁ କେମନ୍ତେ ଧଇଲା
ସେ ଜଳ-ଜୀବ ଜଳେ ଥାଇ
ହସ୍ତୀ ସଂଯୋଗ ତାର କାହିଁ
ହସ୍ତୀ ସ୍ୱଭାବେ ମହାକାୟେ
କୁମ୍ଭୀର କେତେ ବଳ ବହେ
ଏ କଥା ସଂଶୟ ମୋତେ
ପ୍ରେମୁନି କହ ଶୁଦ୍ଧଚିତ୍ତେ ।୩୧,୩୨

୨

ଶ୍ରୀ ସୂତ ଉବାଚ ।

ପରୀକ୍ଷିତୈବଂ ସ ତୁ ବାଦରାୟଣିଃ ପ୍ରାୟୋପବେଷ୍ଟେନ କଥାସୁ ଚୋଦିତଃ ।
ଉବାଚ ବିପ୍ରାଃ ପ୍ରତିନନ୍ଦ୍ୟ ପାର୍ଥିବଂ ମୁଦା ମୁନୀନାଂ ସଦସି ସ୍ମ ଶୃଣ୍ୱତାମ୍ । ୩୩ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ମନ୍ୱନ୍ତରାନୁବର୍ଣ୍ଣନଂ
ପ୍ରଥମୋଽଧ୍ୟାୟଃ ।

---

ଶ୍ରୀସୂତ କହିଲେ—

ହେ ବିପ୍ରଗଣ ! ପ୍ରାୟୋପବିଷ୍ଟ ରାଜା ପରୀକ୍ଷିତଙ୍କ କର୍ତ୍ତୃକ ବ୍ୟାସ ନନ୍ଦନ ଶୁକଦେବ ଭଗବତ୍ ପ୍ରସଙ୍ଗ କହିବାକୁ ଏହିପରି ଅନୁରୁଦ୍ଧ ହୋଇ ମୁନିଗଣଙ୍କ ସଭାରେ ରାଜବାକ୍ୟରେ ଆନନ୍ଦ ପ୍ରକାଶ କରି କହିବାକୁ ଲାଗିଲେ । ୩୩ ।

---

ଏ ପୁଣ୍ୟ କଥା ମହାଧନ୍ୟ
ମଙ୍ଗଳ ସର୍ବ ସ୍ୱସ୍ତ୍ୟୟନ
ଯେଉଁ ପ୍ରସ୍ତାବେ ହରି ବାଣୀ
ଶ୍ରୁତି ମାର୍ଗରେ ଶୁଣି ପ୍ରାଣୀ

ସେ ହରି ପ୍ରକାଶ ଅନ୍ତରେ
ସଂସାର ଦୁଃଖ ବେଗେ ହରେ । ୩୩
ଏମନ୍ତେ ପରୀକ୍ଷିତ ବାଣୀ
ଆନନ୍ଦେ ଶୁକମୁନି ଶୁଣି

ଗଙ୍ଗାର ତୀରେ ଅନ୍ତର୍ଜ୍ଜଳେ
ଅସଂଖ୍ୟ ମୁନିଜନ ମେଳେ
ଗୋବିନ୍ଦ ପାଦେ ଦେଇ ଚିତ୍ତ
ବୋଲଇ ବିପ୍ର ଜଗନ୍ନାଥ ।



ବିଶଦାର୍ଥ—

ଏହି ଅଧ୍ୟାୟରେ ରାଜା ପରୀକ୍ଷିତଙ୍କ ପ୍ରଶ୍ନାନୁସାରେ ମରୀଚ୍ୟାଦି ମୁନି ଗଣଙ୍କର ବର୍ଣ୍ଣନା ଉତ୍ତାରୁ ଅନ୍ୟାନ୍ୟ ମନୁବଂଶ ପ୍ରସଙ୍ଗ ଶ୍ରୀ ଶୁକଦେବ ବର୍ଣ୍ଣନା କରିଥିଲେ । ଏହି ପ୍ରସଙ୍ଗରେ ସ୍ୱାୟମ୍ଭୁବ ମନୁଙ୍କୁ ଉପନିଷଦ୍ ମନ୍ତ୍ର ଜପ କରି ତପସ୍ୟା କରୁଥିବା ସମୟରେ ରାକ୍ଷସମାନେ କପରି କ୍ଷୁଧାର୍ତ୍ତ ହୋଇ ତାହାଙ୍କୁ ଭକ୍ଷଣ କରିବା ପ୍ରସଙ୍ଗ ବର୍ଣ୍ଣନା କରିଥିଲେ ଏବଂ ଭଗବାନ୍ ଶ୍ରୀହରି ତାହାଙ୍କୁ ରକ୍ଷା କରି ସ୍ୱର୍ଗରାଜ୍ୟ ପାଳନ ନିମିତ୍ତ ତାଙ୍କୁ ଇନ୍ଦ୍ରରୂପେ ନିଯୁକ୍ତ କରିଥିଲେ । ଦ୍ୱିତୀୟରେ ସ୍ୱାରୋଚିଷ ମନୁ, ତୃତୀୟରେ ଉତ୍ତମ ମନୁ, ଚତୁର୍ଥରେ ତାମସ ମନୁ, ଏହି ଚତୁର୍ଥ ମନୁଙ୍କ ବଂଶରେ ବୈଧୃତଙ୍କର ଜନ୍ମ । ବୈଧୃତଙ୍କ ବଂଶରେ ବୈଧୃତ ନାମକ ଦେବତାଗଣ ଜନ୍ମ ଗ୍ରହଣ କରିଥିଲେ । ଏହି ବଂଶରେ ହରିଣୀ ଗର୍ଭରେ ଜନ୍ମ ଗ୍ରହଣ କରିଥିବାରୁ ଭଗବାନଙ୍କର ନାମ ହରି ବୋଲି ବିଖ୍ୟାତ ହୋଇଥିଲା । ହରି କୁମ୍ଭୀର ଗ୍ରାସରୁ ବିପନ୍ନ ଗଜେନ୍ଦ୍ରଙ୍କୁ ରକ୍ଷା କରିଥିଲେ । ରାଜା ପରୀକ୍ଷିତ ଏହି ଗଜୋଦ୍ଧାରଣ ପ୍ରସଙ୍ଗ ଶ୍ରବଣ କରିବାକୁ ଆଗ୍ରହ ପ୍ରକାଶ କରନ୍ତେ ଶ୍ରୀ ଶୁକଦେବ ପରବର୍ତ୍ତୀ ଅଧ୍ୟାୟରେ ତାହା ବର୍ଣ୍ଣନା କରିଅଛନ୍ତି ।

## ଦ୍ୱିତୀୟୋଽଧ୍ୟାୟଃ ।

ଦ୍ୱିତୀୟେ ତୁ ଗଜେନ୍ଦ୍ରସ୍ୟ ଗଜୀଭିଃ କ୍ରୀଡ଼ତୋଜଲେ ।
ଦୈବାଦ୍ଗ୍ରାହ ଗୃହୀତସ୍ୟ ହରେ ସ୍ମୃତିରୁଦୀର୍ଯ୍ୟତେ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ଆସୀଦ୍ଗିରିବରୋ ରାଜଂସ୍ତ୍ରିକୂଟ ଇତି ବିଶ୍ରୁତଃ ।
କ୍ଷୀରୋଦେନାବୃତଃ ଶ୍ରୀମାନ୍ ଯୋଜନାୟୁତମୁଚ୍ଛ୍ରିତଃ । ୧ ।
ତାବତା ବିସ୍ତୃତଃ ପର୍ଯ୍ୟକ୍ ତ୍ରିଭିଃ ଶୃଙ୍ଗୈଃ ପୟୋନିଧିମ୍ ।
ଦିଶଶ୍ଚ ରୋଚୟନ୍ନାସ୍ତେ ରୌପ୍ୟାୟସହିରଣ୍ମୟୈଃ । ୨ ।
ଅନ୍ୟୈଶ୍ଚ କକୁଭଃ ସର୍ବା ରତ୍ନଧାତୁବିଚିତ୍ରିତୈଃ ।
ନାନାଦ୍ରୁମଲତାଗୁଲ୍ମୈର୍ନିର୍ଘୋଷୈର୍ନିର୍ଝରାମ୍ଭସାମ୍ । ୩ ।

---

### ଗଜେନ୍ଦ୍ର ଉପାଖ୍ୟାନ ।

ଦ୍ୱିତୀୟ ଅଧ୍ୟାୟରେ ଗଜରାଜ ଜଳରେ କ୍ରୀଡ଼ା କରୁଥିବା ବେଳେ ଗ୍ରାହଦ୍ୱାରା ଧୃତ ହୋଇ ଭଗବାନଙ୍କୁ ସ୍ମରଣ କରିବା ବିଷୟ ବର୍ଣ୍ଣିନା କରାଯାଇଅଛି । ० ।

ଶ୍ରୀ ଶୁକଦେବ କହିଲେ—

ହେ ରାଜନ୍ ! ଚତୁର୍ଦ୍ଦିଗରେ କ୍ଷୀରୋଦ ସମୁଦ୍ର ବେଷ୍ଟିତ ଅୟୁତଯୋଜନ ବିସ୍ତୃତ ତ୍ରିକୂଟ ନାମକ ଏକ ପର୍ବତ ଅଛି । ୧ ।

ଚତୁର୍ଦ୍ଦିଗରେ ସେହି ପରିମାଣରେ ବିସ୍ତୃତ ଲୌହ, ରୌପ୍ୟ, ସୁବର୍ଣ୍ଣମୟ ଶୃଙ୍ଗଦ୍ୱାରା ସମୁଦ୍ର ଏବଂ ଦିକ୍ ସମୂହ ଶୋଭମାନ କରି ଏହି ପର୍ବତ ଶୋଭମାନ ରହିଅଛି । ୨ ।

ବିବିଧଲତା ଓ ଗୁଳ୍ମଦ୍ୱାରା ଆଚ୍ଛାଦିତ ଏବଂ ନିର୍ଝରର ଜଳ ଶବ୍ଦରେ ଶବ୍ଦାୟମାନ, ରତ୍ନ ଓ ଧାତୁ ପ୍ରଭୃତି ଦ୍ୱାରା ବିଚିତ୍ରିତ ଅନ୍ୟାନ୍ୟ ଶୃଙ୍ଗମାନ ଅତ୍ୟନ୍ତ ଶୋଭାଯୁକ୍ତ ହୋଇ ରହିଅଛି । ୩ ।

---

ଦ୍ୱିତୀୟେ ଗଜରାଜ ଜଳେ, ଗଜୀ ସଙ୍ଗତେ କ୍ରୀଡ଼ା ମେଳେ ।
ଦଇବେ ଧରନ୍ତେ କୁମ୍ଭୀରେ, ହରି ଚରଣେ ସ୍ତୁତି କରେ ।०।

ଶ୍ରୀ ଶୁକ ଉବାଚ—
କହନ୍ତି ବ୍ୟାସଙ୍କର ସୁତ
ଶୁଣ ରାଜନ ପରୀକ୍ଷିତ
ପର୍ବତ ତ୍ରିକୂଟ ଯେ ନାମ
ସର୍ବ ସମ୍ପଦ ମୂଳ ଧାମ
ଅୟୁତ ଯୋଜନ ବିସ୍ତୃତ
କ୍ଷୀରି ସମୁଦ୍ରେ ସେ ଆବୃତ
ଉଚ୍ଚତା ଅୟୁତ ଯୋଜନ
ଦେଖନ୍ତେ ହରେ ପ୍ରାଣୀମନ ।୧।
ବିରାଜେ ଅଷ୍ଟଦିଗମଧ୍ୟେ
ଆନନ୍ଦ କରେ ଦେବବୃନ୍ଦେ
ତୃତୀୟ ଶୃଙ୍ଗ ବହେ ଶିରେ
ସୁବର୍ଣ୍ଣ ରୌପ୍ୟ ଲୌହ ଧରେ ।୨।
ରତ୍ନ ଧାତୁ ତା ଚିତ୍ର ଅଙ୍ଗେ
ବିଚିତ୍ର ଶୋହେ ଦଶଦିଗେ
ନାନା ପ୍ରକାରେ ଲତାଗୁଳ୍ମ
ନିର୍ଝର ତଟେ ବହୁ ଦ୍ରୁମ
ନିର୍ଝର ଶବଦ ଗମ୍ଭୀର
ଅତି ସୁରମ୍ୟ ମନୋହର ।୩।

ସ ଚ୍ଛବନଜ୍ୟମାନାଙ୍ଘ୍ରିଃ ସମନ୍ତାତ୍ ପୟଉର୍ମିଭିଃ ।
କରୋତ ଶ୍ୟାମଳାଂ ଭୂମିଂ ହରନ୍ମରକତାଶ୍ମଭିଃ । ୪ ।
ସିଦ୍ଧଚାରଣଗନ୍ଧର୍ବୈର୍ବିଦ୍ୟାଧରମହୋରଗୈଃ ।
କିନ୍ନରୈରପ୍ସରୋଭିଶ୍ଚ କ୍ରୀଡ଼ଦ୍ଭିର୍ଜୁଷ୍ଟକନ୍ଦରଃ । ୫ ।
ଯତ୍ର ସଙ୍ଗୀତସନ୍ନାଦୈର୍ନଦଦ୍‌ଗୁହମମର୍ଷୟା ।
ଅଭିଗର୍ଜ୍ଜନ୍ତି ହରୟଃ ଶ୍ଲାଘିନଃ ପରଶଙ୍କୟା । ୬ ।
ନାନାରଣ୍ୟପଶୁବ୍ରାତସଙ୍କୁଳଦ୍ରୋଣ୍ୟଳଂକୃତଃ ।
ଚିତ୍ରଦ୍ରୁମସୁରୋଦ୍ୟାନକଳକଣ୍ଠବିହଙ୍ଗମଃ । ୭ ।
ସରିତ୍‌ସରୋଭିରଚ୍ଛୋଦୈଃ ପୁଳିନୈର୍ମଣିବାଳୁକୈଃ ।
ଦେବସ୍ତ୍ରୀମଜ୍ଜନାମୋଦସୌରଭାମ୍ବ୍ୱନିଲୈର୍ଯୁତଃ । ୮ ।

---

ସେହି ତ୍ରିକୂଟ ପର୍ବତର ପାଦଦେଶ କ୍ଷୀରୋଦ ସାଗରର ତରଙ୍ଗ ଦ୍ୱାରା ପରିଶୋଭିତ ହୋଇ ପଲ୍ଲବ ବର୍ଣ୍ଣ, ମରକତ ପ୍ରସ୍ତର ସମୂହର ଦୀପ୍ତିଦ୍ୱାରା ଭୂପୃଷ୍ଠକୁ ଶ୍ୟାମଳବର୍ଣ୍ଣ କରିଅଛି । ୪ ।

କ୍ରୀଡ଼ା ପରାୟଣ, ସିଦ୍ଧ, ଚାରଣ, ଗନ୍ଧର୍ବ, ବିଦ୍ୟାଧର, ମହାନାଗ, କିନ୍ନର ଓ ଅପ୍‌ସରାଗଣ ଏହି ପର୍ବତର ଗୁହାରେ ଆଶ୍ରୟ ଗ୍ରହଣ କରିଅଛନ୍ତି । ୫ ।

ଯେଉଁ ପର୍ବତ କିନ୍ନର ପ୍ରଭୃତଙ୍କର ସଙ୍ଗୀତ ଧ୍ୱନିରେ ଶବ୍ଦାୟମାନ, ସେହି ପ୍ରଦେଶରେ ଗର୍ବିତ ସିଂହମାନେ ପ୍ରତିପକ୍ଷ ସିଂହ ବୋଲି ଆଶଙ୍କା କରି ଅସହିଷ୍ଣୁ ହୋଇ ସର୍ବଦା ଗର୍ଜ୍ଜନ କରୁଅଛନ୍ତି ।୬।

ବିବିଧ ଅରଣ୍ୟପଥ ସମୂହ ଦ୍ୱାରା ଏହି ପର୍ବତର ଗୁହା ସୁଶୋଭିତ । ବିବିଧ ବୃକ୍ଷ ଯୁକ୍ତ ଉପବନସ୍ଥ ମଧୁର ଶବ୍ଦକାରୀ ପକ୍ଷୀଗଣଙ୍କ ରବରେ ଏହା ଶବ୍ଦିତ । ୭ ।

ନଦୀ, ସରୋବରର ସୁନିର୍ମଳ ଜଳ ମଣିତୁଲ୍ୟ ବାଲୁକାବିଶିଷ୍ଟ ପୁଳିନ ଦେବକନ୍ୟାମାନଙ୍କର ଅବଗାହନ ନିମିତ୍ତ ସୁଗନ୍ଧଯୁକ୍ତ ଜଳକଣାବାହୀ ବାୟୁଦ୍ୱାରା ଏହି ପର୍ବତ ସୁଖସେବ୍ୟ ହୋଇଅଛି । ୮ ।

---

କ୍ଷୀର ଜଳର ସମୂହେ
ଗିରି ଚରଣ କିବା ଧୋଏ
ମର୍କତ ପାଷାଣ ସମୂହେ
ଶ୍ୟାମଳ ବର୍ଣ୍ଣ ଭୂମି ଶୋହେ ।୪।
ସିଦ୍ଧ ଚାରଣ ବିଦ୍ୟାଧର
ଗନ୍ଧର୍ବ ସଙ୍ଗତେ କିନ୍ନର
ଉରଗ ଗଣ ଯୂଥ ଯୂଥ
ଅପ୍‌ସରା ମିଳି ନୃତ୍ୟ ଗୀତ ।୫।

ନାନା ଅରଣ୍ୟ ପଶୁଗଣେ
ଗିରି କନ୍ଦରେ ଘୋର ବନେ
ନାଦ କରନ୍ତି ମନୋହର
ମୟୂର କୋକିଳ ଭ୍ରମର ।୬,୭।
ସରିତ ସରୋବର ନଦେ
ମଣି ବାଲୁକା କୂଳେ କୂଳେ
ଦେବ-କାମିନୀଗଣ ଯହିଁ
ସ୍ନାନ କରନ୍ତି ମୋଦ ବହି

ତାହାଙ୍କ ସ୍ତନେ ସୁଲେପିତ
ଗନ୍ଧ ଚନ୍ଦନ ପାରିଜାତ
ସେ ଗନ୍ଧ ସମୀର ସଙ୍ଗରେ
ସୁଗନ୍ଧ ଦଶଦିଗେ ପୂରେ । ୮ ।

ତସ୍ୟ ଦ୍ରୋଣ୍ୟାଂ ଭଗବତୋ ବରୁଣସ୍ୟ ମହାତ୍ମନଃ ।
ଉଦ୍ୟାନମୃତୁମନ୍ନାମ ଆକ୍ରୀଡ଼ଂ ସୁରଯୋଷିତାମ୍ । ୯ ।
ସର୍ବତୋଽଲଂକୃତଂ ଦିବ୍ୟୈର୍ନିତ୍ୟପୁଷ୍ପଫଳଦ୍ରୁମୈଃ ।
ମନ୍ଦାରୈଃ ପାରିଜାତୈଶ୍ଚ ପାଟଳାଶୋକଚମ୍ପକୈଃ । ୧୦ ।
ଚୂତୈଃ ପ୍ରିୟାଳୈଃ ପନସୈରାମ୍ରୈରାମ୍ରାତକୈରପି ।
କ୍ରମୁକୈର୍ନାରିକେଳୈଶ୍ଚ ଖର୍ଜ୍ଜୁରୈର୍ବୀଜପୂରକୈଃ । ୧୧ ।
ମଧୁକୈଃ ଶାଳତାଳୈଶ୍ଚ ତମାଳୈରସନାର୍ଜ୍ଜୁନୈଃ ।
ଅରିଷ୍ଟୋଡୁମ୍ବରପ୍ଲକ୍ଷୈର୍ବଟୈଃ କିଂଶୁକଚନ୍ଦନୈଃ । ୧୨ ।
ପିଚୁମର୍ଦ୍ଦୈଃ କୋବିଦାରୈଃ ସରଳୈଃ ସୁରଦାରୁଭିଃ ।
ଦ୍ରାକ୍ଷେକ୍ଷୁରମ୍ଭାଜମ୍ବୁଭିର୍ବଦର୍ଯ୍ୟକ୍ଷାଭୟାମଳୈଃ । ୧୩ ।
ବିଲ୍ୱୈଃ କପିତ୍ଥୈର୍ଜମ୍ବୀରୈର୍ବୃତୋ ଭଲ୍ଲାତକାଦିଭିଃ ।
ତସ୍ମିନ୍ ସରଃ ସୁବିପୁଳଂ ଲସତ୍କାଞ୍ଚନପଙ୍କଜମ୍ । ୧୪ ।

---

ଏହି ପର୍ବତର ଗୁହାରେ ଭଗବାନ୍ ବରୁଣଙ୍କର ଗୋଟିଏ ଉଦ୍ୟାନ ଅଛି । ତାହାର ନାମ ଋତୁମତ୍ । ତାହା ଦେବାଙ୍ଗନାମାନଙ୍କର କ୍ରୀଡ଼ାସ୍ଥଳୀ । ୯ ।

ଏହି ଉଦ୍ୟାନ ସତତ ପୁଷ୍ପ ଓ ଫଳଶାଳୀ ବୃକ୍ଷମାନଙ୍କରେ ସର୍ବତୋଭାବେ ଅଳଙ୍କୃତ, ମନ୍ଦାର ଓ ପାରିଜାତ, ପାଟଳ, ଅଶୋକ, ଚମ୍ପକ, ଚୂତ, ପିଆଳ, ପନସ, ଆମ୍ର, ଆମ୍ରାତକ, ଗୁବାକ, ନାରିକେଳ, ଖର୍ଜ୍ଜୁର, ଦାଡ଼ିମ୍ବ, ମଧୁକ, ଶାଳ, ତାଳ, ତମାଳ, ଅସନ, ଅର୍ଜ୍ଜୁନ, ଅରିଷ୍ଟ, ଉଡୁମ୍ବର, ଅଶ୍ୱତ୍ଥ, ବଟ, କିଂଶୁକ, ଚନ୍ଦନ, ନିମ୍ବ, କୋବିଦାର, ସରଳ, ଦେବଦାରୁ, ଦ୍ରାକ୍ଷା, ଇକ୍ଷୁ, ରମ୍ଭା, ଜମ୍ବୁ, ବଦରୀ, ଅକ୍ଷ, ଅଭୟା, ଅଁଳା, ବିଲ୍ୱ, କଇଁଥ, ଜମ୍ବିର, ଭଲ୍ଲାତକ ପ୍ରଭୃତି ଅସଂଖ୍ୟ ବୃକ୍ଷଦ୍ୱାରା ଏହି ପର୍ବତ ପରିଶୋଭିତ, ସେହି ପର୍ବତରେ ଗୋଟିଏ ବିପୁଳାୟତନ ସରୋବର ଅଛି । ତହିଁରେ ପ୍ରସ୍ଫୁଟିତ ସୁବର୍ଣ୍ଣପଦ୍ମ, କୁମୁଦ,

---

ସେ ଗିରି ଦ୍ରୋଣୀ ମଧ୍ୟେ ବନ
ବରୁଣ କ୍ରୀଡ଼ାର ଉଦ୍ୟାନ
ଋତୁମାନ ନାମ ବନର
ସୁର କାମିନୀ କ୍ରୀଡ଼ା ଘର । ୯ ।
ସର୍ବତେ ଅଳଙ୍କୃତ ବନ
ଫୁଲ ଫଳରେ ସୁଶୋଭନ
ମନ୍ଦାର ପାଟଳ ଚମ୍ପକ
ପାରିଜାତକ କୁରୁବକ
ଚୂତ ପିଆଳ ପନସକ
ଆମ୍ର ଅଶୋକ ଆମ୍ରାତକ

କଦମ୍ବ ନାରିକେଳ ବନ
ଖର୍ଜ୍ଜୁର ଦାଡ଼ିମ୍ବ ଅର୍ଜ୍ଜୁନ
ମଧୂକ ଶାଳ ତାଳ ଶୋହେ
ତମାଳ ଅସନ ସମୂହେ
ଅରିଷ୍ଟ ଉଡୁମ୍ବର ପ୍ଲକ୍ଷ
ନ୍ୟଗ୍ରୋଧ ଚନ୍ଦନ ରୁଦ୍ରାକ୍ଷ
ନିମ୍ବ କୋବିଦାର ସରଳ
କିଂଶୁକ ଦେବଦାରୁ କୁଳ
ଦ୍ରାକ୍ଷା ଇକ୍ଷୁ ଯେ ରମ୍ଭାବନ
ବଦରୀ ଅଭୟା ଯେ ଦ୍ରୁମ

ବେଲ ଜମ୍ବୀର କପିତ୍ଥକ
ଅଁଳା ପୁଣି ଭଲ୍ଲାତକ ।୧୦-୧୩
ଯହିଁ ବରୁଣ ସରୋବର
ସୁବର୍ଣ୍ଣ ପଦ୍ମ ମନୋହର
କହ୍ଲାର କୁମୁଦ ଉତ୍ପଳ
ସ୍ୱଭାବେ ସୁଗନ୍ଧ ଶୀତଳ
ଉତ୍ପଳ ଶତପତ୍ରେ ଶୋଭା
କିବା ଉପମା ଅନ୍ୟେ ଦେବା ।୧୪

କୁମୁଦୋତ୍ପଳକହ୍ଲାରଶତପତ୍ରଶ୍ରିୟୋର୍ଜିତଂ ।
ମତ୍ତଷଟ୍ପଦନିର୍ଘୁଷ୍ଟଂ ଶକୁନ୍ତୈଶ୍ଚ କଳସ୍ୱନୈଃ ।୧୫।
ହଂସକାରଣ୍ଡବାକୀର୍ଣ୍ଣଂଚକ୍ରାହ୍ୱୈଃ ସାରସୈରପି ।
ଜଳକୁକ୍କୁଟକୋୟଷ୍ଟିଦାତ୍ୟୂହକୁଳକୂଜିତମ୍ ।୧୬।
ମତ୍ସ୍ୟକଚ୍ଛପସଞ୍ଚାରଚଳତ୍ପଦ୍ମରଜଃପୟଃ ।
କଦମ୍ବବେତସନଳନୀପବଞ୍ଜୁଳକୈର୍ବୃତମ୍ ।୧୭।
କୁନ୍ଦୈଃ କୁରୁବକାଶୋକୈଃ ଶିରୀଷୈଃ କୁଟଜେଙ୍ଗୁଦୈଃ ।
କୁବ୍ଜକୈଃ ସ୍ୱର୍ଣ୍ଣଯୂଥୀଭିର୍ନାଗପୁନ୍ନାଗଜାତିଭିଃ ।୧୮।
ମଲ୍ଲିକାଶତପତ୍ରୈଶ୍ଚ ମାଧବୀଜାଳକାଦିଭିଃ ।
ଶୋଭିତଂ ତୀରଜୈଶ୍ଚାନ୍ୟୈର୍ନିତ୍ୟର୍ତ୍ତୁଭିରଳଂ ଦ୍ରୁମୈଃ ।୧୯।

---

ଉତ୍ପଳ, କହ୍ଲାର୍ ଏବଂ ଶତପତ୍ର ପ୍ରଭୃତି ବିଦ୍ୟମାନ । ତହିଁରେ ମତ୍ତ ଭ୍ରମରଗଣ ଏବଂ ମଧୁର ଶବ୍ଦକାରୀ ପକ୍ଷୀମାନେ ଶବ୍ଦ କରୁଅଛନ୍ତି । ୧୦—୧୫ ।

ସେହି ସରୋବରରେ ହଂସ କାରଣ୍ଡବ, ଚକ୍ରବାକ, ସାରସ ପ୍ରଭୃତି କ୍ରୀଡ଼ା କରୁଅଛନ୍ତି ଏବଂ ତାହା ଜଳ କୁକ୍କୁଟ, କୋୟଷ୍ଟି ଓ ଦାତ୍ୟୂହମାନଙ୍କ ଶବ୍ଦରେ ମୁଖରିତ, ମତ୍ସ୍ୟ କଚ୍ଛପମାନଙ୍କ ସଞ୍ଚରଣରେ ଚଳିତ ପଦ୍ମପରାଗ ବିଶିଷ୍ଟ ଜଳରେ ପୂର୍ଣ୍ଣ, କଦମ୍ବ, ବେତସ, ନଳ, ନୀପ, ବଞ୍ଜୁଳକ, କୁନ୍ଦ, କୁରୁବକ, ଅଶୋକ, ଶିରୀଷ, କୁଟଜ, ଇଙ୍ଗୁଦ, କୁବ୍ଜକ, ସ୍ୱର୍ଣ୍ଣଯୂଥି ନାଗ, ପୁନ୍ନାଗ, ଜାତି, ମଲ୍ଲିକା, ଶତପତ୍ର, ମାଧବୀ, ଜାଲକ ଏବଂ ଅନ୍ୟାନ୍ୟ ଋତୁଜାତ ଫଳ ପୁଷ୍ପରେ ତାହାର ତୀରଦେଶ ସୁଶୋଭିତ ହୋଇଅଛି ।୧୬—୧୯

---

ମତ୍ତ ଭ୍ରମର ପକ୍ଷିଗଣ
ନାଦ କରନ୍ତି ଅନୁକ୍ଷଣ
ହଂସ କାରଣ୍ଡବ ସମୂହେ
ସାରସ ଚକ୍ରବାକ ଶୋହେ
ଜଳ-କୁକ୍କୁଟ କୋୟଷ୍ଟିକ
କୂଜିତ କୋମଳେ ଡାହୁକ
ମତ୍ସ୍ୟ କଚ୍ଛପେ ଚଳେ ଜଳ
ପଦ୍ମ ପରାଗରେ ଧୂସର
କଦମ୍ବ ବଞ୍ଜୁଳକ ବେତ
ନୀପ ଜାତକ ଯୂଥ ଯୂଥ
କୁନ୍ଦ ଅଶୋକ କୁରୁବକ
କୁଟଜ ଇଙ୍ଗୁଦ କୁବ୍ଜକ

ଶିରୀଷ ପୁଣି ସ୍ୱର୍ଣ୍ଣ-ଯୂଥି
ନାଗ ପୁନ୍ନାଗ ଆଉ ଜାତି
ମଲ୍ଲିକା ଶତପତ୍ର ଶୋହେ
ମାଧବୀ ମାଳତୀ ସମୂହେ
ଅରଣ୍ୟ ଶୋଭା ପୁଷ୍ପଫଳ
ସୁଗନ୍ଧ ଶୀତଳ ଅମୂଲ୍ୟ ।୧୫-୧୮
ଏମନ୍ତ ବନେ ଏକ ଦିନେ
ଗଜେନ୍ଦ୍ର ବିହରଇ ମନେ
ଏ ଘର୍ମ୍ମକାଳେ ଏ ବନସ୍ତେ
ତୃଷାର୍ତ୍ତ ହୋଇଲୁଁ ସମସ୍ତେ
ଜଳ ନ କରିଲେ ଆହାର
କେମନ୍ତେ ଧରିବା ଶରୀର

ଏମନ୍ତ ମନେ ବିଚାରଇ
ଶୀତଳ-ଜଳ ଅଛି କାହିଁ
ବ୍ୟାକୁଳେ ବନସ୍ଥ ବାହାର
ଦୃଷ୍ଟିରେ ଦିଶେ ଅନ୍ଧକାର
ସେ ଗଜ ଆଶ୍ରେ ସେ ବନସ୍ତେ
ସୁଖେ ଚରନ୍ତି ପଶୁଯୂଥେ
କଣ୍ଟା ଜାତକ ବେଣୁ ବନେ
ଭ୍ରମଇ ତୃଷିତ ବଦନେ
ସ୍ୱଭାବେ ମତ୍ତଗଜଦନ୍ତୀ
ବନ-ବିହାରେ ବଳବନ୍ତି
ଯାର ବିକ୍ରମେ ପାଦ ଲାଗି
ପଡ଼ନ୍ତି ବୃକ୍ଷ ଗୁଳ୍ମ ଭାଙ୍ଗି ।୧୯।

ତସ୍ୟୈକଦା ତଦ୍ଗିରିକାନନାଶ୍ରୟଃ କରେଣୁଭିର୍ବାରଣଯୂଥପଶ୍ଚରନ୍ ।
ସକଣ୍ଟକଂ କୀଚକବେଣୁବେତ୍ରବଦ୍‌ବିଶାଲଗୁଲ୍ମଂ ପ୍ରରୁଜନ୍ ବନସ୍ପତୀନ୍ ।୨୦।
ଯଦ୍‌ଗନ୍ଧମାତ୍ରାଦ୍ଧରୟୋ ଗଜେନ୍ଦ୍ରା ବ୍ୟାଘ୍ରାଦୟୋ ବ୍ୟାଳମୃଗାଃ ସଖଡ୍ଗାଃ ।
ମହୋରଗାଶ୍ଚାପି ଭୟାଦ୍ରବନ୍ତି ସ ଗୌରକୃଷ୍ଣାଃ ସରଭାଶ୍ଚମର୍ଯ୍ୟଃ । ୨୧ ।
ବୃକା ବରାହା ମହିଷର୍କ୍ଷଶଲ୍ୟା ଗୋପୁଚ୍ଛଶାଳାବୃକମର୍କଟାଶ୍ଚ ।
ଅନ୍ୟତ୍ର କ୍ଷୁଦ୍ରା ହରିଣାଃ ଶଶାଦୟଶ୍ଚରନ୍ତ୍ୟଭୀତା ଯଦନୁଗ୍ରହେଣ । ୨୨ ।
ସ ଘର୍ମ୍ମତପ୍ତଃ କରିଭିଃ କରେଣୁଭିର୍ବୃତୋ ମଦଚ୍ୟୁତ୍‌କରଭୈରନୁଦ୍ରୁତଃ ।
ଗିରିଂ ଗରିମ୍ଣା ପରିତଃ ପ୍ରକମ୍ପୟନ୍ ନିଷେବ୍ୟମାଣୋଽଳିକୁଲୈର୍ମଦାଶନୈଃ ।୨୩।
ସରୋଽନିଳଂ ପଙ୍କଜରେଣୁରୂଷିତଂ ଜିଘ୍ରନ୍ ବିଦୂରାନ୍ମଦବିହ୍ୱଳେକ୍ଷଣଃ ।
ବୃତଃ ସ୍ୱଯୂଥେନ ତୃଷାର୍ଦ୍ଦିତେନ ତତ୍ ସରୋବରାଭ୍ୟାସମଥାଗମଦ୍ଦ୍ରୁତମ୍ । ୨୪ ।

---

ସେହି ପର୍ବତରେ ଦିନେ ଚତୁର୍ଦ୍ଦିଗ ହସ୍ତୀରାଜ ହସ୍ତିମାନଙ୍କ ସହିତ କଣ୍ଟକଯୁକ୍ତ କୀଚକ, ବେଣୁ ଓ ବେତ୍ର, ଲତାକୁଞ୍ଜ ଏବଂ ବୃକ୍ଷସମୂହ ଭଗ୍ନକରି ବିଚରଣ କରୁଥିଲା । ୨୦ ।

ତାହାର ମଦଗନ୍ଧ ଆଘ୍ରାଣ କରି ତତ୍ରସ୍ଥ ସିଂହ, ଗଜେନ୍ଦ୍ର, ବ୍ୟାଘ୍ର, ଗଣ୍ଡା, ସର୍ପ, ମହାସର୍ପ, କୃଷ୍ଣମୃଗ, ଶରଭ, ଚମରୀ ମୃଗମାନେ ଭୟରେ ପଳାୟନ କରୁଥିଲେ ଏବଂ ବୃକ, ବରାହ, ମହିଷ, ଭଲ୍ଲୁକ, ଶଲ୍ୟ, ଗୋପୁଚ୍ଛ ମୃଗମାନେ ଓ ଶାଳାବୃକ (କୁକୁର ମାନେ, ବାନର, କ୍ଷୁଦ୍ର ହରିଣମାନେ ଏବଂ ଶଶକାଦି ପ୍ରାଣୀମାନେ ତାହାର ଦୃଷ୍ଟିପଥରୁ ଅନ୍ତର୍ହିତ ହୋଇ ଅନ୍ୟତ୍ର ନିର୍ଭୟରେ ବିଚରଣ କରୁଥିଲେ । ୨୧, ୨୨

ଗ୍ରୀଷ୍ମ ତାପରେ ସନ୍ତପ୍ତ ହୋଇ ମଦସ୍ରାବୀ କରିବର ବହୁ ହସ୍ତୀ, ହସ୍ତିନୀ ଓ ହସ୍ତୀଶାବକ ପରିବୃତ ହୋଇ ହସ୍ତୀଶାବକମାନଙ୍କ କର୍ତ୍ତୃକ ଅନୁଗମ୍ୟମାନ ହୋଇ ନିଜ ଗୁରୁତ୍ୱ ଦ୍ୱାରା ପର୍ବତ କମ୍ପିତକରି ପଦ୍ମ-ପରାଗଯୁକ୍ତ ସରୋବର ବାୟୁ ଆଘ୍ରାଣ ହେତୁ ମଦବିହ୍ୱଳ-ନୟନ ହୋଇ ଅତି ଦ୍ରୁତବେଗରେ ସରୋବର ନିକଟକୁ ଗମନ କରିଥିଲା । ୨୩, ୨୪

---

ତାହାର ମଦଗନ୍ଧ ବଶେ
ପଶୁ ଏ ନ ରହନ୍ତି ପାଶେ
ଭଲ୍ଲୁକ ବ୍ୟାଘ୍ର ଖଗ-ମୃଗ
ଯେବା ପର୍ବତରେ ମହୋରଗ
ସରଭ କୃଷ୍ଣସାର ହରି
ସେ ଶାଳାବୃକ ଯେ ଚମରୀ
ବରାହ ମହିଷ ଶଶକ
ଗୋପୁଚ୍ଛ ଆଦି ଶାଳାବୃକ

କ୍ଷୁଦ୍ର ହରିଣୀଗଣ ଯେତେ
ଚରନ୍ତି ଯାହାର ଆୟତ୍ତେ ।୨୦,୨୧
ସେ ଗଜପତି ଗଜଯୂଥେ
ଅନେକ ଭ୍ରମିଲା ବନସ୍ତେ
ବରୁଣ ହ୍ରଦ ତୀରେ ଯାଇ
ତୃଷିତ ଲୋଚନେ ଅନାଇ
ଜଳ ଶୀତଳ ପୁଷ୍ପଗନ୍ଧେ
ଆଘ୍ରାଣ କରି ନାସାରନ୍ଧ୍ରେ

କରିଣୀଯୂଥ ସଙ୍ଗେ ନେଇ
ସନ୍ତୋଷେ ଶୀତ-ଜଳେ ପଶି ।୨୨,୨୩
ସୁବର୍ଣ୍ଣ-ପଦ୍ମ ବନମଧ୍ୟେ
ସକଳେ ପଶିଲେ ଆନନ୍ଦେ,
ସକଳେ ହରଷ ବଦନ
ସନ୍ତୋଷେ କଲେ ଜଳପାନ
ଜଳ ତୋଳନ୍ତି ଶୁଣ୍ଡାଗ୍ରେ
ସିଞ୍ଚନ୍ତି ଅନ୍ୟୋଅନ୍ୟ ଗାତ୍ରେ

ବିଗାହ୍ୟ ତସ୍ମିନ୍ନମୃତାମ୍ବୁ ନିର୍ମଳଂ ହେମାରବିନ୍ଦୋତ୍ପଳରେଣୁରୁଷିତମ୍ ।
ପପୌ ନିକାମଂ ନିଜପୁଷ୍କରୋଦ୍ଧୃତମାତ୍ମାନମଦ୍ଭିଃ ସ୍ନପୟନ୍ ଗତକ୍ଳମଃ । ୨୫ ।
ସ ପୁଷ୍କରେଣୋଦ୍ଧୃତ ଶୀକରାମ୍ବୁଭିର୍ନିପାୟୟନ୍ ସଂସ୍ନପୟନ୍ ଯଥା ଗୃହୀ ।
ଘୃଣୀ କରେଣୁଃ କଲଭାଂଶ୍ଚ ଦୁର୍ମଦୋ ନାଚଷ୍ଟ କୃଚ୍ଛ୍ରଂ କୃପଣୋଽଜମାୟୟା । ୨୬ ।
ତଂ ତତ୍ର କଶ୍ଚିନ୍ନୃପଦୈବଚୋଦିତୋ ଗ୍ରାହୋ ବଳୀୟାଂଶ୍ଚରଣେ ରୁଷାଗ୍ରହୀତ୍ ।
ଯଦୃଚ୍ଛୟୈବଂ ବ୍ୟସନଂ ଗତୋ ଗଜୋ ଯଥାବଳଂ ସୋଽତିବଳୋ ବିଚକ୍ରମେ । ୨୭
ଅଥାତୁରଂ ଯୂଥପତିଂ କରେଣବୋ ବିକୃଷ୍ୟମାଣଂ ତରସା ବଳୀୟସା ।
ବିଚୁକ୍ରୁଶୁର୍ଦୀନଧିୟୋଽପରେ ଗଜା ପାର୍ଷ୍ଣିଗ୍ରହାସ୍ତାରୟିତୁଂ ନ ଚାଶକନ୍ । ୨୮ ।

---

ସେହି ସରୋବରରେ ଅବଗାହନ କରି ଜଳଦ୍ୱାରା ନିଜଦେହ ସେଚନ ପୂର୍ବକ ସୁସ୍ଥ ହୋଇ ସ୍ୱର୍ଣ୍ଣବର୍ଣ୍ଣ ରାଗ ରଞ୍ଜିତ ନିଜର କରଦ୍ୱାରା ଉଦ୍ଧୃତ ନିର୍ମଳ ଅମୃତମୟ ଜଳ ପ୍ରଚୁର ପରିମାଣରେ ପାନ କରିଥିଲା । ୨୫

ତଦନନ୍ତର ଶୁଣ୍ଢଦ୍ୱାରା ଜଳ ଉଠାଇ ଗୃହସ୍ଥ ପରି ଆସକ୍ତ ଭାବରେ ସ୍ତ୍ରୀ ଓ ପୁତ୍ରମାନଙ୍କୁ ଜଳ-ପାନ ଓ ଜଳଦ୍ୱାରା ସ୍ନାନ କରାଇ ଭଗବତ୍ ମାୟାଦ୍ୱାରା ମୁଗ୍ଧହୋଇ ଏହି ଦୁର୍ଦ୍ଦାନ୍ତ ହସ୍ତୀ ଆଗାମୀ କଷ୍ଟ ବୁଝି ପାରିଲା ନାହିଁ । ୨୬ ।

ହେ ରାଜନ୍ ! ସେଠାରେ କାଳପ୍ରେରିତ ଗୋଟିଏ ବଳିଷ୍ଠ କୁମ୍ଭୀର ଏ ଗଜର ଚରଣ ଧାରଣ କଲା, ସହସା ଏହିପରି ବିପନ୍ନ ହୋଇ ସେହି ମହା ବଳୀୟାନ୍ ହସ୍ତୀ ଯଥାଶକ୍ତି ନିଜର ବିକ୍ରମ ପ୍ରକାଶ କଲା । ୨୭।

ଅତ୍ୟନ୍ତ ବଳଶାଳୀ କୁମ୍ଭୀର କର୍ତ୍ତୃକ ବେଗରେ ଆକୃଷ୍ୟମାଣ ହୋଇ ବିପନ୍ନ ହେବାର ଦେଖି କରିଣୀମାନେ କ୍ରନ୍ଦନ କରିବାକୁ ଲାଗିଲେ ଏବଂ ଅନ୍ୟାନ୍ୟ ହସ୍ତୀମାନେ ତାହାର ପଦଧରି ଆକର୍ଷଣ କଲେ, ମାତ୍ର ତାହାକୁ ଉଦ୍ଧାର କରି ପାରିଲେ ନାହିଁ । ୨୮ ।

---

ନିଦାଘ କାଳେ ଶୀତ ଜଳେ
କ୍ରୀଡ଼ା କରନ୍ତି ହସ୍ତୀବଳେ
ଶବଦ ଶୁଣ୍ଡେ ଉଚ୍ଛୁଳିତ
ଯେସନେ ଜୀମୂତ ଗର୍ଜ୍ଜିତ । ୨୪,୨୫
ଅଗାଧ-ଜଳେ ଗ୍ରାହ ଥିଲା
ଜଳେ ସେ ଶବଦ ଶୁଣିଲା
ବେଗେ ଧାଇଁଲା କୋପମନେ
ମିଳିଲା ଗଜ ସନ୍ନିଧାନେ
କେହି ନ ଦେଖେ ତାକୁ ଜଳେ
କୁମ୍ଭୀର ଅତି କୋପାନଳେ
ଧଇଲା ଗଜପତି ପାଦ
ଶବଦ କରି ଘୋର ନାଦ
ଦଇବ ଯୋଗୁ କରି ବଳେ
ଘାଇ ଦପଟି ପଡ଼େ ଜଳେ

ଗ୍ରାହ ଧଇଲା ଅକସାତେ
ଗଜ ଚରଣ ଦୃଢ଼ଘାତେ
ସେ ଗଜପତି ବଳବନ୍ତ
ବଜ୍ର ସମାନ ତାର ଦନ୍ତ
କି କରିପାରେ ତାର ମତେ
ବିଷ୍ଣୁର ମାୟାର ଆୟତ୍ତେ ।
ଗଜ ସ୍ୱଭାବେ ମହାବଳୀ
ଚରଣ ନ ପାରିଲା ଟାଳି
କରିଣୀ ଯୂଥ ତ ହା ଦେଖି
ଦୁଃଖେ ହୋଇଲେ ଅଶ୍ରୁମୁଖୀ,
ସ୍ୱଭାବେ ଅତି ଶୀତ ପାଣୀ
ଗଜ ନ ପାରେ ପାଦ ଆଣି
ସେ ହସ୍ତି-ଦଳ ତାକୁ ଧରି
ଟାଣନ୍ତି ଘୋର ନାଦ କରି

ମୁଖରୁ ରୁଧିର ଗଳଇ
କେତେହେଁ ହସ୍ତୀ ନ ଚଳଇ
ବଳେ ଅଣନ୍ତି କିଛି ଦୂର
କୁମ୍ଭୀର ଅତି ବଳୀୟର
ପୁଣି ଗମ୍ଭୀର-ଜଳେ ଭରେ
ସୁଦୃଢ଼ଦନ୍ତେ ପାଦଧରେ । ୨୬,୨୭
ଏମନ୍ତେ ଗଜ ନକ୍ର ଯୁଦ୍ଧ
ଗଗନେ ଦେଖନ୍ତି ବିବୁଧ
ଗଜ ଟାଣନ୍ତି ଅତି ଖରେ
ପୁଣି ଗମ୍ଭୀର-ଜଳେ ଭରେ
ଏମନ୍ତେ ସହସ୍ରବରଷ
ଯୁଦ୍ଧ ନୋହିଲା ଅବଶେଷ । ୨୮ ।

ନିୟୁଧ୍ୟତୋରେବମିଭେନ୍ଦ୍ରନକ୍ରୟୋର୍ବିକର୍ଷତୋରନ୍ତରତୋ ବହିର୍ମିଥଃ ।
ସମାଃ ସହସ୍ରଂ ବ୍ୟଗମନ୍ମହୀପତେ ସପ୍ରାଣୟୋଶ୍ଚିତ୍ରମମଂସତାମରାଃ । ୨୯ ।
ତତୋ ଗଜେନ୍ଦ୍ରସ୍ୟ ମନୋବଲୌଜସାଂ କାଲେନ ଦୀର୍ଘେଣ ମହାନଭୂଦ୍‌ବ୍ୟୟଃ ।
ବିକୃଷ୍ୟମାଣସ୍ୟ ଜଲେଽବସୀଦତୋ ବିପର୍ଯ୍ୟୟୋଽଭୂତ୍ ସକଲଂ ଜଲୌକସଃ ।୩୦।
ଇତ୍ଥଂ ଗଜେନ୍ଦ୍ରଃ ସ ଯଦାପ ସଙ୍କଟଂ ପ୍ରାଣସ୍ୟ ଦେହୀ ବିବଶୋ ଯଦୃଚ୍ଛୟା ।
ଅପାରୟନ୍ନାତ୍ମବିମୋକ୍ଷଣେ ଚିରଂ ଦଧ୍ୟାବିମାଂ ବୁଦ୍ଧିମଥାଭ୍ୟପଦ୍ୟତ । ୩୧ ।
ନ ମାମିମେ ଜ୍ଞାତୟ ଆତୁରଂ ଗଜାଃ କୁତଃ କରିଣ୍ୟଃ ପ୍ରଭବନ୍ତି ମୋଚିତୁମ୍ ।
ଗ୍ରାହେଣ ପାଶେନ ବିଧାତୁରାବୃତୋଽପ୍ୟହଞ୍ଚ ତଂ ଯାମି ପରଂ ପରାୟଣମ୍ । ୩୨ ।
ଯଃ କଶ୍ଚନେଶୋ ବଲିନୋଽନ୍ତକୋରଗାତ୍ ପ୍ରଚଣ୍ଡବେଗାଦଭିଧାବତୋ ଭୃଶମ୍ ।
ଭୀତଂ ପ୍ରପନ୍ନଂ ପରିପାତି ଯଦ୍ଭୟାନ୍ମୃତ୍ୟୁଃ ପ୍ରଧାବତ୍ୟରଣଂ ତମୀମହି । ୩୩ ।

---

ହେ ମହାରାଜ ! ଏହିପରି କୁମ୍ଭୀର ଓ ଗଜେନ୍ଦ୍ର ମଧ୍ୟରେ ଯୁଦ୍ଧ ଏବଂ ପରସ୍ପର ମଧ୍ୟରେ ଆକର୍ଷଣ ସହସ୍ର ବର୍ଷ ପର୍ଯ୍ୟନ୍ତ ଚାଲିଲା କିନ୍ତୁ କେହି କାହାରିକୁ ବଧକରି ପାରିଲେ ନାହିଁ । ଦେବଗଣ ଏହା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ୨୯ ।

ଦୀର୍ଘକାଳ ପରେ ଗଜେନ୍ଦ୍ରର ଉତ୍ସାହ, ଶକ୍ତି, ଶାରୀରିକ ବଳ, ଇନ୍ଦ୍ରିୟ, ବୀର୍ଯ୍ୟ ବିଶେଷରୂପେ କ୍ଷୟ ହେଲା ଏବଂ ଆକର୍ଷଣକାରୀ ଜଳ ମଧ୍ୟସ୍ଥ କୁମ୍ଭୀରର ଶକ୍ତି କ୍ରମେ ବର୍ଦ୍ଧିତ ହେଲା । ୩୦ ।

ଦେହଧାରୀ ସେହି ଗଜେନ୍ଦ୍ରର ଯେତେବେଳେ ପ୍ରାଣନାଶ ଆଶଙ୍କା ଘଟିଲା, ସେତେବେଳେ ନିଜକୁ ଉଦ୍ଧାର କରିବାକୁ ଅକ୍ଷମ ହୋଇ ସେ ପରିଶେଷରେ ଏହିପରି ବୁଦ୍ଧି ଲାଭ କଲା । ୩୧ ।

ମୋର ବନ୍ଧୁଗଣ କାତର ପ୍ରାଣ ହୋଇ ମୋତେ ଉଦ୍ଧାର କରିପାରିଲେ ନାହିଁ, ହସ୍ତିନୀମାନଙ୍କ କଥା ବା କଣ କହିବ ? ମୁଁ ବିଧାତାଙ୍କର ପାଶରୂପ ନକ୍ରଦ୍ୱାରା ଆକ୍ରାନ୍ତ ହୋଇଅଛି । ସୁତରାଂ ମୁଁ ବ୍ରହ୍ମାଦି ଦେବଗଣଙ୍କର ଯେ ଆଶ୍ରୟ ସ୍ଥଳ ସେହି ଭଗବାନଙ୍କର ଶରଣାଗତ ହେଲି । ୩୨ ।

ସର୍ବଶକ୍ତିମାନ୍ ପରମେଶ୍ୱର ଅତି ବେଗବାନ୍, ବଳବାନ୍ କାଳରୂପ ସର୍ପଠାରୁ ଭୀତପ୍ରାପ୍ତ ଶରଣାଗତ ଜୀବକୁ ରକ୍ଷା କରନ୍ତି । ତାହାଙ୍କ ଭୟରେ ମୃତ୍ୟୁ ସୁଦ୍ଧା ପଳାୟନ କରେ । ମୁଁ ସର୍ବାଶ୍ରୟ ସ୍ୱରୂପ ସେହି ପରମେଶ୍ୱରଙ୍କର ଶରଣାଗତ ହେଲି । ୩୩ ।

---

ଏମନ୍ତେ ଦୀର୍ଘକାଳବେଳ
ଗଜ-କୁମ୍ଭୀର ମହାବଳେ
କ୍ଷୀଣ ଆୟୁରେ ଗଜପତି
ସଙ୍ଗତେ ଥିଲେ ଯେତେ ହସ୍ତୀ
ଦନ୍ତେ ଚରନ୍ତି ଘୋର ବନେ
ଜଳେ ବାନ୍ଧିଲି ଗ୍ରାହଦନେ
ଗଜ କୁମ୍ଭୀର ଯୁଦ୍ଧଘାତେ
ସେ ଜଳେ ଜଳଜନ୍ତୁ ଯେତେ

ଦୁଃଖିତେ ଛଟପଟ ହୋନ୍ତି
ଉଚ୍ଛୁଁ ପଳାଇ ନ ପାରନ୍ତି ।୨୯।
ଏହି ପ୍ରକାରେ ଗଜଦୁଃଖୀ
ଗଜେ କାନ୍ଦନ୍ତି ତାହା ଦେଖି
ଏମନ୍ତେ ପୂର୍ବ ପୁଣ୍ୟବଳେ
ବୁଦ୍ଧି ସ୍ଫୁରିଲା ତାକୁ ଜଳେ
ଅନ୍ତରେ କରଇ ବିଚାର
ସେ ହରି ସଂସାରର ସାର

ସଂକଟେ କରେ ପରିତ୍ରାଣ
ଯେ ତାଙ୍କୁ ପଶନ୍ତି ଶରଣ
କାଳ ଭୁଜଙ୍ଗ ଗ୍ରାସ କାଳେ
ଯେ ତାଙ୍କୁ ଚିନ୍ତେ ଧ୍ୟାନବଳେ
ତାହାକୁ କେ କରେ ଭକ୍ଷଣ
ତା ପାଦେ ପଶିବି ଶରଣ ।୩୦-୩୩।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଗଜେନ୍ଦ୍ରୋପାଖ୍ୟାନେ
ଦ୍ୱିତୀୟୋଽଧ୍ୟାୟଃ ।

---

| | | |
|---|---|---|
| ବୋଲଇ ଦାସ ଜଗନ୍ନାଥ | ଗଜେନ୍ଦ୍ର ଯୁଦ୍ଧକର୍ମ୍ମ ବାଣୀ | ଜନ୍ମ-ମରଣେ ନାହିଁ ଭ୍ରାନ୍ତି |
| ଭାଷା ପ୍ରବନ୍ଧେ ଭାଗବତ | ଆନନ୍ଦେ ଯେ ଶୁଣନ୍ତି ପ୍ରାଣୀ | ହେଲେ ସଙ୍କଟୁଁ ତରିଯାନ୍ତି । |



**ଭାବାର୍ଥ—**

ଏହି ଅଧ୍ୟାୟରେ ତ୍ରିକୂଟ ପର୍ବତର ବର୍ଣ୍ଣନା ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରଥମେ ବର୍ଣ୍ଣିତ ହୋଇଅଛି । ତଦନନ୍ତର ଗଜେନ୍ଦ୍ର କିପରି କୁମ୍ଭୀର ଦ୍ୱାରା ଆକ୍ରାନ୍ତ ହେଲା ଏବଂ ନିଜ ଶକ୍ତିରେ ବା ଆପଣାର ଜ୍ଞାତିବର୍ଗଙ୍କର ଶକ୍ତିରେ ଉଦ୍ଧାର ପାଇ ପାରିଲା ନାହିଁ-ତାହା ବର୍ଣ୍ଣିତ ହୋଇଅଛି । ପରିଶେଷରେ ସେ ଭଗବତ୍ ଶକ୍ତିର ଆଶ୍ରୟ ନେଇଥିଲା, ଜୀବ ଏ ସଂସାରରେ ସର୍ବଦା ଏହିପରି କାଳଗ୍ରସ୍ତ କିନ୍ତୁ ତହିଁରୁ ଉଦ୍ଧାର ଲାଭ କରିବାର ଶକ୍ତି ଏକମାତ୍ର ଭଗବାନଙ୍କର ଆଶ୍ରୟ । ଜୀବ ଯେ ପର୍ଯ୍ୟନ୍ତ ଆତ୍ମଶକ୍ତି ଉପରେ ନିର୍ଭର କରୁଥାଏ ସେ ପର୍ଯ୍ୟନ୍ତ ତାହା ପକ୍ଷରେ ଭଗବତ୍ କରୁଣା ଲାଭ କରିବା ସମ୍ଭବ ହୁଏ ନାହିଁ । ମହାଭାରତ ଓ ଶ୍ରୀମଦ୍ ଭାଗବତରେ ଏଥିର ବହୁଳ ଦୃଷ୍ଟାନ୍ତ ଦେଖାଯାଏ । ଦ୍ରୌପଦୀଙ୍କୁ କୁରୁସଭାତଳେ ଦୁଃଶାସନ ବିବସନ କଲାବେଳେ ସେ ଯେ ପର୍ଯ୍ୟନ୍ତ ନିଜର ଶକ୍ତିଦ୍ୱାରା ଲଜ୍ଜା ନିବାରଣର ଉଦ୍ୟମ କରୁଥିଲେ ସେ ପର୍ଯ୍ୟନ୍ତ ଶ୍ରୀକୃଷ୍ଣ ତାହାଙ୍କର ପ୍ରାର୍ଥନା ପୂରଣ କରୁ ନ ଥିଲେ । ଦ୍ରୌପଦୀ ନିଜର ସମସ୍ତ ଶକ୍ତି ପରିତ୍ୟାଗ କରି ଦୁଇହାତରେ ଶ୍ରୀକୃଷ୍ଣଙ୍କୁ ନମସ୍କାର କରି ପ୍ରାର୍ଥନା କରିବା ମାତ୍ରେ କୋଟି କୋଟି ବସ୍ତ୍ର ସହସା ଉପସ୍ଥିତ ହୋଇ ତାହାଙ୍କର ଲଜ୍ଜା ନିବାରଣ କଲା । ଗଜେନ୍ଦ୍ର ସେହିପରି ଗ୍ରାହ ମୁଖରୁ ନିଜକୁ ରକ୍ଷା କରିବା ଲାଗି ନିଜର ଶକ୍ତି ଓ ଜ୍ଞାତିବର୍ଗଙ୍କର ଶକ୍ତିରେ ବିଶ୍ୱାସ ହରାଇ ସର୍ବ ଶକ୍ତିମାନ୍ ଭଗବାନଙ୍କର ଆଶ୍ରୟ ଗ୍ରହଣ କରିଥିଲା ।

---

# ତୃତୀୟୋଽଧ୍ୟାୟଃ ।

ତୃତୀୟେ ତୁ ଗଜେନ୍ଦ୍ରେଣ ସ୍ତୁତୋ ହରିରୂପେଣ ତମ୍ ।
ସମୁଦ୍ଧାରଦର ତଂ ଗ୍ରାହାତ୍ ଗ୍ରାହଂ ଦେବଳଶାପତଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀ ବାଦରାୟଣିରୁବାଚ ।

ଏବଂ ବ୍ୟବସିତୋ ବୁଦ୍ଧ୍ୟା ସମାଧାୟ ମନୋ ହୃଦି ।
ଜଜାପ ପରମଂ ଜାପ୍ୟଂ ପ୍ରାଗ୍ଜନ୍ମନ୍ୟନୁଶିକ୍ଷିତମ୍ । ୧ ।

ଶ୍ରୀ ଗଜେନ୍ଦ୍ର ଉବାଚ ।

ଓଁ ନମୋ ଭଗବତେ ତସ୍ମୈ ଯତ ଏତଚ୍ଚିଦାତ୍ମକମ୍ ।
ପୁରୁଷାୟାଦିବୀଜାୟ ପରେଶାୟାଭିଧୀମହି । ୨ ।

---

## ଗଜୋଦ୍ଧାରଣ ।

ତୃତୀୟ ଅଧ୍ୟାୟରେ ଗଜେନ୍ଦ୍ର ଦ୍ୱାରା ସ୍ତୁତ ହୋଇ ଭଗବାନ ତାର ନିକଟକୁ ଆସି ତାକୁ କୁମ୍ଭୀର କବଳରୁ ଉଦ୍ଧାର ପୂର୍ବକ ଦେବଳ ଅଭିଶାପରୁ ମୁକ୍ତ କରିଥିଲେ । ୦ ।

ଶ୍ରୀଶୁକଦେବ କହିଲେ—

ଏହିପରି କୃତ ନିଶ୍ଚୟ ହୋଇ ସେହି ଗଜେନ୍ଦ୍ର ପୂର୍ବ ଜନ୍ମରେ ( ଇନ୍ଦ୍ରଦ୍ୟୁମ୍ନ ସଞ୍ଜକ ଜନ୍ମରେ ) ଯେଉଁ ସ୍ତବ ଅଭ୍ୟାସ କରିଥିଲା ସେହି ଶ୍ରେଷ୍ଠ ସ୍ତୋତ୍ରକୁ ଜପ କଲା । ୧ ।

ଶ୍ରୀ ଗଜେନ୍ଦ୍ର କହିଲା—

ଯାହାଙ୍କଠାରୁ ଏହି ଚିଦାତ୍ମକ ବିଶ୍ୱ ଉତ୍ପନ୍ନ ସେହି ପ୍ରକୃତି ପୁରୁଷ ଭଗବାନ ପରମେଶ୍ୱରଙ୍କୁ ନମସ୍କାର, ମୁଁ ତାହାଙ୍କୁ ଧ୍ୟାନ କରୁଅଛି । ୨ ।

---

ଗଜେନ୍ଦ୍ରସ୍ତବ ଶୁଣି ହରି, ଗଜ କୁମ୍ଭୀର ପାଶେ ମିଳି । ଦୁହିଙ୍କି କରିଲେ ଉଦ୍ଧାର, ଚରିତ ତୃତୀୟ ଅଧ୍ୟାୟ ॥

ଶ୍ରୀଶୁକଉବାଚ—

ଶୁଣ ପାଣ୍ଡବ ଚୂଡ଼ାମଣି
ଗଜେନ୍ଦ୍ର ବୋଲେ ମୋକ୍ଷବାଣୀ
ଏମନ୍ତ କଥା ସେ ବିଚାରି
ଚିତ୍ତକୁ ମନ ସ୍ଥିର କରି
ପରମ ଜପ ସେ ଜପିଲା
ଯେ ପୂର୍ବ ଜନ୍ମେ ଶିକ୍ଷା ଥିଲା ॥ ୧

ଗଜେନ୍ଦ୍ର ଉବାଚ—

ବୋଲେ ଆନନ୍ଦ ଗଦଗଦେ
ଆଦ୍ୟେ ଓଁକାର ବ୍ରହ୍ମପଦେ
ନମସ୍ତେ ପ୍ରଭୁ ଭଗବାନ
ଅଶେଷ ବ୍ରହ୍ମାଣ୍ଡ ଜୀବନ
ତୋର ମହିମା ଚିଦାତ୍ମକ
ଅନାଦି ପୁରୁଷ ବିବେକ
ଜୀବର ଆଦିବୀଜ ତୁହି
ପରମେଶ୍ୱରେ ନମେ ମୁହିଁ ॥ ୨

ଯସ୍ମିନ୍ନିଦଂ ଯତଶ୍ଚେଦଂ ଯେନେଦଂ ଯ ଇଦଂ ସ୍ୱୟମ୍ ।
ଯୋଽସ୍ମାତ୍ ପରସ୍ମାଚ୍ଚ ପରସ୍ତଂ ପ୍ରପଦ୍ୟେ ସ୍ୱୟମ୍ଭୁବମ୍ । ୩ ।
ଯଃ ସ୍ୱାତ୍ମନୀଦଂ ନିଜମାୟୟାର୍ପିତଂ କ୍ୱଚିଦ୍ୱିଭାତଂ କ୍ୱ ଚ ତତ୍ତିରୋହିତମ୍ ।
ଅବିଦ୍ଧଦୃକ୍ ସାକ୍ଷ୍ୟୁଭୟଂ ତଦୀକ୍ଷତେ ସ ଆତ୍ମମୂଲୋଽବତୁ ମାଂ ପରାତ୍ପରଃ । ୪ ।
କାଳେନ ପଞ୍ଚତ୍ୱମିତେଷୁ କୃତ୍ସ୍ନଶୋ ଲୋକେଷୁ ପାଳେଷୁ ଚ ସର୍ବହେତୁଷୁ ।
ତମସ୍ତଦାସୀଦ୍ଗହନଂ ଗଭୀରଂ ଯସ୍ତସ୍ୟ ପାରେଽଭିବିରାଜତେ ବିଭୁଃ । ୫ ।
ନ ଯସ୍ୟ ଦେବା ଋଷୟଃ ପଦଂ ବିଦୁର୍ଜନ୍ତୁଃ ପୁନଃ କୋଽର୍ହତି ଗନ୍ତୁମୀରିତୁମ୍ ।
ଯଥା ନଟସ୍ୟାକୃତିଭିର୍ବିଚେଷ୍ଟତୋ ଦୁରତ୍ୟୟାନୁକ୍ରମଣଃ ସ ମାବତୁ । ୬ ।

---

ଯାହାଙ୍କଠାରେ ଏହି ବିଶ୍ୱ ଅଧିଷ୍ଠିତ, ଯାହାଙ୍କଠାରୁ ଏହି ବିଶ୍ୱ ଉତ୍ପନ୍ନ, ଯାହାଙ୍କ କର୍ତ୍ତୃକ ଏହି ବିଶ୍ୱ ସୃଷ୍ଟ ଏବଂ ଯେ ଏହି ବିଶ୍ୱର ସ୍ୱରୂପ, ଯେ କାର୍ଯ୍ୟକାରଣଠାରୁ ପୃଥକ୍ ସେହି ସ୍ୱତସିଦ୍ଧ ପରମେଶ୍ୱରଙ୍କର ମୁଁ ଶରଣାପନ୍ନ ହେଉ । ୩ ।

ଯେ ନିଜ ମାୟାଦ୍ୱାରା ନିଜଠାରେ ଅର୍ପିତ, ଯେ ସୃଷ୍ଟିକାଳରେ ଅଭିବ୍ୟକ୍ତ, ଯେ ପ୍ରଳୟ କାଳରେ ତିରୋହିତ, ଏହି ବିଶ୍ୱର ଅଲୁପ୍ତ ଦୃଷ୍ଟି ସାକ୍ଷୀ ସ୍ୱରୂପ, ଯେ କାର୍ଯ୍ୟ କାରଣ ଏହି ଉଭୟଙ୍କୁ ସର୍ବଦା ନିରୀକ୍ଷଣ କରିଥାନ୍ତି, ଯେ ସ୍ୱପ୍ରକାଶ ଏବଂ ପ୍ରକାଶକ, ଚକ୍ଷୁରାଦିର ମଧ୍ୟ ପ୍ରକାଶକ, ପରମେଶ୍ୱର ସେ ମୋତେ ରକ୍ଷା କରନ୍ତୁ । ୪ ।

କାଳବଶରେ ସମସ୍ତ ଲୋକ ଓ ଲୋକପାଳଗଣ ସମ୍ପୂର୍ଣ୍ଣରୂପେ ବିନାଶପ୍ରାପ୍ତ ହେଲେ ଯେଉଁ ଅନନ୍ତ, ଗାଢ଼, ଦୁର୍ଭେଦ୍ୟ ଅନ୍ଧକାର ଥାଏ, ସେହି ତମୋରାଶିର ପରପାରରେ ଯେଉଁ ଈଶ୍ୱର ବିରାଜମାନ କରନ୍ତି ସେ ମୋତେ ରକ୍ଷା କରନ୍ତୁ । ୫ ।

ଦେବଗଣ ଏବଂ ଋଷିଗଣ ଯାହାଙ୍କର ସ୍ୱରୂପ ଅବଗତହୋଇ ନ ପାରନ୍ତି, ସାଧାରଣ ଅର୍ବାଚୀନ ଲୋକ ଯେ ତାହାଙ୍କୁ ଜାଣିବ ଓ ତାଙ୍କ ବିଷୟରେ କହିବାକୁ ସମର୍ଥ ହେବ ଏହାକି ସମ୍ଭବ ? ସେ ନଟତୁଲ୍ୟ ବିବିଧ ଆକୃତିଦ୍ୱାରା ଚେଷ୍ଟାକରୁଥାନ୍ତି । ତାହାଙ୍କର ଚରିତ୍ର ଅତି ଦୁର୍ଜ୍ଞେୟ; ସେ ମୋତେ ରକ୍ଷାକରନ୍ତୁ ।୬

---

ଯାହାର ଦେହେ ବିଶ୍ୱବସେ
ଯା ତହୁଁ ଏ ବିଶ୍ୱ ପ୍ରକାଶେ
ଏ ବିଶ୍ୱ ସର୍ଜ୍ଜନା ଯହିଁରେ
ସ୍ୱୟଂ ଯେ ବିଶ୍ୱରୂପ ଧରେ
କାର୍ଯ୍ୟ କାରଣରୁ ଯେ ପର
ତୁ ବ୍ରହ୍ମ ଶରଣେ ସାଦର ॥ ୩
ଏ ଯେ ସଂସାର ମାୟାବଳେ
ଆତ୍ମାରୁ କଲେ ଯେ ନିଶ୍ଚଳେ
ପ୍ରକାଶ କରି ତିରୋହିତ
କରଇ ଉର୍ଣ୍ଣନାଭିବତ

ମଧ୍ୟେ ଦେଖଇ ସାକ୍ଷୀରୂପେ
କ୍ରୀଡ଼ା କରଇ କଲେ କଲେ
ସେ ହରି ରଖୁ ମୋର ପ୍ରାଣ
ତା ପାଦେ ପଶିଲି ଶରଣ ॥ ୪
କାଳେ ସକଳ ଜୀବ ଧରି
ଅନ୍ତକ ରୂପେଣ ସଂହରି
ସକଳ ହେତୁ କରେ ଅନ୍ତ
ତମ ନିବିଡ଼ ଘୋର ପଥ
ସେ ତମ ପରେ ସେହୁ ବସେ
ବିରାଜ ରୂପେ ପରକାଶେ

ତାର ମହିମା ବିସ୍ତରଣେ
ଏ ଯେତେ ଦେବେ ଋଷିଗଣେ
କେହି ନ ଜାଣେ ପ୍ରଭୁ ତୋତେ
ଅନେକ ଶାସ୍ତ୍ର ଯୋଗମତେ
କେ ତୋର ମହିମା ଜାଣିବ
ଯହିଁ ଭ୍ରମନ୍ତି ବ୍ରହ୍ମା-ଶିବ
ନଟ ଆକୃତି ପ୍ରାୟେ ଖେଳେ
ଏ ମାୟା ଗହନ ଶଯ୍ୟେ
ମନ କର୍ମ୍ମକୁ ଦୂର ଯେହି
ସେ ହରି ରଖୁ ମୋର ଦେହୀ ॥୫,୬

ଦିଦୃକ୍ଷବୋ ଯସ୍ୟ ପଦଂ ସୁମଙ୍ଗଳଂ ବିମୁକ୍ତସଙ୍ଗା ମୁନୟଃ ସୁସାଧବଃ ।
ଚରନ୍ତ୍ୟଲୋକବ୍ରତମବ୍ରଣଂ ବନେ ଭୂତାତ୍ମଭୂତାଃ ସୁହୃଦଃ ସ ମେ ଗତିଃ । ୭ ।
ନ ବିଦ୍ୟତେ ଯସ୍ୟ ଚ ଜନ୍ମ କର୍ମ୍ମ ବା ନ ନାମରୂପେ ଗୁଣଦୋଷ ଏବ ବା ।
ତଥାପି ଲୋକାପ୍ୟୟସମ୍ଭବାୟ ଯଃ ସ୍ୱମାୟୟା ତାନ୍ୟନୁକାଳମୃଚ୍ଛତି । ୮ ।
ତସ୍ମୈ ନମଃ ପରେଶାୟ ବ୍ରହ୍ମଣେଽନନ୍ତଶକ୍ତୟେ ।
ଅରୂପାୟୋରୁରୂପାୟ ନମ ଆଶ୍ଚର୍ଯ୍ୟକର୍ମ୍ମଣେ । ୯ ।
ନମ ଆତ୍ମପ୍ରଦୀପାୟ ସାକ୍ଷିଣେ ପରମାତ୍ମନେ ।
ନମୋ ଗିରାଂ ବିଦୂରାୟ ମନସଶ୍ଚେତସାମପି । ୧୦ ।
ସତ୍ତ୍ୱେନ ପ୍ରତଲଭ୍ୟାୟ ନୈଷ୍କର୍ମ୍ମେଣ ବିପଶ୍ଚିତା ।
ନମଃ କୈବଲ୍ୟନାଥାୟ ନିର୍ବାଣସୁଖସଂବିଦେ । ୧୧ ।

---

ପରମ ସାଧୁ ମୁନିମାନେ ଯାହାଙ୍କର ସୁମଙ୍ଗଳ ଚରଣ ଦର୍ଶନ ନିମିତ୍ତ ସଙ୍ଗ ପରିତ୍ୟାଗ କରି ସର୍ବ ଭୂତରେ ଆତ୍ମଦୃଷ୍ଟି ପରାୟଣ ହୋଇ ବନ ମଧ୍ୟରେ ଅକ୍ଷୟ ଭଗବତ ବ୍ରତ ଆଚରଣ କରନ୍ତି, ସେହି ଭଗବାନ ମୋର ଆଶ୍ରୟ ହେଉନ୍ତୁ । ୭ ।

ଯେ ଜନ୍ମ, କର୍ମ, ନାମ, ରୂପ, ଗୁଣ, ଦୋଷ ବିରହିତ, ତଥାପି ଯେ ନିଜର ମାୟାବଳରେ, ଲୋକ ସୃଷ୍ଟି ଓ ବିନାଶ ନିମିତ୍ତ ଯୁଗେ ଯୁଗେ ଜନ୍ମାଦି ସ୍ୱୀକାର କରିଥାଆନ୍ତି, ସେହି ସର୍ବବ୍ୟାପୀ ଅନନ୍ତ ଶକ୍ତିମାନ୍ ପରମେଶ୍ୱରଙ୍କୁ ମୋର ନମସ୍କାର । ଯେ ପ୍ରାକୃତ ରୂପ ରହିତ ହେଲେ ମଧ୍ୟ ଅପ୍ରାକୃତ ବହୁରୂପ ଧାରଣ କରି ଅଲୌକିକ କର୍ମମାନ ସାଧନ କରିଥାଆନ୍ତି, ତାହାଙ୍କୁ ମୋର ନମସ୍କାର । ୮-୯ ।

ଆତ୍ମ ତତ୍ତ୍ୱ ପ୍ରକାଶକ ସର୍ବାନ୍ତର୍ଯ୍ୟାମୀ ପରମାତ୍ମା ଜୀବ ନିୟନ୍ତା, ବାକ୍ୟ, ମନ ଓ ଚିତ୍ତର ଅଗୋଚର ଯେ ତାହାଙ୍କୁ ମୋର ନମସ୍କାର । ୧୦ ।

ନିର୍ଗୁଣ ଓ ଶୁଦ୍ଧ ସନ୍ନ୍ୟାସ ଯୋଗଦ୍ୱାରା ପ୍ରତ୍ୟକ୍ଷରୂପେ ପ୍ରାପ୍ତ ମୋକ୍ଷଦାତା ଓ ମୋକ୍ଷାନନ୍ଦାନୁଭବସ୍ୱରୂପ ଯେ ତାହାଙ୍କୁ ମୋର ନମସ୍କାର । ୧୧ ।

---

ଯାର ମହିମା ମୁନିଜନେ
ସକଳ ଶାସ୍ତ୍ରେ ଅନୁମାନେ
ବିମୁକ୍ତ ସଙ୍ଗ ସାଧୁଜନେ
ତପ ସାଧନ୍ତି ଘୋର ବନେ
ଭୂତଙ୍କ ଆତ୍ମାଭୂତ ଯେହୁ
ସେ ହରି ମୋର ଗତି ହେଉ ॥୭
ଯାହାର ନାମ ରୂପ ନାହିଁ
ଅପରେ ଗୁଣ ଦୋଷ କାହିଁ

ତଥାପି ଲୋକ-ରକ୍ଷା ଅର୍ଥେ
ତୋର ସମ୍ଭବ ଏ ଜଗତେ
ତୋ ମାୟା ବଳେ ଏ ଜଗତ
ସୃଷ୍ଟି ପାଳଣ କରୁଅଛ ॥ ୮
ରୂପ ଅରୂପ ଏ ଅଦ୍ଭୁତ
ଆତ୍ମା ପ୍ରଦୀପ ସାକ୍ଷୀମତ
ମନ-ବଚନେ ଦୂରନ୍ତର
ପରମ ଆତ୍ମା ସୁଖ ଘର ॥୯,୧୦

ସୂକ୍ଷ୍ମ ନିର୍ମଳ ରୂପ ଯାର
ପଣ୍ଡିତ ଜନଙ୍କ ଗୋଚର
ଯାହାକୁ ସତ୍ତ୍ୱଗୁଣେ ପାଇ
ନିଷ୍କାମ ଚିତ୍ତେ ଯେବା ଧ୍ୟାଇ
କୈବଲ୍ୟନାଥ ନମୋଽସ୍ତୁତେ
ନିର୍ବାଣ ସୁଖ ଯା ଉଦିତେ ॥ ୧୧

ନମଃ ଶାନ୍ତାୟ ଘୋରାୟ ମୂଢ଼ାୟ ଗୁଣଧର୍ମିଣେ ।
ନିର୍ବିଶେଷାୟ ସାମ୍ୟାୟ ନମୋ ଜ୍ଞାନଘନାୟ ଚ । ୧୨ ।
କ୍ଷେତ୍ରଜ୍ଞାୟ ନମସ୍ତୁଭ୍ୟଂ ସର୍ବାଧ୍ୟକ୍ଷାୟ ସାକ୍ଷିଣେ ।
ପୁରୁଷାୟାତ୍ମମୂଳାୟ ମୂଳପ୍ରକୃତୟେ ନମଃ । ୧୩ ।
ସର୍ବେନ୍ଦ୍ରିୟଗୁଣଦ୍ରଷ୍ଟ୍ରେ ସର୍ବପ୍ରତ୍ୟୟହେତବେ ।
ଅସତାଚ୍ଛାୟୟୋକ୍ତାୟ ସଦାଭାସାୟ ତେ ନମଃ । ୧୪ ।
ନମୋ ନମସ୍ତେଽଖିଳକାରଣାୟ ନିଷ୍କାରଣାୟାଦ୍ଭୁତକାରଣାୟ ।
ସର୍ବାଗମାମ୍ନାୟ ମହାର୍ଣ୍ଣବାୟ ନମୋଽପବର୍ଗାୟ ପରାୟଣାୟ । ୧୫ ।

---

ଯେ ଶାନ୍ତ, ଘୋର, ମୂଢ ଏବଂ ସତ୍ତ୍ୱାଦି ଧର୍ମାନୁକାରୀ, ଯେ ଅବିଶେଷ ଏବଂ ସକଳ ପକ୍ଷରେ ସମ ସ୍ୱଭାବାପନ୍ନ ଏବଂ ସଚ୍ଚିଦାନନ୍ଦ ସ୍ୱରୂପ ତାହାଙ୍କୁ ମୋର ନମସ୍କାର । ୧୨ ।

ସର୍ବାଧ୍ୟକ୍ଷ, ସର୍ବସାକ୍ଷୀ ଏବଂ ଅନ୍ତର୍ଯ୍ୟାମୀ, ସର୍ବ ଜୀବର ହୃଦୟରେ ଅବସ୍ଥିତ, ସର୍ବ କାରଣ ସ୍ୱରୂପ, ମୂଳ ପ୍ରକୃତି ସ୍ୱରୂପ ଭଗବାନଙ୍କୁ ମୋର ନମସ୍କାର । ୧୩ ।

ଆପଣ ସର୍ବ ଇନ୍ଦ୍ରିୟର ଦ୍ରଷ୍ଟା ଓ ଇନ୍ଦ୍ରିୟ ପ୍ରଭୃତିର ହେତୁ ଏବଂ ଅସତ୍ ଅହଙ୍କାର ପ୍ରଭୃତି କର୍ତ୍ତୃକ ଅସଦ୍‌ରୂପ ଛାୟା ଦ୍ୱାରା ପ୍ରତିବିମ୍ବ ତୁଲ୍ୟ ସୂଚିତ ହୁଅନ୍ତି ଏବଂ ସଦାଭାସ ସ୍ୱରୂପ ବିଦ୍ୟମାନ, ଆପଣଙ୍କୁ ମୋର ନମସ୍କାର । ୧୪ ।

ଆପଣ ସର୍ବ କାରଣରୂପୀ ହେଲେହେଁ ସ୍ୱୟଂ ନିଷ୍କାରଣ ଏବଂ ନିର୍ବିକାର ଅର୍ଥାତ୍ ଅଦ୍ଭୁତ କାରଣ ସ୍ୱରୂପ । ପଞ୍ଚରାତ୍ରାଦିର ଆଗମ ସ୍ୱରୂପ, ଶ୍ରୌତ ଏବଂ ଆମ୍ନାୟରୂପ, ବେଦମାନଙ୍କର ଆଧାର ସ୍ୱରୂପ ଆପଣ ମହାସମୁଦ୍ର । ( ଯେପରି ସମୁଦ୍ର ନଦୀ ଓ ନଦର ଆଧାର ସେହିପରି ଆପଣ ପଞ୍ଚରାତ୍ରାଦି ଶାସ୍ତ୍ର ଓ ଆମ୍ନାୟ ପ୍ରଭୃତି ବେଦର ଆଧାର ସ୍ୱରୂପ ) ଆପଣ ମୋକ୍ଷରୂପୀ ଓ ସାଧୁମାନଙ୍କର ଆଶ୍ରୟ, ଆପଣଙ୍କୁ ମୋର ପୁନଃ ପୁନଃ ନମସ୍କାର । ୧୫ ।

---

ତୁ ନାଥ ଶାନ୍ତ ଘୋର ରୂପୀ
ମୂଢ ଧର୍ମେଣ ବିଶ୍ୱବ୍ୟାପି
ଯେ ନିର୍ବିଶେଷ ସାମ୍ୟରୂପୀ
ନମସ୍ତେ ଜ୍ଞାନ ଘନ ରୂପୀ ॥ ୧୨
କ୍ଷେତ୍ରଜ୍ଞରୂପୀ ନମୋନମ
ସର୍ବଜ୍ଞ ସାକ୍ଷୀ ନିଜ ଧାମ

ଯେ ଏ ଜଗତ ଆଦିମୂଳ
ମୂଳ ପ୍ରକୃତି ସୂକ୍ଷ୍ମ ସ୍ଥୂଳ
ସର୍ବ ଇନ୍ଦ୍ରିୟଗଣ ଦ୍ରଷ୍ଟା
ସର୍ବ ବିଷୟ ଆଦି ସ୍ରଷ୍ଟା
ଅଭକ୍ତଜନେ ଅପ୍ରକାଶ
ଭକତ ପଦେ ରବିଦାସ ॥୧୩,୧୪

ଅଖିଳ କାରଣ ସ୍ୱରୂପୀ
ଅଦ୍ଭୁତ ରୂପେ ବିଶ୍ୱବାପୀ
ସର୍ବ ଆଗମ ବେଦ ସ୍ଥାନ
ନମସ୍ତେ ମୋକ୍ଷ ପରାୟଣ
ସ୍ୱୟଂ ପ୍ରକାଶ ଗୁଣ ସାଜେଣ
ବନ୍ଧନ ନୋହୁ ତୁ ବିଶେଷେ

ଗୁଣାରଣିଚ୍ଛନ୍ନଚିଦୁଷ୍ମପାୟ ତତ୍କ୍ଷୋଭବିସ୍ଫୂର୍ଜିତମାନସାୟ ।
ନୈଷ୍କର୍ମ୍ୟଭାବେନ ବିବର୍ଜିତାଗମସ୍ୱୟଂପ୍ରକାଶାୟ ନମସ୍କରୋମି ।୧୬।
ମାଦୃକ୍ ପ୍ରପନ୍ନପଶୁପାଶବିମୋକ୍ଷଣାୟ ମୁକ୍ତାୟ ଭୂରିକରୁଣାୟ ନମୋଽଲୟାୟ ।
ସ୍ୱାଂଶେନ ସର୍ବତନୁଭୃନ୍ମନସି ପ୍ରତୀତପ୍ରତ୍ୟଗ୍‌ଦୃଶେ ଭଗବତେ ବୃହତେ ନମସ୍ତେ
ଆତ୍ମାତ୍ମଜାପ୍ତଗୃହବିତ୍ତଜନେଷୁ ସକ୍ତୈର୍ଦୁଷ୍ପ୍ରାପଣାୟ ଗୁଣସଙ୍ଗବିବର୍ଜିତାୟ ।
ମୁକ୍ତାତ୍ମଭିଃ ସ୍ୱହୃଦୟେ ପରିଭାବିତାୟ ଜ୍ଞାନାତ୍ମନେ ଭଗବତେ ନମ ଈଶ୍ୱରାୟ ।୧୮
ଯଂ ଧର୍ମକାମାର୍ଥବିମୁକ୍ତିକାମା ଭଜନ୍ତ ଇଷ୍ଟାଂ ଗତିମାପ୍ନୁବନ୍ତି ।
କିଂଚାଶିଷୋ ରାତ୍ୟପି ଦେହମବ୍ୟୟଂ କରୋତୁ ମେଽଦଭ୍ରଦୟୋ ବିମୋକ୍ଷଣମ୍ ।୧୯

---

ଆପଣ ଗୁଣ ସ୍ୱରୂପ ଅରଣିରେ ଆଚ୍ଛନ୍ନ ଜ୍ଞାନାଗ୍ନି ସ୍ୱରୂପ । ସେହି ଗୁଣମାନଙ୍କର କାର୍ଯ୍ୟରେ ଆପଣଙ୍କର ମାନସବୃତ୍ତି ବା ଇଚ୍ଛା ନାହିଁ । ଯେଉଁମାନେ ଆତ୍ମ ତତ୍ତ୍ୱ ଚିନ୍ତାଦ୍ୱାରା ବିଧି ଏବଂ ନିଷେଧ ସ୍ୱରୂପ ଆଗମ ପରିତ୍ୟାଗ କରିଅଛନ୍ତି ସେମାନଙ୍କ ମଧ୍ୟରେ ଆପଣ ସ୍ୱୟଂ ପ୍ରକାଶିତ ଆପଣଙ୍କୁ ମୋର ନମସ୍କାର ॥

ଯେ ମୋ ତୁଲ୍ୟ ଶରଣାଗତ ପଶୁର ଅଜ୍ଞାନ ବନ୍ଧନ ମୋଚନ କରିବାକୁ ସମର୍ଥ, ଯେ ମୁକ୍ତ ଏବଂ ଯେ ଅପାର କରୁଣାମୟ, ଆଳସ୍ୟ ରହିତ, ଯେ ନିଜ ଅଂଶରେ ସର୍ବାନ୍ତର୍ଯ୍ୟାମୀ ରୂପେ ସର୍ବ ଜୀବର ହୃଦୟଗତ, ଭାବ ବୁଝି ପାରନ୍ତି ଏବଂ ଜୀବର ଦୁଃଖ ଦୂର କରି ପାରନ୍ତି, ସେହି ଅପରିସୀମ ଆପଣଙ୍କୁ ମୋର ନମସ୍କାର । ୧୭ ।

ଦେହ, ପୁତ୍ର, କଳତ୍ର, ଗୃହ ଧନାଦିରେ ଯେଉଁମାନେ ଆସକ୍ତ, ଆପଣ ସେମାନଙ୍କ ପକ୍ଷରେ ଦୁର୍ଲ୍ଲଭ । ପ୍ରାକୃତ ଗୁଣ ସଙ୍ଗ ରହିତ ଆପଣଙ୍କୁ ଆତ୍ମାରାମୀ, ଅନାସକ୍ତ ଜୀବହିଁ ଚିନ୍ତା କରିଥାଏ । ଆପଣ ଭଗବାନ ଓ ପରମାତ୍ମା; ଆପଣଙ୍କୁ ମୋର ନମସ୍କାର । ୧୮ ।

ଧର୍ମ, ଅର୍ଥ, କାମ ଏବଂ ମୋକ୍ଷକାମୀ ମାନବମାନେ ଯାହାଙ୍କୁ ଭଜନା କରନ୍ତି ଏବଂ ନିଜର ଅଭିଳଷିତ ଧର୍ମାଦି ଗତି ପ୍ରାପ୍ତ ହୁଅନ୍ତି ଏବଂ ପ୍ରାର୍ଥନାତିରିକ୍ତ ଆକାଙ୍କ୍ଷିତ ବହୁ ଆଶିଷ ଏବଂ ଅବ୍ୟୟ ଦେହ ମଧ୍ୟ ଦାନ କରନ୍ତି; ସେହି ପରମ କାରୁଣିକ ଭଗବାନ ମୋତେ ମୁକ୍ତିଦାନ କରନ୍ତୁ । ୧୯ ।

---

ତୁ ନାଥ କରୁଣା ସାଗର
ତୋପାଦେଶରଣମୋହର ।୧୬ ୭
ଅଶେଷ ଜନ୍ତୁ ହୃଦଗତେ
ତୋର ପ୍ରକାଶ ଆତ୍ମାମତେ
ସକଳ ଦେଖୁ ନାଥ ତୁହି
ତୋ ଅନୁଭବ କେ ଜାଣଇ
ତୁ ବ୍ରହ୍ମ ପରମ ମଙ୍ଗଳ
ନମସ୍ତେ ପ୍ରଭୁ ଆଦିମୂଳ ॥ ୧୭

ଆତ୍ମା ଆତ୍ମଜ ଗୃହ ବିତ୍ତେ
ମମତ୍ୱ ପଣେ ଦୃଢ ଚିତ୍ତେ
ଯେ ପ୍ରାଣୀ ଗୃହବନ୍ଧେ ମଜ୍ଜେ
ସେ ତୋତେ କେବେହେଁ ନ ଭଜେ
ଯେ ମୁକ୍ତସଙ୍ଗ ଏ ଜଗତେ
ସେ ତୋତେ ଭଜେ ଅବିରତେ
ଏଣୁ ବିବେକୀ ପ୍ରାଣୀଙ୍କର
ତୁ ନାଥ ଶୁଭ ସୁଖଦର ॥ ୧୮

ଧର୍ମାର୍ଥ କାମେ ଯେ ବିମୁକ୍ତ
ନିଷ୍କାମେ ଭଜେ ଅବିରତ
ଅନ୍ତେ ଲଭନ୍ତି ଇଷ୍ଟଗତି
ଦୁଃଖ ସଙ୍କଟେ ନ ପଡ଼ନ୍ତି
ଅବ୍ୟୟ ଦେହ ସେ ପାଆନ୍ତି
ଏଣୁ ଲଭନ୍ତି ଦିବ୍ୟଗତି
ମୁଁ ଏବେ ଶରଣ ତୋହର
ଏ ଗ୍ରାହ-ଗ୍ରନ୍ଥୁଁ ପାରକର ॥ ୧୯

ଏକାନ୍ତିନୋ ଯସ୍ୟ ନ କଞ୍ଚନାର୍ଥଂ ବାଞ୍ଛନ୍ତି ଯେ ବୈ ଭଗବତ୍ ପ୍ରପନ୍ନାଃ ।
ଅତ୍ୟଦ୍ଭୁତଂ ତଚ୍ଚରିତଂ ସୁମଙ୍ଗଳଂ ଗାୟନ୍ତ ଆନନ୍ଦସମୁଦ୍ରମଗ୍ନାଃ । ୨୦ ।
ତମକ୍ଷରଂ ବ୍ରହ୍ମପରଂ ପରେଶମବ୍ୟକ୍ତମାଧ୍ୟାତ୍ମିକଯୋଗଗମ୍ୟମ୍ ।
ଅତୀନ୍ଦ୍ରିୟଂ ସୂକ୍ଷ୍ମମିବାତିଦୂରମନନ୍ତମାଦ୍ୟଂ ପରିପୂର୍ଣ୍ଣମୀଡ଼େ । ୨୧ ।
ଯସ୍ୟ ବ୍ରହ୍ମାଦୟୋ ଦେବା ବେଦା ଲୋକାଶ୍ଚରାଚରାଃ ।
ନାମରୂପବିଭେଦେନ ଫଲ୍ଗ୍ୱ୍ୟା ଚ କଳୟା କୃତାଃ । ୨୨ ।
ଯଥାର୍ଚ୍ଚିଷୋଽଗ୍ନେଃ ସବିତୁର୍ଗଭସ୍ତୟୋ ନିର୍ଯାନ୍ତି ସଂଯାନ୍ତ୍ୟସକୃତ୍ ସ୍ୱରୋଚିଷଃ ।
ତଥା ଯତୋଽୟଂ ଗୁଣସମ୍ପ୍ରବାହୋ ବୁଦ୍ଧିର୍ମନଃ ଖାନି ଶରୀରସର୍ଗାଃ । ୨୩ ।

---

ଯେଉଁମାନେ ଏକାନ୍ତ ଭକ୍ତ ଏବଂ ଭଗବତ୍ ପରାୟଣ ସେମାନେ ଭଗବାନଙ୍କ ନିକଟରେ କୌଣସି ପ୍ରାର୍ଥନା କରନ୍ତି ନାହିଁ । କେବଳ ଭଗବାନଙ୍କର ଅତ୍ୟାଶ୍ଚର୍ଯ୍ୟ ପରମମଙ୍ଗଳ ଗୁଣ ଗାୟନ କରି ଆନନ୍ଦ ସାଗରରେ ନିମଗ୍ନ ଥାନ୍ତି । ୨୦ ।

ସେହି ଅବ୍ୟୟ ପରଂବ୍ରହ୍ମ, ଆତ୍ମଯୋଗଲଭ୍ୟ, ଅତୀନ୍ଦ୍ରିୟ, ସୂକ୍ଷ୍ମତତ୍ତ୍ୱତୁଲ୍ୟ ଦୁର୍ଗମ, ଅନନ୍ତ, ଆଦ୍ୟ ଏବଂ ପରିପୂର୍ଣ୍ଣ ଭଗବାନଙ୍କୁ ମୁଁ ସ୍ତବ କରୁଅଛି । ୨୧ ।

ଯାହାଙ୍କର ଅତି ଅଳ୍ପ ଅଂଶଦ୍ୱାରା ବ୍ରହ୍ମାଦି ଦେବଗଣ ବେଦ ଓ ଚରାଚର ଲୋକ ସମୂହ ବିରଚିତ ହୋଇଅଛନ୍ତି । ଯେପରି ଅଗ୍ନି ଶିଖା ଓ ସୂର୍ଯ୍ୟର କିରଣ ସମୂହ ତହିଁରୁ ବାରମ୍ବାର ନିର୍ଗତ ହୋଇ ପୁଣି ତହିଁରେ ବିଲୀନ ହୁଏ, ସେହିପରି ଯାହାଙ୍କଠାରୁ ଗୁଣ ପ୍ରବାହ, ବୁଦ୍ଧି, ମନ, ଇନ୍ଦ୍ରିୟ, ଶରୀର ଉତ୍ପନ୍ନ ହୋଇ ତାହାଙ୍କଠାରେ ବିଲୀନ ହୁଏ । ୨୨—୨୩ ।

---

ଏକାନ୍ତ ଚିତ୍ତେ ଯେ ଭଜନ୍ତି
ବିଷୟ ସୁଖ ନ ବାଞ୍ଛନ୍ତି
ତୋ ଗୁଣ ସୁଧାରସ ପାଇ
ଅଧିକ ବାଞ୍ଛା ତାଙ୍କ ନାହିଁ
ଅତି ଅଦ୍ଭୁତ ତୋ ଚରିତ
ଆନନ୍ଦରୂପେ ସୁଲଳିତ
ତୋ କଥା ସୁଧା ସିନ୍ଧୁଜଳେ
ଅବଗାହନ ସୁଖକେଳେ
କରି ଲଭନ୍ତି ଦିବ୍ୟ ଦେହୀ
ଏଣୁ ତୋ ମହିମା କେ କହି ?
ଅକ୍ଷର କ୍ଷୟ ନାହିଁ ଯାର
ଯେ ବ୍ରହ୍ମ ପରମ ଈଶ୍ୱର

ଅବ୍ୟକ୍ତ ଅଧ୍ୟାତ୍ମ ସ୍ୱରୂପୀ
ପରମ ଯୋଗବଳେ ବ୍ୟାପି
ଏଣୁ ଯେ ଅତି ଦୂରେ ରହେ
ଅତ୍ୟନ୍ତ ସୂକ୍ଷ୍ମରୁ ସୂକ୍ଷ୍ମ ହୋଏ
ଅନନ୍ତ ଆଦ୍ୟ ପରିପୂର୍ଣ୍ଣ
ସେ ହରି ନିଶ୍ଚେ ମୋ ଜୀବନ
ମନ ବଚନ ତା ଚରଣେ
ନିବେଦ କଲି ଅନୁକ୍ଷଣେ
ଏ ଘୋର ଗ୍ରାହ ବନ୍ଧ ପାଶୁଁ
ଉଦ୍ଧରସେମୋତେଆଶ୍ୱାସୁ । ୨୦ ୨୧
ଯାର ଅଳପ କଳା ବିଘ୍ନ
ବ୍ରହ୍ମାଦି ଦେବେ ହୁଏ ମୁନି

ସଂସାର ଚରାଚର ଯେତେ
ପ୍ରକାଶ ନାମ ରୂପ ମତେ ॥ ୨୨
ଅଗ୍ନି ସବିତା ଜ୍ୟୋତି ଯେହ୍ନେ
ପ୍ରକାଶି ପ୍ରବେଶନ୍ତି ତେହ୍ନେ
ଗୁଣ ପ୍ରବାହ ଏ ସଂସାର
ଇନ୍ଦ୍ରିୟ ବୁଦ୍ଧି ଅହଂକାର
ଶରୀର ଆଦି ଏହିମତେ
ପ୍ରବେଶ ହୋନ୍ତି ତାର ଗାତ୍ରେ । ୨୩

ସ ବୈ ନ ଦେବାସୁରମର୍ତ୍ତ୍ୟତୀର୍ଯ୍ୟଙ୍ ନ ସ୍ତ୍ରୀ ନ ଷଣ୍ଢୋ ନ ପୁମାନ୍ ନ ଜନ୍ତୁଃ ।
ନାୟଂ ଗୁଣଃ କର୍ମ୍ମ ନ ସନ୍ନ ଚାସନ୍ନିଷେଧଶେଷୋ ଜୟତାଦଶେଷଃ । ୨୪ ।
ଜୀଜିବିଷେ ନାହମିହାମୁୟା କିଂ ଅନ୍ତର୍ବହିଶ୍ଚାବୃତୟେଭଯୋନ୍ୟା ।
ଇଚ୍ଛାମି କାଳେନ ନ ଯସ୍ୟ ବିପ୍ଲବସ୍ତସ୍ୟାତ୍ମଲୋକାବରଣସ୍ୟ ମୋକ୍ଷମ୍ । ୨୫ ।
ସୋଽହଂ ବିଶ୍ୱସୃଜଂ ବିଶ୍ୱମବିଶ୍ୱଂ ବିଶ୍ୱବେଦସମ୍ ।
ବିଶ୍ୱାତ୍ମାନମଜଂ ବ୍ରହ୍ମ ପ୍ରଣତୋଽସ୍ମି ପରଂ ପଦମ୍ । ୨୬ ।
ଯୋଗରନ୍ଧିତକର୍ମ୍ମାଣୋ ହୃଦି ଯୋଗବିଭାବିତେ ।
ଯୋଗିନୋ ଯଂ ପ୍ରପଶ୍ୟନ୍ତି ଯୋଗେଶଂ ତଂ ନତୋଽସ୍ମ୍ୟହମ୍ । ୨୭ ।
ନମୋ ନମସ୍ତୁଭ୍ୟମସହ୍ୟବେଗଶକ୍ତିତ୍ରୟାୟାଽଖିଳଧୀଗୁଣାୟ ।
ପ୍ରପନ୍ନପାଳାୟ ଦୁରନ୍ତଶକ୍ତୟେ କଦିନ୍ଦ୍ରିୟାଣାମନବାପ୍ୟବର୍ତ୍ମନେ । ୨୮ ।

---

ଯେ ଦେବତା, ଅସୁର, ମାନବ, ପଶୁ, ପକ୍ଷୀ, ସ୍ତ୍ରୀ, ପୁରୁଷ, ନପୁଂସକ କିମ୍ବା ଅନ୍ୟ ଜନ୍ତୁ ବିଶେଷ ନୁହନ୍ତି; ଗୁଣ, କର୍ମ, ସତ୍, ଅସତ୍, କିଛି ନୁହନ୍ତି, କିନ୍ତୁ ସର୍ବପଦାର୍ଥର ନିଷେଧର ଅବଧିରୂପେ (ସୀମାରୂପେ) ଅବଶିଷ୍ଟ ଥାନ୍ତି, ଯେ ମାୟାଦ୍ୱାରା ବିଭିନ୍ନ ମୂର୍ତ୍ତି ଧାରଣ କରିଥାନ୍ତି; ସେ ମୋତେ ମୁକ୍ତ କରିବାଲାଗି ଆବିର୍ଭୂତ ହେଉନ୍ତୁ । ୨୪ ।

ବର୍ତ୍ତମାନ ଏହି କୁମ୍ଭୀର ଆକ୍ରମଣରୁ ମୋର ଶରୀରର ମୁକ୍ତିଲାଗି ମୁଁ କାମନା କରୁନାହିଁ, ଯେହେତୁ ଅନ୍ତର ଓ ବାହାରେ ଅବିବେକ ଯୁକ୍ତ ଏହି ହସ୍ତୀ ଜନ୍ମରେ କି ପ୍ରୟୋଜନ? କିନ୍ତୁ ଆତ୍ମ ପ୍ରକାଶର ଆବରଣ ଯେଉଁ ଅଜ୍ଞାନ ତହିଁରୁ ମୁଁ ମୁକ୍ତି କାମନା କରୁଅଛି । ୨୫ ।

ଯାହାଙ୍କ ନିକଟରେ ପ୍ରାର୍ଥନା କରୁଅଛି ତାହାଙ୍କୁ ମୁଁ ଜାଣେନାହିଁ, ଯେ ବିଶ୍ୱସ୍ରଷ୍ଟା, ବିଶ୍ୱରୂପ, ବିଶ୍ୱାତିରିକ୍ତ, ବିଶ୍ୱଜ୍ଞାତା, ବିଶ୍ୱର ଆତ୍ମା, ଓ ଜନ୍ମାଦି ରହିତ ପରମପଦ ବ୍ରହ୍ମ ମୁଁ କେବଳ ତାହାଙ୍କୁ ପ୍ରଣାମ କରୁଅଛି । ୨୬

ଭଗବତ୍ ଧର୍ମ ସ୍ୱରୂପ ଯୋଗଦ୍ୱାରା କର୍ମ ସମୂହ ଦଗ୍ଧ ହୁଏ । ଯୋଗୀମାନେ ଯୋଗ ପ୍ରଭାବରେ ଯାହାଙ୍କର ସ୍ୱରୂପ ଦର୍ଶନ କରନ୍ତି; ମୁଁ ସେହି ଯୋଗେଶ୍ୱରଙ୍କୁ ପ୍ରଣାମ କରୁଅଛି । ୨୭ ।

ଆପଣାର ତ୍ରିଗୁଣ ଶକ୍ତିତ୍ରୟର ବେଗ ଅସହ୍ୟ, ଆପଣ ସର୍ବ ଇନ୍ଦ୍ରିୟର ଶବ୍ଦାଦି ବିଷୟରୂପେ ପ୍ରତୀତ; ଶରଣାଗତ ପାଳକ ଏବଂ ଦୁରନ୍ତବୀର୍ଯ୍ୟ, ଅଜିତେନ୍ଦ୍ରିୟମାନଙ୍କର ଅପ୍ରାପ୍ୟ ଅର୍ଥାତ୍ ଯେଉଁ ମାର୍ଗରେ ଆପଣ ମିଳି ପାରନ୍ତି ତାହା ଅଜିତେନ୍ଦ୍ରିୟମାନଙ୍କ ପକ୍ଷରେ ଅଗୋଚର । ୨୮ ।

---

ଯେ ନୋହେ ଦେବାସୁର ମର୍ତ୍ତ୍ୟ
ନ ସ୍ତ୍ରିରି ନ ପୁରୁଷ ଗାତ୍ର
ଜନ୍ତୁ ଶରୀର ପଶୁ ଆଦି
ରୂପେ ଅରୂପେ ନ ସମ୍ପାଦି
କେବେହେଁ ନୋହେ କର୍ମଗୁଣ
ସତ ଅସତ ନୋହେ ଜାଣ

ନିଃଶେଷ ଶେଷ ପରିପୂର୍ଣ୍ଣ
ଏଣୁ ଏ ଅନାଦି କାରଣ;
ନମସ୍ତେ ନମସ୍ତେ ଅନନ୍ତ ।
ଅସହ୍ୟ ବେଗ ବଳବନ୍ତ
ଯାହାର ଅଛି ଶକ୍ତି ତ୍ରୟ
ଅଖିଳ ବୁଦ୍ଧି ଗୁଣମୟ

ପ୍ରପନ୍ନ ଜନ ଯେ ପାଳଇ
ଦୁରନ୍ତ ଶକ୍ତି ଯାର ଦେଖି
ଲୁପ୍ତିତ ଇନ୍ଦ୍ରିୟଗଣେ ଯାର
ମାର୍ଗ ନ କରନ୍ତି ଗୋଚର
ମୁଁ ଗ୍ରାହଗ୍ରସ୍ତେ ଗ୍ରସ୍ତ ହୋଇ
ଆତ୍ମା ଶରୀର ନ ଜାଣଇ

ନାୟଂ ବେଦ ସ୍ୱମାତ୍ମାନଂ ଯଚ୍ଛକ୍ତ୍ୟାଽହଂଧିୟା ହତମ୍ ।
ତଂ ଦୂରତ୍ୟୟମାହାତ୍ମ୍ୟଂ ଭଗବନ୍ତମିତୋଽସ୍ମ୍ୟହମ୍ । ୨୯ ।

ଶ୍ରୀ ଶୁକ ଉବାଚ ।

ଏବଂ ଗଜେନ୍ଦ୍ରମୁପବର୍ଣ୍ଣିତନିର୍ବିଶେଷଂ ବ୍ରହ୍ମାଦୟୋ ବିବିଧଲିଙ୍ଗଭିଦାଭିମାନାଃ ।
ନୈତେ ଯଦୋପସସୃପୁର୍ନିଖିଳାତ୍ମକତ୍ୱାତ୍ ତତ୍ରାଖିଳାମରମୟୋ ହରିରାବିରାସୀତ୍ ।୩୦।
ତଂ ତଦ୍ୱଦାର୍ତ୍ତିମୁପଲଭ୍ୟ ଜଗନ୍ନିବାସଃ ସ୍ତୋତ୍ରଂ ନିଶମ୍ୟ ଦିବିଜୈଃ ସହ ସଂସ୍ତୁବଦ୍ଭିଃ ।
ଛନ୍ଦୋମୟେନ ଗରୁଡେନ ସମୁହ୍ୟମାନଶ୍ଚକ୍ରାୟୁଧୋଽଭ୍ୟଗମଦାଶୁ ଯତୋ ଗଜେନ୍ଦ୍ରଃ ॥
ସୋଽନ୍ତଃସରସ୍ୟୁରୁବଳେନ ଗୃହୀତ ଆର୍ତ୍ତୋ ଦୃଷ୍ଟ୍ୱା ଗରୁତ୍ମତି ହରିଂ ଖ ଉପାତ୍ତଚକ୍ରମ୍ ।
ଉତ୍‌କ୍ଷିପ୍ୟ ସାମ୍ବୁଜକରଂ ଗିରମାହ କୃଚ୍ଛ୍ରାନ୍ନାରାୟଣାଖିଳଗୁରୋ ଭଗବନ୍ନମସ୍ତେ । ୩୨ ।

---

ଯାହାଙ୍କର ମାୟାବଶରେ ଅହଂ ବୁଦ୍ଧିଦ୍ୱାରା ଆବୃତ ହୋଇ ଜୀବ ନିଜର ଆତ୍ମାକୁ ଜାଣି ନ ପାରେ, ସେହି ଅଚିନ୍ତ୍ୟ ମହାତ୍ମ୍ୟ ଭଗବାନଙ୍କଠାରେ ମୁଁ ଆଶ୍ରୟ ଗ୍ରହଣ କରୁଅଛି । ୨୯ ।

ଶ୍ରୀ ଶୁକଦେବ କହିଲେ—

ଗଜେନ୍ଦ୍ର ଏହିପରି ଅପ୍ରାକୃତ ସ୍ୱରୂପଙ୍କର ସ୍ତବ କରନ୍ତେ ବିବିଧ ମୂର୍ତ୍ତି ଅଭିମାନୀ ବ୍ରହ୍ମାଦି ଦେବଗଣ ତାହା ନିକଟକୁ ଆସିଲେ ନାହିଁ; କିନ୍ତୁ ସର୍ବାତ୍ମକ, ସର୍ବଦେବମୟ ମୂର୍ତ୍ତି ଶ୍ରୀହରି ଆସି ଆବିର୍ଭୂତ ହେଲେ । ୩୦ ।

ଜଗନ୍ନିବାସ ଚକ୍ରାୟୁଧଧାରୀ ଶ୍ରୀହରି, ଗଜର ଏହିପରି କାତରଭାବ ଜାଣିପାରି ଏବଂ ତାହାର ସ୍ତବ ଶ୍ରବଣକରି ସ୍ତବକାରୀ ଦେବଗଣଙ୍କ ସହିତ ଶ୍ରୁତିରୂପ ଗରୁଡ ଉପରେ ଆରୋହଣ କରି ଗଜେନ୍ଦ୍ର ନିକଟକୁ ଆଗମନ କରିଥିଲେ । ୩୧ ।

ସରୋବର ମଧ୍ୟରେ ବଳୀୟାନ୍ କୁମ୍ଭୀର କର୍ତ୍ତୃକ ଆକ୍ରାନ୍ତ ହୋଇ ସେହି ଗଜେନ୍ଦ୍ର ଆକାଶରେ ଗରୁଡୋପରି ଉଦ୍ୟତ ଚକ୍ର, ଶ୍ରୀହରିଙ୍କୁ ଦର୍ଶନ କରି ପଦ୍ମ ସହିତ ନିଜର ଶୁଣ୍ଢ ଉତ୍ତୋଳନ କଲା ଏବଂ ଅତି କଷ୍ଟରେ କହିଲା— ହେ ଅଖିଳ ଗୁରୋ ! ହେ ନାରାୟଣ ! ଆପଣଙ୍କୁ ମୁଁ ନମସ୍କାର କରୁଅଛି । ୩୨ ।

---

ଯେ ହରି ସଂସାର କାରଣ
ତା ପାଦେ ପଶିଲି ଶରଣ
ରଖୁ ନ ରଖୁ ସେ ଜାଣଇ
ତା ବିନୁ ଅନ୍ୟଗତିନାହିଁ ॥୨୮,୨୯

ଶ୍ରୀଶୁକଉବାଚ—

ଏମନ୍ତେ ଗଜରାଜ ସ୍ତୁତି
ଦେଇଣ ଗୋବିନ୍ଦ ପାଦେ ମତି
ଇନ୍ଦ୍ରାଦି ଦେବେ ଗମ୍ୟ ନୋହି
ଯେ ପୂର୍ବ ଭାଗ୍ୟର ଉଦୟେ

ଗଜ ବିକଳ ଶୁଣି ହରି
ସତ୍ୱରେ ଚିତ୍ତେ ମୋଦ ଭରି
ଯେ ହରି ସର୍ବ ଦେବମୟେ
ଅଶେଷ ବିଶ୍ୱ ଯାର ଦେହେ
ସର୍ବ ଦେବତା ମିଳି ସଙ୍ଗେ
ସ୍ତୁତି କରନ୍ତି ନାନାରଙ୍ଗେ
ଗରୁଡ ପୃଷ୍ଠେ ବିଜେ କରି
କରେ ପ୍ରଚଣ୍ଡ ଚକ୍ରଧରି
ବେଗେ ମିଳିଲେ ଗଜପାଶେ
ବିବୁଧେ ଦେଖନ୍ତି ଆକାଶେ ।୩୦,୩୧

ସେ ଗଜ ଦେଖେ ଚକ୍ରଧର
ଚରଣେ ଗ୍ରାହିତ କୁମ୍ଭୀର
ପଦ୍ମ ଗୋଟିଏ ଘେନି ହସ୍ତେ
ଊର୍ଦ୍ଧ୍ୱେ ବିହଙ୍ଗ ଶୂନ୍ୟ ପଥେ
ବେଗେ ନମିଲା ଶୁଣ୍ଢ ଟେକି
ଦେଖନ୍ତେ ପ୍ରଭୁ ବନମାଳୀ
ଚକ୍ର ବିରାଜେ ଦକ୍ଷ କରେ
ସୂର୍ଯ୍ୟ କି ଉଦିତ ଅମ୍ବରେ
ଡାକଇ ଆରତ ଭଞ୍ଜନ
ହେ ନାଥ ରଖ ମୋ ଜୀବନ

ତଂ ବ୍ୟକ୍ଷ ପୀଡ଼ିତମଜଃ ସହସାବତୀର୍ଯ୍ୟ ସଗ୍ରାହମାଶୁ ସରସଃ କୃପୟୋଜ୍ଜହାର ।
ଗ୍ରାହାଦ୍ବିପାଟିତମୁଖାଦରିଣାଗଜେନ୍ଦ୍ରଂ ସଂପଶ୍ୟତାଂ ହରିରମୁମୁଚଦୁଚ୍ଛ୍ରିୟାଣାମ୍ । ୩୩ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ତୃତୀୟାସିକ୍ୟାମଷ୍ଟମସ୍କନ୍ଧେ ଗଜେନ୍ଦ୍ରମୋକ୍ଷଣଂ ନାମ
ତୃତୀୟୋଽଧ୍ୟାୟଃ ।

---

ଜନ୍ମାଦି ବିରହିତ ସେହି ଶ୍ରୀହରି ଗଜେନ୍ଦ୍ରର ପୀଡ଼ା ଦେଖି ସହସା ଗରୁଡ଼ ପୃଷ୍ଠରୁ ଅବତୀର୍ଣ୍ଣ ହୋଇ ଦେବତାମାନଙ୍କ ସମ୍ମୁଖରେ ଗଜେନ୍ଦ୍ରକୁ ଉତ୍ତୋଳନ କଲେ ଏବଂ ଚକ୍ରଦ୍ୱାରା କୁମ୍ଭୀରର ମୁଖ ବିଦାରଣ କରି ଗଜେନ୍ଦ୍ରକୁ ମୁକ୍ତ କଲେ । ୩୩ ।

---

ହେ ନାରାୟଣ ବିଶ୍ୱଗୁରୁ
ଆରତ ଜନ ଦୁଃଖ ହରୁ
ନମସ୍ତେ ପ୍ରଭୁ ଭଗବାନ
ତୁ ନାଥ ଜଗତ-ଜୀବନ
ଗ୍ରାହ ପୀଡ଼ିତ ଗଜ ଦେଖି
ତକ୍ଷଣେ ଗରୁଡ଼ ଉପେକ୍ଷି
ଜଳେ ପଶିଲେ ଚକ୍ରପାଣି
ଚକ୍ରେ କୁମ୍ଭୀର ମୁଣ୍ଡ ହାଣି

କୁମ୍ଭୀର ମୁଖୁ ବନମାଳୀ
ହସ୍ତୀ ଚରଣ ହସ୍ତେ ଟେକି
ଦେଖନ୍ତି ଶୂନ୍ୟେ ଦିଗପାଳେ
ଗଜକୁ ଘେନିବିଜେକୂଳେ ।୩୨,୩୩
ବୋଲଇ ବିପ୍ର ଜଗନ୍ନାଥ
ଶୁଣ ସୁଜନ ଏକ-ଚିତ୍ତ
ଅଶେଷ ହରିର ମହିମା
କେ କହିପାରେ ଗୁଣ ସୀମା

ଗଜକୁ ରଖିଲେ ଯେମନ୍ତେ
ଅଷ୍ଟମ ସ୍କନ୍ଧେ ଭାଗବତେ
ଭାଷା ପ୍ରବନ୍ଧେ ହରିବାଣୀ
ଶୁଣି ସଂସାରୁ ତର ପ୍ରାଣୀ



**ବିଶଦାର୍ଥ—**

ଗଜେନ୍ଦ୍ର ସାଧାରଣ ଗଜ ହେଲେହେଁ ସେ ପୂର୍ବ ଜନ୍ମରେ ଇନ୍ଦ୍ରଦ୍ୟୁମ୍ନ ନାମକ ଜଣେ ରାଜାଥିଲେ । ପୂର୍ବ ଜନ୍ମର ସଂସ୍କୃତ ଅନୁସାରେ ଭଗବାନଙ୍କୁ ପ୍ରାର୍ଥନା କରିଥିଲେ । ଗଜେନ୍ଦ୍ରର ସ୍ତୁତି ଅଧ୍ୟାତ୍ମିକ ଭାବରେ ଦାର୍ଶନିକ ତତ୍ତ୍ୱପୂର୍ଣ୍ଣ । ପ୍ରଥମତଃ ପୂର୍ବ ଜନ୍ମର ସ୍ମୃତି ଓ ସଂସ୍କୃତ କିପରି ଜୀବର ମୋକ୍ଷ ବିଧାନ କରିପାରେ ତାହା ଏଥିରେ ଦ୍ରଷ୍ଟବ୍ୟ । ଦ୍ୱିତୀୟତଃ ଗଜେନ୍ଦ୍ର ଭଗବାନଙ୍କ ନିକଟରେ ଏକାନ୍ତ ଶରଣାପନ୍ନ ହୁଅନ୍ତେ ସେହି ଭକ୍ତକୁ ରକ୍ଷା କରିବାଲାଗି ଶ୍ରୀହରି ସ୍ୱୟଂ ଆବିର୍ଭୂତ ହୋଇଥିଲେ । ଏହି ସଂସାର କ୍ଷେତ୍ରରେ ଜୀବ ମାୟା ବନ୍ଧନରେ ସର୍ବଦା କୁମ୍ଭୀର ଗ୍ରାସରେ ଆକ୍ରାନ୍ତ, ଏହି କବଳରୁ ତାହାକୁ ମୁକ୍ତିଦାନ କରିବାର ଶକ୍ତି ଭଗବାନଙ୍କ ବ୍ୟତୀତ ଅନ୍ୟ କାହାରି ନାହିଁ । ଭଗବାନ ଭକ୍ତର ଏକାନ୍ତ ପ୍ରାର୍ଥନା ଶ୍ରବଣ କଲେ ତାହାକୁ ଅବଶ୍ୟ ସଂସାର ବନ୍ଧନ ସ୍ୱରୂପ ଗ୍ରାହ କବଳରୁ ମୁକ୍ତିଦାନ କରନ୍ତି ।

# ଚତୁର୍ଥୋଽଧ୍ୟାୟଃ ।

ଚତୁର୍ଥେ ତୁ ତୟୋର୍ଗ୍ରାହଃ ପ୍ରାପ ଗନ୍ଧର୍ବତାଂ ପୁନଃ ।
ଗଜଂ ସ୍ୱପାର୍ଷଦଂ କୃତ୍ୱା ହରେର୍ନିନ୍ୟେ ସ୍ୱକଂ ପଦମ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ତଦା ଦେବର୍ଷି ଗନ୍ଧର୍ବା ବ୍ରହ୍ମେଶାନପୁରୋଗମାଃ ।
ମୁମୁଚୁଃ କୁସୁମାସାରଂ ଶଂସନ୍ତଃ କର୍ମ ତଦ୍ଧରେଃ । ୧ ।
ନେଦୁର୍ଦୁନ୍ଦୁଭୟୋ ଦବ୍ୟା ଗନ୍ଧର୍ବା ନନୃତୁର୍ଜଗୁଃ ।
ଋଷୟଶ୍ଚାରଣାଃ ସିଦ୍ଧାସ୍ତୁଷ୍ଟୁବୁଃ ପୁରୁଷୋତ୍ତମମ୍ । ୨ ।

---

## ଗଜେନ୍ଦ୍ରର ବୈକୁଣ୍ଠ ପ୍ରାପ୍ତି ।

ଚତୁର୍ଥ ଅଧ୍ୟାୟରେ ଗ୍ରାହ ଏବଂ ଗଜ ଉଭୟଙ୍କ ମଧ୍ୟରୁ ଗ୍ରାହ ଗନ୍ଧର୍ବ ଶରୀର ଧାରଣ କରିଥିଲା ଏବଂ ଗଜକୁ ନିଜର ପାର୍ଷଦକରି ଭଗବାନ୍ ବୈକୁଣ୍ଠକୁ ନେଇଥିଲେ । ୦ ।

ଶ୍ରୀଶୁକଦେବ କହିଲେ—

ତଦନନ୍ତର ବ୍ରହ୍ମା, ଶିବ ପ୍ରଭୃତି ଦେବଗଣ, ଋଷିଗଣ ଓ ଗନ୍ଧର୍ବଗଣ ଶ୍ରୀହରିଙ୍କର ଏପରି କର୍ମର ପ୍ରଶଂସା କରି ପୁଷ୍ପବୃଷ୍ଟି କଲେ । ୧ ।

ସ୍ୱର୍ଗୀୟ ଦୁନ୍ଦୁଭି ବାଜି ଉଠିଲା, ଗନ୍ଧର୍ବମାନେ ନୃତ୍ୟ ଓ ଗାନ କଲେ, ଋଷି, ସିଦ୍ଧ ଓ ଚାରଣଗଣ ଶ୍ରୀହରିଙ୍କୁ ସ୍ତବ କଲେ । ୨ ।

---

ଚତୁର୍ଥେ ଗ୍ରାହ ଯେ ଗନ୍ଧର୍ବ । ଗଜ ହୋଇଲା ପାରିଷଦ ॥

ଶ୍ରୀଶୁକଉବାଚ—
ଚତୁଃଶବ୍ଦରେ ଚକ୍ରପାଣି
ଗଜେନ୍ଦ୍ର ମୋକ୍ଷ କଲେ ଶୁଣି
ଦେଖିବା ଅର୍ଥେ ଦେବଗଣେ
ମଙ୍ଗଳ ସ୍ତୁତି ଉଚ୍ଚାରଣେ
ବ୍ରହ୍ମା ଶଙ୍କର ଦେବଋଷି
ଗନ୍ଧର୍ବେ କୁସୁମ ବରଷି
ହରିର କର୍ମ ପ୍ରଶଂସନେ
ମିଳିଲେ ହସ୍ତୀ ସନ୍ନିଧାନେ
ଦେବେ ଦୁନ୍ଦୁଭି ନାଦ କରି
ନୃତ୍ୟକରନ୍ତି ଅପସରୀ
ଗନ୍ଧର୍ବେ ନାନା ଗୀତ ସ୍ୱରେ
ମଙ୍ଗଳ ସ୍ତୁତି ଉପସ୍ୱରେ
ଋଷି ଚାରଣ ସିଦ୍ଧଗଣେ
ଆଗମ ନିଗମ ପ୍ରମାଣେ
ପୁରୁଷୋତ୍ତମ ରୂପ ଚିହ୍ନି
ସ୍ତୁତି କରନ୍ତି ସ୍ତବ ବହି ॥ ୧,୨

ଯୋଽସୌ ଗ୍ରାହଃ ସବୈ ସଦ୍ୟଃ ପରମାଶ୍ଚର୍ଯ୍ୟ ରୂପଧୃକ୍ ।
ମୁକ୍ତୋ ଦେବଲଶାପେନ ହୂହୂର୍ଗନ୍ଧର୍ବସତ୍ତମଃ । ୩ ।
ପ୍ରଣମ୍ୟ ଶିରସାଧୀଶମୁତ୍ତମଶ୍ଳୋକମବ୍ୟୟମ୍ ।
ଅଗାୟତ ଯଶୋଧାମ କୀର୍ତ୍ତିନ୍ୟଗୁଣସତ୍‌କଥମ୍ । ୪ ।
ସୋଽନୁକମ୍ପିତ ଈଶେନ ପରିକ୍ରମ୍ୟ ପ୍ରଣମ୍ୟ ତମ୍ ।
ଲୋକସ୍ୟ ପଶ୍ୟତୋ ଲୋକଂ ସ୍ୱମଗାନ୍ମୁକ୍ତ କଲ୍ମଷଃ । ୫ ।

---

ହେ ମହାରାଜ ! ସେହି କୁମ୍ଭୀର ହୂହୂ ନାମକ ଗନ୍ଧର୍ବ ଥିଲା । ସେ ଦେବଳଶାପରୁ ମୁକ୍ତ ହୋଇ ତତ୍‌କ୍ଷଣାତ୍ ପରମାଶ୍ଚର୍ଯ୍ୟ ରୂପ ଧାରଣ କରିଥିଲା । ୩ । ❊

ଗନ୍ଧର୍ବରାଜ ହୂହୂ ମସ୍ତକରେ ପରମ ଯଶର ଆଶ୍ରୟସ୍ଥଳ ଉତ୍ତମଶ୍ଳୋକ, ଗୁଣଶାଳୀ ଶ୍ରୀହରିଙ୍କୁ ନମସ୍କାର କରି ସ୍ତବ କରିଥିଲା । ୪ ।

ତଦନନ୍ତର ଭଗବାନଙ୍କ ଅନୁକମ୍ପାରୁ ଶାପମୁକ୍ତ ହୋଇ ଭଗବାନଙ୍କୁ ପ୍ରଣାମ ଓ ପ୍ରଦକ୍ଷିଣ କରି ଦର୍ଶକମାନଙ୍କ ସମକ୍ଷରେ ସେ ନିଜ ଲୋକକୁ ଗମନ କରୁଥିଲା । ୫ ।

---

ଭୂମି ଅନ୍ତରୀକ୍ଷ ଗଗନେ
ମଙ୍ଗଳ ସ୍ତୁତି ତୋଷ ମନେ
କରନ୍ତି ଜୟ ଜୟ ବାଣୀ
କୁମ୍ଭୀର ଦେହ ତହିଁ ପୁଣି
ତତ୍‌କ୍ଷଣେ ହୋଇଲା ବାହାର
କି ଅବା ଦେବା ପଟାନ୍ତର
ରବି ଶଶାଙ୍କ ଅଗ୍ନି ଗଞ୍ଜି
ଅଦ୍ଭୁତ ରୂପ ତେଜପୁଞ୍ଜି

ଦେବଳ ଶାପୁଁ ପାରି ଗଲା
ଯେ ବିଷ୍ଣୁ ଚକ୍ରେ ପ୍ରାଣ ଦେଲା
ହୂହୂ ଗନ୍ଧର୍ବ ତାର ନାମ
ସ୍ୱଭାବେ ତେଜ ରୂପଧାମ
ଦେଖନ୍ତି ସର୍ବ ଦେବଗଣେ
ବିଷ୍ଣୁ ଚରଣେ ତୋଷ ମନେ
ଶତ ପ୍ରଣାମ ଦଣ୍ଡବତ
ନମିଲା ହରି ପାଦଗତ

ଉଠି ଅଞ୍ଜଳି ଶିରେ ଦେଇ
ଗନ୍ଧର୍ବ ନାଦେ ଗୀତ ଗାଇ
ଆନନ୍ଦେ ନମିଲା ଚରଣେ
ହରିର ଆଜ୍ଞା ପରମାଣେ
ଦେଖନ୍ତି ସର୍ବ ଦେବତାଏ
ଗମିଲା ଗନ୍ଧର୍ବର ଦେହେ । ୩,୫

---

❊ ହୂହୂ ଗନ୍ଧର୍ବ ଦିନେ ସ୍ତ୍ରୀଗଣ ପରିବେଷ୍ଟିତ ହୋଇ ଜଳକ୍ରୀଡ଼ା କରୁ କରୁ ଦେବଳ ଋଷି ସେଠାରେ ସ୍ନାନ କରୁଥିବା ଦେଖି ଜଳ ମଧ୍ୟରେ ଲୁଚି ତାହାଙ୍କର ପାଦ ଆକର୍ଷଣ କରିଥିଲା । ଦେବଳ ଋଷି କୁପିତ ହୋଇ ତାହାକୁ ଅଭିଶାପ ଦେଇଥିଲେ, ‟ତୁ ଏହି ଜଳାଶୟ ମଧ୍ୟରେ କୁମ୍ଭୀର ହୋଇ ବାସ କରୁଥିବୁ ।” ଗନ୍ଧର୍ବରାଜ ସନ୍ତପ୍ତ ହୋଇ ଋଷିଙ୍କୁ ପ୍ରାର୍ଥନା କରନ୍ତେ ଋଷି କହିଲେ ଭଗବାନ୍ ଗଜୋଦ୍ଧାରଣ କଲାବେଳେ ତୋହର ମୁକ୍ତି ହେବ । ଏ ବୃତ୍ତାନ୍ତ ଇତିହାସ ପୁରାଣରେ ବର୍ଣ୍ଣିତ ।

ଗଜେନ୍ଦ୍ରୋ ଭଗବତ୍ସ୍ପର୍ଶାଦ୍ ବିମୁକ୍ତୋଽଜ୍ଞାନବନ୍ଧନାତ୍ ।
ପ୍ରାପ୍ତୋ ଭଗବତୋ ରୂପଂ ପୀତବାସାଶ୍ଚତୁର୍ଭୁଜଃ । ୬ ।
ସ ବୈ ପୂର୍ବମଭୂଦ୍ରାଜା ପାଣ୍ଡ୍ୟୋ ଦ୍ରବିଡ଼ସତ୍ତମଃ—
ଇନ୍ଦ୍ରଦ୍ୟୁମ୍ନ ଇତି ଖ୍ୟାତୋ ବିଷ୍ଣୁବ୍ରତପରାୟଣଃ । ୭ ।
ସ ଏକଦାରାଧନକାଲ ଆତ୍ମବାନ୍ ଗୃହୀତମୌନବ୍ରତ ଈଶ୍ୱରଂ ହରିମ୍ ।
ଜଟାଧରସ୍ତାପସ ଆପ୍ଲୁତୋଽଚ୍ୟୁତଂ ସମର୍ଚ୍ଚୟାମାସ କୁଳାଚଳାଶ୍ରମଃ । ୮ ।
ଯଦୃଚ୍ଛୟା ତତ୍ର ମହାଯଶା ମୁନିଃ ସମାଗମଚ୍ଛିଷ୍ୟଗଣୈଃ ପରିଶ୍ରିତଃ ।
ତଂ ବୀକ୍ଷ୍ୟ ତୂଷ୍ଣୀମକୃତାର୍ହଣାଦିକଂ ରହସ୍ୟୁପାସୀନମୃଷିଶ୍ଚୁକୋପ ହ । ୯ ।

---

ଗଜେନ୍ଦ୍ର ଶ୍ରୀହରିଙ୍କ ସ୍ପର୍ଶରେ ଅଜ୍ଞାନ ବନ୍ଧନରୁ ମୁକ୍ତ ହୋଇ ପୀତାମ୍ବର ଓ ଚତୁର୍ଭୁଜ ହୋଇ ଭଗବତ୍-ସ୍ୱରୂପ ପ୍ରାପ୍ତ ହୋଇଥିଲେ । ୬ ।

ସେହି ଗଜେନ୍ଦ୍ର ପୂର୍ବ ଜନ୍ମରେ ଦ୍ରାବିଡ ଶ୍ରେଷ୍ଠ ପାଣ୍ଡୁଦେଶ ଜାତ ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନରୂପେ ବିଖ୍ୟାତ ଥିଲେ । ଦିନେ ଜିତେନ୍ଦ୍ରିୟ, ମୌନବ୍ରତୀ, ଜଟାଧାରୀ ତାପସ ଏବଂ ମଳୟାଚଳରେ କୃତାଶ୍ରମ ସେହି ରାଜା ଭଗବାନ୍ ଅଚ୍ୟୁତ ଶ୍ରୀହରିଙ୍କ ଅର୍ଚ୍ଚନା କରୁଥିଲେ । ସେହି ସ୍ଥାନରେ ମହାଯଶସ୍ୱୀ ଅଗସ୍ତି ମୁନି ଶିଷ୍ୟଗଣ ପରିବୃତ ହୋଇ ଉପସ୍ଥିତ ହୋଇଥିଲେ । ତାହାଙ୍କୁ ଦେଖି ସୁଦ୍ଧା ରାଜା କୌଣସି ପ୍ରକାରେ ଅତିଥି ସତ୍କାର କଲେ ନାହିଁ । ନିର୍ଜ୍ଜନରେ ଓ ନିଃଶବ୍ଦରେ ଉପବିଷ୍ଟ ହୋଇ ରହିଲେ । ଋଷି ଏଥିରେ କ୍ରୁଦ୍ଧ ହେଲେ । ୭—୯ ।

---

ଗଜ ଯେ ଥିଲେ କୃଷ୍ଣପାଶେ
ଗୋବିନ୍ଦ ଶରୀର ଆଶ୍ୱାସେ
ତକ୍ଷଣେ ହୋଇ କୃତ କୃତ
ନକ୍ର-ବନ୍ଧନୁ ହୋଇ ମୁକ୍ତ
ବିଷ୍ଣୁର ରୂପ ପରକାଶେ
ରତ୍ନକୁଣ୍ଡଳ ରବି ହାସେ
କଟୀରେ ପୀତ ବସ୍ତ୍ର ଶୋହେ
ହାର କେୟୂର ଜନ ମୋହେ
ସୁନ୍ଦର ଶୋହେ ଚତୁର୍ଭୁଜ
ବିଷ୍ଣୁ ଆୟୁଧ ଦିବ୍ୟ ତେଜ
ତକ୍ଷଣେ ନିଜରୂପ ହୋଇ
ଗରୁଡ ଉପରେ ଆରୋହି

ଗରୁଡ଼ ଉଡେ ମହାଶୂନ୍ୟେ
ମିଳିଲେ ବିଷ୍ଣୁର ଭୁବନେ ॥ ୬
ଶୁଣ ପରୀକ୍ଷ ନରନାଥ
ସେ ଗଜଇନ୍ଦ୍ରର ଚରିତ
ଦ୍ରବିଡ଼ ଦେଶେ ପାଣ୍ଡ୍ୟ ନାମ
ଶୁଭ ସୁନ୍ଦର ଗୁଣଧାମ
ରାଜା ଯେ ନାମ ଇନ୍ଦ୍ର ଦ୍ୟୁମ୍ନ
ବିଷ୍ଣୁର ବ୍ରତ ପରାୟଣ । ୭
ସେ ରାଜା ବସି ଏକଦିନେ
ବିଷ୍ଣୁ ପୂଜନେ ଦୃଢମନେ
ନିଶ୍ଚଳେ ବସି କୁଳାଚଳେ
ମନ ନିବେଶି ପାଦମୂଳେ

ମଉନ ବ୍ରତେ ଜପ କରି
ଧ୍ୟାନେ ଚିନ୍ତଇ ନରହରି ॥ ୮
ଜଟା କଳାପ ମୁଣ୍ଡେ ସାଜେ
ପ୍ରକାଶେ ବନଭୂମି ତେଜେ
ଅନେକ ଶିଷ୍ୟଗଣ ଭୁଲେ
ଅଗସ୍ତି ମୁନି ବିଜେ କଲେ
ତାହାଙ୍କୁ ଦେଖି ନ ଉଠିଲା
ସ୍ତୁତି ବଚନ ନ ବୋଇଲା
ଏକାନ୍ତେ ବସି ମୁନିଜନେ
ବେଗେ ଉଠିଲେ କୋପ ମନେ
ବୋଲନ୍ତି ଏକ ଆରେ ରହି
ଦେଖ ଏହାର ଜ୍ଞାନ ନାହିଁ

ତସ୍ମା ଇମଂ ଶାପମଦାଦସାଧୁରୟଂ ଦୁରାତ୍ମାକୃତବୁଦ୍ଧିରଦ୍ୟ ।
ବିପ୍ରାବମନ୍ତା ବିଶତାଂ ତମିସ୍ରଂ ଯଥା ଗଜସ୍ତବ୍ଧମତିଃ ସ ଏବ । ୧୦ ।

ଶ୍ରୀ ଶୁକ ଉବାଚ ।

ଏବଂ ଶପ୍ତ୍ୱା ଗତୋଽଗସ୍ତ୍ୟୋ ଭଗବାନ୍ ନୃପସାନୁଗଃ ।
ଇନ୍ଦ୍ରଦ୍ୟୁମ୍ନୋଽପି ରାଜର୍ଷିର୍ଦିଷ୍ଟଂ ତଦୁପଧାରୟନ୍ । ୧୧ ।
ଆପନ୍ନଃ କୌଞ୍ଜରୀଂ ଯୋନିମାତ୍ମସ୍ମୃତିବିନାଶିନୀମ୍ ।
ହର୍ୟର୍ଚ୍ଚନାନୁଭାବେନ ଯଦ୍ଗଜତ୍ୱେଽପ୍ୟନୁସ୍ମୃତିଃ । ୧୨ ।
ଏବଂ ବିମୋକ୍ଷ୍ୟ ଗଜଯୂଥପମବ୍ଜନାଭସ୍ତେନାପି ପାର୍ଷଦଗତିଂ ଗମିତେନ ଯୁକ୍ତଃ ।
ଗନ୍ଧର୍ବସିଦ୍ଧବିବୁଧୈରୁପଗୀୟମାନକର୍ମାଦ୍ଭୁତଂ ସ୍ୱଭବନଂ ଗରୁଡ଼ାସନୋଽଗାତ୍ ।୧୩

---

ଋଷି ରାଜାଙ୍କ ପ୍ରତି ଅଭିଶାପ ଦେଲେ— ଏ ରାଜା ଅସାଧୁ; ଦୁରାତ୍ମା, ଅସଦ୍‌ବୁଦ୍ଧି, ମଦମତ୍ତ ମାତଙ୍ଗ ତୁଲ୍ୟ ଉଦ୍ଧତ ସ୍ୱଭାବ ଏବଂ ବ୍ରାହ୍ମଣ ଅବମାନନା କାରୀ; ଏ ବର୍ତ୍ତମାନ ଘୋର ଅନ୍ଧକାରରେ ପତିତ ହେଉ ଏବଂ ନିକୃଷ୍ଟ ହସ୍ତୀଯୋନି ପ୍ରାପ୍ତ ହେଉ । ସେହିଦିନୁ ଇନ୍ଦ୍ରଦ୍ୟୁମ୍ନ ହସ୍ତୀରୂପେ ବିଦ୍ୟମାନ ଥିଲା । ୧୦ ।

ଶ୍ରୀଶୁକଦେବ କହିଲେ—

ହେ ରାଜନ୍ ! ଶିଷ୍ୟଗଣଙ୍କ ସହିତ ଭଗବାନ୍ ଅଗସ୍ତି ଏହିପରି ଅଭିଶାପ ଦେଇ ପ୍ରସ୍ଥାନ କଲେ । ୧୧ ।

ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଏହି ଘଟନାକୁ ଦୈବ-ପ୍ରେରିତ ବୋଲି ଜ୍ଞାନ କରି ଆତ୍ମଶୁଦ୍ଧି ଲୋପକାରିଣୀ ହସ୍ତୀଯୋନି ପ୍ରାପ୍ତହୋଇଥିଲେ ଶ୍ରୀହରିଙ୍କ ଅର୍ଚ୍ଚନାହେତୁ ତାହାଙ୍କର ପୂର୍ବସ୍ମୃତି ବିନଷ୍ଟ ହୋଇନଥିଲା ।୧୨

ଭଗବାନ୍ ପଦ୍ମନାଭ ଏହିପରି ଗଜଯୂଥ ପତିଙ୍କୁ ମୁକ୍ତକରି ତାହାଙ୍କୁ ନିଜର ପାର୍ଷଦ କରିଥିଲେ ଏବଂ ଗନ୍ଧର୍ବ, ସିଦ୍ଧ ଓ ଦେବଗଣଙ୍କ କର୍ତ୍ତୃକ ସ୍ତୁତ ହୋଇ ଗରୁଡ଼ାସନରେ ନିଜ ଧାମକୁ ଗମନ କରିଥିଲେ । ୧୩ ।

---

ଅବଜ୍ଞା କଲା ବିପ୍ରଗଣେ
ଗଜର ପ୍ରାୟେ ମୂଢ଼ପଣେ
ବିପ୍ରଙ୍କୁ ଅମାନନା କରେ
ରାଜ୍ୟ-ସମ୍ପଦ ଗର୍ବଭରେ
ଅନ୍ତେ ପଡ଼ିବ ତମ ଘୋରେ
କେବେହେଁ ଦୁଃଖୁଁ ନ ନିସ୍ତରେ
ଏ ଧର୍ମ୍ମ ଦୂଷଣ ପ୍ରଭାବେ
ଗଜ ଏ ହେବ ଏହି ଭବେ
ଗହନ ବନେ ଚରୁକାଳେ
ଗ୍ରାହ ଗ୍ରାସିବ ହ୍ରଦ-ଜଳେ ।୯,୧୦
ଏମନ୍ତେ ତାଙ୍କୁ ଶାପ ଦେଇ
ମୁନିଏ ଗଲେ ପଥ ବାହି
ସେ ରାଜା ପ୍ରାଣତ୍ୟାଗ କାଳେ
ଗଜ ଦେଖିଲା ବେନି ଡ଼ୋଳେ
ସେ ଗଜ ଦେହେ ଜ୍ଞାନ ହାରେ
ନିବାସ ଘନ ବନ ଘୋରେ
ଯେଣୁ ଗୋବିନ୍ଦ ଭଜିଥିଲା
ସେ ଭବେ ହରି ସୁମରିଲା
ଏମନ୍ତେ ଗଜ ମୋକ୍ଷ କରି
ନିଜ ଭୁବନେଗଲେହରି ।।୧୧,୧୩

ଏତନ୍ମହାରାଜ ତବେରିତୋ ମୟା କୃଷ୍ଣାନୁଭାବୋ ଗଜରାଜମୋକ୍ଷଣମ୍ ।
ସ୍ୱର୍ଗ୍ୟଂ ଯଶସ୍ୟଂ କଳିକଲ୍ମଷାପହଂ ଦୁଃସ୍ୱପ୍ନନାଶଂ କୁରୁବର୍ଯ୍ୟ ଶୃଣ୍ୱତାମ୍ ।୧୪।
ଯଥାନୁକୀର୍ତ୍ତୟନ୍ତ୍ୟେତଚ୍ଛ୍ରେୟସ୍କାମା ଦ୍ୱିଜାତୟଃ ।
ଶୁଚୟଃ ପ୍ରାତରୁତ୍ଥାୟ ଦୁଃସ୍ୱପ୍ନାଦ୍ୟୁପଶାନ୍ତୟେ । ୧୫ ।
ଇଦମାହ ହରିଃ ପ୍ରୀତୋ ଗଜେନ୍ଦ୍ରଂ କୁରୁସତ୍ତମ ।
ଶୃଣ୍ୱତାଂ ସର୍ବଭୂତାନାଂ ସର୍ବଭୂତମୟୋ ବିଭୁଃ । ୧୬ ।

ଶ୍ରୀ ଭଗବାନୁବାଚ ।

ଯେ ମାଂ ତ୍ୱାଞ୍ଚ ସରଶ୍ଚେଦଂ ଗିରିକନ୍ଦରକାନନମ୍ ।
ବେତ୍ରକୀଚକବେଣୂନାଂ ଗୁଲ୍ମାନି ସୁରପାଦପାନ୍ । ୧୭ ।

---

ହେ ମହାରାଜ ! ହେ କୁରୁଶ୍ରେଷ୍ଠ ! ମୁଁ ତୁମ୍ଭ ନିକଟରେ ଶ୍ରୀକୃଷ୍ଣଙ୍କ ମହିମା ଗଜେନ୍ଦ୍ର ମୋକ୍ଷଣ ପ୍ରସଙ୍ଗ ବର୍ଣ୍ଣନା କଲି । ଶ୍ରବଣକାରୀ ପକ୍ଷରେ ଏହା ସ୍ୱର୍ଗପ୍ରଦ, କୀର୍ତ୍ତିବର୍ଦ୍ଧକ ଏବଂ କଳିକଲ୍ମଷ ହାରକ ଓ ଦୁଃସ୍ୱପ୍ନ ବିନାଶକ । ୧୪ ।

ମଙ୍ଗଳକାମୀ ବ୍ରାହ୍ମଣାଦି, ଦ୍ୱିଜାତିମାନେ ପ୍ରାତଃକାଳରୁ ଶଯ୍ୟାରୁ ଉଠି ବିଶୁଦ୍ଧ ହୋଇ ଦୁଃସ୍ୱପ୍ନାଦି ତ୍ୟାଗ କରି ଏହି ଗଜେନ୍ଦ୍ର ମୋକ୍ଷଣ ପ୍ରସଙ୍ଗ ଯଥାବିଧି କୀର୍ତ୍ତନ କରିବେ । ୧୫ ।

ହେ କୁରୁସତ୍ତମ ! ଏହା ଶ୍ରବଣକାରୀ ସମସ୍ତ ପ୍ରାଣୀଙ୍କର ସମକ୍ଷରେ, ସର୍ବପ୍ରାଣୀର ପ୍ରଭୁ ଶ୍ରୀହରି ପ୍ରସନ୍ନ ହୋଇ ଗଜେନ୍ଦ୍ରକୁ ଏହିପରି କହିଥିଲେ । ୧୬ ।

ଶ୍ରୀ ଭଗବାନ କହିଲେ—

ହେ ଗଜେନ୍ଦ୍ର ! ଯେଉଁ ବ୍ୟକ୍ତି ମୋତେ ଏବଂ ତୁମ୍ଭଙ୍କୁ ଏହି ସରୋବର ଗିରିକନ୍ଦର, କାନନ, ବେତସ କୁଞ୍ଜ, କୀଚକ, ବେଣୁ, ଗୁଳ୍ମ, ସୁରଦ୍ରୁମ ପ୍ରଭୃତିକୁ ସ୍ମରଣ କରିବ, ଏବଂ ମୋର, ବ୍ରହ୍ମାଙ୍କର ଓ ଶିବଙ୍କର ଆବାସସ୍ଥଳୀ; ଗିରିଶୃଙ୍ଗମାନ ଏବଂ ମୋର ପ୍ରିୟଧାମ କ୍ଷୀରସମୁଦ୍ର; ଦୀପ୍ତିମାନ ଶ୍ୱେତଦ୍ୱୀପ,

---

ଏବେ ହୋ ପରୀକ୍ଷିତ ଶୁଣ
କହିଲି ଗଜେନ୍ଦ୍ର ମୋକ୍ଷଣ
ଏ କଥା ଫଳ ଶୁଣ ଏବେ
ଯେ ଶୁଣେ ଶ୍ରଦ୍ଧା-ଭକ୍ତି ଭାବେ
ଯେବା ଉଚ୍ଚାରନ୍ତି ବଦନେ
ଯେବା ପୁଚ୍ଛନ୍ତି ଅନ୍ୟୋଅନ୍ୟେ
ସର୍ବ ସମ୍ପଦ ଯଶ କରେ
କଳି କଳ୍ମଶ ଦୁଃଖ ହରେ
ଦୁଷ୍ଟ ସ୍ୱପନ ଗ୍ରହ-ପୀଡ଼ା
ସ୍ମରଣେ ନାଶେ ସର୍ବପୀଡ଼ା । ୧୪

ବ୍ରାହ୍ମଣ ଆଦି ତ୍ରିବର୍ଣ୍ଣେ
ଯେବା ଚିନ୍ତନ୍ତି ଏହା ମନେ
ରଜନୀ ଅନ୍ତେ ଉଷାକାଳେ
କର-ବଦନ ଧୋଇ ଜଳେ
ଗଜେନ୍ଦ୍ର ମୋକ୍ଷ ଯେ ଶୁଣନ୍ତି
କି ଅବା ବଦନେ ଗୁଣନ୍ତି
ଦୁଃସ୍ୱପ୍ନ ଗ୍ରହପୀଡ଼ା ନାଶେ
ନିର୍ମ୍ମଳ ଯଶ ପରକାଶେ ॥ ୧୫
ସକଳ ଦେବ ଋଷି ମଧ୍ୟେ
ଗୋବିନ୍ଦ କହିଲେ ଆନନ୍ଦେ

ଗଜେନ୍ଦ୍ର ମୁଖ ଚାହିଁ ହରି
କହିଲେ ଜନେ ଦୟା କରି ॥ ୧୬

ଶ୍ରୀଭଗବାନୁବାଚ—

ଗଜେନ୍ଦ୍ର ଶୁଣ ମୋ ବଚନ
ଅଶେଷ ଦୁରିତ ଦହନ
ଯେ ନର ଅହୋରାତ୍ର ଅନ୍ତେ
ଶୁଚି ନିର୍ମ୍ମଳ ଶୁଦ୍ଧ ଚିତ୍ତେ
ମୋହର ସଙ୍ଗେ ତୋତେ ସ୍ମରେ
ଘୋର ଗହନ ଦୁଃଖୁଁ ତରେ

ଶୃଙ୍ଗାଣୀମାନ ଧିଷ୍ଣ୍ୟାନ ବ୍ରହ୍ମଣୋ ମେ ଶିବସ୍ୟ ଚ ।
କ୍ଷୀରୋଦଂ ମେ ପ୍ରିୟଂ ଧାମ ଶ୍ୱେତଦ୍ୱୀପଞ୍ଚ ଭାସ୍ୱରମ୍ । ୧୮ ।
ଶ୍ରୀବତ୍ସଂ କୌସ୍ତୁଭଂ ମାଳାଂ ଗଦାଂ କୌମୋଦକୀଂ ମମ ।
ସୁଦର୍ଶନଂ ପାଞ୍ଚଜନ୍ୟଂ ସୁପର୍ଣ୍ଣଂ ପତଗେଶ୍ୱରମ୍ । ୧୯ ।
ଶେଷଞ୍ଚ ମତ୍କଳାଂ ସୂକ୍ଷ୍ମାଂ ଶ୍ରିୟଂ ଦେବୀଂ ମଦାଶ୍ରୟାମ୍ ।
ବ୍ରହ୍ମାଣଂ ନାରଦମୃଷିଂ ଭବଂ ପ୍ରହ୍ଲାଦମେବ ଚ । ୨୦ ।
ମତ୍ସ୍ୟକୂର୍ମ୍ମବରାହାଦ୍ୟୈରବତାରୈଃ କୃତାନ ମେ ।
କର୍ମ୍ମାଣ୍ୟନନ୍ତପୁଣ୍ୟାନ ସୂର୍ଯ୍ୟଂ ସୋମଂ ହୁତାଶନମ୍ । ୨୧ ।
ପ୍ରଣବଂ ସତ୍ୟମବ୍ୟକ୍ତଂ ଗୋବିପ୍ରାନ୍ ଧର୍ମ୍ମମବ୍ୟୟମ୍ ।
ଦାକ୍ଷାୟଣୀଧର୍ମ୍ମପତ୍ନୀଃ ସୋମକଶ୍ୟପୟୋରପି । ୨୨ ।
ଗଙ୍ଗାଂ ସରସ୍ୱତୀଂ ନନ୍ଦାଂ କାଳିନ୍ଦୀଂ ଶିତବାରଣମ୍ ।
ଧ୍ରୁବଂ ବ୍ରହ୍ମଋଷୀନ୍ ସପ୍ତ ପୁଣ୍ୟଶ୍ଳୋକାଂଶ୍ଚ ମାନବାନ୍ । ୨୩ ।
ଉତ୍‌ଥାୟାପରରାତ୍ରାନ୍ତେ ପ୍ରୟତାଃ ସୁସମାହିତାଃ ।
ସ୍ମରନ୍ତି ମମ ରୂପାଣି ମୁଚ୍ୟନ୍ତେ ତେଽହଂସୋଽଖିଳାତ୍ । ୨୪ ।

ମୋର ଶ୍ରୀବତ୍ସ କୌସ୍ତୁଭ, ବନମାଳା, କୌମୋଦକୀ ଗଦା, ସୁଦର୍ଶନଚକ୍ର, ପାଞ୍ଚଜନ୍ୟ ଶଙ୍ଖ, ପକ୍ଷୀରାଜ ଗରୁଡ଼, ଶେଷନାଗ ଏବଂ ମୋର ସୂକ୍ଷ୍ମ କାଳରୂପିଣୀ ହୃଦୟସ୍ଥିତା ଶ୍ରୀ ଦେବୀ ଏବଂ ବ୍ରହ୍ମା, ମହେଶ, ଦେବର୍ଷି. ନାରଦ, ପ୍ରହ୍ଲାଦ, ମତ୍ସ୍ୟ, କୂର୍ମ, ବରାହାଦି ଅବତାର ପ୍ରଭୃତି ପ୍ରସଙ୍ଗରେ ମୋର କର୍ମ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ପ୍ରଣବ, ସତ୍ୟ, ମାୟା, ଗୋ, ବିପ୍ର, ଭକ୍ତିଲକ୍ଷଣ ଧର୍ମ, ଧର୍ମପତ୍ନୀ, ଚନ୍ଦ୍ର ଓ କାଶ୍ୟପପତ୍ନୀ, ଦକ୍ଷକନ୍ୟାଗଣ, ଗଙ୍ଗା, ସରସ୍ୱତୀ, ନନ୍ଦା, କାଳିନ୍ଦୀ ପ୍ରଭୃତି ପୁଣ୍ୟ ନଦୀମାନ, ଐରାବତ; ଧ୍ରୁବ, ସପ୍ତର୍ଷି ଏବଂ ପୁଣ୍ୟାତ୍ମା ମାନବ ଏ ସମସ୍ତ ମୋର ବିଭୂତି ବିଶେଷ, ରାତ୍ରି ଶେଷରେ ଗାତ୍ରୋତ୍‌ଥାନ କରି ସଂଯତ ଓ ଏକାଗ୍ର ଚିତ୍ତରେ ଏହି ସମସ୍ତ ସ୍ମରଣ କଲେ, ନିଶ୍ଚିତ ପାପରୁ ମୁକ୍ତ ମିଳେ । ହେ ରାଜନ୍ ! ଯେଉଁମାନେ

| | | |
|---|---|---|
| ପର୍ବତ କନ୍ଦର କାନନ | ଶ୍ରୀବତ୍ସ କଉସ୍ତୁଭ ମଣି | ମତ୍ସ୍ୟ କଚ୍ଛପ କୋଳ ଆଦି |
| ବେତ କୀଚକ ବେଣୁ ବନ | ଚତୁରଭୁଜ ପରିମାଣି | ଯେ ରୂପ ଅଛି ମୁଁ ସମ୍ପାଦି |
| ସୁରପାଦପ ବୃକ୍ଷ ଆଦି | ଶଙ୍ଖ କମଳ ଚକ୍ର ଗଦା | ଅଶେଷ ଗୁଣ-କର୍ମ ଯେତେ |
| ପର୍ବତ ତ୍ରିଶୃଙ୍ଗ ସମ୍ପାଦି | ଚତୁରଭୁଜେ ଶୋହେ ସଦା | ମୋହର ଯଶ ଏ ଜଗତେ |
| ବ୍ରହ୍ମା-ଭୁବନ ମୋ ନିବାସ | ବିନତା-ନନ୍ଦନ ଅନନ୍ତ | ରବି ଶଶାଙ୍କ ହୁତାଶନ |
| ଶଙ୍କର ସ୍ଥାନ କଇଳାସ | କମଳା ମୋର ହୃଦଗତ | ପ୍ରଣବ ସତ୍ୟ ଯେ ବଚନ |
| କ୍ଷୀର ଜଳଧି ପ୍ରିୟ ମୋର | ବ୍ରହ୍ମା ଶଙ୍କର ଯେ ନାରଦ | ଗୋ ବିପ୍ର ଆଦି ଧର୍ମ ଯେତେ |
| ଯେ ଶ୍ୱେତଦ୍ୱୀପ ମନୋହର | ଭକତ ମଧ୍ୟ ପ୍ରହଲ୍ଲାଦ | ଋଷି ଦେବତା ଯଜ୍ଞମତେ |

ଯେମାଂ ସ୍ତୁବନ୍ତ୍ୟନେନାଙ୍ଗ ପ୍ରତବୁଧ୍ୟ ନିଶାତ୍ୟୟେ ।
ତେଷାଂ ପ୍ରାଣାତ୍ୟୟେ ଚାହଂ ଦଦାମି ବିପୁଳାଂ ଗତିମ୍ । ୨୫ ।
ଶ୍ରୀ ଶୁକ ଉବାଚ ।
ଇତ୍ୟାଦିଶ୍ୟ ହୃଷୀକେଶଃ ପ୍ରଧ୍ମାୟ ଜଲଜୋତ୍ତମମ୍ ।
ହର୍ଷୟନ୍ ବିବୁଧାନୀକମାରୁରୋହ ଖଗାଧିପମ୍ । ୨୬ ।
ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଗଜେନ୍ଦ୍ରମୋକ୍ଷଣଂ ନାମ
ଚତୁର୍ଥୋଽଧ୍ୟାୟଃ ।

---

ନିଶାପଗମରେ ଜାଗ୍ରତ ହୋଇ ଏହି ବୃତ୍ତାନ୍ତ ପାଠକରି ମୋତେ ସ୍ତବ କରନ୍ତି ପ୍ରାଣାନ୍ତରେ ମୁଁ ସ୍ୱୟଂ ସେମାନଙ୍କୁ ଉତ୍କୃଷ୍ଟଗତି ପ୍ରଦାନ କରେ । ୧୭—୨୫ ।

ଶ୍ରୀଶୁକଦେବ କହିଲେ—

ହେ ରାଜନ୍ ! ଭଗବାନ୍ ହୃଷୀକେଶ ଗଜେନ୍ଦ୍ରଙ୍କୁ ଏହିପରି ଆଦେଶ ଦେଇ ପାଞ୍ଚଜନ୍ୟ ଶଙ୍ଖ ବାଦନ ଦ୍ୱାରା ଦେବତାମାନଙ୍କୁ ଆନନ୍ଦିତ କରି ଗରୁଡ଼ ପୃଷ୍ଠରେ ଆରୋହଣ କରି ଗମନ କରିଥିଲେ ।୨୬।

---

ଦକ୍ଷ ଦୁହିତା ମନୁ ଯେତେ
ପୂର୍ବେ ମୁଁ କହୁଅଛି ତୋତେ
ସୋମ କାଶ୍ୟପ ବଂଶ ଆଦି
ସୃଷ୍ଟି ସର୍ଜ୍ଜନେ ଯେ ପ୍ରସିଦ୍ଧି
ଗଙ୍ଗା କାଳିନ୍ଦୀ ସରସ୍ୱତୀ
ଅଇରାବର୍ତ୍ତ ନନ୍ଦାବର୍ତ୍ତୀ

ଧ୍ରୁବାଦି ସପ୍ତଋଷି ଯେତେ
ଯେ ପୁଣ୍ୟ ଶ୍ଳୋକ ଏ ଜଗତେ
ସ୍ମରଣେ ସର୍ବ ପାପ ହରେ
ଏଘୋରସଙ୍କଟୁ ନିସ୍ତରେ ।୧୭,୨୫
ଏମନ୍ତ କହି ଦେବବୃନ୍ଦେ
ସେ ହରି ପରମ ଆନନ୍ଦେ

ଆରୋହି ଗରୁଡ଼ ଉପରେ
ତକ୍ଷଣେ ଗଲେ ନିଜ ପୁରେ
ସୁଜନ ହିତେ ଭାଗବତ
କହିଲେ ଦାସ ଜଗନ୍ନାଥ





**ବିଶେଷାର୍ଥ—**

ଏହି ଅଧ୍ୟାୟରେ ଗଜେନ୍ଦ୍ର ଓ ଗ୍ରାହ ଉଭୟଙ୍କର ମୋକ୍ଷ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଗ୍ରାହ ପୂର୍ବ ଜନ୍ମରେ ହୂହୂ ନାମକ ଗନ୍ଧର୍ବରାଜ ଥିଲା ଏବଂ ଦେବଳ ମୁନିଙ୍କର ଅଭିଶାପରେ କୁମ୍ଭୀର ଯୋନି ପ୍ରାପ୍ତ ହୋଇଥିଲା । ଗଜେନ୍ଦ୍ର ଦ୍ରାବିଡ଼ ଦେଶରେ ଇନ୍ଦ୍ରଦ୍ୟୁମ୍ନ ନାମକ ବିଷ୍ଣୁଭକ୍ତ ରାଜା ଥିଲା ମାତ୍ର ବିଷ୍ଣୁଭକ୍ତ ହେଲେ ଅତିଥି ସେବା ମଧ୍ୟ ତାହାର କର୍ତ୍ତବ୍ୟ, ସେହି କର୍ତ୍ତବ୍ୟରୁ ଭ୍ରଷ୍ଟ ହେବାରୁ ସେ ଅଗସ୍ତି ମୁନିଙ୍କର ଅଭିଶାପରେ ହସ୍ତୀ ଯୋନିରେ ଜାତ ହୋଇଥିଲା । ଭଗବାନ୍ ଶ୍ରୀହରି ତାହାର ଏକାଗ୍ରତା ଏବଂ ଦୁରବସ୍ଥାରେ କୃପାଳୁ ହୋଇ ତାହାକୁ କୁମ୍ଭୀରର ଆକ୍ରମଣରୁ ଉଦ୍ଧାର କରିଥିଲେ ଏବଂ ସେ ବିଷ୍ଣୁ ପାର୍ଶ୍ୱଦରୂପେ ସ୍ଥାନଲାଭ କରିଥିଲା । ଏହି ପ୍ରସଙ୍ଗ ଶ୍ରବଣ କଲେ କିପରି ପୁଣ୍ୟଲାଭ ହୁଏ ତହିଁରେ ଫଳଶ୍ରୁତି ୧୭ ଠାରୁ ୨୫ ଶ୍ଳୋକ ବର୍ଣ୍ଣିତ ହୋଇଅଛି ।

## ପଞ୍ଚମୋଽଧ୍ୟାୟଃ ।

ପଞ୍ଚମେ ପଞ୍ଚମଞ୍ଚାଥ ଷଷ୍ଠଞ୍ଚାକଥୟନ୍ମନୁମ୍ ।
ବିପ୍ରଶାପାଚ୍ଚ ନଃଶ୍ରୀକୈଃ କୃତାଂ ଦେବୈଃ ହରେସ୍ତୁତମ୍ ।୦। (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ ।

ରାଜନ୍ନୁଦିତମେତତ୍ତେ ହରେଃ କର୍ମ୍ମାଘନାଶନମ୍ ।
ଗଜେନ୍ଦ୍ରମୋକ୍ଷଣଂ ପୁଣ୍ୟଂ ରୈବତଂ ତ୍ୱନ୍ତରଂ ଶୃଣୁ । ୧ ।
ପଞ୍ଚମୋ ରୈବତୋ ନାମ ମନୁସ୍ତାମସସୋଦରଃ ।
ବଳିବିନ୍ଧ୍ୟାଦୟସ୍ତସ୍ୟ ସୁତା ହାର୍ଜୁନପୂର୍ବକାଃ । ୨ ।
ବିଭୁରିନ୍ଦ୍ରଃ ସୁରଗଣା ରାଜନ୍ ଭୂତରୟାଦୟଃ ।
ହିରଣ୍ୟରୋମା ବେଦଶିରା ଊର୍ଦ୍ଧ୍ୱବାହ୍ୱାଦୟୋ ଦ୍ୱିଜାଃ । ୩ ।

---

### ବିପ୍ରଶାପରେ ଦେବତାମାନଙ୍କର ଶ୍ରୀହୀନ ।

ପଞ୍ଚମ ଅଧ୍ୟାୟରେ ପଞ୍ଚମମନୁ ଓ ଷଷ୍ଠ ମନୁ ବିଷୟ ବର୍ଣ୍ଣନା କରି ବ୍ରାହ୍ମଣ ଶାପରେ ଦେବତାମାନେ କିପରି ଶ୍ରୀହୀନ ହୋଇଥିଲେ ଏବଂ ଭଗବାନଙ୍କୁ ସ୍ତୁତି କରିବା ବର୍ଣ୍ଣନା କରାଯାଇଅଛି । ୦ ।

**ଶ୍ରୀଶୁକଦେବ କହିଲେ—**

ହେ ରାଜନ୍ ! ଶ୍ରୀହରିଙ୍କର ପାପନାଶକ କର୍ମ ଗଜେନ୍ଦ୍ର ମୋକ୍ଷଣ ବୃତ୍ତାନ୍ତ ଆପଣଙ୍କୁ କହିଲି । ବର୍ତ୍ତମାନ ପବିତ୍ର ରୈବତକ ମନ୍ୱନ୍ତର ବିଷୟ ଆପଣଙ୍କୁ କହିବି, ଶ୍ରବଣ କରନ୍ତୁ ।୧।

ପଞ୍ଚମରେ ତାମସ ମନୁଙ୍କର ସହୋଦର ରୈବତ ନାମଧେୟ । ଏହି ରୈବତ ମନୁଙ୍କର ଅର୍ଜୁନ, ବଳି, ବିନ୍ଧ୍ୟ ପ୍ରଭୃତି ପୁତ୍ରମାନେ ଜନ୍ମଗ୍ରହଣ କରିଥିଲେ ।୨।

ସେହି ରୈବତ ମନ୍ୱନ୍ତରରେ ବିଭୁନାମକ ଇନ୍ଦ୍ର, ଭୂତରୟାଦି ଦେବଗଣ, ଏବଂ ହିରଣ୍ୟରୋମା, ଦେବଶିରା ଓ ଊର୍ଦ୍ଧ୍ୱବାହୁ ପ୍ରଭୃତି ଋଷି ଥିଲେ ।୩।

---

ପଞ୍ଚମ ଷଷ୍ଠ ମନୁଙ୍କର,　　ଚରିତ ପଞ୍ଚମଅଧ୍ୟାର ।

**ଶ୍ରୀଶୁକଉବାଚ—**

ଶୁକ କହନ୍ତି ଗଙ୍ଗାତଟେ
ସକଳ ମହାଋଷି ମେଳେ
ହରିଚରିତ ସୁଧାସାର
ଗଜ କୁମ୍ଭୀରର ବିସ୍ତାର
ସେ ପ୍ରଶ୍ନ କହି ରାଜା ଆଗେ
ପୁଣି କହନ୍ତି ଅନୁରାଗେ

ଶୁଣ ହୋ ଅଭିମନ୍ୟୁ ସୁତ
ଅଦ୍ଭୁତ ଗଜେନ୍ଦ୍ର ଚରିତ
ତୋତେ କହିଲୁଁ ହରିଗୁଣ
ମନୁ ଚରିତ ଏବେ ଶୁଣ । ୧ ।
ପଞ୍ଚମେ ତାମସ ସୋଦର
ରୈବତ ନାମେ ମନୁବର
ଅର୍ଜୁନ, ବଳି, ବିନ୍ଧ୍ୟନାମ
ତାର ତନୟ ଅନୁପମ । ୨ ।

ଇନ୍ଦ୍ର ବସଇ ବିଭୁନାମ
ଘେନି ଦେବତା ଋଷିଗଣ
ଦେବତା ଭୂତରୟ ଆଦି
ଏ ଭାବେ ଅମର ପ୍ରସିଦ୍ଧି
ହିରଣ୍ୟରୋମା ବେଦଶିର
ଊର୍ଦ୍ଧ୍ୱବାହୁ ଯେ ମୁନିବର । ୩ ।

ପତ୍ନୀ ବିକୁଣ୍ଠା ଶୁଭ୍ରସ୍ୟ ବୈକୁଣ୍ଠୈଃ ସୁରସତ୍ତମୈଃ ।
ତୟୋଃ ସ୍ୱକଳୟା ଜଜ୍ଞେ ବୈକୁଣ୍ଠୋ ଭଗବାନ୍ ସ୍ୱୟମ୍ । ୪ ।
ବୈକୁଣ୍ଠଃ କଳ୍ପିତୋ ଯେନ ଲୋକୋ ଲୋକନମସ୍କୃତଃ ।
ରମୟା ପ୍ରାର୍ଥ୍ୟମାନେନ ଦେବ୍ୟା ତତ୍‌ପ୍ରିୟକାମ୍ୟୟା । ୫ ।
ତସ୍ୟାନୁଭାବଃ କଥିତୋ ଗୁଣାଶ୍ଚ ପରମୋଦୟାଃ ।
ଭୌମାନ୍ ରେଣୂନ୍ ସ ବିମମେ ଯୋ ବିଷ୍ଣୋର୍ବର୍ଣ୍ଣୟେଦ୍‌ଗୁଣାନ୍ ।
ଷଷ୍ଠଶ୍ଚ ଚକ୍ଷୁଷଃ ପୁତ୍ରଶ୍ଚାକ୍ଷୁଷୋ ନାମ ବୈ ମନୁଃ ।
ପୂରୁପୂରୁଷସୁଦ୍ୟୁମ୍ନପ୍ରମୁଖାଶ୍ଚାକ୍ଷୁଷାତ୍ମଜାଃ । ୭ ।

---

ଶୁଭ୍ରଙ୍କର ବିକୁଣ୍ଠା ନାମ୍ନୀ ପତ୍ନୀ ଥିଲେ । ଶୁଭ୍ର ଓ ବୈକୁଣ୍ଠଙ୍କଠାରୁ ଭଗବାନ୍ ବୈକୁଣ୍ଠ ସ୍ୱୀୟ ଅଂଶରେ ବୈକୁଣ୍ଠବାସୀ ଦେବଗଣଙ୍କ ସହିତ ଆବିର୍ଭୂତ ହୋଇଥିଲେ ।୪।

ଲକ୍ଷ୍ମୀଦେବୀଙ୍କର ପ୍ରାର୍ଥନାନୁସାରେ ଭଗବାନ୍ ଲକ୍ଷ୍ମୀଙ୍କର ପ୍ରୀତି ନିମିତ୍ତ ସର୍ବଲୋକ-ପୂଜ୍ୟ ବୈକୁଣ୍ଠ ଲୋକ ନିର୍ମାଣ କରିଥିଲେ ।୫।

ସେହି ବୈକୁଣ୍ଠପତି ଶ୍ରୀହରିଙ୍କର ମହିମା, ପରମୈଶ୍ୱର୍ଯ୍ୟ ଏବଂ ବ୍ରହ୍ମଣ୍ୟାଦି ଗୁଣ ପୂର୍ବେ ବର୍ଣ୍ଣନା କରିଅଛି । ଯେଉଁ ବ୍ୟକ୍ତି ବିଷ୍ଣୁଙ୍କର ଗୁଣ ବର୍ଣ୍ଣନା କରିବାକୁ ସମର୍ଥ ହୁଏ ସେ ପୃଥିବୀରେ ଧୂଳିକଣା ସମ ମଧ୍ୟ ଗଣନା କରିପାରେ । ( ଧୂଳିକଣା ଗଣନା କରିବା ଯେପରି ଅସମ୍ଭବ, ବିଷ୍ଣୁଙ୍କ ଗୁଣ ବର୍ଣ୍ଣନା କରିବା ମଧ୍ୟ ସେହିପରି ଅସମ୍ଭବ )।୬।

ଷଷ୍ଠମନୁ ଚକ୍ଷୁର ପୁତ୍ର ଚାକ୍ଷୁଷ, ଏହି ଚାକ୍ଷୁଷ ମନୁଙ୍କର ପୂରୁ, ପୂରୁଷ ଓ ସୁଦ୍ୟୁମ୍ନ ନାମକରେ ପୁତ୍ର ଥିଲେ ।୭।

---

ବିକୁଣ୍ଠା ନାମେ ଶୁଭ୍ର ନାରୀ
ରୂପେ କମଳା ନୋହେ ସରି
ବୈକୁଣ୍ଠପୁର ଲୋକ ସଙ୍ଗେ
ବିଷ୍ଣୁ ତାହାର ନିଜ ଅଙ୍ଗେ
ଜନ୍ମ ହୋଇଲେ ନିଜଧାମ
ଏଣୁ ବୈକୁଣ୍ଠ ତାର ନାମ । ୪ ।
ବୈକୁଣ୍ଠପୁର ମନେ କଳ୍ପି
ଯହିଁ ବିଜୟେ ବିଶ୍ୱରୂପୀ
ସେ ସର୍ବ ଲୋକନମସ୍କୃତ
ଶୁଣ ନୃପତି ପରୀକ୍ଷିତ
ଲକ୍ଷ୍ମୀର ପ୍ରାର୍ଥନେ ମୁରାରି
କମଳା ତୁଲେ ପ୍ରୀତି କରି
ନିବାସ କଲେ ପ୍ରିୟଭାବେ
ବିଷ୍ଣୁ ଭକତଙ୍କର ଲାଭେ । ୫ ।
ବୈକୁଣ୍ଠ ଗୁଣଭାବ ଯେତେ
ପୂର୍ବେ କହିଛୁ ତୋ ଅଗ୍ରତେ
କେ ବିଷ୍ଣୁ ଗୁଣ ପରିମାଣୁ
କେ ଗଣିପାରେ ଭୂମିରେଣୁ ।୬।
ଶୁଣ ରାଜନ ମନତୋଷେ
ଏବେ କହିବା ମନୁବଂଶେ
ଷଷ୍ଠରେ ଚକ୍ଷୁଷଙ୍କ ସୁତ
ଚାକ୍ଷୁଷ ନାମେ ସେ ବିଦିତ
ପୂରୁ ପୂରୁଷ ସୁଦ୍ୟୁମ୍ନ ଯେ
ପ୍ରମୁଖ ଚାକ୍ଷୁଷ ତନୁଜେ । ୭ ।

ଇନ୍ଦ୍ରୋ ମନ୍ତ୍ରଦ୍ରୁମସ୍ତତ୍ର ଦେବା ଆପ୍ୟାଦୟୋ ଗଣାଃ ।
ମୁନୟସ୍ତତ୍ର ବୈରାଜନ୍ ହର୍ଯ୍ୟସ୍ଥଦ୍ବୀରକାଦୟଃ । ୮ ।
ତତ୍ରାପି ଦେବସମ୍ଭୂତ୍ୟାଂ ବୈରାଜସ୍ୟାଭବତ୍ ସୁତଃ ।
ଅଜିତୋ ନାମ ଭଗବାନଂଶେନ ଜଗତୀପତିଃ । ୯ ।
ପୟୋଧିଂ ଯେନ ନିର୍ମଥ୍ୟ ସୁରାଣାଂ ସାଧିତା ସୁଧା ।
ଭ୍ରମମାଣୋଽମ୍ଭସି ଧୃତଃ କୂର୍ମରୂପେଣ ମନ୍ଦରଃ । ୧୦ ।

ଶ୍ରୀ ରାଜୋବାଚ ।

ଯଥା ଭଗବତା ବ୍ରହ୍ମନ୍ ମଥିତଂ କ୍ଷୀରସାଗରଃ ।
ଯଦର୍ଥଂ ବା ଯତଶ୍ଚାଦ୍ରିଂ ଦଧାରାମ୍ବୁଚରାତ୍ମନା । ୧୧ ।
ଯଥାମୃତଂ ସୁରୈଃ ପ୍ରାପ୍ତଂ କିଞ୍ଚାନ୍ୟଦଭବତ୍ତତଃ ।
ଏତାଭଗବତଃ କର୍ମ୍ମ ବଦସ୍ୱ ପରମାଦ୍ଭୁତମ୍ । ୧୨ ।

---

ହେ ରାଜନ୍ ! ସେହି ମନ୍ୱନ୍ତରରେ ମନ୍ତ୍ରଦ୍ରୁମ ନାମକ ଇନ୍ଦ୍ର, ଆପ୍ୟାଦିଗଣ ଦେବତା ଏବଂ ହର୍ଯ୍ୟସ୍ଥ ଓ ବୀରକାଦି ଋଷି ଥିଲେ ।୮।

ଭଗବାନ୍ ଜଗତ୍ପତି ବିଷ୍ଣୁ ସେହି ମନ୍ୱନ୍ତରରେ ସ୍ୱୀୟ ଅଂଶରେ ଦେବସମ୍ଭୂତି ଗର୍ଭରେ ବୈରାଜଙ୍କ ଔରସରେ ଜନ୍ମଗ୍ରହଣ କରି ଅଜିତ ନାମରେ ବିଖ୍ୟାତ ହୋଇଥିଲେ ।୯।

ସେହି ଭଗବାନ୍ ସମୁଦ୍ର ମନ୍ଥନ କରି ଦେବତାମାନଙ୍କ ନିମିତ୍ତ ଅମୃତ ସଂଗ୍ରହ କରିଥିଲେ ଏବଂ କୂର୍ମରୂପେ ସମୁଦ୍ର ଜଳରେ ଅବସ୍ଥାନ କରି ଭ୍ରାମ୍ୟମାନ ମନ୍ଦର ପର୍ବତ ଧାରଣ କରିଥିଲେ ।୧୦।

ଶ୍ରୀ ରାଜା ପରୀକ୍ଷିତ କହିଲେ :—

ଯେଉଁ ନିମିତ୍ତ ଭଗବାନ୍ କ୍ଷୀର ସମୁଦ୍ରମନ୍ଥନ କରିଥିଲେ, ଯେଉଁ କାରଣରୁ ଜଳରେ କୂର୍ମ ରୂପରେ ମନ୍ଦରପର୍ବତ ଧାରଣ କରିଥିଲେ, ଦେବତାମାନେ ଯେପରି ଅମୃତପ୍ରାପ୍ତି ହେଲେ, ସେ ସମସ୍ତରେ

---

ଇନ୍ଦ୍ରର ନାମ ମନ୍ତ୍ରଦ୍ରୁମ
ଆପ୍ୟାଦି ଦେବଗଣ ନାମ
ହର୍ଯ୍ୟସ୍ଥ ବୀରକାଦି ମୁନି
ଉଦୟେ ନିଜ ଗୁଣ ଘେନି ।୮।
ସେ ମନୁକାଳେ ଚକ୍ରଧର
ଦେବ ସମ୍ଭୂତିର ଉଦର
ଅଜିତ ନାମେ ଭଗବାନ
ବୈରାଜ ଋଷିର ନନ୍ଦନ
ଯେ ରୂପେ ସମୁଦ୍ର ମନ୍ଥିଲେ
ସୁରଗଣଙ୍କୁ ସୁଧା ଦେଲେ

ମନ୍ଦର ଗିରି ଖୁଆ କରି
କୂର୍ମ୍ମ ସ୍ୱରୂପେ ତାହା ଧରି
ଅମୃତ ଦେଲେ ଦେବଗଣେ
ଅସୁର ମୋହି ଶ୍ରୀରି ପଣେ ।୯,୧୦

ରାଜୋବାଚ—

ଶୁକ ବଦନ ରାହି ହସି
ବୋଲେ ପରୀକ୍ଷି କୁରୁବଂଶୀ
ହେ ମୁନି ! ଅସମ୍ଭବ କଥା
ସମୁଦ୍ର ମନ୍ଥନ ବ୍ୟବସ୍ଥା

କି ଅର୍ଥେ ପ୍ରଭୁ ଜନାର୍ଦ୍ଦନ
କରିଲେ ସମୁଦ୍ର ମନ୍ଥନ
କେମନ୍ତେ କୂର୍ମ୍ମରୂପ ଧରି
ପୃଷ୍ଠେ ବହିଲେ ମହାଗିରି ।୧୧।
କେମନ୍ତେ ସର୍ବ ଦେବଗଣ
ସନ୍ତୋଷେ କଲେ ସୁଧାପାନ
ଅନ୍ୟ ବା କି କି ଉପୁଜିଲା
କେତେ ବା ଅଦ୍ଭୁତ ହୋଇଲା ।୧୨

ତ୍ୱୟା ସଂକଥ୍ୟମାନେନ ମହିମ୍ନା ସାତ୍ୱତାଂ ପତେଃ ।
ନାଭିତୃପ୍ୟତି ମେ ଚିତ୍ତଂ ସୁଚିରଂ ତାପତାପିତମ୍ । ୧୩ ।

ଶ୍ରୀ ସୂତ ଉବାଚ ।

ସଂପୃଷ୍ଟୋ ଭଗବାନେବଂ ଦ୍ୱୈପାୟନସୁତୋ ଦ୍ୱିଜାଃ ।
ଅଭିନନ୍ଦ୍ୟ ହରେର୍ବୀର୍ଯ୍ୟମଭ୍ୟାଚଷ୍ଟୁଂ ପ୍ରଚକ୍ରମେ । ୧୪ ।

ଶ୍ରୀ ଶୁକ ଉବାଚ ।

ଯଦା ଯୁଦ୍ଧେଽସୁରୈର୍ଦେବାଃ ବଧ୍ୟମାନାଃ ଶିତାୟୁଧୈଃ ।
ଗତାସବୋ ନିପତିତା ନୋତ୍ତିଷ୍ଠେରନ୍ ସ୍ମ ଭୂରଶଃ । ୧୫ ।

---

ଅନ୍ୟାନ୍ୟ ଯେଉଁ ଘଟଣାମାନ ଘଟିଥିଲା ଭଗବାନଙ୍କର ସେହି ପରମାଦ୍ଭୁତ କର୍ମ ପ୍ରସଙ୍ଗ ମୋ ନିକଟରେ ବର୍ଣ୍ଣନା କରନ୍ତୁ । ତାହା ନ ହେଲେ ମୋର ବହୁକାଳରୁ ତାପିତ ହୃଦୟ ତୃପ୍ତ ହେଉନାହିଁ । ୧୧,୧୨,୧୩।

ଶ୍ରୀସୂତ କହିଲେ—

ହେ ବ୍ରାହ୍ମଣଗଣ ! ରାଜା ପରୀକ୍ଷିତ ପ୍ରଶ୍ନ କରନ୍ତେ ପରମଯୋଗୀ ବ୍ୟାସନନ୍ଦନ ତାହାଙ୍କୁ ପ୍ରଶଂସା କରି ଶ୍ରୀହରିଙ୍କ ମାହାତ୍ମ୍ୟ କହିଥିଲେ ।୧୪।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଯେଉଁ ସମୟରେ ଅସୁରମାନେ ଯୁଦ୍ଧରେ ଶାଣିତାସ୍ତ୍ର ଧାରଣ କରି ବହୁ ସଂଖ୍ୟକ ଦେବତାଙ୍କୁ ବଧ କଲେ ଏବଂ ସେମାନେ ଗତାୟୁ ହୋଇ ଭୂତଳରେ ପତିତ ହେଲେ, ପୁନର୍ବାର ଆଉ ଜୀବିତ ହେଲେ ନାହିଁ ।୧୫।

---

ବିଷ୍ଣୁ ଚରିତ ଅଗୋଚର
ଭ୍ରମନ୍ତି ବ୍ରହ୍ମା ଶିବ ସୁର
ହରି ମହିମା ତୁମ୍ଭ ମୁଖେ
ଶ୍ରବଣେ ପାନ କରି ସୁଖେ
ତୃପତ ନୋହିଲା ମୋ ପ୍ରାଣ
ହେ ମୁନି ! କର ପରିତ୍ରାଣ

ସୂତ ଉବାଚ—
ସୂତ କହନ୍ତି ବହୁସୁଖେ
ଅଶେଷ ଋଷିଙ୍କ ଅଗ୍ରତେ
ଏମନ୍ତେ ପରୀକ୍ଷିତ ବାଣୀ
ଶୁକ ଆନନ୍ଦ ମନେ ଶୁଣି
ହରି ମହିମା ସୁଖେ ମଜ୍ଜି
ଦଣ୍ଡେ ରହିଲେ ଚକ୍ଷୁ ବୁଜି

ଅନ୍ତରେ ଚିତ୍ତେ ଧରି ଧ୍ୟାଇ
କହନ୍ତି ରାଜାମୁଖ ଚାହିଁ ।୧୪।

ଶ୍ରୀଶୁକଉବାଚ—
ପୂର୍ବେ ଯେ ଦେବାସୁର ରଣେ
ଯୁଦ୍ଧେ ହାରିଲେ ଦେବଗଣେ
ପଡ଼ିଲେ ଗତପ୍ରାଣ-ଦେହେ
ଜୀବନ ନ ଲଭନ୍ତି କେତେବେହେଁ ।୧୫

ଯଦା ଦୁର୍ବାସଃଶାପେନ ସେନ୍ଦ୍ରା ଲୋକାସ୍ତ୍ରୟୋ ନୃପ ।
ନିଃଶ୍ରୀକାଶ୍ଚାଭବଂସ୍ତତ୍ର ନେଶୁରିଜ୍ୟାଦୟଃ କ୍ରିୟାଃ । ୧୬ ।
ନିଶାମ୍ୟୈତତ୍ସୁରଗଣା ମହେନ୍ଦ୍ରବରୁଣାଦୟଃ ।
ନାଧ୍ୟଗଚ୍ଛନ୍ ସ୍ୱୟଂ ମନ୍ତ୍ରୈର୍ମନ୍ତ୍ରୟନ୍ତୋ ବିନିଶ୍ଚିତମ୍ । ୧୭ ।
ତତୋ ବ୍ରହ୍ମସଭାଂ ଜଗ୍ମୁର୍ମେରୋର୍ମୂର୍ଦ୍ଧନି ସର୍ବଶଃ ।
ସର୍ବଂ ବିଜ୍ଞାପୟାଞ୍ଚକ୍ରୁଃ ପ୍ରଣତାଃ ପରମେଷ୍ଠିନେ । ୧୮ ।

---

ଯେତେବେଳେ ଦୁର୍ବାଙ୍କ ଶାପରେ ଇନ୍ଦ୍ରାଦି ଦେବତାମାନେ ଓ ତ୍ରିଲୋକ ଶ୍ରୀହୀନ ହେଲ ସେତେବେଳେ ସର୍ବତ୍ର ଯାଗଯଜ୍ଞ ବିଲୁପ୍ତ ହୋଇଗଲ ।୧୬।

ସେତେବେଳେ ଇନ୍ଦ୍ର, ବରୁଣ ପ୍ରଭୃତି ଦେବତାମାନେ ନିଜେ ନିଜେ ମନ୍ତ୍ରଣା କରି କୌଣସି ପ୍ରକାର ଉପାୟ ସ୍ଥିରକରି ପାରିଲେ ନାହିଁ ।୧୭।

ସେତେବେଳେ ମିଳିତ ଦେବତାଗଣ ସୁମେରୁ ପର୍ବତରେ ଉପସ୍ଥିତ ହୋଇ ବ୍ରହ୍ମାଙ୍କ ସଭାକୁ ଗମନ କରିଥିଲେ ଏବଂ ବ୍ରହ୍ମାଙ୍କୁ ପ୍ରଣାମ କରି ସମସ୍ତ ବୃତ୍ତାନ୍ତ ଜଣାଇଥିଲେ ।୧୮।

---

ଦୁର୍ବାସା ମୁନିଙ୍କର କ୍ରୋଧ
ଧ୍ୱଂସିଲ ଇନ୍ଦ୍ର ସମ୍ପଦ
ଯଜ୍ଞାଦି କ୍ରିୟା ନାଶ ଗଲ
ଏ ତିନି ଭୁବନ କମ୍ପିଲ
ଇନ୍ଦ୍ର ନ ପାରେ ସ୍ୱର୍ଗେ ରହି
କମ୍ପଇ ଅଷ୍ଟଦିଗ ମହୀ
ଭୟେ ନ ରହି ସ୍ୱର୍ଗଲୋକେ
ବନେ ବୁଲନ୍ତି ଏକେ ଏକେ
ତ୍ରୈଲୋକ୍ୟ ଦିଶେ ଅନ୍ଧକାର
ଭୂମି କମ୍ପଇ ଥରହର
ଲକ୍ଷ୍ମୀ ବିହୀନେ ତିନି ଲୋକେ
ଦୁଃଖେ ମଜ୍ଜିଲେ ଅତିରେକେ ।୧୬
ଏମନ୍ତ ଦେବଲୋକ ମହୀ
ବାସବ ସଙ୍ଗେ ସଙ୍ଗ ହୋଇ
ଦିଗପାଳଙ୍କୁ ସଙ୍ଗ କରି
ଅନେକ ପ୍ରକାରେ ବିଚାରି
ନିସ୍ତାର ନ ପାରିଲେ ଚିନ୍ତି
ଚିତ୍ତେ ବହିଲେ ବହୁଭ୍ରାନ୍ତି
ଏମନ୍ତେ କେତେଦିନ ରହି
ପୁଣି ସକଳେ ଭୃତ୍ୟ ହୋଇ
ବିଚାର କଲେ ଏକମତେ
କହିବା ବ୍ରହ୍ମାଙ୍କ ଅଗ୍ରତେ
ଇନ୍ଦ୍ର ନ ଥିଲେ ସୃଷ୍ଟି କାହିଁ
ଆମ୍ଭେ ନ ପାରୁ ସ୍ଥାନେ ରହି
ଲକ୍ଷ୍ମୀ ବିହୀନେ ସୃଷ୍ଟି ନାଶ
ସଂସାର ଘୋରତମ ତ୍ରାସେ
ଏମନ୍ତ ବିଚାରି ସକଳେ
ଶଙ୍କର ସଙ୍ଗେ ଦେବ ବଳେ
ସୁମେରୁ ମଧ୍ୟେ ବ୍ରହ୍ମସଭା
ଯହିଁ ସକଳ ଋଷି ଦେବା
ସେ ସଭାମଧ୍ୟେ ଦେବଗଣେ
ନମିଲେ ବ୍ରହ୍ମାଙ୍କ ଚରଣେ
ଇନ୍ଦ୍ରଙ୍କୁ କରି ଆଗୁସାର
ବୋଇଲେ ଶୁଣ ଦେବବର
ଦୁର୍ବାସା କୋପେ ଇନ୍ଦ୍ର ଦୁଃଖୀ
ଆମ୍ଭେ ସକଳେ ତାହା ଦେଖି
ତ୍ରୈଲୋକ୍ୟ-ଲକ୍ଷ୍ମୀ କେଣେ ଗଲ
ଦୁଃଖ-ତିମିର ପ୍ରକାଶିଲ
ରବି ଶଶାଙ୍କ ହୁତାଶନେ
ତେଜ ନ ଦିଶେ ଲକ୍ଷ୍ମୀହୀନେ
ତ୍ରୈଲୋକ୍ୟ ଲକ୍ଷ୍ମୀ ଇନ୍ଦ୍ରମୂଳେ
ସ୍ୱର୍ଗରେ ନ ରହେ ନିଷ୍ଟଳେ
ଆମ୍ଭେତ ହୋଇଲୁ ଅନାଥ
ଋଷିଦେବତାବେଦନାଥ ! ୧୭,୧୮

ସ ବିଲୋକ୍ୟେନ୍ଦ୍ରବାୟ୍ୱାଦୀନ୍ ନିଃସତ୍ତ୍ୱାନ୍ ବିଗତପ୍ରଭାନ୍ ।
ଲୋକାନମଙ୍ଗଳପ୍ରାୟାନସୁରାନଯଥା ବିଭୁଃ । ୧୯ ।
ସମାହିତେନ ମନସା ସଂସ୍ମରନ୍ ପୁରୁଷଂ ପରମ୍ ।
ଉବାଚୋତ୍ଫୁଲ୍ଲବଦନୋ ଦେବାନ୍ ସ ଭଗବାନ୍ ପରଃ । ୨୦ ।
ଅହଂ ଭବୋ ଯୂୟମଥୋଽସୁରାଦୟୋ ମନୁଷ୍ୟତୀର୍ଯ୍ୟଗ୍ଦ୍ରୁମଘର୍ମଜାତୟଃ ।
ଯସ୍ୟାବତାରାଂଶକଳାବିସର୍ଜିତା ବ୍ରଜାମ ସର୍ବେ ଶରଣଂ ତମବ୍ୟୟମ୍ । ୨୧ ।
ନ ଯସ୍ୟ ବଧ୍ୟୋ ନ ଚ ରକ୍ଷଣୀୟୋ ନୋପେକ୍ଷଣୀୟାଦରଣୀୟପକ୍ଷଃ ।
ତଥାପି ସର୍ଗସ୍ଥିତିସଂଯମାର୍ଥଂ ଧତ୍ତେ ରଜଃସତ୍ତ୍ୱତମାଂସି କାଳେ । ୨୨ ।

---

ସେହି ପରମେଶ୍ୱର ବ୍ରହ୍ମା ଇନ୍ଦ୍ର, ବାୟୁ ପ୍ରଭୃତି ଦେବତାମାନଙ୍କୁ ହୀନବଳ, ହତଶ୍ରୀ, ଲୋକମାନଙ୍କୁ ଅମଙ୍ଗଳ ପ୍ରାୟ ଦେଖିଥିଲେ ଏବଂ ଅସୁରମାନେ ଦେବଗଣଙ୍କ ଅପେକ୍ଷା ଅଧିକ ବଳବୀର୍ଯ୍ୟ ସମ୍ପନ୍ନ ହେବାର ଜାଣି ବିସ୍ମିତ ହୋଇଥିଲେ ।୧୯।

ସର୍ବ ଶକ୍ତିମାନ୍ ବ୍ରହ୍ମା ସମାହିତ ଚିତ୍ତରେ, ହୃଦୟ ମଧ୍ୟରେ ପରମ ପୁରୁଷ ବିଷ୍ଣୁଙ୍କୁ ଧ୍ୟାନ କରି ଉତ୍ଫୁଲ୍ଲ ବଦନରେ ଦେବତାମାନଙ୍କୁ କହିଲେ ।୨୦।

ଶ୍ରୀ ବ୍ରହ୍ମା କହିଲେ :—

ମୁଁ; ମହେଶ, ତୁମ୍ଭେମାନେ, ଅସୁର, ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ସ୍ୱେଦଜ ( ଜରାୟୁଜ, ଅଣ୍ଡଜ, ଉଦ୍ଭିଜ୍ଜ, ସ୍ୱେଦଜ ) ଏମାନ ଯାହାଙ୍କର ଅବତାର ସ୍ୱରୂପ ଏବଂ ଯାହାଙ୍କର ଅଂଶରେ ବ୍ରହ୍ମକଣାରୁ ଉତ୍ପନ୍ନ ଆମ୍ଭେମାନେ ସେହି ଅବ୍ୟୟ ପରମେଶ୍ୱରଙ୍କ ଶରଣାଗତ ହେଉଅଛୁଁ ।୨୧।

ଯେଉଁ ଭଗବାନଙ୍କ ନିକଟରେ କେହି ବଧ୍ୟ ନୁହେଁ, କେହି ରକ୍ଷଣୀୟ ବା ଉପେକ୍ଷଣୀୟ ବା ଆଦରଣୀୟ ନୁହେଁ, ସର୍ବତ୍ର ଯାହାଙ୍କର ସମଭାବ ତଥାପି ସେ ସୃଷ୍ଟି, ସ୍ଥିତି, ପ୍ରଳୟ ନିମିତ୍ତ ଯଥାକାଳରେ ସତ୍ତ୍ୱ, ରଜ, ତମଗୁଣ ଧାରଣ କରିଥାନ୍ତି ।୨୨।

---

ଏମନ୍ତେ ଦେବଙ୍କ ବଚନେ
ଶୁଣିଣ ପଦ୍ମଯୋନି ମନେ
ଦଣ୍ଡେ ରହିଲେ ଛନ୍ନ ହୋଇ
ଦେବଙ୍କୁ ଦୃଷ୍ଟି ବିସ୍ତରଇ
ଏ ଇନ୍ଦ୍ର ଆଦି ଦିଗପାଳେ
ଗଗନ ଧରଣୀ ପାତାଳେ
ଯେତେ ଅଛନ୍ତି ପ୍ରଜାଗଣେ
ତେଜ ନ ଦେଖି ଲକ୍ଷ୍ମୀହୀନେ
ଅଶୁଭ ପ୍ରାୟେତ ଦିଶଇ
ଏମନ୍ତେ ଦୁଃଖ ମନେ ବହି

ପୁରୁଷୋତ୍ତମ ପାଦତଳେ
ଚିତ୍ତନ୍ୟ ସମାଧି ନିଶ୍ଚଳେ
ହରି ପ୍ରସନ୍ନ ଲେଶ ପାଇ
ବୋଲଇ ଦେବଙ୍କୁ ଅନାଇ ।୧୯,୨୦

ବ୍ରହ୍ମୋବାଚ—

ଆନନ୍ଦମନେ ବେଦବର
ଦେବଙ୍କୁ ବୋଲଇ ଉତ୍ତର
ଶୁଣ ସକଳ ଦେବଗଣ
କହିବା ଏଥିର କାରଣ

ବ୍ରହ୍ମା ଶଙ୍କର ଦେବଗଣ
ମନୁଷ୍ୟ ପଶୁ ଲତା ଗୁଳ୍ମ
ଯାହାର ଅଂଶ କଳା ବହି
ଆମ୍ଭେ ସକଳେ ବହୁ ଦେହି
ସେ ହରି ଅବ୍ୟୟ ଈଶ୍ୱର
ଆମ୍ଭେ ଯେ ଶରଣ ତାହାର ।୨୧
ଯାହାର ଶତ୍ରୁ-ମିତ୍ର ନାହିଁ
ରକ୍ଷ ଅରକ୍ଷ ତାର କାହିଁ
ତଥାପି ସୃଷ୍ଟି ସେ ସର୍ଜଇ
ସ୍ୱଭାବେ ତିନି ଗୁଣ କହି

ଅୟଂ ଚ ତସ୍ୟ ସ୍ଥିତିପାଳନକ୍ଷଣଃ ସତ୍ତ୍ୱଂ ଜୁଷାଣସ୍ୟ ଭବାୟ ଦେହିନାମ୍ ।
ତସ୍ମାଦ୍ ବ୍ରଜାମଃ ଶରଣଂ ଜଗଦ୍‌ଗୁରୁଂ ସ୍ୱାନାଂ ସ ନୋ ଧାସ୍ୟତି ଶଂ ସୁରପ୍ରିୟଃ ।୨୩।

ଶ୍ରୀ ଶୁକ ଉବାଚ ।

ଇତ୍ୟାଭାଷ୍ୟ ସୁରାନ୍ ବେଧାଃ ସହ ଦେବୈରରିନ୍ଦମ ।
ଅଜିତସ୍ୟ ପଦଂ ସାକ୍ଷାଜ୍ଜଗାମ ତମସଃ ପରମ୍ ।୨୪।
ତତ୍ରାଦୃଷ୍ଟସ୍ୱରୂପାୟ ଶ୍ରୁତପୂର୍ବାୟ ବୈ ପ୍ରଭୁଃ ।
ସ୍ତୁତିମବ୍ରୂତ ଦୈବୀଭିର୍ଗୀର୍ଭିସ୍ତ୍ୱବହିତେନ୍ଦ୍ରିୟଃ ।୨୫।

---

ଦେହଧାରୀ ଜୀବମାନଙ୍କର ମଙ୍ଗଳ ନିମିତ୍ତ ସତ୍ତ୍ୱଗୁଣାବଲମ୍ବୀ ସେହି ଭଗବାନଙ୍କର ଏହି ସ୍ଥିତି ଓ ପାଳନର ସମୟ, ସୁତରାଂ ଆମ୍ଭେମାନେ ସେହି ଜଗଦ୍‌ଗୁରୁଙ୍କର ଶରଣାପନ୍ନ । ସେ ଦେବପ୍ରିୟ, ସୁତରାଂ ସେ ତାଙ୍କର ଶରଣାଗତ ଆମ୍ଭମାନଙ୍କର ଅବଶ୍ୟ ମଙ୍ଗଳ ବିଧାନ କରିବେ ।୨୩।

ଶ୍ରୀଶୁକ ଦେବ କହିଲେ—

ହେ ଶତ୍ରୁମର୍ଦ୍ଦକ ! ବ୍ରହ୍ମା ଦେବତାମାନଙ୍କୁ ଏହିପରି କହି ସେମାନଙ୍କ ସହିତ ପ୍ରକୃତିର ପରପାରରେ ଅବସ୍ଥିତ କ୍ଷୀରସମୁଦ୍ରର ମଧ୍ୟସ୍ଥିତ ଶ୍ୱେତ ଦ୍ୱୀପକୁ ଗମନ କରିଥିଲେ ।୨୪।

ଶ୍ୱେତ ଦ୍ୱୀପକୁ ଗମନ କରି ସେଠାରେ ସଂଯତ ଚିତ୍ତରେ ବ୍ରହ୍ମା ବୈଦିକ ସ୍ତୁତିବାକ୍ୟ ଦ୍ୱାରା ପୂର୍ବେ ଭଗବାନଙ୍କର ରୂପ ଦେଖି ନ ଥିଲେ ମଧ୍ୟ ଶ୍ରୁତପୂର୍ବ ରୂପ ଓ ସ୍ତୁତିବାକ୍ୟ ଉପରେ ନିର୍ଭର କରି ସ୍ତବ କରିବାକୁ ଲାଗିଲେ ।୨୫।

---

ସୃଷ୍ଟି କରଇ ରଜୋଗୁଣେ
ସତ୍ତ୍ୱେ ପାଳଇ ବିଷ୍ଣୁପଣେ
ତାମସ ଗୁଣେ ସଂହାରଇ
ଅନ୍ତରେ ସର୍ବ ଗୁଣ ବହି
ଏଣୁ ଜଗତ-ଗୁରୁ ପାଦେ
ଶରଣ ପଶ ଅପ୍ରମାଦେ
ତାର ମହିମା ସୁର-ପ୍ରିୟ
ସୁର ରକ୍ଷଣେ ବହି ଦେହ
ଆମ୍ଭ କୁଶଳ ସେ କରିବ
ଅନାଦି ପ୍ରଭୁ ପଦ୍ମନାଭ ।୨୨,୨୩

ଶ୍ରୀଶୁକଉବାଚ—

ଏମନ୍ତ ବୋଲି ପଦ୍ମଯୋନି
ସଙ୍ଗେ ସକଳ ଦେବ ଘେନି
ଆନନ୍ଦେ ଜୟ ଜୟ ନାଦେ
ସର୍ବେ ମିଳିଲେ ବିଷ୍ଣୁପାଦେ
ଯେ ବଇକୁଣ୍ଠ ଗୋପ୍ୟସ୍ଥାନ
ପରମ ଆତ୍ମା ପରଧାମ
ପ୍ରକୃତି ନ ଜାଣଇ ଯାହା
ଯହିଁ ନ ପଶେ ବିଷ୍ଣୁ-ମାୟା

ଅଦୃଷ୍ଟ ଅଶ୍ରୁତ ଭୁବନେ
ଦେବେ ମିଳିଲେ ମହାଶୂନ୍ୟେ
ଯହିଁକି ଜୀବଆତ୍ମା ଗଲେ
ପୁଣି ନ ପଡ଼ନ୍ତି ସଂସାରେ
ବ୍ରହ୍ମା କପୋଳେ କର ଦେଇ
ବୋଲେ ବୈକୁଣ୍ଠ-ନାଥ ଧ୍ୟାୟି
୨୪,୨୫

ଶ୍ରୀ ବ୍ରହ୍ମୋବାଚ ।

ଅବିକ୍ରିୟଂ ସତ୍ତ୍ୱମନନ୍ତମାଦ୍ୟଂ ଗୁହାଶୟଂ ନିଷ୍କଳମପ୍ରତର୍କ୍ୟମ୍ ।
ମନୋଽଗ୍ରଯାନଂ ବଚସା ନିରୁକ୍ତଂ ନମାମହେ ଦେବବରଂ ବରେଣ୍ୟମ୍ ।୨୬।
ବିପଶ୍ଚିତଂ ପ୍ରାଣମନୋଧିୟାତ୍ମନାମର୍ଥେନ୍ଦ୍ରିୟାଭାସମନିଦ୍ରମବ୍ରଣମ୍ ।
ଛାୟାତପୋ ଯତ୍ର ନ ଗୃଧ୍ରପକ୍ଷୌ ତମକ୍ଷରଂ ଖଂ ତ୍ରିଯୁଗଂ ବ୍ରଜାମହେ ।୨୭।
ଅଜସ୍ୟ ଚକ୍ରଂ ତ୍ୱଜୟେର୍ଯ୍ୟମାଣଂ ମନୋମୟଂ ପଞ୍ଚଦଶାରମାଶୁ ।
ତ୍ରିନାଭିବିଦ୍ୟୁଚ୍ଚଳମଷ୍ଟନେମି ଯଦକ୍ଷମାହୁସ୍ତମୃତଂ ପ୍ରପଦ୍ୟେ । ୨୮ ।

---

ଶ୍ରୀ ବ୍ରହ୍ମା କହିଲେ—

ହେ ଦେବ ! ଆପଣ ବିକାରହୀନ, ଅନନ୍ତ, ସତ୍ୟ, ଆଦ୍ୟ, ଅନ୍ତର୍ଯ୍ୟାମୀ, ନିରୁପାଧି, ତର୍କର ଅଗୋଚର, ମନ ଅପେକ୍ଷା ଦ୍ରୁତଗାମୀ ବାକ୍ୟର ଅଗୋଚର, ଶ୍ରେଷ୍ଠ, ପୂଜନୀୟ, ଆପଣଙ୍କୁ ମୁଁ ନମସ୍କାର କରୁଅଛି ।୨୬।

ଯେ ପ୍ରାଣ, ମନ, ବୁଦ୍ଧି ଏବଂ ଆତ୍ମାକୁ ଜାଣେ, ବିଷୟ ଓ ବିଷୟ ଗ୍ରାହକ ଏ ଉଭୟ ରୂପରେ ପ୍ରକାଶିତ, ଅଥଚ ସ୍ୱପ୍ନଦ୍ରଷ୍ଟାରୂପେ ଅଜ୍ଞାନ ରହିତ, ଦୁଃଖ ରହିତ, ଅକ୍ଷୟ ଓ ଆକାଶ ତୁଲ୍ୟ ସର୍ବବ୍ୟାପୀ, ଛାୟା ଓ ଆତପ ତୁଲ୍ୟ ଯାହାଙ୍କର ଅବିଦ୍ୟା ଓ ବିଦ୍ୟା ନାହିଁ, ଯେ ତ୍ରିଯୁଗରେ ଆବିର୍ଭୂତ ମୁଁ ସେହି ଭଗବାନଙ୍କର ଶରଣାପନ୍ନ ହେଲି ।୨୭।

ମାୟା କର୍ତ୍ତୃକ ଚାଳିତ ମନୋମୟ ଦଶେନ୍ଦ୍ରିୟ ଓ ପଞ୍ଚପ୍ରାଣ ଏହି ପଞ୍ଚଦଶ ଅକ୍ଷ, ଶୀଘ୍ରଗାମୀ ସତ୍ତ୍ୱାଦି ଗୁଣତ୍ରୟ ଯାହାଙ୍କର ନାଭିତୁଲ୍ୟ ମଧ୍ୟ ଭାଗରେ ବର୍ତ୍ତମାନ, ବିଦ୍ୟୁତ୍ ତୁଲ୍ୟ ଚଞ୍ଚଳ, ଅଷ୍ଟ ପ୍ରକୃତି ଚକ୍ରନେମି ତୁଲ୍ୟ ଯାହାଙ୍କର ଆବରଣାଦି ଜୀବର ଚକ୍ରବତ୍ ପରିବର୍ତ୍ତମାନ ଦେହାଦିର ଯେ ଅଧିଷ୍ଠାନ ସ୍ୱରୂପ ସେହି ଭଗବାନଙ୍କର ଆମ୍ଭେମାନେ ଶରଣାଗତ ହେଉଁ ।୨୮।

---

ଶ୍ରୀ ବ୍ରହ୍ମୋବାଚ—

ସତ୍ୟ ଅନନ୍ତ ଅବିକାର
ଯେ ନିରଞ୍ଜନ ନିର୍ବିକାର
ନିଜ ବିଳୁତ ଅଗୋଚର
ଜନ୍ତୁଙ୍କ ହୃଦେ ଯାର ଘର
ମନରୁ ବେଗବନ୍ତ ଯେହି
ମନ ବଚନ ଭେଦ ନାହିଁ
ବରେଣ୍ୟ ଦେବବର ପାଦେ
ଆମ୍ଭେ ମେଲଇଁ ଅପ୍ରମାଦେ ।୨୬।

ସ୍ୱଭାବେ ମନ ପ୍ରାଣ ବୁଦ୍ଧି
ଏ ଯହିଁ ନ ପାରନ୍ତି ଭେଦି
ଇନ୍ଦ୍ରିୟଗଣେ ଯେ ଅଦୃଶ୍ୟ
ଉଲିଦ୍ର ଭାବେ ଅବିନାଶ
ଛାୟା ଆତପେ ଯେ ନ ମିଶେ
ଅକ୍ଷୟ ଶୂନ୍ୟେ ପରକାଶେ
ତ୍ରିଯୁଗ ରୂପ ଯେ ବୋଲାଇ
ଆମ୍ଭେ ଶରଣ ଗଲୁ ତହିଁ । ୨୭ ।

ଏ ଜୀବ ଚକ୍ର ରୂପ ଧରେ
ମାୟାରେ ମଣ୍ଡଳେ ପଞ୍ଚରେ
ତ୍ରିଗୁଣେ ତ୍ରିନାଭି ତାହାର
ସେ ଚକ୍ରେ ପଞ୍ଚଦଶ ଅର
ଦଶ ଇନ୍ଦ୍ରିୟ ପଞ୍ଚପ୍ରାଣ
ଅଷ୍ଟ ପ୍ରକୃତି ନେମି ଜାଣ
ସେ ଚକ୍ର ଅକ୍ଷ ଆତ୍ମାରୂପୀ
ଯେ ଆଦି ଅନ୍ତ ମଧ୍ୟେ ବ୍ୟାପି
ସେ ସତ୍ୟ ସ୍ୱରୂପ ଚରଣେ
ଆମ୍ଭେ ଯେ ପଶିଲୁଁ ଶରଣେ ।୨୮

ଯ ଏକବର୍ଣ୍ଣଂ ତମସଃ ପରଂ ତଦଲୋକମବ୍ୟକ୍ତମନନ୍ତପାରମ୍ ।
ଆଶାଞ୍ଚକାରୋପସୁପର୍ଣ୍ଣମେନମୁପାସତେ ଯୋଗରଥେନ ଧୀରାଃ ।୨୯।
ନ ଯସ୍ୟକଶ୍ଚାତିତିତର୍ତ୍ତିମାୟାଂ ଯୟା ଜନୋ ମୁହ୍ୟତି ବେଦନାର୍ଥମ୍ ।
ତଂ ନିର୍ଜିତାତ୍ମାତ୍ମଗୁଣଂ ପରେଶଂ ନମାମ ଭୂତେଷୁ ସମଂ ଚରନ୍ତମ୍ ।୩୦।
ଇମେ ବୟଂ ଯତ୍ପ୍ରିୟୟୈବ ତନ୍ୱା ସତ୍ତ୍ୱେନ ସୃଷ୍ଟା ବହିରନ୍ତରାବିଃ ।
ଗତିଂ ନ ସୂକ୍ଷ୍ମାମୃଷୟଶ୍ଚ ବିଦ୍ମହେ କୁତୋଽସୁରାଦ୍ୟା ଇତରପ୍ରଧାନାଃ ।୩୧।
ପାଦୌ ମହୀୟଂ ସ୍ୱକୃତୈବ ଯସ୍ୟ ଚତୁର୍ବିଧୋ ଯତ୍ର ହି ଭୂତସର୍ଗଃ ।
ସବୈ ମହାପୁରୁଷ ଆତ୍ମତନ୍ତ୍ର ପ୍ରସୀଦତାଂ ବ୍ରହ୍ମ ମହାବିଭୂତିଃ ।୩୨।

---

ଯେଉଁ ଭଗବାନ୍ ପ୍ରକୃତିର ପରପାରରେ ଲୋକାତୀତ, ଅବ୍ୟକ୍ତ, ଦେଶ, କାଳ ଓ ଆବରଣ ରହିତ, ଏକମାତ୍ର ଜ୍ଞାନ ସ୍ୱରୂପ, ଗରୁଡ଼ୋପରି ଉପବିଷ୍ଟ ବିବେକମାନେ ଜ୍ଞାନଯୋଗ ରଥରେ ଆରୋହଣ କରି ଯାହାଙ୍କୁ ଉପାସନା କରନ୍ତି; ଆମ୍ଭେମାନେ ସେହି ଭଗବାନଙ୍କୁ ନମସ୍କାର କରୁଅଛୁଁ ।୨୯।

ଯେଉଁ ଭଗବାନଙ୍କର ମାୟା ଅତିକ୍ରମ କରିବାକୁ କେହି ସମର୍ଥ ନୁହେଁ, ଯାହାଙ୍କର ମାୟାରେ ସମସ୍ତ ଲୋକ ମୁଗ୍ଧ ଏବଂ ନିଜକୁ ଜାଣିପାରନ୍ତି ନାହିଁ, ଯେ ସେହି ମାୟା ଓ ମାୟା ଗୁଣକୁ ଜୟ କରିଅଛନ୍ତି, ଯେ ସର୍ବଭୂତରେ ସମ ଭାବରେ ଅବସ୍ଥିତ; ସେହି ପରମ ପୁରୁଷଙ୍କୁ ଆମ୍ଭେମାନେ ପ୍ରଣାମ କରୁଅଛୁଁ ।୩୦।

ଆମ୍ଭେମାନେ ବ୍ରହ୍ମାଦି ଦେବଗଣ ଓ ଋଷିଗଣ ଯାହାଙ୍କର ପ୍ରିୟମୂର୍ତ୍ତି ସ୍ୱରୂପ, ସତ୍ତ୍ୱଗୁଣ ଦ୍ୱାରା ସୃଷ୍ଟ ହୋଇ ମଧ୍ୟ ବାହାରେ ଓ ଅନ୍ତରରେ ସତ୍ତ୍ୱ ଓ ପ୍ରକାଶରୂପେ ବିରାଜମାନ ଥିଲେ ମଧ୍ୟ ନିରୁପାଧି ସ୍ୱରୂପ ତାହାଙ୍କର ସୂକ୍ଷ୍ମଗତି ଜାଣି ନ ପାରନ୍ତି, ରଜ ଓ ତମଗୁଣ ପ୍ରଧାନ ଅସୁରମାନେ ତାହାଙ୍କୁ କିପରି ବା ଜାଣିବେ ? ।୩୧।

ଯେଉଁ ପୃଥିବୀରେ ଜରାୟୁଜ ପ୍ରଭୃତି ଚାରି ପ୍ରକାର ପ୍ରାଣୀ ସୃଷ୍ଟ ହୋଇଅଛନ୍ତି, ନିଜ କର୍ତ୍ତୃକ ସୃଷ୍ଟ ଏହି ପୃଥିବୀ ଯାହାଙ୍କର ଚରଣଦ୍ୱୟ; ସେହି ମହାପୁରୁଷ ସ୍ୱାଧୀନ ବ୍ରହ୍ମରୂପୀ, ସର୍ବ ଐଶ୍ୱର୍ଯ୍ୟ ସମ୍ପନ୍ନ ସେହି ଭଗବାନ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ ।୩୨।

---

ଯାହାର ଜ୍ୟୋତି ପରକାଶ
ନିର୍ମ୍ମଳ କରେ ଦଶଦିଶ
ଯୋଗିଏ ଯୋଗ-ମାର୍ଗେ ଥାଇ
କାଳ ହରନ୍ତି ଯାରେ ଧ୍ୟାଇ
କେହି ଯାହାର ମାୟାଭ୍ରମ
ତରିଣେ ନ ହୁଅନ୍ତି କ୍ଷମ
ଯା ମାୟା ଜଗତେ ସଂସାରେ
ଅନନ୍ତ ନାନା ଶକ୍ତି ଧରେ
ଜିତ-ମାୟା ମାୟାଗୁଣ
ପରମ ପୁରୁଷ ପୁରାଣ
ଜନ୍ତୁଙ୍କ ଦେହେ ସମ ରୂପୀ
ତେତେ ସଥିରେ ସର୍ବବ୍ୟାପୀ
ତାର ଚରଣେ ନମସ୍କାର
ଯେ ପ୍ରଭୁ ପରମ ଈଶ୍ୱର ।୨୯,୩୦।
ଏ ଦେବଗଣ ବ୍ରହ୍ମା ଆଦି
ଯେ କ୍ରୀଡ଼ା ଅର୍ଥରେ ସମ୍ପାଦି
ସତ୍ତ୍ୱ ସଂଯୋଗେ ସୃଷ୍ଟି କରି
ତହିଁ ଯେ ସୂକ୍ଷ୍ମରୂପ ଧରି
ଦିଶଇ ଅନ୍ତର ବାହ୍ୟେ ଯେ
ପ୍ରଦୀପ ଯେହ୍ନେ ଗୃହ ମାଝେ
ଯାହାର ସୂକ୍ଷ୍ମ ଗତି ଆମ୍ଭେ
ଜାଣି ନ ପାରୁ ଜ୍ଞାନ ଦମ୍ଭେ
ସଂସାର ମଧ୍ୟେ ଛନ୍ତି ଯେତେ
ସେ ଅବା ଜାଣିବେ କେମନ୍ତେ ?
ଏ ମହୀ ଯାର ଦେନି ପାଦ
ସ୍ୱକୃତ ପ୍ରାଣୀ ଚତୁର୍ବିଧ
ଯେ କର୍ମ୍ମ ଗହ୍ୱରେ ସଥିର
ଶରୀର ବନ୍ଧେ ନରହରି
ମହା-ପୁରୁଷ ଆତ୍ମା ତନ୍ତ୍ର
ମହା ବିଭୂତି ବ୍ରହ୍ମ ତନ୍ତ୍ର

ଅମ୍ଭସ୍ତୁ ଯଦ୍ରେତ ଉଦାରବୀର୍ଯ୍ୟଂ ସିଧ୍ୟନ୍ତି ଜୀବନ୍ତ୍ୟୁତ ବର୍ଦ୍ଧମାନାଃ ।
ଲୋକା ଯତୋଽଥାଖିଳ ଲୋକପାଳାଃ ପ୍ରସୀଦତାଂ ନଃ ସ ମହାବିଭୂତିଃ ।୩୩।
ସୋମଂ ମନୋ ଯସ୍ୟ ସମାମନନ୍ତି ଦିବୌକସାଂ ଯୋ ବଳମନ୍ଧ ଆୟୁଃ ।
ଈଶୋ ନଗାନାଂ ପ୍ରଜନଃ ପ୍ରଜାନାଂ ପ୍ରସୀଦତାଂ ନଃ ସ ମହାବିଭୂତିଃ ।୩୪।
ଅଗ୍ନିର୍ମୁଖଂ ଯସ୍ୟ ତୁ ଜାତବେଦା ଜାତଃ କ୍ରିୟାକାଣ୍ଡନିମିତ୍ତଜନ୍ମା ।
ଅନ୍ତଃସମୁଦ୍ରେଽନୁପଚନ୍ ସ୍ୱଧାତୂନ୍ ପ୍ରସୀଦତାଂ ନଃ ସ ମହାବିଭୂତିଃ । ୩୫ ।
ଯଚ୍ଚକ୍ଷୁରାସୀତ୍ ତରଣିର୍ଦ୍ଦେବଯାନଂ ତ୍ରୟୀମୟୋ ବ୍ରହ୍ମଣ ଏଷ ଧିଷ୍ଣ୍ୟଃ ।
ଦ୍ୱାରଞ୍ଚ ମୁକ୍ତେରମୃତଞ୍ଚ ମୃତ୍ୟୁଃ ପ୍ରସୀଦତାଂ ନଃ ସ ମହାବିଭୂତିଃ ।୩୬ ।

---

ଯେଉଁ ଜଳରୁ ଅଖିଳ ଲୋକ ଓ ଲୋକପାଳଗଣ ଉତ୍ପନ୍ନ ଏବଂ ଯହିଁରେ ଜୀବିତ ଓ ବୃଦ୍ଧିପ୍ରାପ୍ତ ସେହି ମହାଶକ୍ତି ସମ୍ପନ୍ନଜଳ ଯାହାଙ୍କର ରେତ ବା ବୀର୍ଯ୍ୟ ସେହି ମହା ଐଶ୍ୱର୍ଯ୍ୟଶାଳୀ ପରମେଶ୍ୱର ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହୁଅନ୍ତୁ ।୩୩।

ଯେଉଁ ଚନ୍ଦ୍ର ଦେବତାମାନଙ୍କର ଅନ୍ନ, ଆୟୁ ଏବଂ ବଳ, ଯେ ବୃକ୍ଷ ସମୂହର ସଂବର୍ଦ୍ଧକ ଏବଂ ପ୍ରଜାମାନଙ୍କର ବୃଦ୍ଧିର କାରଣ ସ୍ୱରୂପ, ପଣ୍ଡିତମାନେ ସେହି ଚନ୍ଦ୍ରଙ୍କୁ ଯାହାଙ୍କର ମନ ବୋଲି କୀର୍ତ୍ତନ କରନ୍ତି; ସେହି ମହା ବିଭୂତିଶାଳୀ ଭଗବାନ୍ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହୁଅନ୍ତୁ । ୩୪ ।

ଯେଉଁ ଅଗ୍ନିରୁ ବେଦରୂପ ଧନ ଉତ୍ପନ୍ନ, କ୍ରିୟାକାଣ୍ଡ ଅର୍ଥାତ୍ ବେଦ ପ୍ରତିପାଦ୍ୟ କର୍ମ ସମ୍ପାଦନ ନିମିତ୍ତ ଯାହାଙ୍କ ଜନ୍ମ, ଉଦର ମଧ୍ୟରେ ଯେଉଁ ଅଗ୍ନି ଅନ୍ନାଦି ପରିପାକ କରୁଅଛି, ସେହି ଅଗ୍ନି ଯାହାଙ୍କର ମୁଖ ସେହି ଭଗବାନ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହୁଅନ୍ତୁ ।୩୫।

ଯେଉଁ ସୂର୍ଯ୍ୟ ଦେବଯାନ ଅର୍ଥାତ୍ ଅର୍ଚ୍ଚିରାଦି ମାର୍ଗର ଦେବତା ତ୍ରୟୀମୟ ଅର୍ଥାତ୍ ବେଦମୟ ଓ ବ୍ରହ୍ମର ଉପାସନା ସ୍ଥାନ, ମୁକ୍ତିରଦ୍ୱାର ଓ ଅମୃତସ୍ୱରୂପ ଏବଂ କାଳରୂପୀ ସେହି ସୂର୍ଯ୍ୟ ଭଗବାନଙ୍କ ଚକ୍ଷୁ ବୋଲି ପ୍ରସିଦ୍ଧ, ସେହି ମହା ବିଭୂତିଶାଳୀ ପରମେଶ୍ୱର ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହୁଅନ୍ତୁ ।୩୬।

---

ପ୍ରସନ୍ନ ହେଉ ସେ ଆମ୍ଭଙ୍କୁ
ଶରଣ ପଶିଲୁ ତାହାଙ୍କୁ ।୩୧, ୩୨
ଜଳ ଯାହାର ବୀର୍ଯ୍ୟ ହୋଇ
ସ୍ୱଭାବେ ତାର ତେଜ ବହି
ଅଖିଳ ଲୋକ ଲୋକପାଳେ
ତିନ୍ନି ଭୁବନ ଯାର ବଳେ
ଜାତ ସହିଁଇ ଜୀବରୂପେ
ଯେ ହ୍ରାସ ବୃଦ୍ଧି ଅନୁରୂପେ
ମହା ବିଭୂତ ବ୍ରହ୍ମ ଯେହୁ
ଆମ୍ଭ ବିଷୟେ ଦୟା ବହୁ ।୩୩।

ସୋମ ଯାହାର ମନ ହୋଏ
ଦେବଙ୍କ ଅନ୍ନ ଆୟୁ ବହେ
ସ୍ଥାବରଙ୍କର ଯେ ଈଶ୍ୱର
ପ୍ରଜାଙ୍କ ରକ୍ଷା ବୃଦ୍ଧି କର
ମହା ବିଭୂତ ବ୍ରହ୍ମରୂପ
ସେ ହରି ହରନ୍ତୁ ଆମ୍ଭ ତାପ ।୩୪।
ଯାହାର ମୁଖୁଁ ଅଗ୍ନି ଜାତ
ତେଜେ ପ୍ରତାପଇ ଜଗତ
କ୍ରିୟାକାଣ୍ଡ ନିମିତ୍ତେ ଜନ୍ମ
ଯେ ସର୍ବ ସାଧେ ସିଦ୍ଧ କର୍ମ

ଅନ୍ତଃସମୁଦ୍ରେ ଅଗ୍ନି ବହି
ଆହାର ରୂପେ ଯେ ଭୁଞ୍ଜଇ ।୩୫
ଯାହାର ଚକ୍ଷୁ ମାର୍ତ୍ତଣ୍ଡ
ତେଜେ ପ୍ରକାଶଇ ବ୍ରହ୍ମାଣ୍ଡ
ଯେ ଦେବଯାନ ତ୍ରୟୀମୟ
ବ୍ରହ୍ମାର ସ୍ଥାନ ଶୁଦ୍ଧ ଦେହ
ମୁକ୍ତିର ଦ୍ୱାର ଯେ ବୋଲଇ
ଅମୃତ ମୃତ୍ୟୁ ରୂପ ହୋଇ ।୩୬।

ପ୍ରାଣାଦଭୂଦ୍‌ଯସ୍ୟ ଚରାଚରାଣାଂ ପ୍ରାଣଃ ସହୋ ବଳମୋଜଶ୍ଚ ବାୟୁଃ ।
ଅନ୍ୱାସ୍ମ ସମ୍ରାଜମିବାନୁଯାଂ ବୟଂ ପ୍ରସୀଦତାଂ ନଃ ସ ମହାବିଭୂତିଃ । ୩୭ ।
ଶ୍ରୋତ୍ରାଦ୍ଦିଶୋ ଯସ୍ୟ ହୃଦଶ୍ଚ ଖାନି ପ୍ରଜଜ୍ଞିରେ ଖଂ ପୁରୁଷସ୍ୟ ନାଭ୍ୟାଃ ।
ପ୍ରାଣେନ୍ଦ୍ରିୟାତ୍ମାସୁଶରୀରକେତଃ ପ୍ରସୀଦତାଂ ନଃ ସ ମହାବିଭୂତିଃ । ୩୮ ।
ବଳାନ୍ମହେନ୍ଦ୍ରସ୍ତ୍ରିଦଶାଃ ପ୍ରସାଦାନ୍ମନ୍ୟୋର୍ଗିରିଶୋ ଧିଷଣାଦ୍‌ବିରିଞ୍ଚଃ ।
ଖେଭ୍ୟସ୍ତୁ ଛନ୍ଦାଂସ୍ୟୃଷୟୋ ମେଢ୍ରତଃ କଃ ପ୍ରସୀଦତାଂ ନଃ ସ ମହାବିଭୂତିଃ । ୩୯
ଶ୍ରୀର୍ବକ୍ଷସଃ ପିତରଶ୍ଛାୟୟାସନ୍ ଧର୍ମ୍ମଃ ସ୍ତନାଦିତରଃ ପୃଷ୍ଠତୋଽଭୂତ୍ ।
ଦ୍ୟୌର୍ୟସ୍ୟ ଶୀର୍ଷ୍ଣୋଽପ୍ସରସୋ ବିହାରାତ୍ ପ୍ରସୀଦତାଂ ନଃ ସ ମହାବିଭୂତିଃ । ୪୦ ।

---

ଆମ୍ଭେମାନେ ଯେଉଁ ଭଗବାନଙ୍କୁ ସମ୍ରାଟ ତୁଲ୍ୟ ଅନୁଗମନ କରୁଥାଉ, ଯେ ସ୍ଥାବର ଜଙ୍ଗମାତ୍ମକ, ପ୍ରାଣିମାନଙ୍କର ପ୍ରାଣ, ମନ, ଶକ୍ତି ଓ ଇନ୍ଦ୍ରିୟ ସମୂହର ଶକ୍ତିସ୍ୱରୂପ ତାହା ଯେଉଁ ଭଗବାନଙ୍କର ପ୍ରାଣରୁ ଉତ୍ପନ୍ନ ହୋଇଅଛି; ସେହି ମହାବିଭୂତିଶାଳୀ ପରମେଶ୍ୱର ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ ।୩୭।

ଯେଉଁ ପରମ ପୁରୁଷଙ୍କର କର୍ଣ୍ଣରୁ ଦିକ୍‌ସମୂହ, ହୃଦୟରୁ ଦେହଗତ ଛିଦ୍ର ବା ଇନ୍ଦ୍ରିୟମାନ ଏବଂ ନାଭିରୁ ପ୍ରାଣ, ଇନ୍ଦ୍ରିୟ, ମନ ଓ ଶରୀରର ଆଶ୍ରୟଭୂତ ଆକାଶ ଉତ୍ପନ୍ନ ସେହି ମହାବିଭୂତିଶାଳୀ ପରମେଶ୍ୱର ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ ।୩୮।

ଯେଉଁ ଭଗବାନଙ୍କର ବଳରୁ ମହେନ୍ଦ୍ର, ପ୍ରସନ୍ନତାରୁ ଦେବଗଣ; କ୍ରୋଧରୁ ରୁଦ୍ର; ବୁଦ୍ଧିରୁ ବ୍ରହ୍ମା, ଦେହସ୍ଥିତ ଛିଦ୍ରମାନଙ୍କରୁ ବେଦମାନ ଓ ଋଷି ସମୂହ, ମେଢ୍ରରୁ ପ୍ରଜାପତି ଉତ୍ପନ୍ନ ହୋଇଥିଲେ ସେହି ମହାବିଭୂତିଶାଳୀ ଭଗବାନ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ ।୩୯ ।

ଯାହାଙ୍କର ବକ୍ଷ ସ୍ଥଳରୁ ଲକ୍ଷ୍ମୀ, ଛାୟାରୁ ପିତୃଗଣ, ସ୍ତନରୁ ଧର୍ମ, ପୃଷ୍ଠରୁ ଅଧର୍ମ; ମସ୍ତକରୁ ସ୍ୱର୍ଗ ବିହାରରୁ ଅପ୍‌ସରାମାନେ ଉତ୍ପନ୍ନ, ସେହି ମହାବିଭୂତିଶାଳୀ ଭଗବାନ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ । ୪୦ ।

---

ଚରାଚରଙ୍କ ଦେହେ ପ୍ରାଣ
ଯେ କରେ ପ୍ରାଣୀ ପରିତ୍ରାଣ
ପ୍ରକାଶେ ସହ ଓଜ ବଳ
ଯାର ବିହାର ଏ ଶରୀରେ ।୩୭।
ଯାର ଶ୍ରବଣ ଅଷ୍ଟ ଦିଶ
ହୃଦୟ ପରମ ଆକାଶ
ଯାହାର ନାଭି ଅନ୍ତରୀକ୍ଷ
ଶିର ଶୋଭିତ ସ୍ୱର୍ଗଦେଶ
ପ୍ରାଣ ଇନ୍ଦ୍ରିୟ ଆତ୍ମା ହେତୁ
ଯାର ପ୍ରସନ୍ନେ କ୍ଷେମ ତତୁ ।୩୮।

ତ୍ରିଦଶ୍ୟ ଦେବଙ୍କର ନାଥ
ଇନ୍ଦ୍ର ଯାହାର ବଳୁଁ ଜାତ
ଯାହା ପ୍ରସାଦୁ ଦେବେ ହୋନ୍ତି
କ୍ରୋଧରୁ ହୁଏ ଶମ୍ଭୁପତି
ବୁଦ୍ଧିରୁ ବ୍ରହ୍ମା ଜାତ ହୋଏ
ଲୋକେ ପ୍ରକାଶ ଯାର ଦେହେ
ଇନ୍ଦ୍ରିୟ ଛିଦ୍ରୁ ଜାତ ଛନ୍ଦେ
ମେଢ୍ରେ ପ୍ରଜାପତି ଆନନ୍ଦେ ।୩୯ ।
କମଳା ଯାର ବକ୍ଷସ୍ଥଳ
ଛାୟା ସମ୍ଭବ ପିତୃକୁଳ

ଧର୍ମ୍ମ ଉଦ୍ଭବ ସ୍ତନ ଯୁଗେ
ଅଧର୍ମ୍ମ ଯାର ପୃଷ୍ଠ ଭାଗେ
ସ୍ୱର୍ଗ ଯା ଶିରୁ ଉତପନ୍ନ
ବିହାରୁ ଅପସରା ଗଣ
ସେ ମହାବିଭୂତି ଶରଣ
ଆମ୍ଭଙ୍କୁ କରୁ ପରିତ୍ରାଣ । ୪୦ ।

ବିପ୍ରୋ ମୁଖାଦ୍‌ବ୍ରହ୍ମ ଚ ଯସ୍ୟ ଗୁହ୍ୟଂ ରାଜନ୍ୟ ଆସୀଦ୍‌ଭୁଜୟୋର୍ବଳଞ୍ଚ ।
ଉର୍ବୋର୍ବିଡୋଜୋଽଙ୍ଘ୍ରିରବେଦଶୂଦ୍ରୌ ପ୍ରସୀଦତାଂ ନଃ ସ ମହାବିଭୂତିଃ ।୪୧।
ଲୋଭୋଽଧରାତ୍ ପ୍ରୀତିରୁପର୍ଯ୍ୟଭୂଦ୍‌ଦ୍ୟୁତିର୍ନସ୍ତଃ ପଶବ୍ୟଃ ସ୍ପର୍ଶେନ କାମଃ ।
ଭ୍ରୁବୋର୍ଯମଃ ପକ୍ଷ୍ମଭବସ୍ତୁ କାଳଃ ପ୍ରସୀଦତାଂ ନଃ ସ ମହାବିଭୂତିଃ ।୪୨।
ଦ୍ରବ୍ୟଂ ବୟଃ କର୍ମ୍ମ ଗୁଣାନ୍ ବିଶେଷଂ ଯଦ୍‌ଯୋଗମାୟାମହିତାଂ ବଦନ୍ତି ।
ଯଦ୍ଦୁର୍ବିଭାବ୍ୟଂ ପ୍ରବୁଧାପବାଧଂ ପ୍ରସୀଦତାଂ ନଃ ସ ମହାବିଭୂତିଃ ।୪୩।
ନମୋଽସ୍ତୁ ତସ୍ମା ଉପଶାନ୍ତଶକ୍ତୟେ ସ୍ୱାରାଜ୍ୟଲାଭପ୍ରତିପୂରିତାତ୍ମନେ ।
ଗୁଣେଷୁ ମାୟାରଚିତେଷୁ ବୃତ୍ତିଭିର୍ନ ସଜ୍ଜମାନାୟ ନଭସ୍ୱଦୂତୟେ ।୪୪।

---

ଯେଉଁ ଭଗବାନଙ୍କର ମୁଖରୁ ବ୍ରାହ୍ମଣ ଏବଂ ପରମଗୁହ୍ୟ ବେଦ, ଭୁଜ ଦ୍ୱୟରୁ କ୍ଷତ୍ରିୟ ଏବଂ ବଳ ଉରୁ ଦ୍ୱୟରୁ ବୈଶ୍ୟ ଓ ନୈପୁଣ୍ୟ ଏବଂ ପଦଦ୍ୱୟରୁ ଶୁଦ୍ର ଓ ସେବାବୃତ୍ତି ଉତ୍ପନ୍ନ । ସେହି ମହାବିଭୂତିଶାଳୀ ପରମେଶ୍ୱର ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ ।୪୧।

ଯେଉଁ ଭଗବାନଙ୍କର ଅଧରରୁ ଲୋଭ, ଉତ୍ତରୋଷ୍ଠରୁ ପ୍ରୀତି, ନାସିକାରୁ କାନ୍ତି, ସ୍ପର୍ଶରୁ ପଶୁଗଣଙ୍କର ହିତକର କାର୍ଯ୍ୟ, ଭ୍ରୂମଧ୍ୟରୁ ଯମ ଏବଂ ପକ୍ଷ୍ମରୁ କାଳ ଉତ୍ପନ୍ନ । ସେହି ମହାବିଭୂତିଶାଳୀ ପରମେଶ୍ୱର ଆମ୍ଭମାନଙ୍କୁ ପ୍ରସନ୍ନ ହେଉନ୍ତୁ ।୪୨।

ଯେ ଦୁର୍ବୋଧ ଓ ଜ୍ଞାନୀମାନଙ୍କ କର୍ତ୍ତୃକ ପରିତ୍ୟଜ୍ୟ ଦ୍ରବ୍ୟ ବୟସ, କର୍ମ, ଗୁଣ ଓ ଲୌକିକ ପ୍ରପଞ୍ଚ ପ୍ରଭୃତି ଯେଉଁ ଭଗବାନଙ୍କର ଯୋଗମାୟା, ବିହିତ ବୋଲି କଥିତ ସେହି ମହାବିଭୂତିଶାଳୀ ପରମେଶ୍ୱର ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ ।୪୩।

ଉପଦ୍ରବ ରହିତ, ସମ୍ବିଦାଦି ଯାହାଙ୍କର ଅନ୍ତଃସ୍ଥିତା ଶକ୍ତି, ନିଜର ରାଜ୍ୟଲାଭ ନିମିତ୍ତ ଯେ ନିଜାଂଶରେ ବିବିଧ ମୂର୍ତ୍ତି ଧାରଣ କରନ୍ତି; ଯେ ମାୟା ରଚିତ ଗୁଣ ସମୂହରେ ଦର୍ଶନାଦି ବୃତ୍ତିଦ୍ୱାରା ନିରାସକ୍ତ ଓ ବାୟୁ ତୁଲ୍ୟ ସୃଷ୍ଟ୍ୟାଦି ଲୀଳାସମ୍ପନ୍ନ, ସେହି ଭଗବାନଙ୍କୁ ଆମ୍ଭେମାନେ ନମସ୍କାର କରୁଅଛୁ ।୪୪।

---

ବିପ୍ର ଯାହାର ମୁଖୁଁ ଜାତ
ବ୍ରହ୍ମ ନିର୍ମାଣ ଗୁହ୍ୟ ତତ୍ତ୍ୱ
କ୍ଷତ୍ରିୟ ଭୁଜୁଁ ଜନ୍ମବଳ
ଉରୁ ସମ୍ଭବ ବୈଶ୍ୟ କୁଳ
ଶୂଦ୍ର ଚରଣୁଁ ଉତପତି
ଯେ ବ୍ରହ୍ମ ପରମ ବିଭୂତି ।୪୧।

ଉପର ଓଷ୍ଠୁ ଲୋଭ ଜାତ
ଅଧରୁ କ୍ରୋଧ ଯେ ସମ୍ଭୂତ
ସ୍ପର୍ଶେ କାମର ସମ୍ଭବ
ଯମ ଯାହାର ଭ୍ରୂରୁ ଯୁଗ
କାଳ ସମ୍ଭବ ପକ୍ଷ୍ମ ଦେଶେ
କରାଳ ଦଶେ ବେନି ପାଶେ ।୪୨

ଦ୍ରବ୍ୟ ବୟସ କର୍ମଗୁଣ
ଯା ମାୟା ପ୍ରକାଶ ଲକ୍ଷଣ
ଯେ ଉପଶାନ୍ତ ଶକ୍ତି ବହେ
ଆମ୍ଭେ ଯେ ନମୁଁ ତାର ପାଏ
ସ୍ୱରାଜ୍ୟ ଲାଭେ ଯେ ପୂରିତ
ମାୟା ରଚିତ ଗୁଣେ ସ୍ଥିତ ।୪୩,୪୪

ସ ତ୍ୱଂ ନୋ ଦର୍ଶୟାତ୍ମାନୋମସ୍ମତ୍‌କରଣଗୋଚରମ୍ ।
ପ୍ରପନ୍ନାନାଂ ଦିଦୃକ୍ଷୂଣାଂ ସସ୍ମିତଂ ତେ ମୁଖାମ୍ବୁଜମ୍ । ୪୫ ।
ତୈସ୍ତୈଃ ସ୍ୱେଚ୍ଛାଭୂତୈ ରୂପୈଃ କାଳେ କାଳେ ସ୍ୱୟଂ ବିଭୋ ।
କର୍ମ୍ମ ଦୁର୍ବିସହଂ ଯନ୍ନୋ ଭଗବାଂସ୍ତତ୍କରୋତି ହି । ୪୬ ।
କ୍ଲେଶଭୂର୍ଯ୍ୟଳ୍ପସାରାଣି କର୍ମାଣି ବିଫଳାନି ବା ।
ଦେହିନାଂ ବିଷୟାର୍ତ୍ତାନାଂ ନ ତଥୈବାର୍ପିତଂ ତ୍ୱୟି । ୪୭ ।
ନାବମଃ କର୍ମ କଳ୍ପୋଽପି ବିଫଳାୟେଶ୍ୱରାର୍ପିତଃ ।
କଳ୍ପତେ ପୁରୁଷସ୍ୟୈଷ ସ ହ୍ୟାତ୍ମା ଦୟିତୋ ହିତଃ । ୪୮ ।
ଯଥା ହି ସ୍କନ୍ଧଶାଖାନାଂ ତରୋର୍ମୂଳାବସେଚନମ୍ ।
ଏବମାରାଧନଂ ବିଷ୍ଣୋଃ ସର୍ବେଷାମାତ୍ମନଶ୍ଚ ହି । ୪୯ ।
ନମସ୍ତୁଭ୍ୟମନନ୍ତାୟ ଦୁର୍ବିତର୍କ୍ୟାତ୍ମକର୍ମ୍ମଣେ ।
ନିର୍ଗୁଣାୟ ଗୁଣେଶାୟ ସତ୍ତ୍ୱସ୍ଥାୟ ଚ ସାମ୍ପ୍ରତମ୍ । ୫୦ ।

---

ହେ ମହାବିଭୂତିଶାଳୀ ! ଆପଣଙ୍କ ମୁଖପଦ୍ମ ଦର୍ଶନାକାଙ୍କ୍ଷୀ, ଶରଣାଗତ ଆମ୍ଭମାନଙ୍କୁ ଅନୁଗ୍ରହ ପୂର୍ବକ ଆମ୍ଭମାନଙ୍କର ଚକ୍ଷୁରାଦି ଇନ୍ଦ୍ରିୟ ଗୋଚର ହୋଇ ସ୍ୱୟଂ ଆତ୍ମ ପ୍ରକାଶ କର ।୪୫।

ଯେତେବେଳେ ଯେଉଁକର୍ମ ଆମ୍ଭମାନଙ୍କର ଦୁଃସାଧ୍ୟ ହୁଏ ଆପଣ ଯୁଗେଯୁଗେ ସ୍ୱଇଚ୍ଛାରେ ନୃସିଂହାଦି ଅବତାରରେ ସ୍ୱୟଂ ସେହି କର୍ମମାନ ସମ୍ପାଦନ କରିଅଛନ୍ତି ।୪୬।

ବିଷୟାସକ୍ତି ଦ୍ୱାରା ଦୁଃଖଗ୍ରସ୍ତ, ଆର୍ତ୍ତ, ଦେହିମାନଙ୍କର କର୍ମ ଯେପରି ବହୁ କ୍ଲେଶପ୍ରଦ ଓ ସାମାନ୍ୟ ଫଳଦାୟକ, ଭକ୍ତମାନଙ୍କର ଆପଣଙ୍କଠାରେ ଅର୍ପିତ ନିଷ୍କାମ କର୍ମ ସେପରି ନୁହେଁ ।୪୭।

କର୍ମାଂଶ ମଧ୍ୟ ଈଶ୍ୱରଙ୍କଠାରେ ଅର୍ପିତ ହେଲେ ତାହା ବିଫଳ ହୁଏ ନାହିଁ । ଯେହେତୁ ସେହି ଈଶ୍ୱର ଜୀବର ଆତ୍ମା ପ୍ରିୟ ଏବଂ ହିତକାରୀ ।୪୮।

ଯେପରି ବୃକ୍ଷର ମୂଳରେ ଜଳସେଚନ କଲେ ଶାଖାଦି ପରିପୁଷ୍ଟ ହୁଅନ୍ତି, ସେହିପରି ବିଷ୍ଣୁଙ୍କର ଆରାଧନା କଲେ ସର୍ବ ଦେବତାଙ୍କର ଓ ନିଜର ଆତ୍ମାର ପରିତୃପ୍ତି ସାଧିତ ହୁଏ ।୪୯।

ଆପଣ ଅନନ୍ତ, ଆପଣଙ୍କର କର୍ମ ଅଚିନ୍ତନୀୟ, ସମସ୍ତଙ୍କର ଅତର୍କ୍କ୍ୟ, ଆପଣ ନିର୍ଗୁଣ ଓ ଗୁଣର ଆଶ୍ରୟ ସ୍ୱରୂପ ଏବଂ ସତ୍ତ୍ୱଗୁଣ ଅବଲମ୍ବନ ପୂର୍ବକ ପ୍ରକାଶ ପାଉଅଛନ୍ତି, ଆପଣଙ୍କୁ ନମସ୍କାର । ୫୦ ।

---

ସେ ହରି ଦେଖାଅ ଶରୀର
ଯେ ନୋହେ କରଣେ ଗୋଚର
ତା ମୁଖ ଦେଖିବାର ଅର୍ଥେ
ଶରଣ ଗଲୁ ପାଦଗତେ ।

ବୋଲଇ ଦାସ ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ
ସୁଜନେ କର ଏଣେ ସ୍ତବ
ଯେ ନାମେ ସଂସାରୁ ତରିବ

କଳି କଳୁଷ ନାଶ ପାଇଁ
ଏ ବିନୁ ଆନଗତି ନାହିଁ ।୪୫,୫୦

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ବ୍ରହ୍ମସ୍ତୁତିର୍ନାମ
ପଞ୍ଚମୋଽଧ୍ୟାୟଃ ।

---

**ବିଶଦାର୍ଥ—**

ଶ୍ରୀ ଶୁକଦେବ ବକ୍ତା ଓ ରାଜା ପରୀକ୍ଷିତ ଶ୍ରୋତା; ରାଜା ପରୀକ୍ଷିତଙ୍କ ନିକଟରେ ପଞ୍ଚମ ଓ ଷଷ୍ଠ ମନ୍ୱନ୍ତର ପ୍ରସଙ୍ଗ ବର୍ଣ୍ଣନା କରୁ କରୁ ଶ୍ରୀ ଶୁକଦେବ କୂର୍ମାବତାର ସମୁଦ୍ରମନ୍ଥନ ଓ ଅମୃତର ଉତ୍ପତ୍ତି ବିଷୟ ଉଲ୍ଲେଖ କରିଥିଲେ । ଭଗବାନଙ୍କର କୂର୍ମାବତାର ପ୍ରସଙ୍ଗ ଆହୁରି ବିସ୍ତାରିତ ଭାବରେ ଶ୍ରବଣ କରିବାଲାଗି ରାଜା ପରୀକ୍ଷିତଙ୍କର ଆଗ୍ରହ ଜନ୍ମିଲା. ସେହି ପ୍ରଶ୍ନର ଉତ୍ତରରେ ଶ୍ରୀ ଶୁକଦେବ ଦେବାସୁର ଯୁଦ୍ଧ ଓ ଦେବତାମାନଙ୍କର କ୍ଷୟ, ଅସୁରମାନଙ୍କର ବଳାଧିକ୍ୟ ପ୍ରସଙ୍ଗ ବର୍ଣ୍ଣନା କରିଥିଲେ । ଏହିପରି ଦେବାସୁର ଯୁଦ୍ଧ ବହୁ ଅବତାରର ପୂର୍ବେ ଘଟିଥିଲା । ଦେବତା ଓ ଅସୁର, ସତ୍ ଅସତ୍ ମଧ୍ୟରେ ଚିରନ୍ତନ ବିବାଦଲାଗି ରହିଅଛି, ଭଗବାନ୍ ଆସୁରିଶକ୍ତି ଦମନ ନିମିତ୍ତ ଅବତାର ଗ୍ରହଣ କରିଥାନ୍ତି । ଦେବତାମାନେ ବ୍ରହ୍ମାଙ୍କୁ ଅଗ୍ରଣୀ କରି ଭଗବାନଙ୍କୁ ପ୍ରାର୍ଥନା କରିଥିଲେ । ଏହି ଅଧ୍ୟାୟରେ ଭଗବାନଙ୍କର ବିଭିନ୍ନ ବିଭୂତି ବ୍ରହ୍ମା ବର୍ଣ୍ଣନା କରିଅଛନ୍ତି ।



ଷଷ୍ଠୋଽଧ୍ୟାୟଃ ।

ଷଷ୍ଠେ ପୁନଃ ସ୍ତୁତୈର୍ବିଷ୍ଣୁ ର୍ବାବର୍ଭୂତେ ସୁରୈଃ କୃତା ।
ତନ୍ମନ୍ତ୍ରାଦ୍‌ବାସୁରୈଃ ସାକମମୃତାର୍ଥେ ମହୋଦ୍ୟମଃ ॥ ( ଶ୍ରୀଧରସ୍ୱାମୀ )

---

**ଅମୃତପାଇଁ ସାଗର ମନ୍ଥନ ।**

ଷଷ୍ଠ ଅଧ୍ୟାୟରେ ଦେବତାମାନେ ବିଷ୍ଣୁଙ୍କୁ ସ୍ତୁତିକରିବାରୁ ଭଗବାନ୍ ଆବିର୍ଭାବ ହୋଇଥିଲେ । ଏବଂ ତାଙ୍କର ଆଦେଶ ଅନୁସାରେ ଦେବାସୁର ମିଳିତ ହୋଇ ସମୁଦ୍ର ମନ୍ଥନ କରିବା ବର୍ଣ୍ଣିତ ହୋଇଅଛି ।

---

ଷଷ୍ଠେ ଦେବଙ୍କ ସ୍ତୁତି ଶୁଣି, ବିଜୟପ୍ରଭୁ ଚକ୍ରପାଣି । ତାଙ୍କ ଆଦେଶେ ଦେବାସୁରେ, ଅମୃତପାଇଁ ଯତ୍ନକଲେ ॥

ଶ୍ରୀ ଶୁକ ଉବାଚ ।

ଏବଂସ୍ତୁତଃ ସୁରଗଣୈର୍ଭଗବାନ୍ ହରିରୀଶ୍ୱରଃ ।
ତେଷାମାବିରଭୂଦ୍ରାଜନ୍ ସହସ୍ରାର୍କୋଦୟଦ୍ୟୁତିଃ । ୧ ।
ତେନୈବ ସହସା ସର୍ବେ ଦେବାଃ ପ୍ରତିହତେକ୍ଷଣାଃ ।
ନାପଶ୍ୟନ୍ ଖଂ ଦିଶଃ କ୍ଷୌଣୀମାତ୍ମାନଞ୍ଚ କୁତୋ ବିଭୁମ୍ ।୨ ।
ବିରଞ୍ଚୋ ଭଗବାନ୍ ଦୃଷ୍ଟ୍ୱା ସହ ଶର୍ବେଣ ତାଂ ତନୁମ୍ ।
ସ୍ୱଚ୍ଛାଂ ମରକତଶ୍ୟାମାଂ କଞ୍ଜଗର୍ଭାରୁଣେକ୍ଷଣାମ୍ । ୩ ।
ତପ୍ତହେମାବଦାତେନ ଲସତ୍‌କୌଶେୟବାସସା ।
ପ୍ରସନ୍ନଚାରୁସର୍ବାଙ୍ଗୀଂ ସୁମୁଖୀଂ ସୁନ୍ଦରଭ୍ରୁବମ୍ । ୪ ।
ମହାମଣିକିରୀଟେନ କେୟୂରାଭ୍ୟାଞ୍ଚ ଭୂଷିତାମ୍ ।
କର୍ଣ୍ଣାଭରଣନିର୍ଭାତକପୋଲଶ୍ରୀମୁଖାମ୍ବୁଜାମ୍ । ୫ ।

---

**ଶ୍ରୀଶୁକଦେବ କହିଲେ—**

ହେ ରାଜନ୍ ! ଦେବତାମାନଙ୍କ କର୍ତ୍ତୃକ ଏହିପରି ସ୍ତୁତ ହୋଇ ଭଗବାନ୍ ଈଶ୍ୱର ହରି ସହସ୍ର ସୂର୍ଯ୍ୟର ଦ୍ୟୁତି ବିଶିଷ୍ଟ ହୋଇ ଦେବଗଣଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ।୧।

ଭଗବାନଙ୍କର ସେହି ତେଜଦ୍ୱାରା ଦେବତାମାନଙ୍କର ଦୃଷ୍ଟି ପ୍ରତିହତ ହେଲା । ଦେବତାମାନେ ଆକାଶ, ଦିଗ, ପୃଥିବୀ ଏବଂ ନିଜ ନିଜକୁ ମଧ୍ୟ ଦେଖିବାକୁ ସମର୍ଥ ହେଲେ ନାହିଁ । କିପରି ବା ସେମାନେ ସେ ହରିଙ୍କୁ ଦେଖନ୍ତେ ? ।୨।

ଭଗବାନ୍ ବ୍ରହ୍ମା ମହେଶ୍ୱରଙ୍କ ସହିତ ସେହି ମୂର୍ତ୍ତିଦର୍ଶନ କରି ସାଷ୍ଟାଙ୍ଗରେ ଭୂତଳଶାୟୀ ହୋଇ ଦେବଗଣଙ୍କ ସହ ସ୍ତବ କରିବାକୁ ଲାଗିଲେ ।୩।

ସେହି ମୂର୍ତ୍ତି ତପ୍ତକାଞ୍ଚନ ତୁଲ୍ୟ ଉଜ୍ଜ୍ୱଳ, ପୀତବର୍ଣ୍ଣ କୌଶେୟବସ୍ତ୍ର ଶୋଭିତ, ତାହାଙ୍କର ସର୍ବାଙ୍ଗ ମନୋହର ଏବଂ ପ୍ରସନ୍ନ, ବଦନମଣ୍ଡଳ ସୁଶୋଭନ, ଭ୍ରୂଦ୍ୱୟ ଅତ୍ୟନ୍ତ ସୁନ୍ଦର; ମସ୍ତକ ମହାମୂଲ୍ୟ ମଣିଖଚିତ ମୁକୁଟ ଦ୍ୱାରା ପରିଶୋଭିତ, ଭୁଜଦ୍ୱୟ କେୟୂର ଶୋଭିତ, କର୍ଣ୍ଣଦ୍ୱୟ ଆଭରଣ ଶୋଭିତ, କପୋଳ ଦେଶ ଓ ମୁଖପଦ୍ମ ଅତ୍ୟନ୍ତ ସୁଶୋଭନ । ୪, ୫ ।

---

**ଶ୍ରୀଶୁକଉବାଚ—**

ଏମନ୍ତେ ଦେବ-ସ୍ତୁତି ଶୁଣି
ଶୂନ୍ୟେ ପ୍ରକାଶ ଚକ୍ରପାଣି
ସହସ୍ରେ ଅର୍କ ତେଜ ଦେଖି
ଭୟେ ବୁଜିଲେ ଦେବେ ଆଖି
ଦିଗ ନ ପାରନ୍ତି ନିରେଖି
କେମନ୍ତେ ଦେଖିବେ ଶ୍ରୀହରି
ରହିଲେ ଅନ୍ଧକାର ଛନ୍ଦେ
ଶୁଦ୍ଧି ନ ପାରନ୍ତି ଗଗନେ ।୧, ୨
ମଧ୍ୟେ ଯେ ବ୍ରହ୍ମା ରୁଦ୍ର ଥିଲେ
ଟେକି ଅଳ୍ପପକ୍ଷେ ଚାହିଁଲେ
ଦେଖିଲେ ବିଷ୍ଣୁର ପ୍ରକାଶ
ଶରୀରେ ପୂରିଛି ଆକାଶ
ବିକଚ ପୁଣ୍ଡରୀକ ପ୍ରାୟେ
କର୍ଣ୍ଣେ କୁଣ୍ଡଳ ବେନି ଶୋହେ
ତପ୍ତ କାଞ୍ଚନ ପ୍ରାୟେ ବର୍ଣ୍ଣ
ପୀତ ବସନ ପରିଧାନ

କାଞ୍ଚୀକଲାପବଲୟହାରନୂପୁରଶୋଭିତାମ୍ ।
କୌସ୍ତୁଭାଭରଣାଂ ଲକ୍ଷ୍ମୀଂ ବିଭ୍ରତୀଂ ବନମାଲିନୀମ୍ । ୬ ।
ସୁଦର୍ଶନାଦିଭିଃ ସ୍ୱାସ୍ତ୍ରୈର୍ମୂର୍ତ୍ତିମଦ୍ଭିରୁପାସିତାମ୍ ।
ତୁଷ୍ଟାବ ଦେବପ୍ରବରଃ ସଶର୍ବଃ ପୁରୁଷଂ ପରମ୍ ।
ସର୍ବାମରଗଣୈଃ ସାକଂ ସର୍ବାଙ୍ଗୈରବନୀଂ ଗତୈଃ । ୭ ।
ଶ୍ରୀ ବ୍ରହ୍ମୋବାଚ । ଅଜାତଜନ୍ମସ୍ଥିତସଂଯମାୟାଗୁଣାୟ ନିର୍ବାଣସୁଖାର୍ଣ୍ଣବାୟ ।
ଅଣୋରଣିମ୍ନେଽପରିଗଣ୍ୟଧାମ୍ନେ ମହାନୁଭାବାୟ ନମୋ ନମସ୍ତେ । ୮ ।
ରୂପଂ ତବୈତତ୍ ପୁରୁଷର୍ଷଭେଜ୍ୟଂ ଶ୍ରେୟୋଽର୍ଥିଭିର୍ବୈଦିକତାନ୍ତ୍ରିକେଣ ।
ଯୋଗେନ ଧାତଃ ସହ ନସ୍ତ୍ରିଲୋକାନ୍ ପଶ୍ୟାମ୍ୟମୁଷ୍ମିନ୍ନୁ ହ ବିଶ୍ୱମୂର୍ତ୍ତୌ । ୯ ।

---

କାଞ୍ଚିକଳାପ, ବଳୟ ଓ ନୂପୁର ଦ୍ୱାରା ସେହି ମୂର୍ତ୍ତି ଅତ୍ୟନ୍ତ ଶୋଭା ପାଉଥିଲା । ସେ କଣ୍ଠରେ କୌସ୍ତୁଭମଣି, ବକ୍ଷରେ ଲକ୍ଷ୍ମୀ ଏବଂ ହୃଦୟରେ ବନମାଳା ଧାରଣ କରିଥିଲେ ।୬।

ସୁଦର୍ଶନାଦି ଅସ୍ତ୍ରମାନ ମୂର୍ତ୍ତିମାନ୍ ହୋଇ ତାହାଙ୍କର ଉପାସନା କରୁଥିଲେ । ବ୍ରହ୍ମା ପ୍ରଭୃତି ଦେବଗଣ ଏହିପରି ମୂର୍ତ୍ତି ଦର୍ଶନ କରି ସାଷ୍ଟାଙ୍ଗ ପ୍ରଣତହୋଇ ଶିବଙ୍କ ସହିତ ମିଳିତ ହୋଇ ସେହି ପରମ ପୁରୁଷଙ୍କୁ ସ୍ତୁତି କଲେ ।୭।

ଶ୍ରୀ ବ୍ରହ୍ମା କହିଲେ :—ଯାହାଙ୍କର ଜନ୍ମ, ସ୍ଥିତି, ସଂଯମ ବା ବିନାଶ ଅଗୋଚର, ଯେ ନିର୍ଗୁଣ ଏବଂ ନିର୍ବାଣସୁଖସମୁଦ୍ର ସ୍ୱରୂପ, ଯେ ଅଣୁରୁ ଅଣୁତର, ଯାହାଙ୍କର ମୂର୍ତ୍ତିର ଇୟତ୍ତା ନାହିଁ ଅର୍ଥାତ୍ ବୃହତ୍ ସେହି ମହାନୁଭବ ଆପଣଙ୍କୁ ଆମ୍ଭେମାନେ ନମସ୍କାର କରୁଅଛୁଁ ।୮।

ହେ ପୁରୁଷ ଶ୍ରେଷ୍ଠ ! ଆପଣଙ୍କର ଏହି ରୂପକୁ ମଙ୍ଗଳକାମୀ ବ୍ୟକ୍ତିମାନେ ବୈଦିକ ଓ ତାନ୍ତ୍ରିକ ଉପାୟରେ ପୂଜା କରିଥାନ୍ତି । ଆପଣଙ୍କର ଏହି ସର୍ବବ୍ୟାପୀ ମୂର୍ତ୍ତିରେ ଦେବଗଣଙ୍କ ସହିତ ମୁଁ ତ୍ରିଲୋକ ଦର୍ଶନ କରୁଅଛି ।୯।

---

ପ୍ରସନ୍ନେ ସ୍ୱଚ୍ଛ ସର୍ବ ଅଙ୍ଗେ
ସୁ-ମୁଖ ସୁନ୍ଦର ଭ୍ରୂ ଭଙ୍ଗେ
ଅମୂଲ୍ୟ ମୁକୁଟ ଲଲାଟେ
କାଞ୍ଚନ ଭୂଷଣ ପ୍ରକଟେ
ଆଜାନୁଲମ୍ବ ବାହୁଯୁଗେ
କେୟୂର କଙ୍କଣ ବିରାଜେ
କାଞ୍ଚି କଳାପ ବଳୟରେ
ଶୋଭିତ ହାର ନୂପୁରରେ
କୌସ୍ତୁଭ ମଣି କଣ୍ଠେ ଶୋହେ
ତେଜ ପ୍ରକାଶ ଜନ ମୋହେ
କମଳା ବନମାଳ ରଙ୍ଗେ
ହୃଦେ ଶୋଭଇ ଅନୁରାଗେ
ଏମନ୍ତ ରୂପ ଶୂନ୍ୟେ ଛନ୍ତି
ଶିବ ସହିତେ ବେଦପତି
ଧ୍ୟାନେ ଗୋବିନ୍ଦ ପାଦେ ସ୍ଥିର
ସ୍ତୁତି କରଇ କରଯୋଡ଼ ।୩-୭।
ଶ୍ରୀ ବ୍ରହ୍ମୋବାଚ—
ଅଜାତ ଜନ୍ମ ଯେ ସ୍ୱଭାବେ
ସୃଷ୍ଟି ପାଳନ ସ୍ଥିତି ଲୋଭେ
ଅଗୁଣେ ବିଶ୍ରାମ ଭୂମିର
ମହିମା ଅମୃତ ସାଗର
ଅଣୁରୁ ଅଣୁ ଜୀବ ହୋଇ
ସ୍ୱମାୟା ସୁଖେ ଯେ ଭଜଇ
ମହାନୁଭବ ଏ ଜଗତେ
ମହାପୁରୁଷ ନମସ୍ତୁତେ ।୮।
ତୁ ନାଥ ସଂସାର ଧାରଣ
ଏଣୁ ସକଳ ମୁନିଗଣ
ଆଗମ ନିଗମେ ସମ୍ବାଦ
ବିସ୍ତର ମନ୍ତ୍ର ଯୋଗବିଧି
ବେଦ ବିହିତେ ରଚିତକେ
ମନ ପବନ ସୁକୁଣ୍ଡଳେ
ତୁମ୍ଭର ରୂପ ଧ୍ୟାନ କରି
ମାୟା ଗହନୁ ଯାନ୍ତି ତରି । ୯ ।

ତ୍ୱଂଯଂସ୍ୟେଦଂ ଆସୀତ୍ ତ୍ୱଦ ମଧ୍ୟ ଆସୀତ୍ ତ୍ୱଦୟନ୍ତ ଆସୀଦଦମାତ୍ମତନ୍ତ୍ରେ ।
ତ୍ୱମାଦରନ୍ତୋ ଜଗତୋଽସ୍ୟ ମଧ୍ୟଂ ଘଟସ୍ୟ ମୃତ୍ସ୍ନେବ ପରଃ ପରସ୍ମାତ୍ ।୧୦।
ତ୍ୱଂ ମାୟୟାତ୍ମାଶ୍ରୟୟା ସ୍ୱୟେଦଂ ନିର୍ମାୟ ବିଶ୍ୱଂ ତଦନୁପ୍ରବିଷ୍ଟଃ ।
ପଶ୍ୟନ୍ତି ଯୁକ୍ତା ମନସା ମନୀଷିଣୋ ଗୁଣବ୍ୟବାୟେଽପ୍ୟଗୁଣଂ ବିପଶ୍ଚିତଃ ।୧୧।
ଯଥାଗ୍ନିମେଧସ୍ୟମୃତଞ୍ଚ ଗୋଷୁ ଭୁବ୍ୟନ୍ନମମ୍ବୁଦ୍ୟମନେ ଚ ବୃତ୍ତିମ୍ ।
ଯୋଗୈର୍ମନୁଷ୍ୟା ଅଧିଯନ୍ତି ହି ତ୍ୱଂ, ଗୁଣେଷୁ ବୁଦ୍ଧ୍ୟା କବୟୋ ବଦନ୍ତି ।୧୨।
ତଂ ତ୍ୱାଂ ବୟଂ ନାଥ ! ସମୁଜ୍ଜିହାନଂ ସରୋଜନାଭାତିଚିରେପ୍ସିତାର୍ଥମ୍ ।
ଦୃଷ୍ଟ୍ୱା ଗତା ନିର୍ବୃତମଦ୍ୟ ସର୍ବେ ଗଜା ଦବାର୍ତ୍ତା ଇବ ଗାଙ୍ଗମମ୍ଭଃ ।୧୩।

---

ହେ ଭଗବନ୍ ! ଆପଣ ଆତ୍ମତନ୍ତ୍ର ଅର୍ଥାତ୍ ସ୍ୱାଧୀନ; ଏହି ବିଶ୍ୱପୂର୍ବେ ଆପଣଙ୍କଠାରେ ଅବସ୍ଥିତ ଥିଲା । ମଧ୍ୟରେ ବର୍ତ୍ତମାନ ରହିଅଛି, ଅନ୍ତରେ ମଧ୍ୟ ଆପଣଙ୍କଠାରେ ରହିବ, ମୃତ୍ତିକା ଯେପରି ଘଟର ଆଦି, ଅନ୍ତ ଓ ମଧ୍ୟ ଆପଣ ସେହିପରି ଏହି ଜଗତର ଆଦି, ଅନ୍ତ ଓ ମଧ୍ୟ ସ୍ୱରୂପ, ଆପଣ ପ୍ରଧାନ ଅପେକ୍ଷା ପ୍ରଧାନ ।୧୦।

ହେ ପ୍ରଭୋ ! ଆପଣ ନିଜର ଆଶ୍ରିତ ସ୍ୱାଧୀନ ମାୟାଦ୍ୱାରା ଏହି ବିଶ୍ୱନିର୍ମାଣ କରି ପରେ ତନ୍ମଧ୍ୟରେ ପ୍ରବିଷ୍ଟ ହୋଇଅଛନ୍ତି । ଶାସ୍ତ୍ରଜ୍ଞ, ବିବେକୀ ଯୋଗୀମାନେ ମନଦ୍ୱାରା ସମସ୍ତର ପରିଣାମରେ ସୁଦ୍ଧା ଆପଣଙ୍କ ଅଗୁଣ ସ୍ୱରୂପ ଦର୍ଶନ କରିଅଛନ୍ତି ।୧୧।

ହେ ଭଗବାନ୍ ! ଯେପରି କାଷ୍ଠ ମଧ୍ୟରେ ଅଗ୍ନି, ଗୋରୁଠାରେ ଅମୃତ ବା ଘୃତ, ପୃଥିବୀରେ ଅନ୍ନ ଏବଂ ଜଳ ଏବଂ ପୁରୁଷକାରରେ ଜୀବିକା, ଉପାୟଦ୍ୱାରା ପ୍ରାପ୍ତ ହୁଅନ୍ତି ସେହିପରି ବେଦଜ୍ଞ ପଣ୍ଡିତମାନେ କହନ୍ତି ବୁଦ୍ଧିଦ୍ୱାରା ଗୁଣସମୂହ ଆପଣଙ୍କୁ ପ୍ରାପ୍ତ ହୁଏ ।୧୨।

ହେ ନାଥ ! ହେ ପଦ୍ମନାଭ ! ଆମ୍ଭେମାନେ ସମସ୍ତେ ଆମ୍ଭମାନଙ୍କର ଚିରଅଭିଳଷିତ ପରମାର୍ଥ ବସ୍ତୁ ଆପଣଙ୍କୁ ଅବଲୋକନ କରି ଦାବାନଳ ପ୍ରପୀଡ଼ିତ ହସ୍ତୀମାନେ ଗଙ୍ଗାଜଳ ପ୍ରାପ୍ତିରେ ଶାନ୍ତି ଲଭିଲା ପରି ଛବୃତ୍ତିଲାଭ କରିଅଛୁଁ ।୧୩।

---

ତୁ ନାଥ ଆଦି ମଧ୍ୟ ଅନ୍ତେ
ଯେ ବା କରିଭୁ ଆତ୍ମତନ୍ତ୍ରେ
ଜଗତେ ଆଦି ମଧ୍ୟ ତୁହି
ମୃତ୍ତିକା ଘଟ ପ୍ରାୟେ ହୋଇ
ତୋରୂପେ ବିଶ୍ୱ ପ୍ରକାଶଇ
ସେରୂପ କେ ପାରିବ କହି ।୧୦।
ଆତ୍ମା ଆଶ୍ରୟ ମାୟା କରି
ତୁ ଏ ସଂସାରେ ରୂପ ଧରି
ସଂସାରେ ପଶୁ ଆତ୍ମାରୂପେ
ସୁଖେ ବିହରୁ କଲ୍ପେ କଲ୍ପେ
ନିର୍ମଳ ଚେତା ମୁନିଜନେ
ତୋତେ ଦେଖନ୍ତି ଶୁଦ୍ଧମନେ ।୧୧।
ଯଥା ଅନଳ କାଷ୍ଠେ ଥାଏ
ଯେସନେ ଅମୃତ ଗୋରୁ ଦେହେ
ଧରଣୀ ଦେହେ ଅନ୍ନ ଯେସନେ
ସଂଯୋଗେ କୃଷି କରିଷଣେ
ମନୁଷ୍ୟ ନାନା ଯୋଗବଳେ
ଲଭଇ ତୋ ପାଦ କମଳେ
ନମଇ ତୋ ଚରଣ ତଳେ
ଭବ ସାଗରୁଁ ତରେ ଭଲେ ।୧୨।
ସର୍ବେ ନମନ୍ତି ତୋ ଚରଣେ
ତୁ ଥାଉ ସଂସାର ଧାରଣେ
ବାଞ୍ଛିତ ଅର୍ଥ ଫଳ ପାନ୍ତି
ନାନାପ୍ରକାର ତୋତେ ଚିନ୍ତି
ତୋ ରୂପ ଆମ୍ଭେ ଆଗେ ଦେଖି
ସଂସାର ତେଜି ହୋନ୍ତି ସୁଖୀ
ଯେସନେ ଗଜ ଦାବାନଳେ
ପ୍ରବେଶ କରି ଗଙ୍ଗାଜଳେ ।୧୩।

ସ ତ୍ୱଂ ବିଧତ୍ସ୍ୱାଖିଳଲୋକପାଳା ବୟଂ ଯଦର୍ଥାସ୍ତବ ପାଦମୂଳମ୍ ।
ସମାଗତାସ୍ତେ ବହିରନ୍ତରାତ୍ମନ୍ ! କିଂ ବାନ୍ୟବିଜ୍ଞାପ୍ୟମଶେଷସାକ୍ଷିଣଃ । ୧୪ ।
ଅହଂ ଗିରିତ୍ରଶ୍ଚ ସୁରାଦୟୋ ଯେ ଦକ୍ଷାଦୟୋଽଗ୍ନେରିବ କେତବସ୍ତେ ।
କିଂ ବା ବିଦାମେଷ ପୃଥଗ୍‌ବିଭାତା ବିଧତ୍ସ୍ୱ ଶଂ ନୋ ଦ୍ୱିଜଦେବମନ୍ତ୍ରମ୍ । ୧୫ ।

ଶ୍ରୀ ଶୁକ ଉବାଚ ।

ଏବଂ ବିରଞ୍ଚ୍ୟାଦିଭିରୀଡ଼ିତସ୍ତଦ୍‌ବିଜ୍ଞାୟ ତେଷାଂ ହୃଦୟଂ ଯଥୈବ ।
ଜଗାଦ ଜୀମୂତଗଭୀରୟା ଗିରା ବଦ୍ଧାଞ୍ଜଳୀନ୍ ସଂବୃତସର୍ବକାରକାନ୍ । ୧୬ ।
ଏକ ଏବେଶ୍ୱରସ୍ତସ୍ମିନ୍ ସୁରକାର୍ଯ୍ୟେ ସୁରେଶ୍ୱରଃ ।
ବିହର୍ତ୍ତୁକାମସ୍ତାନାହ ସମୁଦ୍ରୋନ୍ମଥନାଦିଭିଃ । ୧୭ ।

---

ହେ ଅନ୍ତରାତ୍ମନ୍ ! ଆମ୍ଭେମାନେ ଲୋକପାଳଗଣ, ଯେଉଁ ପ୍ରୟୋଜନ ହେତୁ ଆପଣଙ୍କର ପାଦ-ମୂଳରେ ସମାଗତ ହୋଇଅଛୁଁ, ଆପଣ ତାହା ସମ୍ପାଦନ କରନ୍ତୁ । ଆପଣ ଅଶେଷ ପଦାର୍ଥର ସାକ୍ଷୀ, ସୁତରାଂ ଆପଣଙ୍କୁ ଅନ୍ୟକଥା କ'ଣ ଜଣାଇବୁ ।୧୪।

ହେ ଭଗବାନ୍ ! ମୁଁ ବ୍ରହ୍ମା, ଶିବ ଏବଂ ଅନ୍ୟାନ୍ୟ ଦେବଗଣ ଏବଂ ଦକ୍ଷ ପ୍ରଜାପତିଗଣ, ଅଗ୍ନି ସ୍ଫୁଲିଙ୍ଗ ତୁଲ୍ୟ ଆପଣଙ୍କଠାରୁ ପୃଥକ୍ ପୃଥକ୍ ଭାବରେ ପ୍ରକାଶିତ, ଆମ୍ଭମାନଙ୍କ ପକ୍ଷରେ ମଙ୍ଗଳ-ଜନକ କଣ ତାହା ଆମ୍ଭମାନଙ୍କୁ ଅଗୋଚର, ସୁତରାଂ ବ୍ରାହ୍ମଣ ଓ ଦେବତାମାନଙ୍କର ମଙ୍ଗଳ ବିଧାନର ଉପାୟ ସମ୍ବନ୍ଧେ ଆପଣ ଉପଦେଶ ଦିଅନ୍ତୁ ।୧୫।

ଶ୍ରୀଶୁକଦେବ କହିଲେ —

ବ୍ରହ୍ମାଦି ଦେବଗଣଙ୍କ କର୍ତ୍ତୃକ ଏହିପରି ସ୍ତୁତ ହୋଇ ଭଗବାନ୍ ସେମାନଙ୍କର ହୃଦୟର ଅଭିପ୍ରାୟ ସମ୍ୟକ୍‌ରୂପେ ଅବଗତ ହୋଇ ବଦ୍ଧାଞ୍ଜଳି ଓ ସଂଯତେନ୍ଦ୍ରିୟ ଦେବଗଣଙ୍କୁ ମେଘ ଗମ୍ଭୀର ବାକ୍ୟରେ କହିଲେ ।୧୬।

ଭଗବାନ୍ ବିଷ୍ଣୁ ଏକାକୀ ଦେବକାର୍ଯ୍ୟ କରିବାକୁ ସମର୍ଥ ହେଲେ ମଧ୍ୟ ସମୁଦ୍ର ମନ୍ଥନରେ ବିହାର କରିବାକୁ ଇଚ୍ଛାକରି ଏହିପରି କହିଲେ ।୧୭।

---

ଆମ୍ଭେ ସକଳ ଲୋକପାଳେ
ଶରଣ ତୋ ପାଦ କମଳେ
ଏ ଦେହ ବାହାର ଅନ୍ତରେ
ତୋ ବିନୁ କେବା ଅଛି ପରେ
ଏ ଦେବଗଣ ମୋର ତୁଲେ
ଦକ୍ଷାଦି ପ୍ରଜାପତି ମେଳେ
ତୋ ଅନୁଗ୍ରହେ ବିନୁ ଅଙ୍ଗ
ଅନଳୁ ଯେସନେ ସ୍ଫୁଲିଙ୍ଗ

କିବା କହିବୁଁ ତୋ ଅଗ୍ରତେ
ଆମ୍ଭଙ୍କୁ ରଖ ଏ ଜଗତେ ।୧୪,୧୫।

ଶ୍ରୀଶୁକଉବାଚ —

ଏମନ୍ତେ ବ୍ରହ୍ମା ବାକ୍ୟ ଶୁଣି
ସଂସାର ହିତ ମନେ ଗୁଣି
ପରମସୁଖେ ତନୁ ପୂରି
ବ୍ରହ୍ମାଙ୍କୁ କହନ୍ତି ମୁରାରି ।୧୬।

ଜଳଧି ମନ୍ଥନ ପ୍ରୟୋଗେ
ଆମ୍ଭ ପ୍ରକାଶ ଅନୁରାଗେ
ପ୍ରସନ୍ନ ଚିତ୍ତେ ଭବଗ୍ରାହୀ
କହନ୍ତି ବ୍ରହ୍ମା ମୁଖ ଚାହିଁ ।୧୭।

ଶ୍ରୀ ଭଗବାନୁବାଚ ।

ହନ୍ତ ବ୍ରହ୍ମନ୍ନହୋ ଶମ୍ଭୋ ହେ ଦେବା ମମ ଭାଷିତମ୍ ।
ଶୃଣୁତାବହିତାଃ ସର୍ବେ ଶ୍ରେୟୋ ବଃ ସ୍ୟାଦ୍ୟଥା ସୁରାଃ । ୧୮ ।
ଯାତ ଦାନବଦୈତେୟୈସ୍ତାବତ୍‌ସନ୍ଧିର୍ବିଧୀୟତାମ୍ ।
କାଳେନାନୁଗୃହୀତୈସ୍ତୈର୍ଯାବଦ୍‌ବୋ ଭବ ଆତ୍ମନଃ । ୧୯ ।
ଅରୟୋଽପି ହି ସନ୍ଧେୟାଃ ସତି କାର୍ଯ୍ୟାର୍ଥଗୌରବେ ।
ଅହିମୂଷିକବଦ୍ଦେବା ହ୍ୟର୍ଥସ୍ୟ ପଦବୀଂ ଗତୈଃ । ୨୦ ।
ଅମୃତୋତ୍ପାଦନେ ଯତ୍ନଃ କ୍ରିୟତାମବିଲମ୍ବିତମ୍ ।
ଯସ୍ୟ ପୀତସ୍ୟ ବୈ ଜନ୍ତୁର୍ମୃତ୍ୟୁଗ୍ରସ୍ତୋଽମରୋ ଭବେତ୍ । ୨୧ ।

---

ଶ୍ରୀ ଭଗବାନ୍ କହିଲେ :—

ହେ ବ୍ରହ୍ମନ୍ ! ହେ ଶମ୍ଭୋ ! ହେ ଦେବଗଣ ! ତୁମ୍ଭେମାନେ ସ୍ଥିର ଚିତ୍ତରେ ମୋର ବାକ୍ୟ ଶ୍ରବଣ କର, ଯେପରି କାର୍ଯ୍ୟ କଲେ ତୁମ୍ଭମାନଙ୍କର ମଙ୍ଗଳ ସାଧିତ ହେବ ।୧୮।

ହେ ଦେବଗଣ ! ତୁମ୍ଭେମାନେ ଯାଅ, ଯେ ପର୍ଯ୍ୟନ୍ତ ତୁମ୍ଭମାନଙ୍କର ନିଜର ବୃଦ୍ଧି ନ ହୁଏ ସେ ପର୍ଯ୍ୟନ୍ତ ଶୁକ୍ରାଚାର୍ଯ୍ୟଙ୍କର ମନ୍ତ୍ରଣାଦ୍ୱାରା ପରିଚାଳିତ ଦୈତ୍ୟ ଦାନବଙ୍କ ସହିତ ସନ୍ଧି ସ୍ଥାପନ କର ।୧୯।

ଗୁରୁତର, କାର୍ଯ୍ୟସିଦ୍ଧି ନିମିତ୍ତ ଶତ୍ରୁମାନଙ୍କ ସହିତ ସନ୍ଧିସ୍ଥାପନ କର୍ତ୍ତବ୍ୟ । ପରିଶେଷରେ କାର୍ଯ୍ୟସିଦ୍ଧି ହେଲେ ସର୍ପ ଏବଂ ମୂଷିକ ତୁଲ୍ୟ ବଧ୍ୟଘାତକ ଭାବ ଅବଲମ୍ବନ କରିବାକୁ ହୁଏ । ( ସର୍ପ ମୂଷିକ ସହିତ ସନ୍ଧି କରିଥିଲା ଏବଂ ମୂଷିକଦ୍ୱାରା ଗର୍ତ୍ତନିର୍ମାଣ ହେଲାପରେ ତାହାକୁ ଭକ୍ଷଣ କରିଥିଲା) ।୨୦।

ତୁମ୍ଭେମାନେ ଅତିଶୀଘ୍ର ଯାଇଁ ଅମୃତୋତ୍ପାଦନ ନିମିତ୍ତ ଯତ୍ନ କର, ଯାହା ପାନ କଲେ ମରଣଶୀଳ ମଧ୍ୟ ଅମର ହେବ ।୨୧।

---

ଶ୍ରୀଭଗବାନୁବାଚ—

ଶୁଣ ହେ ବ୍ରହ୍ମା ଶମ୍ଭୁଦେବେ
ଯେବା କହିବା ତୁମ୍ଭ ଲାଭେ
ତୁମ୍ଭର ଶ୍ରେୟ ଯେଉଁ ମତେ
କହିବା ଶୁଣ ଏକଚିତ୍ତେ;
ଅସୁରଙ୍କର ସଙ୍ଗେ ଯାଇ
ବସ ବିଶ୍ବାସଭାବ ହୋଇ
ନାନା ପ୍ରକାରେ ସନ୍ଧିକର
ପ୍ରଲୋଭେ ତାଙ୍କ ଚିତ୍ତ ହର
ଯାବତ ସିଦ୍ଧ ନୋହେ କାର୍ଯ୍ୟ
ତାବତ ମିତ୍ରଭାବେ ଭଜ
ଆପଣା କାର୍ଯ୍ୟ ସିଦ୍ଧି ଅର୍ଥେ
ଶତ୍ରୁଙ୍କୁ ଭଜନ୍ତି ସମସ୍ତେ
କାର୍ଯ୍ୟ ସରିଲେ ନିଜ ଭାବେ
ସର୍ବେ ରହିବ ଆତ୍ମଲାଭେ
ଅହି ମୂଷିକ କରି ସନ୍ଧି
ଯେମନ୍ତେ ଆତ୍ମକାର୍ଯ୍ୟ ସାଧି ।୧୮।୨୦
ଅମୃତ ଅର୍ଥେ ଯତ୍ନ କର
ଯା ପାନେ ହୋଇବ ଅମର ।୨୧।

କ୍ଷିପ୍ତ୍ୱା କ୍ଷୀରୋଦଧୌ ସର୍ବା ବୀରୁତ୍ତୃଣଲତୌଷଧୀଃ ।
ମନ୍ଥାନଂ ମନ୍ଦରଂ କୃତ୍ୱା ନେତ୍ରଂ କୃତ୍ୱା ତୁ ବାସୁକୀମ୍ । ୨୨ ।
ସହାୟେନ ମୟା ଦେବା ନିର୍ମନ୍ଥଧ୍ୱମତନ୍ଦ୍ରିତାଃ ।
କ୍ଲେଶଭାଜୋ ଭବିଷ୍ୟନ୍ତି ଦୈତ୍ୟା ଯୂୟଂ ଫଳଗ୍ରହାଃ । ୨୩ ।
ଯୂୟଂ ତଦନୁମୋଦଧ୍ୱଂ ଯଦିଚ୍ଛନ୍ତ୍ୟସୁରାଃ ସୁରାଃ ।
ନ ସଂରମ୍ଭେଣ ସିଧ୍ୟନ୍ତି ସର୍ବାର୍ଥାଃ ସାନ୍ତ୍ୱୟା ଯଥା । ୨୪ ।
ନ ଭେତବ୍ୟଂ କାଳକୂଟାଦ୍‌ବିଷାଜ୍ଜଳଧିସମ୍ଭବାତ୍ ।
ଲୋଭଃ କାର୍ଯ୍ୟୋ ନ ବୋ ଜାତୁ ରୋଷଃ କାମସ୍ତୁ ବସ୍ତୁଷୁ ।୨୫।

---

ହେ ଦେବତାମାନେ ! ତୁମ୍ଭେମାନେ କ୍ଷୀର ସମୁଦ୍ରରେ ଗୁଳ୍ମ, ତୃଣ, ଲତା, ଔଷଧି ସମସ୍ତ ନିକ୍ଷେପ କରି ମନ୍ଦର ପର୍ବତକୁ ମନ୍ଥନ ଦଣ୍ଡ କରି ଓ ବାସୁକୀକୁ ରଜ୍ଜୁ କରି ମୋ ସାହାଯ୍ୟରେ ଅନଳସ ଭାବରେ ମନ୍ଥନ କର । ଏପରି ଭାବରେ ମନ୍ଥନ କଲେ ତୁମ୍ଭମାନଙ୍କର ଫଳଲାଭ ହେବ ଏବଂ ଅସୁରମାନେ କ୍ଲେଶଭାଗୀ ହେବେ । ୨୨, ୨୩ ।

ହେ ଦେବଗଣ ! ଅସୁରମାନେ ଯାହା ଇଚ୍ଛା କରୁଅଛନ୍ତି, ତୁମ୍ଭେମାନେ ତାହା ଅନୁମୋଦନ କର, ସାମ ଉପାୟ ଦ୍ୱାରା ଯେପରି ଶୀଘ୍ର କାର୍ଯ୍ୟସିଦ୍ଧି ହୁଏ ସଂରମ୍ଭ ବା କ୍ରୋଧଦ୍ୱାରା ସେପରି କାର୍ଯ୍ୟସିଦ୍ଧି ହୁଏ ନାହିଁ ।୨୪।

ହେ ଦେବଗଣ ! ସମୁଦ୍ର ମନ୍ଥନରୁ କାଳକୂଟ ବିଷ ମଧ୍ୟ ଉତ୍ପନ୍ନ ହେବ, ସେଥିପାଇଁ ଭୟ କରିବ ନାହିଁ । ସମୁଦ୍ର ମନ୍ଥନରୁ ଅନ୍ୟାନ୍ୟ ଯେଉଁ ଲୋଭନୀୟ ବସ୍ତୁମାନ ଉତ୍ପନ୍ନ ହେବ ସେଥିପାଇଁ ଲୋଭ କରିବ ନାହିଁ କିମ୍ବା ଲୋଭରେ ବ୍ୟାଘାତ ଘଟିଲେ କ୍ରୋଧ କରିବ ନାହିଁ ।୨୫।

---

ଶୁଣ କହିବା ଉପଦେଶ
ବେଗେ ଗହନ ବନେ ପଶ
ଅମ୍ଳ ଔଷଧି ଗୁଳ୍ମ ଯେତେ
ବନସ୍ତି ଆଣ ଅପ୍ରମିତେ
ପାଷାଣେ ଛେଚ ବାହୁବଳେ
ନିକ୍ଷେପ କ୍ଷୀର ସିନ୍ଧୁଜଳେ
ସେ ଅମ୍ଳ ଯୋଗେ ବସୁ ଦଧି
ଯୋଗେ ଲଭିବ ସର୍ବସିଦ୍ଧି
ଏ ଯେ ମନ୍ଦର ମହୀଧର
ମନ୍ଥନ ଦଣ୍ଡ ଏହା କର
ବାସୁକୀ ନାଗ ରଜ୍ଜୁ କର
ମନ୍ଥନ ଦେବାସୁରେ ଧର ।୨୨।
ମୋହର ବୋଲେ ମହାବଳେ
ମନ୍ଥନ କର ଯା କୁଶଳେ
ତୁମ୍ଭେ ସେ ଅମୃତ ଖାଇବ
ନିରାଶ ହୋଇବେ ଦାନବ ।୨୩
ଇନ୍ଦ୍ର ପାଇବ ସର୍ବସିଦ୍ଧି
ସର୍ବ ସମ୍ପାଦିବ ଜଳଧି
ଶାନ୍ତ ବଚନେ କାର୍ଯ୍ୟ ପାଇ
ଆଗମ ଶାସ୍ତ୍ରେ ଏହା କହି ।୨୪
ପ୍ରଥମେ ବାସୁକୀ ବଦନେ
ଗରଳ ଛାଡ଼ିବ ବହନେ
ତହିଁକି ନ କରିବ ଭୟେ
ମୁଁ ପୁଣ କରିବ ଉପାୟେ
ମନ୍ଥନେ ଲଭି ବସ୍ତୁ ଯେତେ
ଲୋଭ ନ କରିବ ଯୁକତେ ।୨୫।

ଶ୍ରୀ ଶୁକ ଉବାଚ ।

ଇତି ଦେବାନ୍ ସମାଦିଶ୍ୟ ଭଗବାନ୍ ପୁରୁଷୋତ୍ତମଃ ।
ତେଷମନ୍ତର୍ଦ୍ଧଧେ ରାଜନ୍ ସ୍ୱଚ୍ଛନ୍ଦଗତିରୀଶ୍ୱରଃ । ୨୬ ।
ଅଥ ତସ୍ମୈ ଭଗବତେ ନମସ୍କୃତ୍ୟ ପିତାମହଃ ।
ଭବଶ୍ଚ ଜଗ୍ମତୁଃ ସ୍ୱଂ ସ୍ୱଂ ଧାମୋପେୟୁର୍ବଳିଂ ସୁରାଃ । ୨୭ ।
ଦୃଷ୍ଟ୍ୱାରୀନପ୍ୟସଂଯତ୍ତାନ୍ ଜାତକ୍ଷୋଭାନ୍ ସ୍ୱନାୟକାନ୍ ।
ନ୍ୟଷେଧଦ୍ଦୈତ୍ୟରାଟ୍ ଶ୍ଲୋକ୍ୟଃ ସନ୍ଧିବିଗ୍ରହକାଳବିତ୍ । ୨୮ ।
ତେ ବୈରୋଚନିମାସୀନଂ ଗୁପ୍ତଂ ଚାସୁରଯୂଥପୈଃ ।
ଶ୍ରିୟା ପରମୟା ଜୁଷ୍ଟଂ ଜିତାଶେଷମୁପାଗମନ୍ । ୨୯ ।

---

ଶ୍ରୀଶୁକଦେବ କହିଲେ—

ହେ ରାଜନ୍ ! ଭଗବାନ୍ ପୁରୁଷୋତ୍ତମ ଦେବତାମାନଙ୍କୁ ଏହିପରି ଆଦେଶ ଦେଇ ସେମାନଙ୍କ ସମ୍ମୁଖରେ ଅନ୍ତର୍ହିତ ହେଲେ । କାରଣ ଭଗବାନ୍ ଈଶ୍ୱରଙ୍କର ଗତି; ତାଙ୍କର ସ୍ୱ ଇଚ୍ଛାଧୀନ ।୨୬।

ଭଗବାନ୍ ଅନ୍ତର୍ହିତ ହୁଅନ୍ତେ ସମସ୍ତେ ତାହାଙ୍କୁ ନମସ୍କାର କରି ବ୍ରହ୍ମା ଓ ଶିବ ପ୍ରଭୃତି ସ୍ୱ ସ୍ୱ ସ୍ଥାନିକୁ ପ୍ରସ୍ଥାନ କରିଥିଲେ । ଦେବତାମାନେ ସନ୍ଧି ନିମିତ୍ତ କୃତସଂକଳ୍ପ ହୋଇ ବଳିଙ୍କ ନିକଟକୁ ଗମନ କରିଥିଲେ ।୨୭।

ସନ୍ଧି, ବିଗ୍ରହ, କାଳାଭିଜ୍ଞ ଦୈତ୍ୟରାଜ ବଳି କବଚ ଓ ଅସ୍ତ୍ରହୀନ ଶତ୍ରୁମାନଙ୍କୁ ଦେଖି ବଧୋଦ୍ୟତ ନିଜ ସୈନ୍ୟମାନଙ୍କୁ ଯୁଦ୍ଧରୁ ନିବୃତ୍ତ କରିଥିଲେ ।୨୮।

ଦେବତାମାନେ ତ୍ରୈଲୋକ୍ୟ-ବିଜୟୀ ପରମ ଶୋଭା ସମ୍ପନ୍ନ ଅସୁର ସୈନ୍ୟଗଣ ପରିରକ୍ଷିତ ଆସନୋପବିଷ୍ଟ ବିରୋଚନ ପୁତ୍ର ବଳିଙ୍କ ନିକଟକୁ ଆଗମନ କରିଥିଲେ ।୨୯।

---

ଶ୍ରୀଶୁକଉବାଚ—

ଏମନ୍ତେ ଦେବଗଣ କହି
ତକ୍ଷଣେ ଗୋବିନ୍ଦ ଆଦେଶହି
ନିଜ ଭୁବନେ ହରି ଗଲେ
ଭକତ ପାରିଷଦ ଭୁଲେ ।୨୬।
ରୁଦ୍ର ବ୍ରହ୍ମାଦି ଦେବଗଣେ
ନମିଲେ ବିଷ୍ଣୁର ଚରଣେ
ସକଳେ ହୋଇ ଏକତର
ବଳି ଭୁବନେ ଉପଗତ । ୨୭

ଦ୍ୱାରେ ଅସୁର ଯେତେ ଥିଲେ
ଦେବଗଣଙ୍କୁ ନିରୋଧିଲେ
ଦେବ ନିଷେଧ କଥା ଶୁଣି
ଅସୁରଙ୍କର ଚୂଡ଼ାମଣି
ସନ୍ଧି ବିଗ୍ରହ ସେ ଜାଣଇ
ବୋଲଇ ନିଜଗଣ ରାଇ
ଦେବଙ୍କୁ ଛାଡ଼ ତୁମ୍ଭେ ଦ୍ୱାର
କସ ବା କରିବେ ବିଗ୍ରହ ।୨୮
ଏମନ୍ତେ ବଳି ଆଜ୍ଞା ପାଇ
ଦ୍ୱାର ଛାଡ଼ିଲେ ସୁରବନ୍ଧି

ବଳି ନିକଟେ ଦେବେ ଯାଇ
ଜୟ ଶବଦ ତୁଣ୍ଡେ ଗାଇ
ବଳିକି ଦେଖିଲେ ଆସନେ
ବେଷ୍ଟିତ ଅସୁର ଗହଣେ
ସର୍ବ ସମ୍ପଦ ଯାର ଘରେ
କିବା ଉପମା ଦେବା ତାରେ
ନିଜ ଶରୀର ତେଜ ପୁଞ୍ଜେ
ଦିଗପାଳଙ୍କ ତେଜ ଗଞ୍ଜେ ।୨୯।

ମହେନ୍ଦ୍ରଃ ଶ୍ଲକ୍ଷ୍ଣୟା ବାଚା ସାନ୍ତ୍ୱୟିତ୍ୱା ମହାମତଃ ।
ଅଭ୍ୟଭାଷତ ତତ୍ସର୍ବଂ ଶିକ୍ଷିତଂ ପୁରୁଷୋତ୍ତମାତ୍ । ୩୦ ।
ତତ୍ତ୍ୱରୋଚତ ଦୈତ୍ୟସ୍ୟ ତତ୍ରାନ୍ୟେ ଯେଽସୁରାଧିପାଃ ।
ଶମ୍ବରୋଽରିଷ୍ଟନେମିଶ୍ଚ ଯେ ଚ ତ୍ରିପୁରବାସିନଃ । ୩୧ ।
ତତୋ ଦେବାସୁରାଃ କୃତ୍ୱା ସଂବଦଂ କୃତସୌହୃଦାଃ ।
ଉଦ୍ୟମଂ ପରମଂ ଚକ୍ରୁରମୃତାର୍ଥେ ପରନ୍ତପ । ୩୨ ।



ମହାମନା ମହେନ୍ଦ୍ର ମଧୁର ବାକ୍ୟଦ୍ୱାରା ଅସୁରମାନଙ୍କୁ ସାନ୍ତ୍ୱନା କରି ଭଗବାନଙ୍କର ଉପଦେଶ ଅନୁସାରେ ସମସ୍ତ କଥା କହିଲେ ।୩୦।

ଇନ୍ଦ୍ରଙ୍କ କଥିତ ବଚନ୍ସମାନ ଦୈତ୍ୟରାଜଙ୍କର ଏବଂ ତତ୍ରତ୍ୟ ପୌଲମ, କାଳେୟ, ଶମ୍ବର, ଅରିଷ୍ଟନେମୀ ପ୍ରଭୃତି ଦୈତ୍ୟମାନଙ୍କର ପ୍ରୀତି ଉତ୍ପାଦନ କରିଥିଲା ।୩୧।

ହେ ଶତ୍ରୁନାଶନ ! ତଦନନ୍ତର ଦେବତା ଓ ଅସୁରମାନେ ପରସ୍ପର ମଧ୍ୟରେ ସଖ୍ୟ ସ୍ଥାପନ କରିବାକୁ ପ୍ରତିଜ୍ଞାବଦ୍ଧ ହୋଇ କ୍ଷୀରସମୁଦ୍ର ମନ୍ଥନ ନିମିତ୍ତ ଯତ୍ନବାନ୍ ହୋଇଥିଲେ ।୩୨।

## ଇନ୍ଦ୍ରାଦି ଦେବତାଙ୍କର ସମୁଦ୍ର ମନ୍ଥନପାଇଁ ବଳିରାଜାଙ୍କ ସହ ପରାମର୍ଶ ।

ଇନ୍ଦ୍ର ଯେ ବଳି ମୁଖ ଚାହିଁ
ବିଶ୍ୱାସ ବଚନ ବୋଲଇ
ଶୁଣ ରାଜନ କହୁଁ ତୋତେ
ଏ ତିନି ଲୋକ ଶୁଭଅର୍ଥେ
ଦୁର୍ବାସା ଶାପ ମହାଘୋର
ଶ୍ରୀରଦ ନାଶିଲା ମୋହର
ସୋମ ସବିତା ତେଜ ଗଲା
ସ୍ୱାହା ସ୍ୱଧାହିଁ ନ ଚଳିଲା
କମ୍ପଇ ଏ ତିନି ଭୁବନ
ସର୍ବେ ହୋଇଲେ ଦୁଃଖେ ଛନ
ଏଣୁ ବିଷ୍ଣୁ ଭୁବନେ ଯାଇ
କହିଲୁଁ ବ୍ରହ୍ମା ରୁଦ୍ର ଲଇ

ପୁରୁଷୋତ୍ତମଙ୍କ ବଚନ
ରାଜନ ତୋଷମନେ ଶୁଣ
ବୋଇଲେ ଏ କ୍ଷୀର ଜଳଧି
ଅମ୍ଳ ସଂଯୋଗେ କରି ଦଧି
ମନ୍ଦର ଗିରିକି ଆଣିବ
ମଧ୍ୟ ସମୁଦ୍ରେ ତା ସ୍ଥାପିବ
ବାସୁକୀ ନାଗ ରଜ୍ଜୁ କରି
ଦେବେ ଅସୁରେ ତାହା ଧରି
ଯତନେ କରିବ ମନ୍ଥନ
ସୁଧା କରିବ ମୁଖେ ପାନ
ଯେତେ ଉପୁଜିବ ମନ୍ଥନେ
ସକଳେ ମିଳି ତୋଷ ମନେ

ସମାନ ଭାଗେ ଭୋଗ କରି
ସନ୍ତୋଷ ମନେ ଦେବାସୁର
ସଂସାର ହେଉ ଏବେ ରକ୍ଷା
ଏମନ୍ତେ ବିଷ୍ଣୁ ଦେଲେ ଶିକ୍ଷା
ଏଣୁ ତୁମ୍ଭର ସଙ୍ଗେ ଆମ୍ଭେ
ମିଳିଲୁ ମନ୍ଥନ ଆରମ୍ଭେ
ତୁମ୍ଭ ଆମ୍ଭର ଏକ ଗତି
ଯାହା କହିଲେ ଶ୍ରୀପତି ।୩୦।
ଏମନ୍ତ ଇନ୍ଦ୍ର ମୁଖୁଁ ଶୁଣି
ଅସୁର ମନେ ମନେ ଗୁଣି
ବୋଇଲେ ଶୁଭ କଥା ଏହି
ବିଷ୍ଣୁମାୟାରେ ମନ ମୋହି

ତତସ୍ତେ ମନ୍ଦରଗିରିମୋଜସୋତ୍ପାଟ୍ୟ ଦୁର୍ମ୍ମଦାଃ ।
ନଦନ୍ତ ଉଦଧିଂ ନିନ୍ୟୁଃ ଶକ୍ତାଃ ପରିଘବାହବଃ । ୩୩ ।
ଦୂରଭାରୋଦ୍‌ବହଶ୍ରାନ୍ତାଃ ଶକ୍ରବୈରୋଚନାଦୟଃ ।
ଅପାରୟନ୍ତସ୍ତଂ ବୋଢ଼ୁଂ ବିବଶାଃ ବିଜହୁଃ ପଥି । ୩୪ ।
ନିପତନ୍ ସ ଗିରିସ୍ତତ୍ର ବହୂନମରଦାନବାନ୍ ।
ଚୂର୍ଣ୍ଣୟାମାସ ମହତା ଭାରେଣ କନକାଚଳଃ । ୩୫ ।
ତାଂସ୍ତଥା ଭଗ୍ନମନସୋ ଭଗ୍ନବାହୂରୁକନ୍ଧରାନ୍ ।
ବିଜ୍ଞାୟ ଭଗବାନ୍‌ସ୍ତତ୍ର ବଭୂବ ଗରୁଡ଼ଧ୍ୱଜଃ । ୩୬ ।
ଗିରିପାତବିନିଷ୍ପିଷ୍ଟାନ୍ ବିଲୋକ୍ୟାମରଦାନବାନ୍ ।
ଈକ୍ଷୟା ଜୀବୟାମାସ ନିର୍ଜରାନ୍ ନିର୍ବ୍ରଣାନ୍ ଯଥା । ୩୭ ।

---

ତଦନନ୍ତର ଦୁର୍ମଦ ପରିଘ ସଦୃଶ ବାହୁ ବିଶିଷ୍ଟ ଏବଂ ଶକ୍ତିଶାଳୀ ଦେବତାମାନେ ଓ ଅସୁରମାନେ ସବଳରେ ମନ୍ଦର ପର୍ବତ ଉତ୍ପାଟନ କରି ଶବ୍ଦକରି କରି ସମୁଦ୍ର ନିକଟକୁ ଆନୟନ କରିଥିଲେ ।୩୩।

ଦୂରରୁ ଗୁରୁଭାର ବହନରେ ଶ୍ରାନ୍ତ ଇନ୍ଦ୍ର ଓ ବଳି ପ୍ରଭୃତି ସେହି ପର୍ବତକୁ ବହନ କରିବାକୁ ଅସମର୍ଥ ଓ କାତର ହୋଇ ମନ୍ଦର ପର୍ବତକୁ ପଥ ମଧ୍ୟରେ ପରିତ୍ୟାଗ କରିଥିଲେ ।୩୪।

ସେହି ସ୍ୱର୍ଣ୍ଣମୟ ମନ୍ଦର ପର୍ବତ ପଥମଧ୍ୟରେ ପତିତ ହୋଇ ଗୁରୁଭାର ବଶତଃ ଅସଂଖ୍ୟ ଦେବ ଦାନବଙ୍କୁ ଚୂର୍ଣ୍ଣ କରିଥିଲା । ୩୫ ।

ଦେବ ଦାନବମାନଙ୍କ ବିଫଳ ମନୋରଥ ଦେଖି ଓ ସେମାନଙ୍କର ବାହୁ, ଉରୁ ଏବଂ ସ୍କନ୍ଧଦେଶ ଭଗ୍ନ ହୋଇଥିବାର ଜାଣିପାରି ଭଗବାନ୍ ବିଷ୍ଣୁ ସେଠାରେ ଗରୁଡ଼ ପୃଷ୍ଠରେ ଆବିର୍ଭୂତ ହୋଇଥିଲେ ।୩୬

ପର୍ବତ ପତନଦ୍ୱାରା ନିଷ୍ପେଷିତ ଦେବ ଓ ଦାନବଗଣଙ୍କୁ ଦେଖି ଭଗବାନ୍ ବିଷ୍ଣୁ ଅମୃତମୟ ଦୃଷ୍ଟି ଦ୍ୱାରା ସେମାନଙ୍କ ନିରୋଗ ଓ ବ୍ରଣଶୂନ୍ୟ କରି ଜୀବିତ କରିଥିଲେ ।୩୭।

---

ବଳି ସଙ୍ଗତେ ଉଠି ସର୍ବେ
ସମ୍ମତ କଲେ ପ୍ରିୟଭାବେ
ଶମ୍ବରିଷ୍ଟ ନେମି ତୁଲେ
ଯେତେ ଦାନବ ବଳ ଥିଲେ
ବିଷ୍ଣୁମୋହନ ମାୟା ମତେ
ହରଷ ଅସୁରଙ୍କ ଚିତ୍ତେ
ଦେବ ଦାନବେ ପ୍ରୀତି ମନେ
ମିଳିଲେ ଗିରି ସନ୍ନିଧାନେ
ନାନା ତୀକ୍ଷଣ ଶସ୍ତ୍ର ଧରି
ଉପାଡ଼ି ବାହାନାଦ କରି

ଇନ୍ଦ୍ରର ତୁଲେ ଦେବେ ଯେତେ
ଅସୁର ବଳିର ସମେତେ
ସମସ୍ତେ ମୁଣ୍ଡେ ଗିରି କଲେ
ବଳେ କେତେହେଁ ଦୂର ନେଲେ । ୩୧-୩୩
କାହୁଁ ବହିବେ ଗିରିବର
ଯେ ଗିରିବରଙ୍କ ଶେଖର
ସଥେ ବହନ୍ତେ ଗରୁତରେ
ପଡ଼ିଲା ତାହାଙ୍କ ଉପରେ
ଚୂର୍ଣ୍ଣ ହୋଇଲେ ମହାଭରେ
ସକଳେ ପଡ଼ିଲେ ଭୂମିରେ

ମୁଣ୍ଡ ଚରଣ ବାହୁ ଚୂରି
ପଥେ ପଡ଼ିଲା ମହାଗିରି ।୩୪,୩୫
ଦେବଙ୍କୁ ଦେଖି ଭଗବାନ
ତକ୍ଷଣେ ଗରୁଡ଼-ଆସନ
ପଥେ ମିଳିଲେ ତାଙ୍କ ପାଶେ
ଦେବଙ୍କ ଭକତ ବିଶ୍ୱାସେ
କରେ ମନ୍ଦର ଗିରି-କଲେ
ଦେବ ଅସୁରଙ୍କୁ ସ୍ପର୍ଶିଲେ
ଅମୃତ ନୟନେ ଅନାଇ
ଜୀବନଦେଲେ କ୍ଷଣରାହି ।୩୬,୩୭।

ଗିରଞ୍ଚାରୋପ୍ୟ ଗରୁଡ଼େ ହସ୍ତେନୈକେନ ଲୀଳୟା ।
ଆରୁହ୍ୟ ପ୍ରଯଯାବବ୍ଧିଂ ସୁରାସୁରଗଣୈର୍ବୃତଃ । ୩୮ ।
ଅବରୋପ୍ୟ ଗିରିଂ ସ୍କନ୍ଧାତ୍ ସୁପର୍ଣ୍ଣଃ ପତତାଂ ବରଃ ।
ଯଯୌ ଜଳାନ୍ତ ଉତ୍ସୃଜ୍ୟ ହରିଣା ସ ବିସର୍ଜିତଃ । ୩୯ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଷଷ୍ଠୋଽଧ୍ୟାୟଃ ।

---

ତଦନନ୍ତର ଭଗବାନ୍ ଦେବତା ଓ ଅସୁର ପରିବୃତ ହୋଇ ଏକ ହସ୍ତରେ, ଅନାୟାସରେ ପର୍ବତକୁ ଗରୁଡ଼ ପୃଷ୍ଠରେ ସ୍ଥାପନ କରି ଏବଂ ନିଜେ ଗରୁଡ଼ରେ ଆରୋହଣ କରି ସମୁଦ୍ର ନିକଟକୁ ଗମନ କରିଥିଲେ ।୩୮।

ପକ୍ଷିରାଜ ଗରୁଡ଼ ନିଜର ସ୍କନ୍ଧରୁ ପର୍ବତକୁ ଓହ୍ଲାଇ ଜଳମଧ୍ୟରେ ସ୍ଥାପନ କରି ଭଗବାନଙ୍କର ଅନୁମତି ନେଇ ସେଠାରୁ ପ୍ରସ୍ଥାନ କରିଥିଲେ ।୩୯।

---

ଜଗନ୍ତ ଗୋବିନ୍ଦଙ୍କ କର
ତକ୍ଷଣେ ପାଇଲେ ଶରୀର
ଗୋବିନ୍ଦ ଏକ ହସ୍ତେ ଗିରି
ଲୀଳାଏ ନିଜ କରେ ଧରି
ଗରୁଡ଼ ଥୋଇ ଶୂନ୍ୟ ପଥେ
ଦେବ ଦାନବ ବଳ ଯୂଥେ

କ୍ଷୀର ଜଳଧି ତୀରେ ମିଳି
ଦେବ ଅସୁର ବନମାଳୀ
ଗରୁଡ଼ କାନ୍ଧୁ ଗିରିବର
କୂଳେ ନିବେଶି ଗଦାଧର
ଗରୁଡ଼ ଗଲା ନିଜ ପୁର
ଶୁଣ ପରୀକ୍ଷ ଦଣ୍ଡଧର ।୩୮,୩୯।

ବୋଲଇ ଦାସ ଜଗନ୍ନାଥ
ଅଷ୍ଟମ ସ୍କନ୍ଧେ ଭଗବତ
ଦେବ ଅସୁରଙ୍କର ସ୍ତବ
ଯହୁଁ ଅମୃତ ଉଦ୍‌ଭବ
ସୁଜନେ ଏଣେ ଚିତ୍ତ କର
ମାୟା ସଂକଟରୁ ନିସ୍ତର ।।

---

**ବିଶଦାର୍ଥ—**

ଦେବତାମାନେ ଅନନ୍ୟୋପାୟ ହୋଇ ଭଗବାନ୍ ଶ୍ରୀହରିଙ୍କର ଆଶ୍ରୟ ଗ୍ରହଣ କରିଥିଲେ । ଭଗବାନ୍ ସୁପ୍ରସନ୍ନ ହୋଇ ସେମାନଙ୍କୁ ହିତୋପଦେଶ ପ୍ରଦାନ କରିଥିଲେ । ଅମୃତୋତ୍ପାଦନ ଦ୍ୱାରା ଦେବତାମାନଙ୍କର ଶ୍ରୀବୃଦ୍ଧି ହେବ ବୋଲି ଜାଣି ମନ୍ଦର ପର୍ବତକୁ ମନ୍ଥନ ଦଣ୍ଡ, ବାସୁକୀକୁ ମନ୍ଥନ ରଜ୍ଜୁ କରି କ୍ଷୀର ସମୁଦ୍ର ମନ୍ଥନ କରିବାର ସ୍ଥିର ହେଲା । ସାମନୀତି ଅବଲମ୍ବନ କରି ଦାନବମାନଙ୍କ ସହିତ ସନ୍ଧି ସ୍ଥାପନ କରି କାର୍ଯ୍ୟ ସାଧନ କରିବାକୁ ଭଗବାନ୍ ଉପଦେଶ ଦେଇଥିଲେ । ଦେବତାମାନେ ସେହି ଉପଦେଶ ପାଳନ କରି ବିବେଚନା ପୂର୍ବକ ଦୈତ୍ୟରାଜ ବଳିଙ୍କ ସହିତ ସନ୍ଧିସ୍ଥାପନ କରିଥିଲେ । ସେହି ସନ୍ଧିସ୍ଥାପନ ଉତ୍ତାରୁ ଦେବଦାନବଗଣ ମନ୍ଦର ପର୍ବତ ଉତ୍ପାଟନ କରି କ୍ଷୀର ସମୁଦ୍ରକୁ ଆଣିବାକୁ ଚେଷ୍ଟା କରିଥିଲେ । ମାତ୍ର ଫଳରେ ସେମାନେ ହୀନବଳ ଓ କ୍ଷତବିକ୍ଷତ ହୋଇ ସେହି ଉଦ୍ୟମରୁ ବିରତ ହୋଇଥିଲେ । ଦେବଦାନବଗଣଙ୍କର ଦୁରବସ୍ଥା ଦର୍ଶନକରି ଭଗବାନ୍ ଶ୍ରୀହରି ଗରୁଡ଼ ପୃଷ୍ଠରେ ଉପସ୍ଥିତ ହୋଇ ଏକହସ୍ତରେ ଅନାୟାସରେ ମନ୍ଦର ପର୍ବତକୁ ଧାରଣକରି କ୍ଷୀର ସମୁ , ମଧ୍ୟରେ ନିକ୍ଷେପ କରିଥିଲେ । ଏତଦ୍ୱାରା ସର୍ବ ଶକ୍ତିମାନ୍ ପରମେଶ୍ୱରଙ୍କ ବୁଦ୍ଧି, କୌଶଳ ଓ ଶକ୍ତିର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଅଛି ।

# ସପ୍ତମୋଽଧ୍ୟାୟଃ ।

ସପ୍ତମେ ମଥନୋଦ୍ଭୂତବିଷଭୀତ୍ୟାଖିଳୈର୍ଜ୍ଜନୈଃ ।
ସ୍ତୁତଃ ସନ୍ କୃପୟା ରୁଦ୍ରଃ ପପୌ ବିଷମିତୀର୍ଯ୍ୟତେ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ତେ ନାଗରାଜମାମନ୍ତ୍ର୍ୟ ଫଳଭାଗେନ ବାସୁକିମ୍ ।
ପରିବୀୟ ଗିରୌ ତସ୍ମିନ୍ ନେତ୍ରମବ୍ଧିଂ ମୁଦାନ୍ୱିତାଃ ।
ଆରେଭିରେ ସୁରା ଯତ୍ତା ଅମୃତାର୍ଥେ କୁରୁଦ୍ୱହ । ୧ ।
ହରିଃ ପୁରସ୍ତାଜ୍ଜଗୃହେ ପୂର୍ବଂ ଦେବାସ୍ତତୋଽଭବନ୍ ।୨।

---

## ସାଗର ମନ୍ଥନରୁ ବିଷୋତ୍ପତ୍ତି ଓ ଶିବଙ୍କର ବିଷପାନ ।

ସପ୍ତମ ଅଧ୍ୟାୟରେ ସାଗର ମନ୍ଥନରୁ ବିଷ ବାହାରନ୍ତେ ସମସ୍ତେ ଭୟଭୀତ ହୋଇ ଶିବଙ୍କୁ ସ୍ତୁତି କରନ୍ତେ ଶିବ ସ୍ୱୟଂ ବିଷପାନ କରିବା ବିଷୟ ବର୍ଣ୍ଣିତ ହୋଇଅଛି ॥ ° ॥

ଶ୍ରୀ ଶୁକଦେବ କହିଲେ—

ହେ କୁରୁଶ୍ରେଷ୍ଠ ! ଦେବତାମାନେ ଓ ଅସୁରମାନେ ନାଗରାଜ ବାସୁକିଙ୍କୁ କହିଲେ ଆପଣ ମଧ୍ୟ ସମୁଦ୍ର ମନ୍ଥନରେ ଫଳଭାଗୀ ହେବେ । ସର୍ପରାଜ ବାସୁକିଙ୍କୁ ମନ୍ଦର ପର୍ବତର ବେଷ୍ଟନ ରଜ୍ଜୁ କରି ଅତ୍ୟନ୍ତ ଆନନ୍ଦରେ ସମୁଦ୍ରମନ୍ଥନ କରିବାକୁ ଲାଗିଲେ ।୧।

ପ୍ରଥମେ ଭଗବାନ୍ ଶ୍ରୀହରି ବାସୁକିଙ୍କର ମୁଖକୁ ଧାରଣ କଲେ ଏବଂ ଦେବତାମାନେ ମଧ୍ୟ ଏହି ମୁହଁ ଆଡୁ ଧରିଥିଲେ । ଏହାଦେଖି ଦୈତ୍ୟମାନେ ମନେ କଲେ ଯେ ମୁହଁ ଆଡୁ ଧରିବା ଅତ୍ୟନ୍ତ ପୌରୁଷର କାର୍ଯ୍ୟ; ତେଣୁ ଦେବତାମାନଙ୍କୁ ମୁହଁ ଆଡୁ ଧରିବାକୁ ଦେଲେ ନାହିଁ ।୨।

---

ମନ୍ଥନୁ-ଜାତ ବିଷଡରେ, ଅଖିଳ ଲୋକ ସ୍ତୁତି କଲେ । ତାଶୁଣି ରୁଦ୍ର ବିଷପାନ, କରିଲେ ସପ୍ତମେ ବର୍ଣ୍ଣନ ॥

ଶ୍ରୀଶୁକଉବାଚ—

ବ୍ୟାସ ତନୟ ଅନୁରାଗେ
କହନ୍ତି ପରୀକ୍ଷିତ ଆଗେ
ଦେବ ଦାନବ ଲୋକପାଳେ
ପ୍ରବେଶ ହୋଇଲେ ପାତାଳେ
ବାସୁକି ନିକଟେ ମିଳିଲେ
ସମୁଦ୍ର ମନ୍ଥନେ ବରିଲେ

ଗୋବିନ୍ଦ ଆଜ୍ଞା ଶିରେ ଧରି
ଉଭୟ ରୂପ ଅଙ୍ଗୀକରି
ଧରଣୀ ଧରି ଏକ ରୂପେ
ମିଳିଲା କ୍ଷୀରୋଦ ସମୀପେ
ଦେହରେ ବେଷ୍ଟି ମହାଗିରି
ରହିଲା ରଜ୍ଜୁରୂପ ଧରି । ୧ ।
ଦେବେ ସକଳେ ତୋଷମନେ
ଆରମ୍ଭ ସମୁଦ୍ର ମନ୍ଥନେ

ବାସୁକି ଫଣା ଅଗ୍ରେ ହରି
ଦେବଙ୍କ କଲେ ବେଗେ ଧରି
ବୋଲନ୍ତି ଅସୁରଙ୍କୁ ସ୍ୱହି
ତୁମ୍ଭେ ହୋ ପୁଛ ଧର ଯାଇଁ ।୨।

ତଦ୍ଦୈକ୍ଷ୍ୟ ଦୈତ୍ୟପତୟୋ ମହାପୁରୁଷଚେଷ୍ଟିତମ୍ ।
ନ ଗୃହ୍ଣୀମୋ ବୟଂ ପୁଚ୍ଛମହେରଙ୍ଗମମଙ୍ଗଳମ୍ । ୩ ।
ସ୍ୱାଧ୍ୟାୟଶ୍ରୁତସମ୍ପନ୍ନାଃ ପ୍ରଖ୍ୟାତା ଜନ୍ମକର୍ମଭିଃ ।
ଇତି ତୂଷ୍ଣୀଂ ସ୍ଥିତାନ୍ ଦୈତ୍ୟାନ୍ ବିଲୋକ୍ୟ ପୁରୁଷୋତ୍ତମଃ ।୪।
ସ୍ମୟମାନୋ ବିସୃଜ୍ୟାଗ୍ରଂ ପୁଚ୍ଛଂ ଜଗ୍ରାହ ସାମରଃ ।
କୃତସ୍ଥାନବିଭାଗାସ୍ତେ ଏବଂ କଶ୍ୟପନନ୍ଦନାଃ । ୫ ।
ମମନ୍ଥୁଃ ପରମଂ ଯତ୍ତା ଅମୃତାର୍ଥଂ ପୟୋନିଧିମ୍ ।
ମଥ୍ୟମାନେଽର୍ଣ୍ଣବେ ସୋଽଦ୍ରିରନାଧାରୋ ହ୍ୟପୋଽବିଶତ୍ ।
ଧ୍ରିୟମାଣୋଽପି ବଳିଭି ର୍ଗୌରବାତ୍ ପାଣ୍ଡୁନନ୍ଦନ । ୬ ।

---

ଅସୁର୍‌ମାନେ କହିଲେ ଆମ୍ଭେମାନେ ଜନ୍ମ ଓ କର୍ମଦ୍ୱାରା ବିଖ୍ୟାତ ଏବଂ ବେଦାଧ୍ୟୟନ ଓ ଶାସ୍ତ୍ରଜ୍ଞାନ ସମ୍ପନ୍ନ । ସୁତରାଂ ଅମଙ୍ଗଳକର ସର୍ପର ପୁଚ୍ଛ ଆମ୍ଭେମାନେ କଦାପି ଧାରଣ କରିବୁ ନାହିଁ । ଏହା କହି ସେମାନେ ତୂନି ହୋଇ ରହିଲେ ।୩।

ଦୈତ୍ୟପତିଙ୍କର ଏହି ବାକ୍ୟ ଶ୍ରବଣକରି ଭଗବାନ୍ ଶ୍ରୀହରି ଈଷତ୍ ହାସ୍ୟ କଲେ ଏବଂ ଅମର-ମାନଙ୍କ ସହିତ ଅଗ୍ରଭାଗ ପରିତ୍ୟାଗ କରି ପୁଚ୍ଛଭାଗ ଗ୍ରହଣ କରିଥିଲେ ।୪।

କଶ୍ୟପନନ୍ଦନ ସୁରାସୁରମାନେ ଏହିପରି ସ୍ଥାନ ବିଭାଗ କରି ଅମୃତ ନିମିତ୍ତ ଅତିଶୟ ଯତ୍ନପୂର୍ବକ ସମୁଦ୍ର ମନ୍ଥନ କରିଥିଲେ ।୫।

ହେ ପାଣ୍ଡୁନନ୍ଦନ (ପରୀକ୍ଷିତ) । ସମୁଦ୍ର ମଥିତ ହୁଅନ୍ତେ ମନ୍ଦର ପର୍ବତ ଆଧାରଶୂନ୍ୟ ଭାବରେ ରହିଥିବାରୁ ଅତ୍ୟନ୍ତ ଗୁରୁଭାର ହେତୁ ବଳବାନ୍ ଦେବଦାନବଙ୍କ କର୍ତ୍ତୃକ ଧୃତ ହୋଇଥିଲେ ମଧ୍ୟ ଜଳ ମଧ୍ୟରେ ନିମଗ୍ନ ହେଲା ।୬।

---

ହରି ବଚନ ଶୁଣି କର୍ଣ୍ଣେ
ଅସୁରେ ଭଲ ଅନ୍ୟୋ ଅନ୍ୟେ
ବୋଇଲେ ବିଷ୍ଣୁ ମୁଖ ରହି
ଏ କଥା ଉଚିତ ନୁହଇ
ସ୍ୱଭାବେ ସର୍ପର ଲାଙ୍ଗୁଳ
କେବେହେଁ ନୁହଇ ମଙ୍ଗଳ
ଆମ୍ଭେ ଦେବଙ୍କ ଅଗ୍ରେ ଜାତ
ପବିତ୍ର କଶ୍ୟପଙ୍କ ସୁତ
ଧର୍ମ୍ମ ଅଧର୍ମ୍ମ ଆମ୍ଭେ ଜାଣୁଁ
ଆଗମ ନିଗମ ପ୍ରମାଣୁ
ପ୍ରଖ୍ୟାତଜନ କୁଳଶୀଳ
କେମନ୍ତେ ଧରିବୁ ଲାଙ୍ଗୁଳ ।୩।
ଆମ୍ଭର ଏଥେ କାର୍ଯ୍ୟ ନାହିଁ
ଏମନ୍ତେ ଭଗ୍ନ ଚିତ୍ତେ ରହି
ସର୍ବ ଅସୁରେ ଏକମେଳେ
ରହିଲେ କ୍ଷୀର-ସିନ୍ଧୁ-କୂଳେ
ରହିଲେ ଆରମ୍ଭ ଉପେକ୍ଷି
ପୁରୁଷୋତ୍ତମ ତାହା ଦେଖି
ପୁଚ୍ଛ ଧଇଲେ ଶିରାରଙ୍ଗ
ସର୍ବ ଦେବତା ଘେନି ସଙ୍ଗ ।୪।
ମନ୍ଦର ଧରି ବାହୁବଳେ
ସ୍ଥାପିଲେ ସିନ୍ଧୁ ମଧ୍ୟ ଜଳେ
ସ୍ୱଭାବେ ଗମ୍ଭୀର ଜଳଧି
ଯୋଜନ ଅଷ୍ଟଲକ୍ଷ ଭେଦି
ଗିରି ପଶିଲା ରସାତଳେ
ଖୋଜି ନ ପାଇଲେ ସକଳେ ।୫,୬

ତେ ସୁନିର୍ବିଣ୍ଣମନସଃ ପରିମ୍ଳାନମୁଖଶ୍ରିୟଃ ।
ଆସନ୍ ସ୍ୱପୌରୁଷେ ନଷ୍ଟେ ଦୈବେନାତିବଲୀୟସା । ୭ ।
ବିଲୋକ୍ୟ ବିଘ୍ନେଶବିଧିଂ ତଦେଶ୍ୱରୋ ଦୁରନ୍ତବୀର୍ଯ୍ୟୋଽବିତଥାଭିସନ୍ଧିଃ ।
କୃତ୍ୱା ବପୁଃ କାଚ୍ଛପମଦ୍ଭୁତଂ ମହତ୍ ପ୍ରବିଶ୍ୟ ତୋୟଂ ଗିରିମୁଜ୍ଜହାର ହ । ୮ ।
ତମୁତ୍ଥିତଂ ବୀକ୍ଷ୍ୟ କୁଳାଚଳଂ ପୁନଃ ସମୁଦ୍ୟତା ନିର୍ମଥିତୁଂ ସୁରାସୁରାଃ ।
ଦଧାର ପୃଷ୍ଠେନ ସ ଲକ୍ଷଯୋଜନପ୍ରସ୍ତାରିଣା ଦ୍ୱୀପଇବାପରୋ ମହାନ୍ । ୯ ।
ସୁରାସୁରେନ୍ଦ୍ରୈର୍ଭୁଜବୀର୍ଯ୍ୟବେପିତଂ ପରିଭ୍ରମନ୍ତଂ ଗିରିମଙ୍ଗ ପୃଷ୍ଠତଃ ।
ବିଭ୍ରତ୍ ତଦାବର୍ତ୍ତନମାଦିକଚ୍ଛପୋ ମେନେଽଙ୍ଗକଣ୍ଡୂୟନମପ୍ରମେୟଃ । ୧୦ ।

---

ଅତ୍ୟନ୍ତ ବଳବାନ୍ ଦୈବକର୍ତ୍ତୃକ ନିଜ ନିଜର ଚେଷ୍ଟା ବିଫଳ ହୁଅନ୍ତେ ଦେବତାମାନଙ୍କର ଓ ଅସୁରମାନଙ୍କର ମୁଖଶ୍ରୀ ମ୍ଳାନ ହୋଇଗଲା ଏବଂ ସମସ୍ତେ ଦୁଃଖିତ ହୋଇଥିଲେ ।୭।

ସେତେବେଳେ ଅସୀମ ଶକ୍ତିଶାଳୀ ସତ୍ୟ ସଙ୍କଳ୍ପ ଭଗବାନ୍ ବିଷ୍ଣୁ ବିଘ୍ନେଶଙ୍କ ଦ୍ୱାରା ଏ ପ୍ରକାର ବିଘ୍ନ ଦେଖି ଅତି ଅଦ୍ଭୁତ, ଅତି ବିଶାଳକାୟ କଚ୍ଛପରୂପ ଧାରଣ କରି ଜଳ ମଧ୍ୟରେ ପ୍ରବେଶ କରିଥିଲେ ଏବଂ ସେହି ପର୍ବତକୁ ଉଠାଇ ଧରିଥିଲେ ।୮।

ମନ୍ଦରପର୍ବତ ଉଥିତ ହେବାର ଦେଖି ଦେବତା ଓ ଅସୁରମାନେ ପୁନର୍ବାର ସମୁଦ୍ରମନ୍ଥନ କରିବା ନିମିତ୍ତ ଉଦ୍ୟତ ହୋଇଥିଲେ । ଭଗବାନ୍ ବିଷ୍ଣୁ ମହାଦ୍ୱୀପ ତୁଲ୍ୟ ନିଜର କୂର୍ମ ଶରୀରକୁ ବିସ୍ତାର କରି ଲକ୍ଷ ଯୋଜନ ବିସ୍ତୃତ ପୃଷ୍ଠ ଦେଶରେ ମନ୍ଦର ପର୍ବତକୁ ଧାରଣ କରିଥିଲେ ।୯।

ଦେବତା ଓ ଦାନବମାନଙ୍କର ଭୁଜବଳରେ କମ୍ପିତ ଓ ସର୍ବତୋଭାବରେ ପରିଭ୍ରମଣ କାରୀ ଆବର୍ତ୍ତମାନ ଏହି ପର୍ବତରାଜକୁ ଆଦି କୂର୍ମ ଶରୀରଧାରୀ ଅପ୍ରମେୟ ଭଗବାନ୍ ନିଜର ପୃଷ୍ଠଦେଶରେ ଧାରଣ କରି ତାହାର ଆବର୍ତ୍ତନକୁ ନିଜର ଅଙ୍ଗ କଣ୍ଡୁୟନ ବୋଲି ମନେ କରିଥିଲେ ।୧୦।

---

ଗାରେ ଉଠିଲେ ଦୁଃଖମନେ
ବଦନ ଚାହିଁ ଅନ୍ୟୋଅନ୍ୟ
ନଶିଲା ନିଜ ପୁରୁଷକାର
ଦୂରେଦେ କେ ବହୁ ଅହଙ୍କାର
ଦଇବ ବଳ ବଳୀୟାର
ନାଶଇ ଆରମ୍ଭ ସକଳ । ୭ ।
ଦେବ ଦାନବ ବିଷ୍ଣୁପାଶେ
ରହି ଚାହାଁନ୍ତି ଦଶ ଦିଶେ
ତାହାଙ୍କ ଦର୍ପଭଙ୍ଗ ଚାହିଁ
ମହାମହିମ ଭବଗାହୀ
ପଡାଳେ କୂର୍ମରୂପ ଧରି
ପୃଷ୍ଠେ ବସାଇ ମହାଗିରି

ଉଠିଲେ ଘେନି ଗିରିବର
ଗାରେ ଦେଖନ୍ତି ଦେବାସୁର
ଯେସନେ ସରୋବର ମଧ୍ୟେ
ପୁଷ୍ପ ବିରାଜେ ଜଳ ମଧ୍ୟେ ।୮।
ଗିରି ଯୋଜନ ଏକାଦଶ
ଜଳେ ରହିଲା ଅବଶେଷ
ଗୋବିନ୍ଦ ଯୋଗମାୟା କରି
ତକ୍ଷଣେ ମାୟା ରୂପ ଧରି
ଗିରି ଆବୋରି ପୃଷ୍ଠଦେଶେ
ମସ୍ତକ ଲାଗିଲା ଆକାଶେ
ଦେଖି ସାନନ୍ଦ ଦେବାସୁରେ
ବାସୁକି ଧରି ତେଜଭରେ

ପର୍ବତେ ଚକ୍ରଗୁଣ କରି
ରହିଲେ ମନ୍ଥନ ଆବୋରି
ଦେବେ ଅସୁର ବେନି ଭାଗେ
ବାସୁକି ଧରି ଅତି ବେଗେ
ହୁଁକାରେ କରନ୍ତି ମନ୍ଥନ
ଶୁଣ ପରୀକ୍ଷିତ ରାଜନ ।
କଚ୍ଛପ ଗିରି ଘରଷଣେ
ଆନନ୍ଦ ଉଠିଲା ତକ୍ଷଣେ
କଣ୍ଡୁ ଯେ କୂର୍ମ ପୃଷ୍ଠେ ଥିଲା
ତକ୍ଷଣେ ଉଶ୍ୱାସ ହୋଇଲା
କଣ୍ଡୁ ଘରଷେ ସୁଖ ବୁଝି
ସେ କୂର୍ମ ବେନି ଚକ୍ଷୁ ବୁଜି

ତଥାସୁରାନାବିଶଦାସୁରେଣ ରୂପେଣ ତେଷାଂ ବଲବୀର୍ଯ୍ୟମୀରୟନ୍ ।
ଉଦ୍ଦୀପୟନ୍ ଦେବଗଣାଂଶ୍ଚ ବିଷ୍ଣୁର୍ଦୈବେନ ନାଗେନ୍ଦ୍ରମବୋଧରୂପଃ । ୧୧ ।
ଉପର୍ଯ୍ୟଗେନ୍ଦ୍ରଂ ଗିରିରାଡ଼ିବାନ୍ୟ ଆକ୍ରମ୍ୟ ହସ୍ତେନ ସହସ୍ରବାହୁଃ ।
ତସ୍ଥୌ ଦିବି ବ୍ରହ୍ମଭବେନ୍ଦ୍ରମୁଖୈର୍ୟରଭିଷ୍ଟୁବଦ୍ଭିଃ ସୁମନୋଽଭିବୃଷ୍ଟଃ । ୧୨ ।
ଉପର୍ଯ୍ୟଧଶ୍ଚାତ୍ମନି ଗୋତ୍ରନେତ୍ରୟୋଃ ପରେଣ ତେ ପ୍ରାବିଶତା ସମେଧିତାଃ ।
ମମନ୍ଥୁରବ୍ଧିଂ ତରସା ମଦୋତ୍କଟା ମହାଦ୍ରିଣା କ୍ଷୋଭିତନକ୍ରଚକ୍ରମ୍ ।୧୩।
ଅହୀନ୍ଦ୍ରସାହସ୍ରକଠୋରଦୃଙ୍ମୁଖଶ୍ୱାସାଗ୍ନିଧୂମାହତବର୍ଚସୋଽସୁରାଃ ।
ପୌଲୋମକାଲେୟବଲୀଲ୍ୱଲାଦୟୋ ଦାବାଗ୍ନିଦଗ୍ଧା ଶରଳା ଇବାଭବନ୍ ।୧୪।

---

ତଦନନ୍ତର ସେହି ଭଗବାନ୍ ଅସୁରମାନଙ୍କ ମଧ୍ୟରେ ଅସୁରରୂପେ ପ୍ରବିଷ୍ଟ ହୋଇ ସେମାନଙ୍କର ବଳବୀର୍ଯ୍ୟ ବର୍ଦ୍ଧନ କରି ତାମସ ଶକ୍ତିରୂପେ ବାସୁକି ଦେହରେ ପ୍ରବେଶ କରି ତାହାଙ୍କୁ ସବଳ କରିଥିଲେ, ଏବଂ ଉପରିଭାଗରେ ଅନ୍ୟ ଏକ ପର୍ବତରାଜ ତୁଲ୍ୟ ଅବସ୍ଥାନ କରି ପର୍ବତରାଜଙ୍କୁ ଧରି ରଖିଥିଲେ । ଏହା ଦେଖି ସ୍ୱର୍ଗର ଦେବତା ବ୍ରହ୍ମା, ଶିବ, ଇନ୍ଦ୍ର ପ୍ରଭୃତି ତାହାଙ୍କୁ ସ୍ତବକରି ପୁଷ୍ପାଞ୍ଜଳି ଦ୍ୱାରା ପୂଜା କରିଥିଲେ । ୧୧, ୧୨ ।

ଉପରିଭାଗରେ, ଅଧୋଭାଗରେ, ଦେବଦାନବଙ୍କ ମଧ୍ୟରେ, ପର୍ବତରେ ଏବଂ ବାସୁକି ମଧ୍ୟରେ ପ୍ରବିଷ୍ଟ ହୋଇ ଭଗବାନ୍ ଶ୍ରୀହରିଙ୍କ କର୍ତ୍ତୃକ ପରିବର୍ଦ୍ଧିତ ଓ ଉତ୍ସାହିତ ହୋଇ ଦେବଦାନବମାନେ ଅତି ବେଗରେ ମହାଗିରି ମନ୍ଦର ଦ୍ୱାରା ଜଳଚର ନକ୍ରାଦି ଜନ୍ତୁମାନଙ୍କୁ କ୍ଷୋଭିତକରି ସମୁଦ୍ରମନ୍ଥନକରିବାକୁ ଲାଗିଲେ ।୧୩

ସର୍ପରାଜ ବାସୁକିର ସହସ୍ର ମୁଖ ଓ ନେତ୍ରରୁ ଜାତ ଶ୍ୱାସାଗ୍ନି ଓ ଧୂମଦ୍ୱାରା ଅସୁରମାନେ ନିସ୍ତେଜ ହୋଇ ପଡ଼ିଲେ; ପୌଲୋମ, କାଳକେୟ, ବଳି, ଇଲ୍ୱଳ ପ୍ରଭୃତି ଅସୁରମାନେ ଦାବାଗ୍ନି ଦଗ୍ଧ ବୃକ୍ଷ-ତୁଲ୍ୟ ନିଷ୍ପ୍ରଭ ହୋଇଗଲେ ।୧୪।

---

ସୁଖେ ନିଦ୍ରିତ ନାରାୟଣ
କେ ସହେ ଅଚଳ ଧାରଣ ।୯,୧୦
ପୁଣି ଗୋବିନ୍ଦ ଅନ୍ତରୀକ୍ଷେ
ମିଳିଲେ ଦେବଙ୍କ ପ୍ରତ୍ୟକ୍ଷେ
ଦେବ ଅସୁର ଅଳ୍ପ ବଳ
ଜାଣିଲେ ପ୍ରଭୁ ଆଦିମୂଳ
ତକ୍ଷଣେ ପ୍ରଭୁ ଭବଗ୍ରାହୀ
ଦେବ ଦାନବ ମଧ୍ୟେ ଯାଇ
ପଶିଲେ ତାହାଙ୍କର ଦେହେ
ହୋଇଲା ବଳ ଅପ୍ରମିତେ
ବାସୁକି ଦେହେ ନରହରି
ପଶିଲେ ବଳ ରୂପ ଧରି

ସହସ୍ର ଭୁଜେ ଶୂନ୍ୟ ଦେଶେ
ଗିରି ଆବୋରି ହୃଦଗତେ
ରହିଲେ ପ୍ରଭୁ ନାରାୟଣ
ଶୂନ୍ୟେ ଦେଖନ୍ତି ଋଷିଗଣ
ଗଗନେ ବିମାନ ଆରୋହି
ସ୍ତୁତି କରନ୍ତି ବିଷ୍ଣୁ ଚାହିଁ
ପୁଷ୍ପ ବରଷି ବେଦନାଦେ
ମୁନି ଏ ଦେଖନ୍ତି ଆନନ୍ଦେ
ଦେଖନ୍ତି ଅଧ ଊର୍ଦ୍ଧ୍ୱେ ଚାହିଁ
ହରିହିଁ ଅନ୍ୟ ନ ଦିଶଇ ।୧୧,୧୨
ଉତ୍କଟ ମଦେ ସୁରାସୁରେ
ଗିରି ଘୂରାନ୍ତି ଅତି ଖରେ

ମହା ପର୍ବତ ଘରଷଣେ
ଥିଲେ ଯେ ଜଳଜନ୍ତୁ ଗଣେ
ଜଳଧି ମଧ୍ୟେ ମୋକ୍ଷ ପାଇ
କଛେ ରହିଲେ ସ୍ଥିର ହୋଇ ।୧୩
ବାସୁକି ସହସ୍ର ବଦନେ
ନିଶ୍ୱାସ ଛାଡ଼େ ଘନ ଘନେ
ତାର ନିଶ୍ୱାସ ଦାବାନଳ
ପୂରିଲା ଜଗ ଅନ୍ତରାଳ
ନିଶ୍ୱାସ ଅଗ୍ନି ଧୂମ ଲାଗି
ଦେବ ଦାନବେ ଦୁଃଖଭାଗୀ
ସ୍ଥଳ ନ ପାରନ୍ତି ମନ୍ଦର
ତାହାଙ୍କୁ ଦେଖି ଦାମୋଦର

ଦେବାଂଶ୍ଚ ତଚ୍ଛ୍ୱାସଶିଖାହତପ୍ରଭାନ୍ ଧୂମ୍ରାମ୍ବରସ୍ରଗ୍‌ବରକଞ୍ଚୁକାନନାନ୍ ।
ସମଭ୍ୟବର୍ଷନ୍ ଭଗବଦ୍‌ବଶା ଘନା ବବୁଃ ସମୁଦ୍ରୋର୍ମ୍ମ୍ୟୁପଗୂଢ଼ବାୟବଃ ।୧୫।
ମଥ୍ୟମାନାତ୍ ତଥା ସିନ୍ଧୋର୍ଦ୍ଦେବାସୁରବରୁଥପୈଃ ।
ଯଦା ସୁଧା ନ ଜାୟେତ ନିର୍ମ୍ମମନ୍ଥାଜିତଃ ସ୍ୱୟମ୍ । ୧୬ ।
ମେଘଶ୍ୟାମଃ କନକପରଧିଃ କର୍ଣ୍ଣବିଦ୍ୟୋତବିଦ୍ୟୁ
ନ୍ମୂର୍ଦ୍ଧ୍ନି ଭ୍ରାଜଦ୍‌ବିଲୁଳିତକଚଃ ସ୍ରଗ୍‌ଧରୋରକ୍ତନେତ୍ରଃ ।
ଜୈତ୍ରୈର୍ଦ୍ଦୋର୍ଭିର୍ଜଗଦଭୟଦୈର୍ଦ୍ଦନ୍ଦଶୂକଂ ଗୃହୀତ୍ୱା ।
ମଥ୍ନନ୍ ମଥ୍ନା ପ୍ରତିଗିରିରିବାଶୋଭତାଥୋ ଧୃତାଦ୍ରିଃ । ୧୭ ।

---

ସେହି ସର୍ପରାଜ ବାସୁକିର ଶ୍ୱାସାଗ୍ନିର ଶିଖା ପ୍ରଭାବରେ ହତପ୍ରଭ ଦେବତାମାନଙ୍କର ମୁଖମଣ୍ଡଳ ବସ୍ତ୍ର, ମାଲ୍ୟ, କଞ୍ଚୁକାଦି ଆଭରଣ ବିବର୍ଣ୍ଣ ହୋଇଗଲା । ସେତେବେଳେ ଭଗବାନଙ୍କ ଦୃଷ୍ଟିରୁ ନିର୍ଗତ ମେଘବର୍ଷଣ ଦ୍ୱାରା ଓ ସମୁଦ୍ର ତରଙ୍ଗର ଶୀତଳ ବାୟୁଦ୍ୱାରା ସେମାନେ କିଞ୍ଚିତ୍ ସୁସ୍ଥ ହୋଇଥିଲେ ।୧୫।

ଏହିପରି ଦେବତା ଓ ଅସୁରମାନଙ୍କ ମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତିମାନେ ମନ୍ଥନ କଲେ ମଧ୍ୟ ସମୁଦ୍ରରୁ କୌଣସି ଅମୃତ ଉତ୍ପନ୍ନ ହେଲାନାହିଁ । ତହୁଁ ସ୍ୱୟଂ ଭଗବାନ୍ ମନ୍ଥନ କରିବାକୁ ଆରମ୍ଭ କଲେ ।୧୬।

ତଦନନ୍ତର ମେଘତୁଲ୍ୟ ଶ୍ୟାମବର୍ଣ୍ଣ, ସ୍ୱର୍ଣ୍ଣରଞ୍ଜିତ ପୀତବର୍ଣ୍ଣ ବସ୍ତ୍ରଧାରୀ କର୍ଣ୍ଣଯୁଗରେ ବିଦ୍ୟୁତ୍‌ପ୍ରଭ କୁଣ୍ଡଳ ଜ୍ୟୋତି ଶୋଭିତ ଆକୁଳାୟିତ କେଶଯୁକ୍ତ ବନମାଳୀନ, ରକ୍ତବର୍ଣ୍ଣ ନେତ୍ର ବିଶିଷ୍ଟ, ପର୍ବତଧାରୀ ଭଗବାନ ବିଷ୍ଣୁ ଜୟଶୀଳ, ଶରଣାଗତ ପ୍ରାଣୀମାନଙ୍କର ଅଭୟଦାତା ନିଜର ହସ୍ତଦ୍ୱାରା ମନ୍ଥନ ରଜ୍ଜୁ ସ୍ୱରୂପ ସର୍ପକୁ ଧାରଣ କରି ମନ୍ଥନ ଦଣ୍ଡ ସ୍ୱରୂପ ପର୍ବତ ଦ୍ୱାରା ସମୁଦ୍ର ମନ୍ଥନ କରୁ କରୁ ଦ୍ୱିତୀୟ ପର୍ବତ ତୁଲ୍ୟ ଶୋଭା ପାଇଥିଲେ ।୧୭।

---

ନିଶ୍ୱାସ ବାତେ ହତପ୍ରାଣ
ତାହା ଜାଣିଲେ ନାରାୟଣ
ତକ୍ଷଣେ ଶୂନ୍ୟେ ମେଘମାଳ
ଶୀତଳ ବରଷନ୍ତି ଜଳ
କ୍ଷୀର ସମୁଦ୍ର ଶୀତ ବାତ
ଯେଣୁ ପେଷିଲେ ଜଗନ୍ନାଥ
ବାସୁକି ଆଦି ଜଳ ଗାତେ
ତାପୁଁ ତରିଲେ ଶୀତଭାବେ
ଦେବଗଣଙ୍କ ଦେହଗତେ
ମାଳା କଙ୍କଣ ଥିଲା ଯେତେ

ସକଳ ଧୂମେ ହତପ୍ରଭ
ଅନାଇଁ ପ୍ରଭୁ ପଦ୍ମନାଭ
ଜଳ ସିଞ୍ଚିନେ ସୁସ୍ଥ କଲେ
ବଳ ସମେତେ ଯେତେ ଥିଲେ
।୧୪,୧୫

ଏମନ୍ତେ ବାସୁକି ଶରୀରେ
ଅତି ମନ୍ଥନେ ଖେଦଭରେ
ନିଶ୍ୱାସ ଛାଡେ ଅତି ଦୁଃଖେ
ବରଷା ପ୍ରାୟେ ସସ୍ର ମୁଖେ
ବିଷ ଉଠନ୍ତି ମହାଜଳେ
ଯେ ଜଳଜନ୍ତୁ ଥିଲେ ଜଳେ
ବିକଳେ ବୁଲି ଛଟ ପଟେ
ପୁଣି ଗର୍ଭରେ ପୁଣି ତଟେ
ସେ ବିଷ ବେଗବନ୍ତ ଜାଳେ
ଦଗ ପୂରିଲା ଅନ୍ତରାଳେ
ସମସ୍ତେ ଅଧ ଊର୍ଦ୍ଧ୍ୱ ମଧ୍ୟେ
ଜନ୍ତୁଏ ପଳାନ୍ତି ବିଷାଦେ
ଡାକନ୍ତି ଊର୍ଦ୍ଧ୍ୱ ମୁଖ କରି
ରଖ ହେ ପ୍ରଭୁ ଶୂଳଧାରୀ
ସହି ନ ପାରିବୁଁ କ୍ଷଣେ
ତୋ ପାଦେ ପଶିଲୁଁ ଶରଣ ।
୧୬,୧୭

ନିର୍ମଥ୍ୟମାନାଦୁଦଧେରଭୂଦ୍‌ବିଷଂ ମହୋଲ୍ବଣଂ ହାଳହଳାହ୍ୱମଗ୍ରତଃ ।
ସମ୍ଭ୍ରାନ୍ତମୀନୋନ୍ମକରାହିକଚ୍ଛପାତ୍ ତିମିଦ୍ୱିପଗ୍ରାହତିମିଙ୍ଗିଳାକୁଳାତ୍ । ୧୮ ।
ତଦୁଗ୍ରବେଗଂ ଦିଶି ଦିଶ୍ୟୁପର୍ଯ୍ୟଧୋ ବିସର୍ପଦୁତ୍ସର୍ପଦସହ୍ୟମପ୍ରତି ।
ଭୀତାଃ ପ୍ରଜାଃ ଦୁଦ୍ରୁବୁରଙ୍ଗ ସେଶ୍ୱରା ଅରକ୍ଷ୍ୟମାଣାଃ ଶରଣଂ ସଦାଶିବମ୍ ।୧୯।
ବିଲୋକ୍ୟ ତଂ ଦେବବରଂ ତ୍ରିଲୋକ୍ୟା ଭବାୟ ଦେବ୍ୟାଭିମତଂ ମୁନୀନାମ୍ ।
ଆସୀନମଦ୍ରାବପବର୍ଗହେତୋସ୍ତପୋ ଜୁଷାଣଂ ସ୍ତୁତିଭିଃ ପ୍ରଣେମୁଃ । ୨୦ ।

ଶ୍ରୀ ପ୍ରଜାପତୟ ଊଚୁଃ ।

ଦେବଦେବ ମହାଦେବ ଭୂତାତ୍ମନ୍ ଭୂତଭାବନ ।
ତ୍ରାହି ନଃ ଶରଣାପନ୍ନାଂସ୍ତ୍ରୈଲୋକ୍ୟଦହନାଦ୍‌ବିଷାତ୍ । ୨୧ ।

---

ମନ୍ଥନ କରୁ କରୁ ମନ୍ଥ୍ୟମାନ ସମୁଦ୍ରରେ ମତ୍ସ୍ୟ, ମକର, ସର୍ପ, କଚ୍ଛପ, ତିମି, କୁମ୍ଭୀର, ତିମିଙ୍ଗିଳ ପ୍ରଭୃତି ଅତ୍ୟନ୍ତ ବ୍ୟାକୁଳ ହୋଇଥିଲେ । ସମୁଦ୍ର ମଧ୍ୟରୁ ପ୍ରଥମେ ହଳାହଳ ନାମକ ବିଷ ଉତ୍ପନ୍ନ ହୋଇଥିଲା ।୧୮।

ଅତି ଉଗ୍ରବୀର୍ଯ୍ୟ ଏବଂ ଅପ୍ରମିତ ବିଷ ଚତୁର୍ଦ୍ଦିଗରେ ଊର୍ଦ୍ଧ୍ୱରେ ଓ ଅଧୋଭାଗରେ ବିସ୍ତୃତ ହେବାକୁ ଆରମ୍ଭ କଲା । ତାହା ଲୋକପାଳମାନଙ୍କ ସହିତ ପ୍ରଜାମାନଙ୍କୁ ଭୀତ ଓ ଅରକ୍ଷିତ କରି ପକାଇଲା । ତେଣୁ ସଦାଶିବଙ୍କର ଆଶ୍ରୟ ଗ୍ରହଣ କରିବାକୁ ପଡ଼ିଲା ।୧୯।

ତ୍ରିଭୁବନର ମଙ୍ଗଳ ନିମିତ୍ତ ପର୍ବତ ଉପରେ ପାର୍ବତୀଙ୍କ ସହିତ ଉପବିଷ୍ଟ ହୋଇ ମୁନିଗଣଙ୍କ ମୋକ୍ଷ ନିମିତ୍ତ ମହାଦେବ ତପସ୍ୟା କରୁଥିଲେ । ସେହି ଦେବଦେବଙ୍କୁ ଦର୍ଶନ କରି ସମସ୍ତେ ସ୍ତୁତି ଓ ପ୍ରଣାମ କରିଥିଲେ ।୨୦।

ପ୍ରଜାପତିମାନେ କହିଲେ—

ହେ ଦେବଦେବ ! ହେ ମହାଦେବ ! ହେ ଭୂତାତ୍ମନ ! ହେ ଭୂତଭାବନ ! ଶରଣାଗତ ଆମ୍ଭମାନଙ୍କୁ ତ୍ରିଲୋକ ଦଗ୍ଧକାରକ ବିଷରୁ ରକ୍ଷା କରନ୍ତୁ ।୨୧।

---

ହର ସମୀପେ ମୁନିଗଣ
ମିଳି କରନ୍ତି ପ୍ରଦକ୍ଷିଣ
ଯେ ସର୍ବ ଦୁଃଖ ଧୂମକେତୁ
ଅଶେଷ ଅପବର୍ଗ ହେତୁ
ମିଳି ସକଳେ ପ୍ରଜାପତି
ସନ୍ନିଧି ବସାଇ ପାର୍ବତୀ
ଦେଖିଲେ ମିଳି ଶିବ ପାଶେ
ସ୍ତୁତି କରନ୍ତି ବିଷତ୍ରାସେ ।୧୮।

ପ୍ରଜାପତୟୋ ଊଚୁ—
ହେ ମହାଦେବ ସଦାଶିବ
କେ ଗମିପାରେ ତୋର ଭାବ ?
ତୁ ଭୂତ ଭାବନ ଈଶ୍ୱର
ଆମ୍ଭର ପ୍ରାଣ ରକ୍ଷାକର
ଏ ବିଷ ସଂସାର ଦହିବ
ଏଥୁ ଉଦ୍ଧର ସଦାଶିବ ।୧୯।
ସର୍ବ ଜଗତ ବନ୍ଧ ମୋକ୍ଷ
ହେ ନାଥ ! କରୁ ତୁ ପ୍ରତ୍ୟକ୍ଷ !

କୁଶଳ ଇଚ୍ଛା ଯାର ମନେ
ସେ ତୋତେ ଭଜନ୍ତି ନିତ୍ୟଧ୍ୟାନେ
ଜଗତ-ଗୁରୁ ନାଥ ତୁହି
ଯେ ତୋତେ ଶରଣ ପଶଇ ।୨୦।
ସ୍ୱଶକ୍ତି ତୋର ଗୁଣମୟୀ
ଯେ ଭାବେ ସର୍ଗ ସ୍ଥିତି ହୋଇ
ପ୍ରଳୟ କରୁ ନାଥ ତୁହି
ତୁ ବ୍ରହ୍ମା ବିଷ୍ଣୁ ରୁଦ୍ର ଦେହୀ ।୨୧।

ତ୍ୱମେବ ସର୍ବଜଗତ ଈଶ୍ୱରୋ ବନ୍ଧମୋକ୍ଷୟୋଃ ।
ତଂ ତ୍ୱାମର୍ଚ୍ଚନ୍ତି କୁଶଳାଃ ପ୍ରପନ୍ନାର୍ତ୍ତିହରଂ ଗୁରୁମ୍ । ୨୨ ।
ଗୁଣମୟ୍ୟା ସ୍ୱଶକ୍ତ୍ୟାସ୍ୟ ସର୍ଗସ୍ଥିତ୍ୟପ୍ୟୟାନ୍ ବିଭୋ ।
ଧତ୍ସେ ଯଦା ସ୍ୱଦୃଗ୍ ଭୂମନ୍ ବ୍ରହ୍ମାବିଷ୍ଣୁଶିବାଭିଧାମ୍ । ୨୩ ।
ତ୍ୱଂ ବ୍ରହ୍ମ ପରମଂ ଗୁହ୍ୟଂ ସଦସଦ୍ଭାବଭାବନମ୍ ।
ନାନାଶକ୍ତିଭିରାଭାତସ୍ତ୍ୱମାତ୍ମା ଜଗଦୀଶ୍ୱରଃ । ୨୪ ।
ତ୍ୱଂ ଶବ୍ଦଯୋନିର୍ଜଗଦାଦିରାତ୍ମା ପ୍ରାଣେନ୍ଦ୍ରିୟଦ୍ରବ୍ୟଗୁଣସ୍ୱଭାବଃ ।
କାଳଃ କ୍ରତୁଃ ସତ୍ୟମୃତଞ୍ଚ ଧର୍ମସ୍ତ୍ୱୟ୍ୟକ୍ଷରଂ ଯତ୍ ତ୍ରିବୃଦାମନନ୍ତି । ୨୫ ।

---

ହେ ପ୍ରଭୋ ! ଆପଣ ସର୍ବ ଜଗତରେ ବନ୍ଧନ ଓ ମୋକ୍ଷର ଏକମାତ୍ର ଈଶ୍ୱର । ସୁତରାଂ ନିର୍ଗୁଣ ବ୍ୟକ୍ତିମାନେ ( ବିବେକୀମାନେ ) ଆପଣଙ୍କୁ ଶରଣାଗତ ଓ ଗୁରୁବୋଲି ଅର୍ଚ୍ଚନା କରିଥାଆନ୍ତି ।୨୨।

ହେ ବିଭୋ ! ଯେତେବେଳେ ଗୁଣମୟୀ ସ୍ୱକୀୟ ମାୟାଶକ୍ତି ଦ୍ୱାରା ଏହି ଜଗତର ସୃଷ୍ଟି, ସ୍ଥିତି; ପ୍ରଳୟ ଉପସ୍ଥିତ ହୁଏ; ହେ ଭୂମନ୍ ! ସେତେବେଳେ ସ୍ୱତସିଦ୍ଧ ଜ୍ଞାନମୟ ଆପଣ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏହି ନାମ ଧାରଣ କରିଥାନ୍ତି ।୨୩।

ସତ୍ ଅସତ୍ ଆପଣ ଦେବ, ତିର୍ଯ୍ୟକ ଓ ମନୁଷ୍ୟାଦିଙ୍କର କାରଣ ଏବଂ ପରମ ଗୁହ୍ୟ ବ୍ରହ୍ମ । ଆପଣ ନାନାବିଧ ଶକ୍ତିଦ୍ୱାରା ଜଗତ୍‌ରୂପେ ପ୍ରକାଶିତ ହୋଇଥାନ୍ତି, ଆପଣ ଆତ୍ମା ସର୍ବବ୍ୟାପୀ ଏବଂ ଜଗଦୀଶ୍ୱର ।୨୪

ଆପଣ ବେଦର କାରଣ, ଜଗତର ଆଦି ଅର୍ଥାତ୍ ମହାତତ୍ତ୍ୱ; କାଳ ପ୍ରାଣ, ଇନ୍ଦ୍ରିୟ ଓ ଦ୍ରବ୍ୟର ଗୁଣ ସ୍ୱରୂପ ଏବଂ ସତ୍ତ୍ୱାଦି ତ୍ରିବିଧ ଅହଙ୍କାର ତତ୍ତ୍ୱ । ଆପଣଙ୍କର ସ୍ୱଭାବ ସ୍ୱରୂପ; ସଙ୍କଳ୍ପ, ସତ୍ୟ, ଋତ, ଧର୍ମ ଏବଂ ଆପଣ ତ୍ରିଗୁଣାତ୍ମକ ପ୍ରଣବ; ଯେଣୁ ତତ୍ତ୍ୱଜ୍ଞାନୀମାନେ ଆପଣଙ୍କୁ ତାହାଙ୍କର ଆଶ୍ରୟସ୍ଥଳ ବୋଲି କୀର୍ତ୍ତନ କରିଥାନ୍ତି ।୨୫।

---

ତୁ ବ୍ରହ୍ମ ପରମ ଗୁପତ
ସଦ ଅସଦ ଭବ ମତ
ପ୍ରକାଶୁ ନାନା ଶକ୍ତି ରୂପେ
ତୁ ଆତ୍ମା ରୂପ ମୋହକଲେ ।୨୨
ଜଗତ ଆଦି ଶବ୍ଦ-ଯୋନି
ପ୍ରାଣ ଇନ୍ଦ୍ରିୟ ଗୁଣ ଘେନି
ତୁ କାଳ ଯଜ୍ଞ ସତ୍ୟ ଋତ
ତୁ ବ୍ରହ୍ମ ଅଛି ତ୍ରିବୃତ । ୨୩ ।

ଅନଳ ତୁମ୍ଭର ବଦନ
ଆଦିତ୍ୟ-ଶଶାଙ୍କ ଲୋଚନ
ସର୍ବଦେବଙ୍କ ଆତ୍ମା ତୁମ୍ଭେ
ଅଶେଷ ଯଜ୍ଞର ଆରମ୍ଭେ
ଏ ଭୂମି ତୋର ପାଦ ବେନି
ତୋ ବଳ ବହିଇ ମେଦିନୀ
କାଳ ତୋହର ଗଜ ଗତି
ତୋର ବୃଷଣ ପ୍ରଜାପତି

ଏ ଅଷ୍ଟ ଦିଗ ତୋ ଶ୍ରବଣ
ତୋହର ରସନା ବରୁଣ ।୨୪।
ନଭ ତୋହର ନାଭିଦେଶ
ନିଃଶ୍ୱାସ ବାତ ଅଣଶୋଷ
ପର୍ବତେ ତୋ ଅସ୍ଥି ସମ୍ଭୂତ
ବୃକ୍ଷ ଔଷଧି ତନୁ ରୁହ

ଅଗ୍ନିର୍ମୁଖଂ ତେଽଖିଳଦେବତାତ୍ମା କ୍ଷିତଂ ବଦୁର୍ଲୋକଭବାଙ୍ଘ୍ରିପଙ୍କଜମ୍ ।
କାଳଂ ଗତଂ ତେଽଖିଳଦେବତାତ୍ମନୋ ଦଶଶ୍ଚ କର୍ଣ୍ଣୌ ରସନଂ ଜଳେଶମ୍ ।୨୬।
ନାଭିର୍ନଭସ୍ତେ ଶ୍ୱସନଂ ନଭଶ୍ୱାନ୍ ସୂର୍ଯ୍ୟଶ୍ଚ ଚକ୍ଷୁଂଷି ଜଳଂ ସ୍ମ ରେତଃ ।
ପରାବରାତ୍ମାଶ୍ରୟଣଂ ତବାତ୍ମା ସୋମୋ ମନୋ ଦ୍ୟୌର୍ଭଗବନ୍ ଶିରସ୍ତେ । ୨୭ ।
କୁକ୍ଷିଃ ସମୁଦ୍ରା ଗିରୟୋଽସ୍ଥିସଂଘା ରୋମାଣି ସର୍ବୌଷଧିବୀରୁଧସ୍ତେ ।
ଛନ୍ଦାଂସି ସାକ୍ଷାତ୍ ତବ ସପ୍ତଧାତବସ୍ତ୍ରୟୀମୟାତ୍ମନ୍ ହୃଦୟଂ ସ ଧର୍ମ୍ମଃ । ୨୮ ।
ମୁଖାନି ପଞ୍ଚୋପନିଷଦସ୍ତବେଶ ଯୈସ୍ତ୍ରିଂଶଦଷ୍ଟୋତ୍ତରମନ୍ତ୍ରବର୍ଗଃ ।
ଯତ୍ତଚ୍ଛିବାଖ୍ୟଂ ପରମାତ୍ମତତ୍ତ୍ୱଂ ଦେବ ସ୍ୱୟଂ ଜ୍ୟୋତିରବସ୍ଥିତସ୍ତେ । ୨୯ ।

---

ହେ ଲୋକ ଭାବନ ! ଆପଣ ସର୍ବଦେବମୟ । ଅଗ୍ନି ଆପଣଙ୍କର ମୁଖ, ପୃଥିବୀ ଆପଣଙ୍କର ପାଦପଦ୍ମ କାଳ ଆପଣଙ୍କର ଗତି, ଦିଗମାନେ, ଆପଣଙ୍କର ସର୍ବଦେବ ରୂପ କର୍ଣ୍ଣ; ବରୁଣ ଆପଣଙ୍କର ରସନା; ପଣ୍ଡିତମାନେ ଏହିପରି ବର୍ଣ୍ଣନା କରିଥାନ୍ତି ।୨୬।

ହେ ଭଗବନ୍ ! ଆକାଶ ଆପଣଙ୍କର ନାଭି, ବାୟୁ ଆପଣଙ୍କର ଶ୍ୱାସ, ସୂର୍ଯ୍ୟ ଆପଣଙ୍କର ଚକ୍ଷୁ, ଜଳ ଆପଣଙ୍କର ରେତ; ଆପଣଙ୍କର ଅହଙ୍କାର ଉତ୍କୃଷ୍ଟ ଅପକୃଷ୍ଟ ସମସ୍ତ ଜୀବର ଆଶ୍ରୟ, ଚନ୍ଦ୍ର ଆପଣଙ୍କର ମନ, ସ୍ୱର୍ଗ ଆପଣଙ୍କର ମସ୍ତକ ।୨୭।

ହେ ବେଦମୟ ମୂର୍ତ୍ତି ! ସମୁଦ୍ରମାନ ଆପଣଙ୍କର କୁକ୍ଷି, ପର୍ବତମାନ ଆପଣଙ୍କର ଅସ୍ଥି, ସର୍ବପ୍ରକାର ଲତା ଓ ଔଷଧି ଆପଣଙ୍କର ଗାତ୍ରଲୋମ, ଗାୟତ୍ର୍ୟାଦି ଛନ୍ଦମାନ ଆପଣଙ୍କର ସାକ୍ଷାତ୍ ସପ୍ତଧାତୁ ଓ ପ୍ରସିଦ୍ଧ ଧର୍ମ ଆପଣଙ୍କର ହୃଦୟ ।୨୮।

ହେ ଭଗବନ୍ !, ପଞ୍ଚ ଉପନିଷଦ ଅର୍ଥାତ୍ ତତ୍ପୁରୁଷ, ଅଘୋର; ସଦ୍ୟୋଜାତ ବାମଦେବ ଓ ଈଶାନ ଏମାନେ ଆପଣଙ୍କର ପଞ୍ଚମୁଖ, ସେହି ମୁଖଦ୍ୱାରା ଅଷ୍ଟତ୍ରିଂଶତ୍ ମନ୍ତ୍ରମାନେ ପଠିତ ହୋଇଥାନ୍ତି । ଶିବ ନାମରେ ପ୍ରସିଦ୍ଧ ଆତ୍ମଜ୍ଞ ଆପଣ ପରମାତ୍ମ ତତ୍ତ୍ୱ ଆପଣଙ୍କର ଆଶ୍ରୟ ।୨୯।

---

ଏ ସପ୍ତଛନ୍ଦ ସପ୍ତ ଧାତୁ
ତୋ ହୃଦଧର୍ମ୍ମସ୍ଥିତହେତୁ ।୨୫,୨୬
ହେ ନାଥ ତୋ ପଞ୍ଚ-ବଦନ
ଯେ ଉପ ନିଷଦ ବଚନ
ଅଷ୍ଟ ଉତ୍ତର ତିନି ଶତ
ତୁ ବ୍ରହ୍ମ ମନ୍ତ୍ରଙ୍କ ଉକତ
ଯେ ପରମାତ୍ମା ତତ୍ତ୍ୱଧାମ
ଏଣୁ ତୋ ହର ଶିବ ନାମ

ଜ୍ୟୋତି ସ୍ୱରୂପେ ତୋର ବାସ
ତୁ ବ୍ରହ୍ମ ପରମ ପ୍ରକାଶ । ୨୭ ।
ଅଧର୍ମ୍ମ ତୋ ଶରୀର ଛାୟା
ତୋର ଆଶ୍ରିତ ତୋର ମାୟା
ତୋ ତିନିନେତ୍ର ତିନି ଗୁଣ
ଯେ ଗୁଣେ ସଂସାର ଧାରଣ
ଯେ ଛନ୍ଦୋମୟ ଶାସ୍ତ୍ରଇକ୍ଷା
ଯେ ଭାବେ ଋଷିଙ୍କର ଶିକ୍ଷା ।୨୮

ଅଖିଳ ଲୋକପାଳ ତୁହି
ତୋ ଅନ୍ତ କେହି ନ ଜାଣନ୍ତି
ବରଂ ବୈକୁଣ୍ଠଧାମ
ସୁରେନ୍ଦ୍ର ଗଣେ ନୋହେ ଗମ୍ୟ
ପରମ ଜ୍ୟୋତି ତୋ ଆନନ୍ଦ
କେବେହେଁ ଗୁଣେ ନୋହେ ଭେଦ
। ୨୯ ।

ଛାୟା ତ୍ୱଧର୍ମ୍ମୋର୍ମିଷୁ ଯୈର୍ବିସର୍ଗୋ ନେତ୍ରତ୍ରୟଂ ସତ୍ତ୍ୱରଜସ୍ତମାଂସି ।
ସାଂଖ୍ୟାତ୍ମନଃ ଶାସ୍ତ୍ରକୃତସ୍ତବେକ୍ଷା ଛନ୍ଦୋମୟୋ ଦେବ ଋଷିଃ ପୁରାଣଃ । ୩୦ ।
ନ ତେ ଗିରିତ୍ରାଖିଳଲୋକପାଳବିରିଞ୍ଚବୈକୁଣ୍ଠସୁରେନ୍ଦ୍ରଗମ୍ୟମ୍ ।
ଜ୍ୟୋତିଃ ପରଂ ଯତ୍ର ରଜସ୍ତମଶ୍ଚ ସତ୍ତ୍ୱଂ ନ ଯଦ୍‌ବ୍ରହ୍ମ ନିରସ୍ତଭେଦମ୍ ।୩୧।
କାମାଧ୍ୱରତ୍ରିପୁରକାଳଗରାଦ୍ୟନେକଭୂତଦ୍ରୁହଃ କ୍ଷପୟତଃ ସ୍ତୁତୟେ ନ ତତ୍ ତେ ।
ଯସ୍ତ୍ୱନ୍ତକାଳ ଇଦମାତ୍ମକୃତଂ ସ୍ୱନେତ୍ର-ବହ୍ନିସ୍ଫୁଲିଙ୍ଗଶିଖୟା ଭସିତଂ ନ ବେଦ ।୩୨।
ଯେ ତ୍ୱାତ୍ମରାମଗୁରୁଭିର୍ହୃଦି ଚିନ୍ତିତାଙ୍ଘ୍ରିଦ୍ୱନ୍ଦ୍ୱଂ ଚରନ୍ତମୁମୟା ତପସାଭିତପ୍ତମ୍ ।
କତ୍ଥନ୍ତ ଉଗ୍ରପରୁଷଂ ନିରତଂ ଶ୍ମଶାନେ ତେ ନୂନମୂତିମବିଦଂସ୍ତବ ହାତଲଜ୍ଜାଃ ।୩୩

ଅଧର୍ମର ତରଙ୍ଗ ଅର୍ଥାତ୍ ଦମ୍ଭ ଲୋଭାଦିରେ ଆପଣଙ୍କର ଛାୟା ବର୍ତ୍ତମାନ, ଯେଉଁ ସତ୍ତ୍ୱାଦି ଗୁଣ ସମୂହଦ୍ୱାରା ବିବିଧ ସୃଷ୍ଟି ହୋଇଥାଏ ସେହି ଗୁଣ ସମୂହ ଆପଣଙ୍କର ନେତ୍ର । ହେ ମହାଦେବ ଆପଣ ସାଙ୍ଖ୍ୟ ଜ୍ଞାନ ସ୍ୱରୂପ, ଶାସ୍ତ୍ରକାରୀ, ଛନ୍ଦୋମୟ, ପୁରାଣ ବେଦ ଆପଣଙ୍କର ଈକ୍ଷଣ ।୩୦।

ହେ ଗିରିଶ ! ଆପଣଙ୍କ ପରଜ୍ୟୋତି ନିଖିଳ ଲୋକପାଳ ବ୍ରହ୍ମା, ବିଷ୍ଣୁ ଓ ସୁରେନ୍ଦ୍ରଙ୍କର ଅଗମ୍ୟ ଅର୍ଥାତ୍ ସେମାନେ ସୁଦ୍ଧା ତାହା ବୁଝିବାକୁ ଅକ୍ଷମ; ଏହି ଜ୍ୟୋତିରେ ରଜଃ, ତମଃ ବା ସତ୍ତ୍ୱ କୌଣସି ଗୁଣ ନାହିଁ, ଏହା ସର୍ବପ୍ରକାର ଭେଦ ବିରହିତ ପରମବ୍ରହ୍ମ ସ୍ୱରୂପ ।୩୧।

ଆପଣ କାମଦେବ, ଦକ୍ଷଯଜ୍ଞ, ତ୍ରିପୁର ଓ କାଳକୂଟ ବିଷ ଏ ସମସ୍ତ ବିନାଶ କରିଅଛନ୍ତି କିନ୍ତୁ ଆପଣଙ୍କ ପକ୍ଷରେ ତାହା ଆଶ୍ଚର୍ଯ୍ୟ କଥା ନୁହେଁ; ( ଆପଣଙ୍କ ନିକଟରେ ତାହା ଅତ୍ୟନ୍ତ କ୍ଷୁଦ୍ର କାର୍ଯ୍ୟ ) ଯେହେତୁ ପ୍ରଳୟ କାଳରେ ନିଜର ନେତ୍ରରୁ ସମ୍ଭୂତ ଅଗ୍ନି ଦ୍ୱାରା ଏହିଜଗତ ଭସ୍ମୀଭୂତ ହୋଇଯାଏ, ତାହା ମଧ୍ୟ ଆପଣ ଆଲୋଚନା କରନ୍ତି ନାହିଁ ।୩୨।

ଆତ୍ମାରାମୀ ଯୋଗୀମାନେ ଓ ବିଶ୍ୱହିତକାମୀ ମୁନିମାନେ ଆପଣଙ୍କର ଚରଣ ଦ୍ୱୟ ହୃଦୟରେ ଧ୍ୟାନ କରିଥାନ୍ତି । ଆପଣ କଠୋର ତପସ୍ୟାକାରୀ ଏବଂ ଶ୍ମଶାନବାସୀ ହେଲେ ମଧ୍ୟ ପାର୍ବତୀଙ୍କ ସହିତ ଏକତ୍ର ଅବସ୍ଥାନ କରନ୍ତି ବୋଲି ଯେଉଁମାନେ ଆପଣଙ୍କୁ କାମୁକ ବୋଲି କହନ୍ତି ଏବଂ ଶ୍ମଶାନରେ ଅବସ୍ଥାନ କରୁଥିବାରୁ ଉଗ୍ର ଓ ପରୁଷ ସ୍ୱଭାବ ବୋଲି ନିନ୍ଦାକରନ୍ତି ସେହିନିର୍ଲଜ୍ଜମାନେ ଆପଣଙ୍କରଲୀଳା ବୁଝିନ୍ତିନାହିଁ

କାମ ତ୍ରିପୁର ଘୋର କାଳ
ଦକ୍ଷର ଯଜ୍ଞ ଧ୍ୱଂସ କଲ
ଯେବା ଅଛନ୍ତି ଭୂତ ଦ୍ରୋହି
ଯେ ଅବା କ୍ରୋଧ ଲୋଭ ମୋହି
ଏହାଙ୍କୁ କରୁ ତୁ ଦହନ
ତୁ ନାଥ ଆଦି ନିରଞ୍ଜନ
ସୃଷ୍ଟିକୁ ଅନ୍ତକାଳେ ଧରି
ତୃତୀୟ ନେତ୍ର ତୁ ଆବୋରି

ପ୍ରାଣିଙ୍କୁ କରୁ ଆତଯାତ
ଏଣୁ ତୋ ନାହିଁ ଆଦି ଅନ୍ତ । ୩୦
ଯେ ଆତ୍ମାରାମ ଏ ଜଗତେ
ତୋ ପଦେ ରତେ ଅବିରତେ
ଯେବା ତପସ୍ୟା କରି ଭଜେ
ତୋ ରୂପ ଧ୍ୟାନହିଁ ବେ ପୂଜେ
ତୋତେ ଆଶ୍ରୟ ଯେ କରନ୍ତି
ଏ ଘୋର ସଂସାରୁ ତରନ୍ତି

ଆମ୍ଭେ ଯେ ଘୋର ବିଷଭୟେ
ଶରଣ ଗଲୁଁ ତୋର ପାୟେ
ଏ ଘୋର ଭୟୁଁ କର ତ୍ରାଣ
ଲୋକନାଥ ରଖ ଆତ୍ମପ୍ରାଣ ।୩୧-୩୩

ତତ୍ତ୍ୱସ୍ୟ ଯେ ସଦସତୋଃ ପରତଃ ପରସ୍ୟ ନାଞ୍ଜଃସ୍ୱରୂପଗମନେ ପ୍ରଭବନ୍ତି ଭୂମ୍ନଃ ।
ବ୍ରହ୍ମାଦୟଃ କିମୁତ ସଂସ୍ତବନେ ବୟନ୍ତୁ ତତ୍ସର୍ଗସର୍ଗବିଷୟା ଅପି ଶକ୍ତିମାତ୍ରମ୍ ।୩୪।
ଏତତ୍ପରଂ ପ୍ରପଶ୍ୟାମୋ ନ ପରଂ ତେ ମହେଶ୍ୱର ।
ମୃଡନାୟ ହି ଲୋକସ୍ୟ ବ୍ୟକ୍ତିସ୍ତେଽବ୍ୟକ୍ତକର୍ମ୍ମଣଃ । ୩୫ ।
ଶ୍ରୀ ଶୁକ ଉବାଚ ।
ତଦ୍ୱୀକ୍ଷ୍ୟ ବ୍ୟସନଂ ତାସାଂ କୃପୟା ଭୃଶପୀଡ଼ିତଃ ।
ସର୍ବଭୂତସୁହୃଦ୍ଦେବ ଇଦମାହ ସତୀଂ ପ୍ରିୟାମ୍ । ୩୬ ।
ଶ୍ରୀ ଶିବ ଉବାଚ ।
ଅହୋ ବତ ଭବାନ୍ୟେତତ୍ ପ୍ରଜାନାଂ ପଶ୍ୟ ବୈଶସମ୍ ।
କ୍ଷୀରୋଦମଥନୋଦ୍‌ଭୂତାତ୍ କାଳକୂଟାଦୁପସ୍ଥିତମ୍ । ୩୭ ।

---

ହେ ଭଗବନ୍ ! ଆପଣ ସତ୍ ଓ ଅସତ୍‌ର ଅତୀତ, ପରମପୁରୁଷ ଓ ସର୍ବବ୍ୟାପକ । ଆପଣଙ୍କର ସ୍ୱରୂପ ତତ୍ତ୍ୱ ନିର୍ଣ୍ଣୟ କରିବାକୁ ବ୍ରହ୍ମାଦି ଦେବଗଣ ସୁଦ୍ଧା ଅସମର୍ଥ, ଆମ୍ଭେମାନେ ବ୍ରହ୍ମାଙ୍କର ସୃଷ୍ଟି ଜୀବ ଜଗତରେ ଅତ୍ୟନ୍ତ ଅର୍ବାଚୀନ ସୁତରାଂ କିପରି ଆପଣଙ୍କର ସ୍ତବ କରିବୁ ? ତଥାପି ଶକ୍ତି ଅନୁସାରେ ସ୍ତବ କଲୁ ।୩୪।

ହେ ମହେଶ୍ୱର ! ଆପଣଙ୍କର ଦୃଶ୍ୟମାନ ଏହିରୂପ ଆମ୍ଭେମାନେ ଦେଖି ପାରିଲୁ କିନ୍ତୁ ପ୍ରକୃତିର ଅତୀତ ପରମରୂପ ଦେଖି ପାରିଲୁ ନାହିଁ । ଅବ୍ୟକ୍ତକର୍ମୀ ଆପଣଙ୍କର ଏହି ଆବିର୍ଭାବ ଲୋକ ମଙ୍ଗଳର ହେତୁ ଅଟେ ।୩୫।

ଶ୍ରୀଶୁକଦେବ କହିଲେ—

ହେ ରାଜନ୍ ! ପ୍ରଜାବର୍ଗଙ୍କର ଏପରି ବିପଦ ଦର୍ଶନ କରି ଅତ୍ୟନ୍ତ କୃପାପରବଶ ହୋଇ ସର୍ବଜୀବ ବନ୍ଧୁ ମହେଶ୍ୱର ପ୍ରିୟତମା ଦେବୀ ସତୀଙ୍କୁ କହିଲେ ।୩୬।

ଶ୍ରୀ ଶିବ କହିଲେ :—

ଆହା ! କି କଷ୍ଟ, ହେ ଭବାନୀ କ୍ଷୀରୋଦ ସମୁଦ୍ରମନ୍ଥନ ଉଦ୍‌ଭୂତ ତୀବ୍ର କାଳକୂଟ ବିଷରୁ ପ୍ରଜାମାନଙ୍କର କିପରି ବିପଦ ଉପସ୍ଥିତ ହୋଇଅଛି ଦେଖ ।୩୭।

---

ଶ୍ରୀଶୁକଉବାଚ—

ତାହାଙ୍କ ଦୁଃଖ ଦେଖି ହର
କୃପାରେ ହୋଇଣ କାତର
ସୁହୃଦ ସର୍ବଭୂତେ ସେହି
କହିଲେ ପ୍ରିୟା ମୁଖ ଚାହିଁ । ୩୬ ।
ଏ ବିଷ ତେଜ ଦଶ ଦଶ
କେବେହେଁ ନ ହେବ ପ୍ରକାଶ
ଏଣୁ ବ୍ରହ୍ମାଣ୍ଡ ନଷ୍ଟେ ଗଲା
ଅକାଳେ ପ୍ରଳୟ ହୋଇଲା
ଭସ୍ମ କରିବ ତିନିପୁର
ଆଜ୍ଞା ଦେଲେ ସୁରେଶ୍ୱର
ସମୁଦ୍ର ମନ୍ଥନୁ ଏ ଜାତ
ଏଥୁ ରଖିବା ମୋ ଉଚିତ
ଯେ କରେ ଦୀନ ଉପକାର
ସେ ଧର୍ମ ସଜ୍ଜନଙ୍କର ସାର
ଦୁଃଖୁଁ ଯେ ପରିତ୍ରାଣ କରେ
ସଙ୍କଟୁ ପ୍ରାଣୀଙ୍କୁ ଉଦ୍ଧରେ
ତା ଜନ୍ମ ଧନ୍ୟ ଏ ସଂସାରେ
ଯେ ରହେ ପର ଉପକାରେ
ସାଧୁଜନଙ୍କର ଏ ଗତି
କେବେହେଁ ଧର୍ମ ନ ଛାଡ଼ନ୍ତି
କ୍ଷଣ-ଭଙ୍ଗୁର ଏ ଶରୀର
ସୁଦୃଢ଼ ପର ଉପକାର ।୩୫-୩୭

ଆସାଂ ପ୍ରାଣପରୀପ୍ସୂନାଂ ବିଧେୟମଭୟଂ ହି ମେ ।
ଏତାବାନ୍ ହି ପ୍ରଭୋରର୍ଥୋ ଯଦ୍ଦୀନପରିପାଳନମ୍ । ୩୮ ।
ପ୍ରାଣୈଃ ସ୍ୱୈଃ ପ୍ରାଣିନଃ ପାନ୍ତି ସାଧବଃ କ୍ଷଣଭଙ୍ଗୁରୈଃ ।
ବଦ୍ଧବୈରେଷୁ ଭୂତେଷୁ ମୋହିତେଷ୍ୱାତ୍ମମାୟୟା । ୩୯ ।
ପୁଂସଃ କୃପୟତୋ ଭଦ୍ରେ ସର୍ବାତ୍ମା ପ୍ରୀୟତେ ହରିଃ ।
ପ୍ରୀତେ ହରୌ ଭଗବତି ପ୍ରୀୟେଽହଂ ସଚରାଚରଃ ।
ତସ୍ମାଦଦଂ ଗରଂ ଭୁଞ୍ଜେ ପ୍ରଜାନାଂ ସ୍ୱସ୍ତିରସ୍ତୁ ମେ । ୪୦ ।

ଶ୍ରୀ ଶୁକ ଉବାଚ ।

ଏବମାମନ୍ତ୍ର୍ୟ ଭଗବାନ୍ ଭବାନୀଂ ବିଶ୍ୱଭାବନଃ ।
ତଦ୍‌ବିଷଂ ଜଗ୍‌ଧୁମାରେଭେ ପ୍ରଭାବଜ୍ଞାନ୍ୱମୋଦତ ।୪୧।

---

ଏହି ପ୍ରଜାମାନେ ପ୍ରାଣରକ୍ଷା ନିମିତ୍ତ କାତର ହୋଇ ପଡ଼ିଅଛନ୍ତି । ଏମାନଙ୍କୁ ଅଭୟଦାନ କରିବା ମୋର କର୍ତ୍ତବ୍ୟ, କାରଣ ସମର୍ଥ ବ୍ୟକ୍ତିର କର୍ତ୍ତବ୍ୟ ଦୀନ-ଜନ-ପାଳନ ।୩୮।

ପରମାତ୍ମାଙ୍କ ମାୟାମୁଗ୍‌ଧ ଏବଂ ପରସ୍ପର ବୈର ଭାବାପନ୍ନ ଦୀନ ଜୀବମାନଙ୍କୁ ସାଧୁମାନେ ନିଜର କ୍ଷଣ ଭଙ୍ଗୁର ପ୍ରାଣ ଦ୍ୱାରା ସୁଦ୍ଧାରକ୍ଷା କରିଥାନ୍ତି ।୩୯।

ହେ ଭଦ୍ରେ ! ଯେଉଁ ପୁରୁଷ କୃପା କରେ, ତାହାପ୍ରତି ସର୍ବାତ୍ମା ହରି ପ୍ରୀତ ହୋଇଥାନ୍ତି । ଭଗବାନ୍ ହରି ପ୍ରୀତ ହେଲେ ଚରାଚର ବିଶ୍ୱ ସହିତ ମୁଁ ମଧ୍ୟ ପ୍ରୀତ ହୋଇଥାଏ । ସୁତରାଂ ଏହି ବିଷ ମୁଁ ପାନ କରିବି । ମୋର ପ୍ରଜାମାନଙ୍କର ଶାନ୍ତି ବିଧାନ କରିବ ।୪୦।

ଶ୍ରୀଶୁକଦେବ କହିଲେ—

ଭଗବାନ୍ ବିଶ୍ୱଭାବନ ମହେଶ୍ୱର ଭବାନୀଙ୍କୁ ଏହିପରି କହି ବିଷପାନରେ ପ୍ରବୃତ୍ତ ହେଲେ । ଭବାନୀ ଶଙ୍କରଙ୍କର ପ୍ରଭାବ ପୂର୍ବରୁ ଜାଣିଥିଲେ, ସୁତରାଂ ଏ ବିଷପାନ ଅନୁମୋଦନ କରିଥିଲେ ।୪୧।

---

ଏମନ୍ତ ଶିବଙ୍କ ବଚନ
ଅମ୍ବିକା ଶୁଣି ତୋଷମନ
ରୁଦ୍ର ଚରଣ କରେ ଧରି
ମଧୁରେ କହନ୍ତି ଗଉରୀ
ତୁମ୍ଭେ ନାଥ ଜଗତ ଈଶ୍ୱର
ଦେବଙ୍କ ବୋଲ ତୁମ୍ଭେ କର
ଏ ଘୋର ବିଷ କରଗ୍ରାସ
ସଂସାରେ ଥିବ ତୁମ୍ଭ ଯଶ
ଧର୍ମ୍ମ କରନ୍ତି ଯେତେ ପ୍ରାଣୀ
ତାହାଙ୍କୁ ତୋଷ ଚକ୍ରପାଣି ।୩୮।

ଶ୍ରୀଶୁକଉବାଚ—

ଏମନ୍ତେ ଗଉରୀ ବଚନେ
ରୁଦ୍ର ଉଠିଲେ ତୋଷମନେ
କ୍ଷୀରାବ୍ଧି ତଟେ ବିଜେ କରି
କର ଅଞ୍ଜଳି ବିଷେ ଭରି
ଉତ୍କଟ ଘୋର ମହାବିଷ
ଏକା ଗ୍ରାସକେ କଲେ ଗ୍ରାସ
ରଖିଲେ ଅଶେଷ ଭୁବନ
ଶୁଣ ପରୀକ୍ଷିତ ରାଜନ ! ୩୯-୪୦
କଣ୍ଠଦେଶିକ ନୀଳ ପ୍ରଭା
ସାଧୁଜନଙ୍କର ଏ ଶୋଭା
ସାଧୁଜନଙ୍କ ମତ ଏହି
ଯେ ପରଦୁଃଖେ ଦୁଃଖ ସହି

ତତଃ କରତଳୀକୃତ୍ୟ ବ୍ୟାପି ହାଳାହଳଂ ବିଷମ୍ ।
ଅଭକ୍ଷୟନ୍ମହାଦେବ କୃପୟା ଭୂତଭାବନଃ । ୪୨ ।
ତସ୍ୟାପି ଦର୍ଶୟାମାସ ସ୍ୱବୀର୍ଯ୍ୟଂ ଜଳକଳ୍ମଷଃ ।
ଯଚ୍ଚକାର ଗଳେ ନୀଳଂ ତଚ୍ଚ ସାଧୋର୍ବିଭୂଷଣମ୍ । ୪୩ ।
ତପ୍ୟନ୍ତେ ଲୋକତାପେନ ସାଧବଃ ପ୍ରାୟଶୋ ଜନାଃ ।
ପରମାରାଧନଂ ତଦ୍ଧି ପୁରୁଷସ୍ୟାଖିଳାତ୍ମନଃ । ୪୪ ।
ନିଶମ୍ୟ କର୍ମ୍ମ ତଚ୍ଛମ୍ଭୋର୍ଦେବଦେବସ୍ୟ ମୀଢ଼ୁଷଃ ।
ପ୍ରଜା ଦାକ୍ଷାୟଣୀ ବ୍ରହ୍ମା ବୈକୁଣ୍ଠଶ୍ଚ ଶଶଂସିରେ । ୪୫ ।

ତଦନନ୍ତର ଭୂତଭାବନ ମହାଦେବ ଜୀବପ୍ରତି ଅନୁଗ୍ରହକରି ସର୍ବତ୍ର ବ୍ୟାପ୍ତପ୍ରାପ୍ତ ଏହି ହଳାହଳ ବିଷକୁ କରତଳ ମାତ୍ର ପରିମିତ କରି ପାନ କରିଥିଲେ । ୪୨ ।

କିନ୍ତୁ ସେହି ଜଳ ଦୋଷଜ ବିଷ ଶିବଙ୍କପ୍ରତି ପୁଣ୍ଣା ନିଜର ପରାକ୍ରମ ପ୍ରକାଶ କରିଥିଲା । ତହିଁରେ ଶିବଙ୍କର କଣ୍ଠଦେଶ ନୀଳବର୍ଣ୍ଣ ହୋଇଗଲା କିନ୍ତୁ କୃପାଳୁ ଶିବ ତାହାକୁ ଭୂଷଣ ସ୍ୱରୂପ ଧାରଣ କରିଥିଲେ । ୪୩ ।

ସାଧୁମାନେ ପ୍ରାୟ ଲୋକ ଦୁଃଖରେ ପରିତପ୍ତ ହୋଇଥାନ୍ତି । ଏହିପରି ଲୋକ ଦୁଃଖ ଦୂର କରିବା ଅଖିଳାତ୍ମା ପରମ ପୁରୁଷ ବିଷ୍ଣୁଙ୍କର ଶ୍ରେଷ୍ଠ ଆରାଧନା ଅଟେ । ୪୪ ।



ଶିବଙ୍କର ବିଷପାନ ।

ସର୍ବଜନ ପାଳକ ଦେବଦେବ ମହାଦେବଙ୍କର ଏହି ବିଷପାନ କାର୍ଯ୍ୟ ବିଷୟ ଶ୍ରବଣକରି ପ୍ରଜାମାନେ, ଦାକ୍ଷାୟଣୀ, ବ୍ରହ୍ମା ଏବଂ ବିଷ୍ଣୁ ପ୍ରଭୃତି ସମସ୍ତେ ପ୍ରଶଂସା କରିଥିଲେ । ୪୫ ।

କରନ୍ତି ପର ଉପକାର
ଧନ୍ୟ ଜୀବନ ତାହାଙ୍କର

ଏମନ୍ତ ରୁଦ୍ର କର୍ମ ଦେଖି
ସଂସାର ଜନେ ହୋଇ ସୁଖୀ

ବ୍ରହ୍ମା ଗୋବିନ୍ଦ ଦେବମେଳ
ସର୍ବେ ଶଙ୍କରେ ପ୍ରଶଂସିଲେ
। ୪୧-୪୫ ।

ପ୍ରସନ୍ନଂ ପିବତଃ ପାଣେର୍ଯତ୍ କିଞ୍ଚିତ୍ ଜଗୃହୁଃ ସ୍ମ ତତ୍ ।
ବୃଶ୍ଚିକାହିବିଷୌଷଧ୍ୟୋ ଦନ୍ଦଶୂକାଶ୍ଚ ଯେ ପରେ । ୪୬ ।

ଇତି ଶ୍ରୀ ମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ସପ୍ତମୋଽଧ୍ୟାୟଃ ।

---

ସେହି ହଳାହଳ ବିଷପାନ କଲାବେଳେ ମହାଦେବଙ୍କର କରତଳରୁ ଯେଉଁ ସାମାନ୍ୟ ବିଷ ଖସି ପଡ଼ିଥିଲା ତାହା ବିଛା, ସାପ, ବିଷମୟ ଔଷଧି, ଦନ୍ଦଶୂକ ( ସର୍ପବିଶେଷ ) ଏବଂ ଅନ୍ୟାନ୍ୟ ବିଷଯୁକ୍ତ ଜୀବମାନେ ପାନ କରିଥିଲେ । ତେଣୁ ସେମାନେ ତୀବ୍ର ବିଷଯୁକ୍ତ ହୋଇଥିଲେ । ୪୬ ।

---

ରୁଦ୍ର ପିବନ୍ତେ ଘୋର ବିଷ
କୁଳେ ଯେ ଥିଲା ଅବଶେଷ
ବୃଶ୍ଚିକ ଦନ୍ଦଶୂକ ଗଣ
ଭକ୍ଷିଲେ ବିଷ ଶେଷ କଣ ॥ ୪୬

ବୋଲଇ ବିପ୍ର ଜଗନ୍ନାଥ
ବିଷ ଭକ୍ଷିଲେ ଉମାକାନ୍ତ
ଏ କ୍ଷୀର-ସାଗର ମନ୍ଥନ
ଶୁଣି ପବିତ୍ର ହୁଅ ଜନ

ସୁସାଧୁ ଜନଙ୍କର ହିତେ
ଅଷ୍ଟମସ୍କନ୍ଧ ଭାଗବତେ
ଭାଷା ପ୍ରବନ୍ଧ ଗୀତ ନାଦେ
ଶୁଣ ସୁଜନେ ଅପ୍ରମାଦେ



**ବିଶଦାର୍ଥ—**

ଏହି ଅଧ୍ୟାୟରେ ଦେବତା ଓ ଅସୁରମାନଙ୍କର ସମୁଦ୍ର ମନ୍ଥନ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ସେହି ସମୁଦ୍ର ମନ୍ଥନର ଉଦ୍ଦେଶ୍ୟ ଅମୃତ ଲାଭ । ସେହି ଅମୃତ ପ୍ରାପ୍ତିର ପ୍ରବର୍ତ୍ତକ ଓ ଶ୍ରେଷ୍ଠ ନେତା ଭଗବାନ୍ ବିଷ୍ଣୁ । ସମୁଦ୍ର ମନ୍ଥନ ଲାଗି ମନ୍ଥନ ଦଣ୍ଡ ହୋଇଥିଲା ମେରୁ ପର୍ବତ, ମନ୍ଥନ ରଜ୍ଜୁ ହୋଇଥିଲା ବାସୁକି ସର୍ପ, କିନ୍ତୁ ଏ ସମସ୍ତ ସତ୍ତ୍ୱେ ମନ୍ଦର ପର୍ବତର ନିମ୍ନ ଦେଶରେ ଭଗବାନ୍ ଶ୍ରୀହରିଙ୍କର କଚ୍ଛପ ମୂର୍ତ୍ତି ସ୍ଥାପିତ ହୋଇ ମନ୍ଦର ପର୍ବତର ଭାର ବହନ କରି ନ ଥିଲେ ସମୁଦ୍ର ମନ୍ଥନ କିମ୍ବା ତହିଁରୁ ଅମୃତଲାଭ ସମ୍ଭବପର ହୋଇ ନ ଥାନ୍ତା । ଏହିଠାରେ ଭଗବାନ୍ ଶ୍ରୀହରିଙ୍କର କଚ୍ଛପ ବା କୂର୍ମାବତାର ଗ୍ରହଣ, ରାକ୍ଷସୀ ଶକ୍ତି ଓ ଦୈବୀଶକ୍ତି ଉଭୟର ପ୍ରତିଦ୍ୱନ୍ଦୀ ଭାବ ପ୍ରାରମ୍ଭରେ ରାକ୍ଷସମାନେ ଭାବିଲେ ସେମାନେ ବାସୁକିର ପୁଚ୍ଛଦେଶ ଧାରଣ କରିବା ସେମାନଙ୍କର ସମ୍ମାନ ପକ୍ଷରେ ହାନିଜନକ । ତେଣୁ ଶ୍ରୀହରିଙ୍କ ନିର୍ଦ୍ଦେଶ ମତେ ଦେବତାମାନେ ବାସୁକିର ପୁଚ୍ଛଦେଶ ଓ ରାକ୍ଷସମାନେ ତାହାର ଅଗ୍ରଭାଗ ଧାରଣ କରିଥିଲେ । ତଦ୍ୱାରା

ଦେବତାମାନଙ୍କର ନୀଚତ୍ୱ ପ୍ରକାଶ ନ ପାଇ ବରଂ ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଥିଲା । ଏହି ସଂସାର ମଧ୍ୟରେ ଅମୃତତ୍ୱ ଲାଭ ନିମିତ୍ତ ଭଗବାନ୍ ଶ୍ରୀହରି ସର୍ବଦା ମନୁଷ୍ୟର ଆଶ୍ରୟ ସ୍ଥଳ, ତାଙ୍କର ଆଶ୍ରୟ ଲାଭ କରି ମନୁଷ୍ୟ ଅମୃତତ୍ୱ ଲାଭ କରିଥାଏ । ଅମୃତ କହିଲେ କୌଣସି ସୁଖାଦ୍ୟ ବସ୍ତୁ ବା କଦଳୀ ଚକଟା ଅମୃତ ଭୁଣ୍ଡ ବୋଲି ବୁଝିବାକୁ ହେବନାହିଁ । ଅମୃତ ଯଥାର୍ଥରେ ଯାହା ମନୁଷ୍ୟକୁ ଅମର କରି ରଖେ, ଏ ଦେହ ନଶ୍ୱର, ତାହାର ବିନାଶ ଅବଶ୍ୟମ୍ଭାବୀ, କେବଳ ଆତ୍ମାହିଁ ଅମର, ଏହି ଆତ୍ମାର ଅମରତ୍ୱ ନିମିତ୍ତ ଜୀବକୁ ବହୁ ସାଧନା କରିବାକୁ ହୁଏ । ସେହି ସାଧନାର ଫଳରେ ଈଶ୍ୱରତ୍ୱ ପ୍ରାପ୍ତି ହୋଇଥାଏ, ତାହାହିଁ ଅମୃତ ଲାଭ, ଏହି ଅମୃତ ଲାଭର ଆରମ୍ଭରେ ଯେଉଁ ବାଧାବିଘ୍ନ ଉପସ୍ଥିତ ହୁଏ, ଏବଂ ତହିଁରୁ ଯେଉଁ ବିଷମୟ ଫଳ ଉତ୍ପନ୍ନ ହୁଏ ତାହା ବାସୁକି ମୁଖ ନିର୍ଗତ ବିଷ ତୁଲ୍ୟ, ସେଥିପାଇଁ ରାକ୍ଷସୀ ଶକ୍ତି ଦାୟୀ । ଦେବତା ଓ ରାକ୍ଷସ ମାନେ ସମୁଦ୍ର ମନ୍ଥନ କରିବା ବେଳେ ଯେଉଁ ବିଷ ବାସୁକି ମୁଖରୁ ନିର୍ଗତ ହୋଇଥିଲା, ତଦ୍ଦ୍ୱାରା ଦେବତା ଓ ଅସୁରମାନେ ବିନାଗ୍ନିରେ ବୃକ୍ଷରାଜି ପୋଡ଼ି ହୋଇଗଲାପରି ଦଗ୍‌ଧ ହେଲେ, ସେହି ବିଷ ଜ୍ୱାଳାରୁ ମୁକ୍ତି ପାଇବାଲାଗି ସେମାନେ ଦେବାଧିଦେବ ମହାଦେବଙ୍କର ଶରଣାପନ୍ନ ହୋଇଥିଲେ । ଭାଗବତ ରଚୟିତା ଏହିଠାରେ ଶୈବ ଓ ବୈଷ୍ଣବ ଧର୍ମର ସାମଞ୍ଜସ୍ୟ ଲାଗି ଦେବତାମାନଙ୍କ ମୁଖରେ ଶିବଙ୍କର ଯେଉଁ ସ୍ତବମାନ କରାଇଅଛନ୍ତି ତାହା ପାଠ କଲେ ଜଣାଯାଏ ଶିବହିଁ ବିଷ୍ଣୁ, ଶିବହିଁ ବ୍ରହ୍ମା, ଶିବହିଁ ମଙ୍ଗଳମୟ, ଶିବ ଦେବତାମାନଙ୍କ ସ୍ତବ ଶୁଣି ସେମାନଙ୍କର ରକ୍ଷଣ ନିମିତ୍ତ ବିଷପାନ କରିବାକୁ ସମ୍ମତ ହୋଇଥିଲେ, ଭବାନୀ ଶିବଙ୍କର ଏହି କାର୍ଯ୍ୟକୁ ସମର୍ଥନ କରିଥିଲେ । ଶିବ ଏହିଠାରେ ସାଧୁ ଶକ୍ତିମାନ୍, ବ୍ୟକ୍ତିର ଦୁର୍ବଳ ପ୍ରତି କର୍ତ୍ତବ୍ୟ ନିର୍ଦ୍ଦେଶ କରିଅଛନ୍ତି, ଶକ୍ତିମାନ୍ ବ୍ୟକ୍ତିର କର୍ତ୍ତବ୍ୟ ନିଜର ଶକ୍ତି ପ୍ରୟୋଗରେ ପରପୀଡ଼ନ କରିବା ନୁହେଁ, ପରରକ୍ଷଣ । ବାସୁକି ଯେଉଁ ବିଷ ଉଦ୍‌ଗୀରଣ କରିଥିଲା ତାହା ଅନ୍ୟ ପକ୍ଷରେ ବହୁଳ ଓ ପ୍ରଚୁର ହେଲେ ମଧ୍ୟ ଶିବଙ୍କ ପକ୍ଷରେ ନୁହେଁ । ଶିବ ଗଣ୍ଡୁଷେ ମାତ୍ର ଜଳପରି ତାହାକୁ କରତଳରେ ସ୍ଥାପନ କରି ପାନ କରିଥିଲେ, ସେହି ବିଷପାନର ଫଳରୂପେ ତାହାଙ୍କର କଣ୍ଠଦେଶ ନୀଳବର୍ଣ୍ଣ ହୋଇଗଲା । ସେହିଦିନୁ ଶିବ ନୀଳକଣ୍ଠ ନାମରେ ଅଭିହିତ ହେଲେ, ଶିବ ସମସ୍ତ ବିଷପାନରେ ପ୍ରଜାମାନଙ୍କୁ, ଜଗତକୁ ବିଷଜ୍ୱାଳାରୁ ରକ୍ଷା କରିଥିଲେ ମଧ୍ୟ ଯତ୍ସାମାନ୍ୟ ବିଷ ତାହାଙ୍କ ହାତରୁ ଖସି ପଡ଼ିଥିଲା ତାହା ସର୍ପ, ବୃଶ୍ଚିକ ଓ ଅନ୍ୟାନ୍ୟ ବିଷଧର ଜନ୍ତୁମାନଙ୍କଠାରେ ଓ ଔଷଧାଦି ଗୁଳ୍ମ ଲତାରେ ବିଷୋତ୍ପାଦନ କରିଅଛି । ଏହାହିଁ ସମୁଦ୍ର ମନ୍ଥନର ପ୍ରଥମ ପର୍ବ, ଏହି ସଂସାର ସାଗର ମଧ୍ୟରେ ଭ୍ରାନ୍ତ ମନୁଷ୍ୟ ସର୍ବଦା ମନ୍ଥନ କରୁଅଛି । ସେହି ମନ୍ଥନର ପ୍ରଥମ ଫଳ ବିଷୋତ୍ପତ୍ତି, ସେହି ବିଷର ଜ୍ୱାଳାରୁ ମୁକ୍ତିଲାଭ କରିପାରିଲେ, ସେହି ସ୍ତରରୁ ଉତ୍ତୀର୍ଣ୍ଣ ହୋଇ ପାରିଲେ, ମାନବର ହିତକାମୀ ସତ୍ୟ ଶିବ, ସୁନ୍ଦର, ମଙ୍ଗଳମୟ ତାହାର ବିଷଜ୍ୱାଳା ସ୍ୱୟଂ ଗ୍ରହଣ କରି ତାହାକୁ ଅମୃତ ପ୍ରଦାନ କରିଥାନ୍ତି । ସେହି ବିଷଜ୍ୱାଳା ଅପହରଣ ନିମିତ୍ତ ସେହି ଶିବ ମଙ୍ଗଳମୟଙ୍କ ନିକଟରେ ମନୁଷ୍ୟକୁ ଆତ୍ମ-ସମର୍ପଣ କରିବାକୁ ହେବ ।



## ଅଷ୍ଟମୋଽଧ୍ୟାୟଃ ।

ଅଷ୍ଟମେ ମଥ୍ୟମାନେଽବ୍‌ଧୌ ଲକ୍ଷ୍ମ୍ୟା ବିଷ୍ଣୌ ବୃତେ ସୁରୈଃ ।
ଧନ୍ୱନ୍ତରେହୃ ତେ ସୋମେ ମୋହନ୍ୟୁଦ୍ଭବ ଈର୍ଯ୍ୟତେ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ । ପୀତେ ଗରେ ବୃଷାଙ୍କେଣ ପ୍ରୀତାସ୍ତେଽମରଦାନବାଃ ।
ମମନ୍ଥୁସ୍ତରସାସିନ୍ଧୁଂ ହବିର୍ଦ୍ଧାନୀ ତତୋଽଭବତ୍ । ୧ ।
ତାମଗ୍ନିହୋତ୍ରୀମୃଷୟୋ ଜଗୃହୁର୍ବ୍ରହ୍ମବାଦନଃ ।
ଯଜ୍ଞସ୍ୟ ଦେବଯାନସ୍ୟ ମେଧ୍ୟାୟ ହବିଷେ ନୃପ । ୨ ।
ତତ ଉଚ୍ଚୈଃଶ୍ରବା ନାମ ହୟୋଽଭୂଚ୍ଚନ୍ଦ୍ରପାଣ୍ଡୁରଃ ।
ତସ୍ମିନ୍ ବଲିଃ ସ୍ପୃହାଂ ଚକ୍ରେ ନେନ୍ଦ୍ର ଈଶ୍ୱରଶିକ୍ଷୟା । ୩ ।

---

### ସମୁଦ୍ର ମନ୍ଥନରୁ ଲକ୍ଷ୍ମୀ, ଅମୃତ ଉତ୍ପତ୍ତି, ଭଗବାନଙ୍କର ମୋହିନୀକନ୍ୟା ମୂର୍ତ୍ତି ।

ସମୁଦ୍ର ମନ୍ଥନରୁ ଲକ୍ଷ୍ମୀ ଆବିର୍ଭାବ ହୁଅନ୍ତେ ଭଗବାନ୍ ବିଷ୍ଣୁ ତାହାଙ୍କୁ ଗ୍ରହଣ କଲେ, ଧନ୍ୱନ୍ତରି ଅମୃତକଳଶ ଧରି ଉତ୍ପନ୍ନ ହେବାରୁ ଅସୁରମାନେ କଳିକଲେ ଏବଂ ଭଗବାନ୍ ମୋହିନୀରୂପ ଧାରଣକଲେ ।

ଶ୍ରୀ ଶୁକଦେବ କହିଲେ—

ହେ ରାଜନ୍ ! ବୃଷଧ୍ୱଜ ଶିବ ବିଷପାନ କରନ୍ତେ ଦେବତାମାନେ ଓ ଅସୁରମାନେ ଅତ୍ୟନ୍ତ ଆନନ୍ଦିତ ହୋଇ ଅତି ବେଗରେ ସମୁଦ୍ରମନ୍ଥନ କଲେ, ତହିଁରୁ ପ୍ରଥମେ ଯଜ୍ଞୀୟ ଘୃତର ଆଧାର ସ୍ୱରୂପ ସୁରଭି ଗାଈ ଆବିର୍ଭୂତ ହୋଇଥିଲା ।୧।

ହେ ରାଜନ୍ ! ବ୍ରହ୍ମବାଦୀ ଋଷିମାନେ ବ୍ରହ୍ମଲୋକ ପ୍ରାପକ ଯଜ୍ଞାଦି ସମ୍ପାଦନ ନିମିତ୍ତ ପବିତ୍ର ଘୃତ କାମନାରେ ସୁରଭି ଗାଈକୁ ଗ୍ରହଣ କରିଥିଲେ ।୨।

ତଦନନ୍ତର ଚନ୍ଦ୍ରତୁଲ୍ୟ ଧବଳବର୍ଣ୍ଣ ଉଚ୍ଚୈଃଶ୍ରବା ଅଶ୍ୱ ଉଦ୍ଭୁତ ହୋଇଥିଲା । ତାହାକୁ ଦୈତ୍ୟରାଜ ବଳି ଗ୍ରହଣ କଲେ, ଭଗବାନଙ୍କର ଉପଦେଶାନୁସାରେ ଇନ୍ଦ୍ର ତତ୍ପ୍ରତି ଅଭିଳାଷ କରି ନ ଥିଲେ ।୩।

---

**ଅଷ୍ଟମେ ଲକ୍ଷ୍ମୀ ବିଷ୍ଣୁ ବର, ସୁଧା ଆଣନ୍ତେ ଧନ୍ୱନ୍ତର । ଅସୁରେ ହରନ୍ତେ ତା ବଳେ, ବିଷ୍ଣୁ ମୋହିନୀରୂପହେଲେ**

ଶ୍ରୀଶୁକଉବାଚ—
ଶୁଣ ରାଜନ ସାବଧାନେ
ସର୍ପାର୍ଣବର ବିଷପାନେ
ଦେବ ଦାନବ ମନତୋଷେ
ରୁଦ୍ର ବରିହିଁ ଗେଲେ ପାଶେ
ପୁଣି ମନ୍ଥିଲେ କରି ମନ୍ୟୁ
ଜଳୁ ଉଠିଲା କାମଧେନୁ । ୧ ।
ସେ ଧେନୁ ଦେଖି ତୋଷମନେ
ବ୍ରାହ୍ମଣେ ମିଳିଲେ ମନ୍ଥନେ
ହବିଃପଷେ ଅଗ୍ନି-ହୋତ୍ର ଅର୍ଥେ
ମିଳିଲେ ଅଗ୍ନିହୋତ୍ରୀ ଯେତେ
ସ୍ୱଭାବେ ବିପ୍ରେ ବ୍ରହ୍ମ-ବେତ୍ତା
ଅଗ୍ନିପୂଜନେ ସାମରଥା
ସେ କାମଧେନୁ ଘେନିଗଲେ
ଆନନ୍ଦ ମନେ ଯଜ୍ଞ କଲେ । ୨ ।
ପୁଣି ମନ୍ଥିଲେ ସୁରଦେବା
ଉଠିଲା ଅଶ୍ୱ ଉଚ୍ଚୈଃଶ୍ରବା
ସେ ସର୍ବ ଲକ୍ଷଣେ ସୁନ୍ଦର
ଶଶାଙ୍କ ସଦୃଶ ପାଣ୍ଡୁର
ସେ ଅଶ୍ୱ ଦେଖି ବଳି ଚିତ୍ତେ
ଶ୍ରଦ୍ଧା ବସିଲା ଅନ୍ତର୍ଗତେ
ଈଶ୍ୱର ତାର ମନ ଜାଣି
ବୋଇଲେ ଶୁଣ ବୀରମଣି
ଇନ୍ଦ୍ରର ଅଶ୍ୱ ଏ ଉଚିତେ
ସେ ନେଉ ଆମ୍ଭ ସନମତେ ।୩।

ତତୋ ଐରାବତୋ ନାମ ବାରଣେନ୍ଦ୍ରୋ ବିନିର୍ଗତଃ ।
ଦନ୍ତୈଶ୍ଚତୁର୍ଭିଃ ଶ୍ୱେତାଦ୍ରେର୍ହରନ୍ ଭଗବତୋ ମହିମ୍ । ୪ ।
ଐରାବଣାଦୟସ୍ତ୍ୱଷ୍ଟୌ ଦିଗ୍ଗଜା ଅଭବଂସ୍ତତଃ ।
ଅଭ୍ରମୁପ୍ରଭୃତୟୋଽଷ୍ଟୌ ଚ କରିଣ୍ୟସ୍ତ୍ୱଭବନ୍ନୃପ । ୫ ।
କୌସ୍ତୁଭାଖ୍ୟମଭୂଦ୍ରତ୍ନଂ ପଦ୍ମରାଗୋ ମହୋଦଧେଃ ।
ତସ୍ମିନ୍ମଣୌ ସ୍ପୃହାଂ ଚକ୍ରେ ବକ୍ଷୋଽଲଙ୍କରଣେ ହରିଃ । ୬ ।
ତତୋଽଭବତ୍ପାରିଜାତଃ ସୁରଲୋକବିଭୂଷଣମ୍ ।
ପୂରୟତ୍ୟର୍ଥିନୋ ଯୋଽର୍ଥୈଃ ଶଶ୍ୱଦ୍ଭୁବି ଯଥା ଭବାନ୍ । ୭ ।
ତତଶ୍ଚାପ୍ସରସୋ ଜାତା ନିଷ୍କକଣ୍ଠ୍ୟଃ ସୁବାସସଃ ।
ରମଣ୍ୟଃ ସ୍ୱର୍ଗିଣାଂ ବଲ୍ଗୁଗତଲୀଳାବଲୋକନୈଃ । ୮ ।

---

ତଦନନ୍ତର ଚାରୋଟି ଦନ୍ତ ବିଶିଷ୍ଟ ଶିବାଳୟ କୈଳାସ ପର୍ବତର ଶୋଭାହରଣକାରୀ ଧବଳବର୍ଣ୍ଣ ହସ୍ତୀଶ୍ରେଷ୍ଠ ଐରାବତ ଆବିର୍ଭୂତ ହୋଇଥିଲା ୪।

ହେରାଜନ୍ ! ତଦନନ୍ତର ଐରାବତାଦି ଅଷ୍ଟଦିଗ୍‌ଜ ଅଭ୍ରମୁ ପ୍ରଭୃତି ଅଷ୍ଟ ହସ୍ତିନୀ ଉତ୍ପନ୍ନ ହୋଇଥିଲେ ।୫।

ତଦନନ୍ତର ସମୁଦ୍ରରୁ କୌସ୍ତୁଭମଣି ଉତ୍ପନ୍ନ ହୋଇଥିଲା । ଭଗବାନ୍ ହରି ବକ୍ଷ ଶୋଭା ସମ୍ପାଦନ ନିମିତ୍ତ ଏହିମଣି ପ୍ରତି ଅଭିଳାଷ କରିଥିଲେ । ତଦନନ୍ତର ସ୍ୱର୍ଗଲୋକ ଭୂଷଣ ସ୍ୱରୂପ ପାରିଜାତ ପୁଷ୍ପଓ କଳ୍ପବୃକ୍ଷ ଉତ୍ପନ୍ନ ହୋଇଥିଲା । ପୃଥିବୀରେ ଆପଣ ଯେପରି ସର୍ବଦା ଅର୍ଥଦାନ କରି ପ୍ରାର୍ଥୀମାନଙ୍କର ପ୍ରାର୍ଥନା ପୂରଣ କରନ୍ତି; ଏହି କଳ୍ପବୃକ୍ଷ ସର୍ବଦା ଯାଚକମାନଙ୍କର ପ୍ରାର୍ଥନା ପୂରଣ କରିଥାଏ ।୬, ୭।

ତଦନନ୍ତର ସୁବର୍ଣ୍ଣ କଣ୍ଠାଭରଣ ସୁବାସିନୀ (ଉତ୍ତମବସ୍ତ୍ର ପରିହିତା, ଅପ୍ସରାମାନେ ଉଦ୍ଭୂତ ହୋଇଥିଲେ ସେମାନଙ୍କର ମନୋହର ଗମନ ଓ ଲୀଳା ସ୍ୱର୍ଗବାସୀମାନଙ୍କର ପ୍ରୀତି ଉତ୍ପାଦନ କରିଥିଲା । ୮ ।

---

ପୁଣି ମନ୍ଥିଲେ ଯନ୍ତ୍ର ବଳେ
ଉଠିଲା ଗଜ ଐରାବତେ
ଚତୁର ଦନ୍ତ ଶୋଭା କରେ
କୈଳାସ ପର୍ବତ ଆକାରେ
ଇନ୍ଦ୍ରର ଗଜ ସେ ହୋଇବ
ତେଣୁ ନ ଇଚ୍ଛିଲେ ଦାନବ ।୪।
ଗଜକୁ ଇନ୍ଦ୍ର ଆବୋରିଲା
ପୁଣି ମନ୍ଥନେ ଉପୁଜିଲା
ଅଷ୍ଟ ଦିଗ୍ଗଜ ଐରାବଣ
ଅଭ୍ରମୁ ଆଦି ପତ୍ନୀ ନାମ । ୫ ।
ପୁଣି ମନ୍ଥନେ ମହାଭାଗ
ଉଠିଲା ମଣି ପଦ୍ମରାଗ

କୌସ୍ତୁଭ ନାମେ ରତ୍ନ ହରି
ସ୍ନେହେ ଯାହାକୁ ବକ୍ଷେ ଧରି ।୬।
ପୁଷ୍ପ ସୁଗନ୍ଧ ପାରିଜାତ
ସୁଗନ୍ଧେ ମୋହିଲା ଜଗତ
ତକ୍ଷଣେ ଉଠିଲା ଗଗନେ
ମିଳିଲା ଶଚୀ ପତି ବନେ । ୭ ।
ପୁଣି ମନ୍ଥିଲେ ବାହୁବଳେ
ମନ୍ଦର କ୍ଷୀର-ସିନ୍ଧୁ ଜଳେ
ଉଠିଲେ ଅପସରା ବୃନ୍ଦ
ସୁସ୍ୱରେ କରି ଗୀତ ନାଦ
ରତ୍ନ ମେଖଳା କଟିତଟେ
କୁଚେ କାଞ୍ଚିଲା ସୁପ୍ରକଟେ

ରତ୍ନ ଭୂଷଣେ ଶୋଭେ ଗ୍ରୀବା
ରୂପେ କି ପଟାନ୍ତର ଦେବା
ହାର କେୟୂର ଝଟକନ୍ତି
ଗଗନେ ଯେହ୍ନେ ଗ୍ରହପନ୍ତି
ସୁହାସ୍ୟେ କଟାକ୍ଷ ଲୋଚନ
ଯେରୂପେ ତ୍ରୈଲୋକ୍ୟ ମୋହନ
ଗଗନମାର୍ଗେ ଶୂନ୍ୟେ ଗଲେ
ଇନ୍ଦ୍ରର ଭୁବନେ ମିଳିଲେ । ୮

ତତଶ୍ଚାବିରଭୂତ୍ସାକ୍ଷାଚ୍ଛ୍ରୀରମା ଭଗବତ୍ପରା ।
ରଞ୍ଜୟନ୍ତୀ ଦିଶଃ କାନ୍ତ୍ୟା ବିଦ୍ୟୁତ୍ସୌଦାମିନୀ ଯଥା । ୯ ।
ତସ୍ୟାଂ ଚକ୍ରୁଃ ସ୍ପୃହାଂ ସର୍ବେ ସସୁରାସୁରମାନବାଃ ।
ରୂପୌଦାର୍ଯ୍ୟବୟୋବର୍ଣ୍ଣମହିମାକ୍ଷିପ୍ତଚେତସଃ । ୧୦ ।
ତସ୍ୟା ଆସନମାନିନ୍ୟେ ମହେନ୍ଦ୍ରୋ ମହଦଦ୍ଭୁତମ୍ ।
ମୂର୍ତ୍ତିମତ୍ୟଃ ସରିଚ୍ଛ୍ରେଷ୍ଠା ହେମକୁମ୍ଭୈର୍ଜଳଂ ଶୁଚି । ୧୧ ।
ଆଭିଷେଚନିକା ଭୂମିରାହରତ୍ ସକଲୌଷଧୀଃ ।
ଗାବଃ ପଞ୍ଚ ପବିତ୍ରାଣି ବସନ୍ତୋ ମଧୁମାଧବୌ । ୧୨ ।
ଋଷୟଃ କଲ୍ପୟାଞ୍ଚକ୍ରୁରଭିଷେକଂ ଯଥାବିଧି ।
ଜଗୁର୍ଭଦ୍ରାଣି ଗନ୍ଧର୍ବା ନଟ୍ୟଶ୍ଚ ନନୃତୁର୍ଜଗୁଃ । ୧୩ ।

---

ତଦନନ୍ତର ସୌଦାମିନୀ ବିଦ୍ୟୁତ ତୁଲ୍ୟ କାନ୍ତିଦ୍ୱାରା ଦିଗମାନଙ୍କୁ ଝଲସିତ କରି ଭଗବତ୍ ପରାୟଣା ଶ୍ରୀରୂପା ଲକ୍ଷ୍ମୀଦେବୀ ସୁଦାମା ପର୍ବତର ଏକ ଦେଶରୁ ଆବିର୍ଭୂତ ହୋଇଥିଲେ ।୯।

ତାହାଙ୍କର ରୂପ, ଔଦାର୍ଯ୍ୟ, ବୟସ, ଓ ମହିମାଦ୍ୱାରା ଆକୃଷ୍ଟ ଚିତ୍ତ ହୋଇ ଦେବତା, ଅସୁର ଓ ମାନବମାନେ ସମସ୍ତେ ଏହି ଲକ୍ଷ୍ମୀଙ୍କୁ ଲାଭ କରିବା ଲାଗି ଇଚ୍ଛା କରିଥିଲେ ।୧୦।

ଭଗବାନ୍ ଇନ୍ଦ୍ର ଲକ୍ଷ୍ମୀଙ୍କ ଉପବେଶନ ନିମିତ୍ତ ଅତ୍ୟଦ୍ଭୁତ ଆସନ ଆଣିଥିଲେ । ମୂର୍ତ୍ତିମତୀ ହୋଇ ପ୍ରଧାନ ନଦୀମାନେ ସୁବର୍ଣ୍ଣ କଳସରେ ପବିତ୍ର ଜଳ ଆହରଣ କରିଥିଲେ ।୧୧।

ଅଭିଷେଚନୋଚିତା ଔଷଧିମାନ ପୃଥିବୀ ଦାନ କରିଥିଲେ, ଗାଭୀମାନେ ପଞ୍ଚଗବ୍ୟ ଆଣିଥିଲେ । ବସନ୍ତ ଋତୁ ଚୈତ୍ର ଓ ବୈଶାଖ ମାସର ଫଳ ମୂଷ୍ଟାନ୍ନ ଆଣିଥିଲେ ।୧୨।

ଋଷିମାନେ ଯଥାବିଧି ଅଭିଷେକ କଳ୍ପନା କରିଥିଲେ; ଗନ୍ଧର୍ବମାନେ ସୁସ୍ୱରରେ ଗାନ କରିଥିଲେ ଓ ନର୍ତ୍ତକୀମାନେ ନୃତ୍ୟ କରିଥିଲେ ।୧୩।

---

ଅସୁରମାନେ ଦୁଃଖ ଭରି
ପୁଣି ମନ୍ଥିଲେ ଗିରି ଧରି
ସୁନ୍ଦର କ୍ଷଣେ ଦଣ୍ଡେଣ
ଧରଣୀ ହେଉଛି ଉଲ୍ଲାସ
ଅମୃତ ଶୁଭଲଗ୍ନ ବେଳେ
ଲକ୍ଷ୍ମୀ ଉଠିଲେ ମହାତଳେ
ଦିଗ ପ୍ରସରେ ଦେହ ଝଳ
ଜୀମୂତେ ଯେସନେ ବିଜୁଳି ।୯।

କମଳାରୂପ ଦେଖି ଜନେ
ଲୋଭିତ ହେଲେ ସର୍ବମନେ ।୧୦।
ଲକ୍ଷ୍ମୀ ବଦନ ଚାହିଁ ବେଗେ
ଇନ୍ଦ୍ର ମଣିଲେ ପାଦଯୁଗେ
ରତ୍ନ ଆସନ ଦେଲେ ଆଣି
ଯହିଁ ବିଜେକଲେ କମଳିନୀ
ଜାହ୍ନବୀ ଆଦି ନଦୀ ଯେତେ
ସର୍ବେ ମିଳିଲେ ପାଦଗତେ

ସୁବର୍ଣ୍ଣ କୁମ୍ଭେ ନୀର ଭରି
ମୁନିଏ ରହିଲେ ଉଦ୍ଧରି
ଧରଣୀ ଦେଲେ ଔଷଧି
ଅପରେ ଅଭିଷେକ ବିଧି
ଅଇରାବତ ପୁଣ୍ୟଶ୍ଳୋକ
ଏ ବେଳ ହସ୍ତିଙ୍କ ନାୟକ
ସୁବର୍ଣ୍ଣକୁମ୍ଭେ ନୀର ଭରି
ଢାଳିଲେ ଥୋରି ହସ୍ତେ ଧରି

ମେଘା ମୃଦଙ୍ଗପଣବମୁରଜାନକଗୋମୁଖାନ୍ ।
ବ୍ୟନାଦୟନ୍ ଶଙ୍ଖବେଣୁବୀଣାସ୍ତୁମୂଳନିଃସ୍ୱନାନ୍ । ୧୪ ।
ତତୋଽଭିଷିଷିଚୁର୍ଦ୍ଦେବୀଂ ଶ୍ରିୟଂ ପଦ୍ମକରାଂ ସତୀମ୍ ।
ଦିଗିଭାଃ ପୂର୍ଣ୍ଣକଳଶୈଃ ସୂକ୍ତବାକ୍ୟୈର୍ଦ୍ୱିଜେରିତୈଃ । ୧୫ ।
ସମୁଦ୍ରଃ ପୀତକୌଶେୟେ ବାସସୀ ସମୁପାହରତ୍ ।
ବରୁଣଃ ସ୍ରଜଂ ବୈଜୟନ୍ତୀଂ ମଧୁନା ମତ୍ତଷଟ୍ପଦାମ୍ । ୧୬ ।
ଭୂଷଣାନି ବିଚିତ୍ରାଣି ବିଶ୍ୱକର୍ମ୍ମା ପ୍ରଜାପତିଃ ।
ହାରଂ ସରସ୍ୱତୀ ପଦ୍ମମଜୋ ନାଗାଶ୍ଚ କୁଣ୍ଡଳେ । ୧୭ ।
ତତଃ କୃତସ୍ୱସ୍ତ୍ୟୟନୋତ୍ପଳସ୍ରଜଂ ନଦଦ୍ଦ୍ୱିରେଫାଂ ପରିଗୃହ୍ୟ ପାଣିନା ।
ଚଚାଲ ବକ୍ତ୍ରଂ ସୁକପୋଲକୁଣ୍ଡଳଂ ସବ୍ରୀଡ଼ହାସଂ ଦଧତୀ ସୁଶୋଭନମ୍ । ୧୮ ।

---

ମେଘମାନେ ମୃଦଙ୍ଗ, ପଣବ, ମୁରଜ, ଆନକ ଏବଂ ଗୋମୁଖ ପ୍ରଭୃତି ବାଦ୍ୟଦ୍ୱାରା ତୁମୁଳ ଧ୍ୱନି ଶଙ୍ଖ, ବୀଣା, ବେଣୁ, ପ୍ରଭୃତି ଦ୍ୱାରା ମଧୁର ଶବ୍ଦ କରିଥିଲେ ।୧୪।

ତଦନନ୍ତର ପଦ୍ମହସ୍ତା ସତୀ ଲକ୍ଷ୍ମୀଦେବୀଙ୍କୁ ଦିଗ୍ ହସ୍ତୀମାନେ ପୂର୍ଣ୍ଣ କଳସରେ ବ୍ରାହ୍ମଣମାନଙ୍କର ଉଚ୍ଚାରିତ ବେଦମନ୍ତ୍ର ଦ୍ୱାରା ଅଭିଷେକ କରିଥିଲେ ।୧୫।

ସମୁଦ୍ର ତାହାଙ୍କର ପରିଧାନ ନିମିତ୍ତ ଦୁଇଟି ପୀତବର୍ଣ୍ଣ କୌଶେୟ ବସ୍ତ୍ର, ବରୁଣ ମଧୁକର ଗୁଞ୍ଜିତ ବୈଜୟନ୍ତୀ ମାଳା, ପ୍ରଜାପତି ବିଶ୍ୱକର୍ମା ବିବିଧ ବିଚିତ୍ର ଭୂଷଣ, ସରସ୍ୱତୀ ହାର, ବ୍ରହ୍ମା ପଦ୍ମ, ନାଗମାନେ କୁଣ୍ଡଳ ଦ୍ୱୟ ଉପହାର ଦେଇଥିଲେ । ୧୬, ୧୭ ।

ଲକ୍ଷ୍ମୀଦେବୀ ଏହିପରି ଅଭିଷିକ୍ତା ହୋଇ ସୁନ୍ଦର କପୋଳ ଓ କୁଣ୍ଡଳ ବିଶିଷ୍ଟ ସଲଜ୍ଜ ହାସ୍ୟ ବଦନରେ ହସ୍ତଦ୍ୱାରା ଭ୍ରମର ଗୁଞ୍ଜିତ ପଦ୍ମମାଳା ଗ୍ରହଣ କରି ଗମନ କଲେ ।୧୮।

---

ସୁରଭି ପୀୟୂଷ ଧାରେ
ସିଞ୍ଚିଲ କମଳା ଉପରେ
ମଧୁ ମାଧବ ବେନିମାସେ
ମିଳି କୁସୁମ ଗନ୍ଧ ବାସେ
ମିଳି ଅଶେଷ ମୁନିଗଣେ
ଆଗମ ନିଗମ ପ୍ରମାଣେ
ଗନ୍ଧର୍ବେ କରି ଗୀତ ନାଦ
ନାଚନ୍ତି ଅପସରି ବୃନ୍ଦ
ପଣବ ମୃଦଙ୍ଗ ଗୋମୁଖ
ମୁରଜ ଯନ୍ତ୍ର ଯେ ଆନକ

କମ୍ବୁ କାହାଳ ବେଣୁସ୍ୱନ
ବାଜନ୍ତି ଶୂନ୍ୟପଥେ ଘନ
ସକଳେ ମିଳି ଚଉପାଶେ
ସୁବାକ୍ୟ ବେଦମନ୍ତ୍ର ଘୋଷେ
ହସ୍ତିଏ ରତ୍ନ-କୁମ୍ଭେ ନୀର
ଢାଳିଲେ କମଳାର ଶିର
କ୍ଷୀର ଜଳଧି ଉଠି ତୋଷେ
ମିଳିଲା କମଳାଙ୍କ ପାଶେ
ପୀତ ବସନ ବେନି ଦେଲା
ଅମ୍ଳାନ ପଙ୍କଜର ମାଳା

ବରୁଣ ଦେଲା ଦେବୀଗଳେ
ମତ୍ତ ମଧୁପ ଯହିଁ ଖେଳେ
ନାନାଭୂଷଣ ରତ୍ନ ଜ୍ୟୋତି
ସେ ବିଶ୍ୱକର୍ମ୍ମା ପ୍ରଜାପତି
ହାର କଙ୍କଣ ଅବତଂଶ
ଜଳନ୍ତି ରତ୍ନେ ରବିହାସ ।୧୧-୧୭
ସେ ଦେବୀ ଅଭିଷେକ ଅନ୍ତେ
ପଙ୍କଜମାଳା ଘେନି ହସ୍ତେ
ପାଦେ ଚଳନ୍ତେ ମନ୍ଥିବଳେ
ରତ୍ନକୁଣ୍ଡଳ କର୍ଣ୍ଣେ ଦୋଳେ

ସ୍ତନଦ୍ୱୟଂ ଚାତିକୃଶୋଦରୀ ସମଂ ନିରନ୍ତରଂ ଚନ୍ଦନକୁଙ୍କୁମୋକ୍ଷିତମ୍ ।
ତତସ୍ତତୋ ନୂପୁରବଲ୍ଗୁଶିଞ୍ଜିତୈର୍ବିସର୍ପତୀ ହେମଲତେବ ସା ବଭୌ ।୧୯।
ବିଲୋକୟନ୍ତୀ ନିରବଦ୍ୟମାତ୍ମନଃ ପଦଂ ଧ୍ରୁବଂ ଚାବ୍ୟଭିଚାରିସଦ୍ଗୁଣମ୍ ।
ଗନ୍ଧର୍ବସିଦ୍ଧାସୁରଯକ୍ଷଚାରଣତ୍ରୈପିଷ୍ଟପେୟାଦିଷୁ ନାନ୍ୱବିନ୍ଦତ । ୨୦ ।
ନୂନଂ ତପୋ ଯସ୍ୟ ନ ମନ୍ୟୁନିର୍ଜୟୋ ଜ୍ଞାନଂ କ୍ୱଚିତ୍ ତଚ୍ଚ ନ ସଙ୍ଗବର୍ଜିତମ୍ ।
କଶ୍ଚିନ୍ମହାଂସ୍ତସ୍ୟ ନ କାମ ନିର୍ଜୟଃ ସ ଈଶ୍ୱରଃ କିଂ ପରତୋ ବ୍ୟପାଶ୍ରୟଃ । ୨୧ ।
ଧର୍ମ୍ମଃ କ୍ୱଚିତ୍ତତ୍ର ନ ଭୂତସୌହୃଦଂ ତ୍ୟାଗଃ କ୍ୱଚିତ୍ତତ୍ର ନ ମୁକ୍ତିକାରଣମ୍ ।
ବୀର୍ଯ୍ୟଂ ନ ପୁଂସୋଽସ୍ତ୍ୟଜବେଗନିଷ୍କୃତଂ ନ ହି ଦ୍ୱିତୀୟୋ ଗୁଣସଙ୍ଗବର୍ଜିତଃ ।୨୨।

---

ସ୍ତନଦ୍ୱୟ ଚନ୍ଦନ ଓ କୁଙ୍କୁମରେ ଅଭିଷିକ୍ତ ହୋଇଥିଲା । କୃଶୋଦରୀ ଲକ୍ଷ୍ମୀ ମନୋହର ନୂପୁର ନାଦ କରୁ କରୁ ଇତସ୍ତତଃ ପଦ ବିକ୍ଷେପ କରନ୍ତେ ଚଳିଥିଲା ହେମଲତା ତୁଲ୍ୟ ତାହାଙ୍କର ଶୋଭା ପ୍ରକାଶିତ ହେଲା ।୧୯।

ତଦନନ୍ତର ଅନିନ୍ଦନୀୟ, ନିଶ୍ଚଳ, ନିତ୍ୟ ସଦ୍‌ଗୁଣ ଶାଳୀ ଆଶ୍ରୟ ପାଇଁ ନିରୀକ୍ଷଣ କରିବାକୁ ଲାଗିଲେ । କିନ୍ତୁ ଗନ୍ଧର୍ବ, ସିଦ୍ଧ, ଅସୁର, ଯକ୍ଷ ଚାରଣ ଏବଂ ସ୍ୱର୍ଗବାସୀ ଦେବତାମାନଙ୍କ ମଧ୍ୟରେ ସେପରି ସଦ୍‌ଗୁଣ ସମ୍ପନ୍ନ କାହାରିକୁ ଦେଖିଲେ ନାହିଁ ।୨୦।

ସେତେବେଳେ ଲକ୍ଷ୍ମୀଦେବୀ ଚିନ୍ତା କଲେ ଦୁର୍ବାସା ପ୍ରଭୃତି ତପସ୍ୟା କରିଅଛନ୍ତି କିନ୍ତୁ ସେମାନେ କ୍ରୋଧକୁ ଜୟ କରି ନାହାନ୍ତି । ଗୁରୁ ଶୁକ୍ରାଦି ଜ୍ଞାନୀ କିନ୍ତୁ ସେମାନେ ସଙ୍ଗବର୍ଜ୍ଜିତ ନୁହନ୍ତି । ବ୍ରହ୍ମା, ଚନ୍ଦ୍ର ପ୍ରଭୃତି ମହତ୍ ବ୍ୟକ୍ତି, କିନ୍ତୁ କାମଜୟୀ ନୁହନ୍ତି । ଇନ୍ଦ୍ରାଦି ଦେବଗଣଙ୍କର ପ୍ରଭୁତ୍ୱ ଅଛି କିନ୍ତୁ ସେମାନେ ପରାଧୀନ; ସୁତରାଂ ଏମାନେ କେହି ଈଶ୍ୱର ନୁହନ୍ତି ।୨୧।

ପରଶୁରାମାଦିଙ୍କର ଧର୍ମ ଅଛି, କିନ୍ତୁ ସର୍ବ ପ୍ରାଣୀ ପ୍ରତି ଦୟା ନାହିଁ । ଶିବି ପ୍ରଭୃତି ରାଜାମାନଙ୍କର ଦାନ ଅଛି, କିନ୍ତୁ ମୋକ୍ଷାର୍ଥ ତ୍ୟାଗ ନାହିଁ । କାର୍ତ୍ତବୀର୍ଯ୍ୟାଦିଙ୍କର ବୀର୍ଯ୍ୟ ଥିଲେ ମଧ୍ୟ ତାହା କାଳଭୟ ବିରହିତ ନୁହେଁ । ଗୁଣସଙ୍ଗ ବର୍ଜ୍ଜିତ ସନକାଦି ସମାଧିନିଷ୍ଠ ତେଣୁ ସେମାନେ ମୋର ସହଚର ହୋଇ ନ ପାରନ୍ତି ।୨୨।

---

ସୁଶୁଭ୍ରହାସ ଶୁଭ୍ରଦନ୍ତୀ
ହୃଦେ ପୟୋଧର ଚଳନ୍ତି
ମୁକୁତା ହାର କୁଚ ଶିଖେ
କୁଙ୍କୁମ ଲେପନ ସୁରେଖେ
ଚରଣେ ରୁଣିତ ନୂପୁର
ସୁଘୋଷ ଦିଶଇ ସୁନ୍ଦର

ପଥେ ଚାଲନ୍ତେ ଜନମାତା
ରୂପେ କି ଦିଶେ ହେମଲତା
ବିଷ୍ଣୁ ଚରଣେ ମନ ଦେଇ
ଆନନ୍ଦେ ବେଳପାଶେ ଥାଇଁ
ଅଶେଷ ବ୍ରହ୍ମାଣ୍ଡ କାରଣ
କଳିବି ଯାହାର ଚରଣ

ଯଦ୍ୟପି କନ୍ୟା ରୂପ ଧରେ
ମନ ନ ରହେ ଅନ୍ୟ ବରେ
ଗନ୍ଧର୍ବ ସିଦ୍ଧ ଯକ୍ଷ ସୁର
ଥିଲେ ଯେ ଚାରଣ ଅସୁର
ଯେଣୁ ମିଶ୍ରିତ ଦୋଷଗୁଣ
ତେଣୁ ତାଙ୍କରେ ନାହିଁ ମନ

କ୍ୱଚିଚ୍ଚିରାୟୁର୍ନ ହି ଶୀଲମଙ୍ଗଳଂ କ୍ୱଚିତ୍ତଦପ୍ୟସ୍ତି ନ ବେଦ୍ୟମାୟୁଷଃ ।
ଯତ୍ରୋଭୟଂ କୁତ୍ର ଚ ସୋଽପ୍ୟମଙ୍ଗଳଃ ସୁମଙ୍ଗଳଃ କଶ୍ଚ ନ କାଙ୍‌କ୍ଷତେ ହି ମାମ୍ ।୨୩
ଏବଂ ବିମୃଷ୍ୟାବ୍ୟଭିଚାରିସଦ୍‌ଗୁଣୈର୍ବରଂ ନିଜୈକାଶ୍ରୟତୟାଽଗୁଣାଶ୍ରୟମ୍ ।
ବବ୍ରେ ବରଂ ସର୍ବଗୁଣୈରପେକ୍ଷିତଂ ରମା ମୁକୁନ୍ଦଂ ନିରପେକ୍ଷମୀପ୍ସିତମ୍ । ୨୪ ।
ତସ୍ୟାଂସଦେଶ ଉଶତୀଂ ନବକଞ୍ଜମାଳାଂ ମାଦ୍ୟନ୍ମଧୁବ୍ରତବରୂଥଗିରୋପଘୁଷ୍ଟାମ୍ ।
ତସ୍ଥୌ ନିଧାୟ ନିକଟେ ତଦୁରଃ ସ୍ୱଧାମ ସବ୍ରୀଡ଼ହାସବିକସନ୍ନୟନେନ ଯାତା ୨୫।
ତସ୍ୟାଃ ଶ୍ରିୟସ୍ତ୍ରିଜଗତୋ ଜନକୋ ଜନନ୍ୟାବକ୍ଷୋନିବାସମକରୋତ୍ ପରମଂବିଭୂତେଃ
ଶ୍ରୀଃ ସ୍ୱାଃପ୍ରଜାଃ ସକରୁଣେନ ନିରୀକ୍ଷଣେନ ଯତ୍ରସ୍ଥିତୈଧୟତ ସାଧିପତୀଂସ୍ତ୍ରିଲୋକାନ୍ ॥

---

ମାର୍କଣ୍ଡେୟାଦି ଋଷିଗଣ ଦୀର୍ଘାୟୁ ହେଲେ ମଧ୍ୟ ସେମାନଙ୍କର ଶୀଳ ଓ ମଙ୍ଗଳ ନାହିଁ, ହିରଣ୍ୟ-କଶିପୁ ପ୍ରଭୃତି ଶୀଳ ମଙ୍ଗଳ ସମ୍ପନ୍ନ ହେଲେ ମଧ୍ୟ ସେମାନଙ୍କର ଆୟୁର ସ୍ଥିରତା ନାହିଁ । ରୁଦ୍ରଙ୍କଠାରେ ଶୀଳ, ମଙ୍ଗଳ ଓ ଆୟୁ ସ୍ଥିର ଥିଲେ ମଧ୍ୟ ତାଙ୍କଠାରେ ଶ୍ମଶାନ ବାସାଦି ଅମଙ୍ଗଳ ଚେଷ୍ଟା ରହିଅଛି । ଲକ୍ଷ୍ମୀ ଏହିପରି ବିଚାର କରି କହିଲେ ଏଠାରେ ସର୍ବତୋଭାବରେ ସୁମଙ୍ଗଳ ଏପରି ଯେଉଁ ବ୍ୟକ୍ତି ଅଛନ୍ତି; ସେ ଆମୃଗମ ବିଷ୍ଣୁ । ୨୩ ।

ଲକ୍ଷ୍ମୀଦେବୀ ଏହିପରି ବିଚାର କରି ଅବ୍ୟଭିଚାରୀ, ସର୍ବଗୁଣ ଧର୍ମ ଓ ଜ୍ଞାନାଦି ଯୁକ୍ତ ନିତ୍ୟ ଆଶ୍ରୟ ସ୍ଥଳ ଭଗବାନ ମୁକୁନ୍ଦଙ୍କୁ ସର୍ବାପେକ୍ଷା ଉତ୍ତମ ବୋଲି ସ୍ଥିର କରି ନିରପେକ୍ଷ ଭାବରେ ତାହାଙ୍କୁ ବରଣ କରିବାକୁ ଇଚ୍ଛା କରିଥିଲେ । ଭଗବାନ୍ ମୁକୁନ୍ଦ ପ୍ରାକୃତ ଗୁଣାତୀତ ହେଲେ ମଧ୍ୟ ଧର୍ମ ଗୁଣାଦି ଓ ଅଣିମାଦି ସର୍ବ ଗୁଣାଳଙ୍କୃତ, ସେ ନିରପେକ୍ଷ ଅର୍ଥାତ୍ କାହାରିକୁ ପାଇବାକୁ ଆଗ୍ରହୀ ନୁହନ୍ତି । ସେ ଲକ୍ଷ୍ମୀଙ୍କର ଅଭିପ୍ରାୟ ବୁଝି ପାରିଥିଲେ ଏବଂ ଲକ୍ଷ୍ମୀ ସ୍ୱୟଂ ତାହାଙ୍କୁ ବରଣ କରିଥିଲେ ।୨୪।

ତଦନନ୍ତର ଲକ୍ଷ୍ମୀଦେବୀ ବିଷ୍ଣୁଙ୍କର ବକ୍ଷ ଦେଶରେ ଅତି କମନୀୟ ମତ୍ତ ମଧୁକର ସମୂହର ଗୁଞ୍ଜନରେ ନିନାଦିତ ନବ ପଦ୍ମମାଳା ସମର୍ପଣ କରି ସଲଜ୍ଜ ହାସ୍ୟ ବିକଶିତ ନେତ୍ରରେ ନିଜଧାମ ବିଷ୍ଣୁଙ୍କର ବକ୍ଷସ୍ଥଳ କାମନା କରି ବିଷ୍ଣୁଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇଥିଲେ ।୨୫।

ତ୍ରିଲୋକର ଜନକ ଭଗବାନ୍ ମୁକୁନ୍ଦ ବିଭୂତିମାନଙ୍କର ଜନନୀ ସେହି ଲକ୍ଷ୍ମୀଦେବୀଙ୍କୁ ନିଜ ବକ୍ଷ ସ୍ଥଳରେ ପରମ ବାସଭବନ କରି ଦେଇଥିଲେ । ସେହି ସ୍ଥାନରେ ଅବସ୍ଥାନ କରି ଲକ୍ଷ୍ମୀଦେବୀ ସ୍ୱୟଂ ସକରୁଣ ଦୃଷ୍ଟିଦ୍ୱାରା ନିଜର ପ୍ରଜା ଓ ଲୋକପାଳଗଣ ଓ ତ୍ରିଲୋକକୁ ବର୍ଦ୍ଧନ କରିଥିଲେ ।୨୬।

---

ଚହିଁଲା ପୁଣ ଏହିମତେ
ବିଷ୍ଣୁ ଚରଣ ଚିତ୍ତ ଛତ୍ରେ
ଗୋବିନ୍ଦ ଗଳେ ମାଳ ଦେଇ
ଅନଙ୍ଗ ନୟନେ ଅନାଇ
କୋଳେ ବସିଲେ ଜଗମାତା
ଯେ ଜୀବଜୀବନରଦାତା ।୯୮-୨୬

ଶଙ୍ଖତୂର୍ଯ୍ୟମୃଦଙ୍ଗାନାଂ ବାଦିତ୍ରାଣାଂ ପୃଥୁଃ ସ୍ୱନଃ ।
ଦେବାନୁଗାନାଂ ସସ୍ତ୍ରୀଣାଂ ନୃତ୍ୟତାଂ ଗାୟତାମଭୂତ୍ । ୨୭ ।
ବ୍ରହ୍ମରୁଦ୍ରାଙ୍ଗିରୋ ମୁଖ୍ୟାଃ ସର୍ବେ ବିଶ୍ୱସୃଜୋ ବିଭୁମ୍ ।
ଈଡ଼ିରେଽବିତଥୈର୍ମନ୍ତ୍ରୈସ୍ତଲ୍ଲିଙ୍ଗୈଃ ପୁଷ୍ପବର୍ଷିଣଃ । ୨୮ ।
ଶ୍ରିୟାବଲୋକିତା ଦେବାଃ ସପ୍ରଜାପତୟଃ ପ୍ରଜାଃ ।
ଶୀଳାଦିଗୁଣସମ୍ପନ୍ନା ଲେଭିରେ ନିର୍ବୃତିଂ ପରାମ୍ । ୨୯ ।
ନିଃସତ୍ତ୍ୱା ଲୋଲୁପା ରାଜନ୍ ନିରୁଦ୍ୟୋଗାଗତତ୍ରପାଃ ।
ଯଦା ଚୋପେକ୍ଷିତା ଲକ୍ଷ୍ମ୍ୟା ବଭୂବୁର୍ଦୈତ୍ୟଦାନବାଃ । ୩୦ ।
ଅଥାସୀଦ୍‌ବାରୁଣୀ ଦେବୀ କନ୍ୟା କମଳଲୋଚନା ।
ଅସୁରା ଜଗୃହୁସ୍ତାଂ ବୈ ହରେରନୁମତେନ ତେ । ୩୧ ।

---

ତାହା ଦେଖି ନୃତ୍ୟ ଓ ଗୀତ ପରାୟଣ ନାରୀମାନେ, ସସ୍ତ୍ରୀକ ଦେବଗଣ ଓ ଅସୁରଗଣ ଶଙ୍ଖ, ତୂରୀ ଓ ମୃଦଙ୍ଗ ପ୍ରଭୃତି ବାଦ୍ୟମାନ ପୃଥକ୍ ପୃଥକ୍ ବଜାଇଥିଲେ । ୨୭ ।

ବ୍ରହ୍ମା, ରୁଦ୍ର, ଅଙ୍ଗିରା ପ୍ରଭୃତି ବିଶ୍ୱସ୍ରଷ୍ଟାଗଣ ପୁଷ୍ପବର୍ଷଣ କରି ବିଷ୍ଣୁ ପ୍ରତିପାଦକ ମନ୍ତ୍ର ଉଚ୍ଚାରଣ ପୂର୍ବକ ଭଗବାନଙ୍କୁ ସ୍ତବ କରିଥିଲେ । ୨୮ ।

ଦେବତା ଓ ପ୍ରଜାପତିମାନେ ଓ ପ୍ରଜାମାନେ ଲକ୍ଷ୍ମୀଙ୍କ ଦୃଷ୍ଟି ପଡ଼ିବାରୁ ଶୀଳାଦି ଗୁଣ ସମ୍ପନ୍ନ ହୋଇଥିଲେ ଏବଂ ପରମ ନିର୍ବୃତି ଲାଭ କରିଥିଲେ । ୨୯ ।

ହେ ରାଜନ୍ ! ଲକ୍ଷ୍ମୀଦେବୀଙ୍କ ଦୃଷ୍ଟିରୁ ଦୈତ୍ୟ ଦାନବଗଣ ଉପେକ୍ଷିତ ହୋଇଥିଲେ । ତେଣୁ ସେମାନେ ସାମର୍ଥ୍ୟହୀନ, ଲୋଲୁପ, ନିରୁଦ୍ୟମ ଓ ନିର୍ଲଜ୍ଜ ହୋଇଥିଲେ । ୩୦ ।

ତଦନନ୍ତର କମଳଲୋଚନା ବରୁଣକନ୍ୟା ଅର୍ଥାତ୍ ଅନ୍ନମୟୀ ସୁରା ସମୁଦ୍ର ମଧ୍ୟରୁ ଉତ୍ପନ୍ନ ହୋଇଥିଲା । ଭଗବାନ୍ ହରିଙ୍କର ଅନୁମତିକ୍ରମେ ଅସୁରମାନେ ସେହି କନ୍ୟାକୁ ଗ୍ରହଣ କରିଥିଲେ । ୩୧ ।

---

ଗୋବିନ୍ଦ କୋଳେ ଲକ୍ଷ୍ମୀ ଦେଖି
ଅସୁରେ ମନ୍ଥନ ଉପେକ୍ଷି
ତୂରୀ ଘୋଷଣ ବାଦ୍ୟ ସ୍ୱନ
ନୃତ୍ୟ ଉତ୍ସବ ଘନ ଘନ
ବ୍ରହ୍ମା ଶଙ୍କର ଆଦି ଯେତେ
କ୍ଷଣେ ମିଳିଲେ ସମସ୍ତେ
ପୁଷ୍ପ ବରଷି ସ୍ତୁତି କରି
ସକଳ ଦେବେ ମୋଦଭରି

ଲକ୍ଷ୍ମୀ କଟାକ୍ଷ ଦେହେ ଲାଗି
ସର୍ବେ ହୋଇଲେ ସୁଖଭାଗୀ
ସତ୍ୟାଦି ପୁଣ୍ୟଶୀଳ ଗୁଣେ
ଯୁକ୍ତହୋଇଲେ ତତକ୍ଷଣେ । ୨୭-୨୯
ଲକ୍ଷ୍ମୀଙ୍କୁ ନ ଲଭି ଅସୁରେ
ବିଗୁଣ ବହିଲେ ଅନ୍ତରେ
ନିର୍ବଳ ହୋଇଲେ ସ୍ୱଭାବେ
ଲୋଭ ଜନ୍ମିଲା ହୃଦଭାବେ

ଉଦ୍‌ବେଗେ ହୋଇଲେ କାତର
ଲାଜ ସ୍ୱଭାବ ଗଲା ଦୂର । ୩୦ ।
ଗ୍ରହାନ୍ତି ଅନ୍ୟୋଅନ୍ୟ ମୁଖେ
ପୁଣି ମନ୍ଥନ୍ତି ଅତି ଦୁଃଖେ
ମନ୍ଥନ୍ତେ ଉଠିଲା ବାରୁଣୀ
ରୂପେ ଶୋଭିତ କମଳିନୀ
ଅସୁରେ ହସିଣ କୌତୁକେ
ସେ କନ୍ୟା ଲଭିଲେ ସମସ୍ତେ । ୩୧ ।

ଅଥୋଦଧେର୍ମଥ୍ୟମାନାତ୍ କାଶ୍ୟପୈରମୃତାର୍ଥିଭିଃ ।
ଉଦତଷ୍ଠନ୍ମହାରାଜ ପୁରୁଷଃ ପରମାଦ୍ଭୁତଃ । ୩୨ ।
ଦୀର୍ଘପୀବରଦୋର୍ଦ୍ଦଣ୍ଡଃ କମ୍ବୁଗ୍ରୀବୋଽରୁଣେକ୍ଷଣଃ ।
ଶ୍ୟାମଳସ୍ତରୁଣଃ ସ୍ରଗ୍ବୀ ସର୍ବାଭରଣଭୂଷିତଃ । ୩୩ ।
ପୀତବାସା ମହୋରସ୍କଃ ସୁମୃଷ୍ଟମଣିକୁଣ୍ଡଳଃ ।
ସ୍ନିଗ୍ଧକୁଞ୍ଚିତକେଶାନ୍ତସୁଭଗଃ ସିଂହବିକ୍ରମଃ । ୩୪ ।
ଅମୃତାପୂର୍ଣ୍ଣକଳସଂ ବିଭ୍ରଦ୍‌ବଳୟଭୂଷିତଃ ।
ସ ବୈ ଭଗବତଃ ସାକ୍ଷାଦ୍‌ବିଷ୍ଣୋରଂଶାଂଶସମ୍ଭବଃ । ୩୫ ।

ହେ ମହାରାଜ ! ତଦନନ୍ତର ଅମୃତକାମୀ ଦେବାସୁରଗଣ ସମୁଦ୍ର ମନ୍ଥନ କରନ୍ତେ ଗୋଟିଏ ଅତ୍ୟାଶ୍ଚର୍ଯ୍ୟ ରୂପଧାରୀ ପୁରୁଷ ଉତ୍ଥାନକରିଥିଲେ, ତାହାର ବାହୁଦ୍ୱୟ ଦୀର୍ଘ ଆଜାନୁଲମ୍ବିତ ଏବଂ ବଳିଷ୍ଠ । କମ୍ବୁକଣ୍ଠ, ଆରକ୍ତଲୋଚନ, ଶ୍ୟାମବର୍ଣ୍ଣ ଯୌବନାବସ୍ଥା ପ୍ରାପ୍ତ, ମାଳ ଧାରୀ, ସର୍ବପ୍ରକାର ଆଭରଣରେ ଅଳଙ୍କୃତ, ପୀତବସ୍ତ୍ର ପରିହିତ, ବିଶାଳବକ୍ଷ, ସୁମାର୍ଜିତ ମଣିମୟ କୁଣ୍ଡଳଧାରୀ, ସୁଚିକ୍କଣ, ଶ୍ୟାମଳ, ସୁକେଶଯୁକ୍ତ, ସିଂହତୁଲ୍ୟ ପରାକ୍ରମ ଏବଂ ବଳୟ ଭୂଷିତ, ସେ ସାକ୍ଷାତ୍ ଭଗବାନ୍ ବିଷ୍ଣୁଙ୍କ ଅଂଶରେ ସମୁଦ୍ଭୂତ ଏବଂ ଧନ୍ୱନ୍ତରୀ ଏହିନାମରେ ବିଖ୍ୟାତ । ଆୟୁର୍ବେଦରେ ପାରଦର୍ଶୀ ଏବଂ ଯଜ୍ଞଭାଗ ଭୋକ୍ତା । ୩୨-୩୫ ।



ଧନ୍ୱନ୍ତରୀଙ୍କର ଅମୃତ ଭାଣ୍ଡସହ ଆବିର୍ଭାବ ।

ପୁଣି ମନ୍ଥିଲେ ତୋଷ ମନେ
ପୁରୁଷେ ହସିତ ବଦନେ
ଅଦ୍ଭୁତ ପୁରୁଷ ଉପୁଜେ
ତେଜେ ସକଳ ରୂପ ଗଞ୍ଜେ
ହସ୍ତିର ଶୁଣ୍ଡ ପ୍ରାୟେ ହୋଇ
ଲମ୍ବେ ଉଦ୍ଦଣ୍ଡ ଭୁଜ ଦୁଇ
ସୁନ୍ଦର କମ୍ବୁ ଗ୍ରୀବ ସାଜେ
ଅରୁଣ ଲୋଚନ ବିରାଜେ

ଶ୍ୟାମ ତରୁଣ ରୂପ ଶୋହେ
ରତ୍ନ ଭୂଷଣ ମନ ମୋହେ
ହୃଦେ ଲମ୍ବଇ ବନମାଳ
ସୁନ୍ଦର ଅଳକା କପୋଳ
ସିଂହ ବିକ୍ରମ ଶୁଭ୍ରଅଙ୍ଗ
ପୀତ ବସନ କଟିଭାଗ
ରତ୍ନ ବଳୟ ମଣିବନ୍ଧେ
ଅମୃତ କୁମ୍ଭ ଘେନି ସ୍କନ୍ଧେ

ସେରୂପ ନାରାୟଣ ଅଂଶେ
ଧନ୍ୱନ୍ତରି ରୂପ ପ୍ରକାଶେ
ସ୍ୱଭାବେ ଆୟୁର୍ବେଦ ଗୁରୁ
ସ୍ଥିର ସ୍ୱଭାବେ ଯେହ୍ନେ ମେରୁ
। ୩୨-୩୫ ।

ଧନ୍ୱନ୍ତରିରିତଖ୍ୟାତଃ ଆୟୁର୍ବେଦଦୃଗିଜ୍ୟଭାକ୍ ।
ତମାଲୋକ୍ୟାସୁରାଃ ସର୍ବେ କଳସଂ ଚାମୃତାଭୃତମ୍ । ୩୬ ।
ଲିପ୍ସନ୍ତଃ ସର୍ବବସ୍ତୂନି କଳସଂ ତରସା ହରନ୍ ।
ନୀୟମାନେଽସୁରୈସ୍ତସ୍ମିନ୍ କଳସେଽମୃତଭାଜନେ । ୩୭ ।
ବିଷଣ୍ଣମନସା ଦେବା ହରିଂ ଶରଣମାୟଯୁଃ ।
ଇତି ତଦ୍ଦୈନ୍ୟମାଲୋକ୍ୟ ଭଗବାନ୍ ଭୃତ୍ୟକାମକୃତ୍ ।
ମା ଖିଦ୍ୟତ ମିଥୋଽର୍ଥଂ ବଃ ସାଧୟିଷ୍ୟେ ସ୍ୱମାୟୟା । ୩୮ ।
ମିଥଃ କଳିରଭୂତ୍ତେଷାଂ ତଦର୍ଥେ ତର୍ଷଚେତସାମ୍ ।
ଅହଂ ପୂର୍ବମହଂ ପୂର୍ବଂ ନ ତ୍ୱଂ ନ ତ୍ୱମିତି ପ୍ରଭୋ ।୩୯।

---

ସେ ଅମୃତପୂର୍ଣ୍ଣ କଳସ ହସ୍ତରେ ଧାରଣ କରି ଉତ୍‌ଥିତ ହୁଅନ୍ତେ ଅସୁରମାନେ ଅମୃତଲାଭ କରିବା ନିମିତ୍ତ ତାହା ବଳପୂର୍ବକ ହରଣ କରି ନେଇଥିଲେ ।୩୬।

ସେହି ଅମୃତଭାଣ୍ଡ ଅସୁରମାନେ ଅପହରଣ କରି ନେବାରୁ ଦେବତାମାନେ ବିଷର୍ଣ୍ଣ ଚିତ୍ତରେ ଭଗବାନ୍ ହରିଙ୍କର ଶରଣାପନ୍ନ ହୋଇଥିଲେ ।୩୭।

ଭୃତ୍ୟମାନଙ୍କର କାମନା ପୂରଣକାରୀ ଭଗବାନ୍ ଦେବତାମାନଙ୍କର ଏପରି ଦୀନଭାବ ଦର୍ଶନ କରି ସାନ୍ତ୍ୱନା ଦେଇ କହିଲେ, ମୁଁ ନିଜ ମାୟାଦ୍ୱାରା ଏମାନଙ୍କ ମଧ୍ୟରେ ବୈରଭାବ ଉତ୍ପାଦନ କରି ତୁମ୍ଭମାନଙ୍କ କାର୍ଯ୍ୟ ସାଧନ କରିବି ।୩୮।

ହେ ରାଜନ୍ ! ତଦନନ୍ତର ଦୈତ୍ୟମାନଙ୍କ ମଧ୍ୟରେ ପରସ୍ପର କଳହ ଉପସ୍ଥିତ ହେଲା । ପ୍ରତ୍ୟେକେ ସଲିପ୍ସୁ ହୋଇ ଆଗେ ଅମୃତପାନ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ ।୩୯।

---

ଅସୁରଗଣ ତାହା ଦେଖି
ଧାଇଁଲେ ମନ୍ଥନ ଉପେକ୍ଷି
ଲୁଟିଲେ ସର୍ବବସ୍ତୁ ବଳେ.
ଦେବଙ୍କୁ କରି ଅବହେଳେ
ଅମୃତ କୁମ୍ଭ ଅତି ଖରେ
ଥିଲା ଯେ ଧନ୍ୱନ୍ତରି କରେ
ସେ କୁମ୍ଭ ବଳେ ଅପହରି
ଧାଇଁଲେ ଘୋର ନାଦ କରି
ପଳାନ୍ତେ ଗର୍ଜ୍ଜିଣ ଧାଇଁଲେ
ପର୍ବତ ଉପରେ ଉଠିଲେ
ଦେବେ ଦୁଃଖିତ ମନ ହୋଇ
ଗୋବିନ୍ଦ ପାଦତଳେ ରହି

ବୋଲନ୍ତି ରଖ ନାରାୟଣ
ଘୋର ସଙ୍କଟୁ ଆମ୍ଭ ପ୍ରାଣ
ଅମୃତ ଭକ୍ଷିଲେ ଅସୁରେ
ଆମ୍ଭେ କି ଥିବୁଁ ସ୍ୱର୍ଗପୁରେ
ନିଷ୍ଟୟ ହୋଇଲୁ ଅନାଥ
ଶରଣ ରଖ ଜଗନ୍ନାଥ ।୩୬-୩୭
ଏମନ୍ତେ ଦେବଙ୍କ ବିକଳ
ଦେଖି କହନ୍ତି ଆଦ୍ୟମୂଳ
ସ୍ୱଭାବେ ପରମ ଆନନ୍ଦ
ଭୃତ୍ୟବତ୍ସଳ ଆଦିକନ୍ଦ
ବୋଲନ୍ତି ଶୁଣ ଦେବତାଏ
ଚିନ୍ତା ନ କର ତୁମ୍ଭେ ଭୟେ

ମୁଁ ଆଜ ଯୋଗମାୟାବଳେ
ଅମୃତ ଆଣି ଦେବି ବଳେ ।୩୮।
ତକ୍ଷଣେ ଅସୁରଙ୍କ ଦେହେ
ହରି ପଶିଲେ ମାୟାମୋହେ
ତକ୍ଷଣେ ଚିତ୍ତେ ଗର୍ବ ବହି
ବୋଲନ୍ତି ଏକୁ ଆରେ ରହି
କେହି କାହାକୁ ନ ଗଣନ୍ତି
ମୁଁ ଆଗେ ଭକ୍ଷିବି ବୋଲନ୍ତି ।୩୯

ଦେବାଃ ସ୍ୱଭାଗମର୍ହନ୍ତି ଯେ ତୁଲ୍ୟାୟାସହେତବଃ ।
ସତ୍ରଯାଗ ଇବୈତସ୍ମିନ୍ନେଷଧର୍ମଃ ସନାତନଃ । ୪୦ ।
ଇତି ସ୍ୱାନ୍ ପ୍ରତ୍ୟଷେଧନ୍ ବୈ ଦୈତେୟା ଜାତମତ୍ସରାଃ ।
ଦୁର୍ବଳାଃ ପ୍ରବଳାନ୍ ରାଜନ୍ ଗୃହୀତକଳସାନ୍ ମୁହୁଃ । ୪୧ ।
ଏତସ୍ମିନ୍ନନ୍ତରେ ବିଷ୍ଣୁଃ ସର୍ବୋପାୟବିଦୀଶ୍ୱରଃ ।
ଯୋଷିଦ୍ରୂପମନିର୍ଦ୍ଦେଶ୍ୟଂ ଦଧାର ପରମାଦ୍ଭୁତମ୍ । ୪୨ ।
ପ୍ରେକ୍ଷଣୀୟୋତ୍ପଳଶ୍ୟାମଂ ସର୍ବାବୟବସୁନ୍ଦରମ୍ ।
ସମାନକର୍ଣ୍ଣାଭରଣଂ ସୁକପୋଲୋନ୍ନସାନନମ୍ । ୪୩ ।
ନବଯୌବନନିର୍ବୃତ୍ତସ୍ତନଭାରକୃଶୋଦରମ୍ ।
ମୁଖାମୋଦାନୁରକ୍ତାଳି-ଝଙ୍କାରୋଦ୍‌ବିଗ୍ନଲୋଚନମ୍ । ୪୪ ।

---

ହେ ରାଜନ୍ ! ବିଶେଷ ବୁଦ୍ଧିମାନ୍ ଦୁର୍ବଳ ଦୈତ୍ୟମାନେ ଅମୃତ କଳସଧାରୀ ବଳବାନ୍ ଦୈତ୍ୟମାନଙ୍କୁ କହିବାକୁ ଲାଗିଲେ । ଦେବତାମାନେ ଏହି ଅମୃତ ପ୍ରାପ୍ତିରେ ସମାନ ପରିଶ୍ରମ କରିଅଛନ୍ତି ସେମାନେ ସତ୍ରଯାଗରେ ଭାଗ ପାଇଲାପରି ସମାନ ଭାଗ ପାଇବା ସନାତନ ଧର୍ମ । ଏହାକହି ସେମାନେ ବାରମ୍ବାର ନିଷେଧ କରିଥିଲେ ।୪୦, ୪୧।

ହେ ରାଜନ୍ ! ଏହି ସମୟରେ ସର୍ବ ଉପାୟଜ୍ଞ ସର୍ବଶକ୍ତିମାନ୍ ବିଷ୍ଣୁ ଅତ୍ୟାଶ୍ଚର୍ଯ୍ୟ ଏବଂ ଅନିର୍ବଚନୀୟ ନାରୀରୂପ ଧାରଣ କରିଥିଲେ ।୪୨।

ଭଗବାନଙ୍କର ଏହିରୂପ ଦର୍ଶନୀୟ, ଉତ୍ପଳ ତୁଲ୍ୟ ଶ୍ୟାମବର୍ଣ୍ଣ, ସମସ୍ତ ଅବୟବ ସୁନ୍ଦର, କର୍ଣ୍ଣଦ୍ୱୟ ସମାନ ଏବଂ ସୁନ୍ଦର ଅଳଙ୍କାର ଭୂଷିତ, ସୁକୋମଳ କପୋଳଦ୍ୱୟ, ସୁନ୍ଦର ନାସିକାଯୁକ୍ତ ବଦନ, ନବଯୌବନ ହେତୁ ଉଦ୍‌ଗତ ସ୍ତନ ଭାରରେ ଉଦର ଅତ୍ୟନ୍ତ କୃଶ, ମୁଖର ସୌରଭରେ ଅନୁରକ୍ତ, ଭ୍ରମରମାନଙ୍କ ଝଙ୍କାରରେ ନୟନ ସଚକିତ ।୪୩, ୪୪।

---

ଦେବଙ୍କ ଭାଗ ଆଗେ ଦେବା
କେ ବୋଲେ ଆମ୍ଭେ ସେ ଭୁଞ୍ଜିବା
ଆମ୍ଭର ଭୂଲେ ଦେବେ ଦୁଃଖୀ
ଆମ୍ଭେ ସେ ତାହାଙ୍କୁ ଉପେକ୍ଷି
ବଳେ ଆଣିଲୁଁ ସୁଧା କୁମ୍ଭ
ଏମନ୍ତ କହି ମହାଦମ୍ଭ
କେହି କାହାକୁ ନ ଗଣନ୍ତି
ଧର୍ମ୍ମ ଅଧର୍ମ୍ମ ବିସ୍ମରନ୍ତି
ମଧ୍ୟେ ଅମୃତ ଘଟ ଥୋଇ
ବିଷ୍ଣୁ ମାୟାରେ ମନମୋହି ।୪୦-୪୧

ଏମନ୍ତ ସମୟେ ମୁରାରି
ତକ୍ଷଣେ ମାୟାରୂପ ଧରି
ସ୍ୱରୂପେ ହୋଇଲେ କାମିନୀ
ଅଶେଷ ଜଗତ ମୋହିନୀ
ଶ୍ୟାମ ଉତ୍ପଳ କାନ୍ତି ରେଖ
କାମିନୀଗଣେ ଶିରୋମଣି
ସମାନ କର୍ଣ୍ଣ ଆଭରଣ
ବିରାଜେ କେୟୁର କଙ୍କଣ
ସୁନ୍ଦର ନାସା ଭୁରୁ ଶୋହେ
କଟୀ ମେଖଳା ଜନ ମୋହେ

ଉନ୍ନତ ନବ ପଯୋଧର
ଯୌବନଭରେ ମଝି କ୍ଷୀଣ
ରଙ୍ଗ ଅଧରେ ଦନ୍ତପନ୍ତି
ହାସ ବଦନେ ଝଟକନ୍ତି
ଉତ୍‌ଫୁଲ୍ଲ ମଲ୍ଲିମାଳ ଶିରେ
ଶୋହେ ସୁନୀଳ କଳେବର
ସୁଗ୍ରୀବ କଣ୍ଠେ ଆଭରଣ
ଭୁଜରେ ଅଙ୍ଗଦ ଭୂଷଣ
ବିରଜ ଅମ୍ବରେ ଭୂଷିତ
ବିସ୍ତାର ନିତମ୍ବ ଶୋଭିତ

ବିଭ୍ରତ୍ସୁକେଶଭରେଣ ମାଲାମୁତ୍ଫୁଲ୍ଲମଲ୍ଲିକାମ୍ ।
ସୁଗ୍ରୀବକଣ୍ଠାଭରଣଂ ସୁଭୁଜାଙ୍ଗଦଭୂଷିତମ୍ । ୪୫ ।
ବିରଜାମ୍ବରସଂବୀତନିତମ୍ବଦ୍ୱୀପଶୋଭୟା ।
କାଞ୍ଚ୍ୟା ପ୍ରବିଲସଦ୍ବଲ୍ଗୁ ଚଲଚ୍ଚରଣନୂପୁରମ୍ । ୪୬ ।
ସବ୍ରୀଡ଼ସ୍ମିତବିକ୍ଷିପ୍ତଭ୍ରୂବିଳାସାବଲୋକନୈଃ ।
ଦୈତ୍ୟଯୂଥପଚେତଃସୁ କାମମୁଦ୍ଦୀପୟନ୍ମୁହୁଃ । ୪୭ ।

**ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଅମୃତମଥନେ ଭଗବନ୍ମାୟୋପଲମ୍ଭନୋ ଅଷ୍ଟମୋଽଧ୍ୟାୟଃ ।**

---

ସେହି କେଶ ସମୂହରେ ବିକଶିତ ମଲ୍ଲିକା ପୁଷ୍ପର ମାଳା, ଏବଂ ସୁନ୍ଦର ଗ୍ରୀବାରେ ମନୋହର କଣ୍ଠଭୂଷଣ, ଭୁଜ ଦ୍ୱୟରେ ଅଙ୍ଗଦ ଧାରଣ କରିଥିଲେ । ଦ୍ୱୀପ ସଦୃଶ ବିଶାଳ ନିତମ୍ବଦେଶ ନିର୍ମଳ ବସନାଛାଦିତ ହୋଇଥିଲା ଏବଂ ତାହା କାଞ୍ଚୀ ଦ୍ୱାରା ରମଣୀୟ ହୋଇଥିଲା । ଚଳନଶୀଳ ପଦ ଦ୍ୱୟରେ ଶୋଭମାନ ନୂପୁର ଥିଲା, ସେ ସଲଜ୍ଜହାସ୍ୟ ସହ ଭ୍ରୂଭଙ୍ଗୀ କରି ଅବଲୋକନ କରିବାରୁ ଦୈତ୍ୟ ଯୂଥପତିମାନଙ୍କ ହୃଦୟରେ କାମ ଉଦ୍ଦୀପିତ ହୋଇଥିଲା । ୪୫, ୪୭ ।

---

କଟୀ ମେଖଳା ମନ ରଞ୍ଜି
ଉଜ୍ଜ୍ୱଳ ମଣିଗଣ ରାଜେ
ଚରଣେ ନୂପୁର ବାଜେଣି
ସୀମନ୍ତ ମଧ୍ୟେ ଶୋହେ ମଣି
ସର୍ବାଙ୍ଗେ ଭୂଷିତ ଭୂଷଣ
ଭ୍ରୂରୁ ବିଳାସ ବିମୋହନ

ହାସ୍ୟେ ଅସୁର ଚିତ୍ତ ହରି
ମୋହିନୀ ରୂପେ ବଶ କରି
ଚିତ୍ତେ ଅନଙ୍ଗ ଉଦ୍ଦୀପନେ
ହରିପଣିଲେ ତାଙ୍କ ମନେ । ୪୨-୪୭
ବ୍ରାହ୍ମଣ ଜଗନ୍ନାଥ କହେ
ଅସୁରେ ହରି ମାୟାମୋହେ

ଅମୃତ ଭକ୍ଷଣ ପାଇଁ ଶାର
ବିଷ୍ଣୁଙ୍କୁ ରହିଲେ ଆବୋରି
ବିଷ୍ଣୁ-ଯୁବତୀ-ରୂପ ବାଣୀ
ଫକଟ୍ଟୁ ତରି ଏହା ଶୁଣି





# ନବମୋଽଧ୍ୟାୟଃ ।

ନବମେ ମୋହଟୈର୍ଦୈତ୍ୟୈରର୍ପିତେଽମୃତଭାଜନେ ।
ତଦ୍‌ବଞ୍ଚନେନ ଦେବେଭ୍ୟୋଽମୃତଂ ଦତ୍ତଂ ତୟେର୍ଯ୍ୟତେ ॥ (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ ।

ତେଽନ୍ୟୋଽନ୍ୟତୋଽସୁରାଃ ପାତ୍ରଂ ହରନ୍ତସ୍ତ୍ୟକ୍ତସୌହୃଦାଃ ।
କ୍ଷିପନ୍ତୋ ଦସ୍ୟୁଧର୍ମାଣ ଆୟାନ୍ତୀଂ ଦଦୃଶୁଃ ସ୍ତ୍ରିୟମ୍ । ୧ ।
ଅହୋ ରୂପମହୋ ଧାମ ଅହୋ ଅସ୍ୟା ନବଂ ବୟଃ ।
ଇତ ତେ ତାମଭିଦ୍ରୁତ୍ୟ ପ୍ରପଚ୍ଛୁର୍ଜାତହୃଚ୍ଛୟାଃ । ୨ ।

---

## ମୋହନୀ ମୂର୍ତ୍ତି ଭଗବାନଙ୍କର ଅମୃତ ବଣ୍ଟନ ।

ମୋହନୀ ମାୟାରେ ଅସୁରମାନେ ମୋହିତ ହୋଇ ଅମୃତଭାଣ୍ଡ ମୋହନୀଙ୍କୁ ଅର୍ପଣ କରିଥିଲେ । ଏବଂ ମୋହନୀ ଅସୁରମାନଙ୍କୁ ଠକାଇ, ତାହା ଦେବତାମାନଙ୍କୁ ବଣ୍ଟନ କରି ଦେଇଥିଲେ । ० ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ସେହି ଅସୁରମାନେ ପରସ୍ପର ନିକଟରୁ ଅମୃତ ପାତ୍ର ଗ୍ରହଣ କରିବା ନିମିତ୍ତ ପରସ୍ପର ପ୍ରତି ସୌହାର୍ଦ୍ଦ୍ୟ ପରିତ୍ୟାଗ କରି ଦସ୍ୟୁ ତୁଲ୍ୟ ଅଧର୍ମ ପରାୟଣ ହୋଇ ପରୁଷବାକ୍ୟ ପ୍ରୟୋଗ କରୁ କରୁ ଦେଖିଲେ ଗୋଟିଏ ମୋହନୀ କନ୍ୟା ସେଠାକୁ ଆସୁଅଛି ।୧।

ସେହି ରମଣୀଙ୍କୁ ଦର୍ଶନ କଲାମାତ୍ରେ କାମାତୁର ଅସୁରମାନେ "ଆହା ! କି ମନୋହର ରୂପ, କି ଅଦ୍ଭୁତ କାନ୍ତି; କି ସୁନ୍ଦର ନବୀନବୟସ" ଏହିପରି କହୁ କହୁ ତାହା ନିକଟକୁ ଗମନ କରି ପ୍ରଶ୍ନ କଲେ ।୨।

---

ନବମେ ମୋହନୀ ଅମୃତ । ଆଣି ଦେବଙ୍କୁ କଲେ ଦତ୍ତ ॥

ଶ୍ରୀଶୁକଉବାଚ—

ଅସୁରେ ବସି ଏକମେଳ
ସୁଧା ସମ୍ପୂର୍ଣ୍ଣ କୁମ୍ଭକରେ
ବିବଧ ପାନ ପାତ୍ର ଆଣି
ଏକ ଆରେକ ବାକ୍ୟ ଭଣି
ସୁହୃଦପଣ ଦୂର କଲେ
ଦୁଷ୍ଟ ଆଗ୍ରହ ଆଚରିଲେ

ଏମନ୍ତେ ଶୁଣ ପରୀକ୍ଷିତ
ମୋହନୀରୂପେ ଜଗନ୍ନାଥ
ମିଳିଲେ ଅସୁରଙ୍କ ପାଶେ
ଅମୃତ ହରଣ ବିଶ୍ୱାସେ । ୧ ।
ବିଷ୍ଣୁମୋହନୀ ରୂପ ଦେଖି
ସର୍ବେ ନିଶ୍ଚଳ କଲେ ଆଖି
ଚକିତେ ଅନ୍ୟୋଅନ୍ୟେ ଚାହିଁ
ବୋଲନ୍ତି ବିଷ୍ଣୁରୂପେ ମୋହି

ଦେଖ ଏ ରୂପ କାନ୍ତି ଧାମ
ନବ ଯୁବତୀ ଅନୁପମ
କାହିଁ ଅଇଲେ କିବା ଅର୍ଥେ
ପାଦେ ଚାଲିଲି ଦୃଷ୍ଟିପଥେ
ଏମନ୍ତ କହି କନ୍ୟା ଆଗେ
ପଥେ ମିଳିଲେ ଯାଇଁ ବେଗେ
ନିଶ୍ଚଳେ ନ ପାରନ୍ତି ଚାହିଁ
ବୋଲନ୍ତି କନ୍ୟା ପାଶେ ରହି ।୨।

କା ତ୍ୱଂ କଞ୍ଜପଲାଶାକ୍ଷି କୁତୋ ବା କିଂ ଚିକୀର୍ଷସି ।
କସ୍ୟାସି ବଦ ବାମୋରୁ ମଥ୍ନତୀବ ମନାଂସି ନଃ । ୩ ।
ନ ବୟଂ ତ୍ୱାମରୈର୍ଦୈତ୍ୟୈଃ ସିଦ୍ଧଗନ୍ଧର୍ବଚାରଣୈଃ ।
ନାସ୍ପୃଷ୍ଟପୂର୍ବାଂ ଜାନୀମୋ ଲୋକେଶୈଶ୍ଚ କୁତୋ ନୃଭିଃ । ୪ ।
ନୂନଂ ତ୍ୱଂ ବିଧିନା ସୁଭ୍ରୂ ପ୍ରେଷିତାସି ଶରୀରିଣାମ୍ ।
ସର୍ବେନ୍ଦ୍ରିୟମନଃପ୍ରୀତିଂ ବିଧାତୁଂ ସଘୃଣେନ କିମ୍ । ୫ ।
ସା ତ୍ୱଂ ନଃ ସ୍ପର୍ଦ୍ଧମାନାନାମେକବସ୍ତୁନି ମାନିନି ।
ଜ୍ଞାତୀନାଂ ବଦ୍ଧବୈରାଣାଂ ଶଂ ବିଧତ୍ସ୍ୱ ସୁମଧ୍ୟମେ । ୬ ।

---

ହେ ପଦ୍ମ ପଲାଶାକ୍ଷୀ ! ତୁମ୍ଭେ କିଏ, କାହୁଁ ଆସିଲ ? ତୁମ୍ଭର କି କାର୍ଯ୍ୟ କରିବାକୁ ଇଚ୍ଛା ? ତୁମ୍ଭେ କାହାର କନ୍ୟା ? ହେ ସୁନ୍ଦରୀ ! ତୁମ୍ଭଙ୍କୁ ଦେଖିବା ମାତ୍ରେ ଆମ୍ଭମାନଙ୍କର ମନ କ୍ଷୁବ୍ଧ ହେଉଅଛି । ୩ ।

ହେ ସୁନ୍ଦରୀ ! ଆମ୍ଭେମାନେ ନିଶ୍ଚୟ ଜାଣୁ ଯେ ପୂର୍ବେ ଦେବ, ଦାନବ, ଗନ୍ଧର୍ବ, ସିଦ୍ଧ, ଚାରଣ ବା ଇନ୍ଦ୍ରାଦି ଲୋକପାଳଗଣ କେହି ତୁମ୍ଭଙ୍କୁ ସ୍ପର୍ଶ କରିନାହାଁନ୍ତି, ଉପଭୋଗ କରିନାହାଁନ୍ତି, ମନୁଷ୍ୟମାନଙ୍କ କଥା ବା କିଣ କହିବା ? ।୪।

ହେ ସୁଭ୍ରୂ ( ସୁନ୍ଦରୀ ) ! ତୁମ୍ଭେ ନିଶ୍ଚୟ ଦୟାଳୁ ବିଧାତାଙ୍କ କର୍ତ୍ତୃକ ଶରୀରଧାରୀମାନଙ୍କର ଇନ୍ଦ୍ରିୟ, ମନ, ପ୍ରାଣର ତୃପ୍ତି ସାଧନ ନିମିତ୍ତ ପ୍ରେରିତ ହୋଇଅଛ ।୫।

ହେ ସୁମଧ୍ୟମେ ! ହେ ଭାମିନି ! ଆମ୍ଭେମାନେ ସମସ୍ତେ ଜ୍ଞାତି, ଗୋଟିଏ ପଦାର୍ଥ ଲୋଭରେ ପରସ୍ପର ମଧ୍ୟରେ ବିବାଦ କରି ଶତ୍ରୁ ଭାବାପନ୍ନ ହୋଇଅଛୁଁ । ତୁମ୍ଭେ ଆମ୍ଭମାନଙ୍କର ବିବାଦ ଭଞ୍ଜନ କରି ମଙ୍ଗଳ ବିଧାନ କର ।୬।

---

ହେ ପଦ୍ମଲୋଚନ ସୁନ୍ଦରି !
ଯୁବା ଜନଙ୍କ ମନୋହାରି !
କି ତୋର ନାମ କିସ ଅର୍ଥେ
ଆଇଲୁ କହି ଶୁଦ୍ଧ ଚିତ୍ତେ
କାହାର ପତ୍ନୀ ତୁ ବୋଲାଉ
କାନ ହରିଲୁ ଗୁହୁଁ ଗୁହୁଁ । ୩ ।
ଆମ୍ଭେ ଯେତେକ ଦେବାସୁରେ
ସିଦ୍ଧ ଗନ୍ଧର୍ବ ଯେ କିନ୍ନରେ
ମୁନି ଚାରଣ ବିଦ୍ୟାଧରେ
ଯେ ଅନ୍ୟ ସିଦ୍ଧ ଯୋଗେଶ୍ୱରେ
ଅତି ଅପୂର୍ବ ରୂପ ତୁହି
ତୋତେତ କେହି ଛୁଇଁ ନାହିଁ । ୪
ନିଶ୍ଚେ ଜାଣିଲୁ ତୋ ବାରତା
ତୋତେ ତ ବା ସର୍ଜିଲା ବିଧାତା
ପ୍ରାଣୀଙ୍କ ଇନ୍ଦ୍ରିୟ ହରଣେ
ମୋହନ ଅଞ୍ଜନ କାରଣେ
ତୋ ରୂପ ଅତି ମନୋହର
ତୁ ଏବେ ଆମ୍ଭ ବୋଲ କର
ଆମ୍ଭେ ଯେ ଦେବତା ଦାନବେ
ଅମୃତ-ପାନ ସମସ୍ତବେ
ଏ ବସ୍ତୁ ବେନିଭାଗ କରି
ଆମ୍ଭେ ସ୍ୱଭାବେ ବନ୍ଧୁ-ବୈରି
କଶ୍ୟପ ପୁତ୍ର ଆମ୍ଭେ ଦୁଇ
କେବେ ଆମ୍ଭର ନ ପଡ଼ଇ

ବୟଂ କଶ୍ୟପଦାୟାଦା ଭ୍ରାତରଃ କୃତପୌରୁଷାଃ ।
ବିଭଜସ୍ୱ ଯଥାନ୍ୟାୟଂ ନୈବ ଭେଦୋ ଯଥା ଭବେତ୍ । ୭ ।
ଇତ୍ୟୁପାମନ୍ତ୍ରିତୋ ଦୈତ୍ୟୈର୍ମାୟାଯୋଷିଦ୍‌ବପୁର୍ହରିଃ ।
ପ୍ରହସ୍ୟ ରୁଚିରାପାଙ୍ଗୈର୍ନିରୀକ୍ଷନ୍ନିଦମବ୍ରବୀତ୍ । ୮ ।

ଶ୍ରୀ ଭଗବାନୁବାଚ ।

କଥଂ କଶ୍ୟପଦାୟାଦାଃ ପୁଂଶ୍ଚଲ୍ୟାଂ ମୟି ସଙ୍ଗତାଃ ।
ବିଶ୍ୱାସଂ ପଣ୍ଡିତୋ ଜାତୁ କାମିନୀଷୁ ନ ଯାତି ହି । ୯ ।
ଶାଲାବୃକାଣାଂ ସ୍ତ୍ରୀଣାଞ୍ଚ ସ୍ୱୈରିଣୀନାଂ ସୁରଦ୍ୱିଷଃ ।
ସଖ୍ୟାନ୍ୟାହୁରନିତ୍ୟାନି ନୂତ୍ନଂ ନୂତ୍ନଂ ବିଚିନ୍ୱତାମ୍ । ୧୦ ।

---

ହେ ସୁନ୍ଦରୀ ! ଆମ୍ଭେମାନେ ସମସ୍ତେ କଶ୍ୟପଙ୍କର ପୁତ୍ର, ପରସ୍ପର ଭ୍ରାତା, ଆମ୍ଭେମାନେ ନିଜ ନିଜର ପୌରୁଷ ଦ୍ୱାରା ଅମୃତ ଆଣିଅଛୁଁ । ତୁମ୍ଭେ ନ୍ୟାୟ ଭାବରେ ଏହା ଆମ୍ଭମାନଙ୍କ ମଧ୍ୟରେ ଭାଗ କରିଦିଅ । ଯେପରି ଆମ୍ଭମାନଙ୍କର ମଧ୍ୟରେ କୌଣସି ବିବାଦ ଉପସ୍ଥିତ ନ ହୁଏ ।୭।

ମାୟାରେ ନାରୀରୂପ ଧାରି ଭଗବାନ୍ ଶ୍ରୀହରିଙ୍କୁ ଦୈତ୍ୟମାନେ ଏହିପରି କହନ୍ତେ ସେ ମନୋହର ହାସ୍ୟ କଟାକ୍ଷରେ ସେମାନଙ୍କୁ ଏହି କହିଲେ ।୮।

ଶ୍ରୀ ଭଗବାନ୍ କହିଲେ :—

ହେ କଶ୍ୟପ ପୁତ୍ରଗଣ ! ତୁମ୍ଭେମାନେ କି ହେତୁ ମୋପରି କୁଳଟା ପ୍ରତି ବିଶ୍ୱାସ କରୁଅଛ ? ପଣ୍ଡିତମାନେ କହନ୍ତି ନାରୀକୁ କଦାପି ବିଶ୍ୱାସ କରିବ ନାହିଁ । ୯ ।

ହେ ଦେବ ଦ୍ୱେଷୀମାନେ ! ଶାଳାବୃକ ( କୁକୁର ) ଏବଂ ଭ୍ରଷ୍ଟାନାରୀ ନିତ୍ୟ ନୂତନ ନୂତନ ଆଶ୍ରୟ କାମନା କରନ୍ତି । ସୁତରାଂ ସେମାନଙ୍କ ସହିତ ବନ୍ଧୁତା ଅନିତ୍ୟ ।୧୦।

---

ତୁ ଏ ଅମୃତ ଆମ୍ଭ ପାତ୍ରେ
ବିଭାଗ କରି ଯଥା ଅର୍ଥେ
ତୁହି ସରଣ ଶୁଦ୍ଧ-ଚିତ୍ତେ
ସମାନ ଭାବେ ଆମ୍ଭ ପାତ୍ରେ
କେବେହେଁ ନ କରିବୁ ଭେଦ
ଯେମନ୍ତେ ହୋଇବୁ ଆନନ୍ଦ ।୫-୭
ଅସୁରଙ୍କର ବାକ୍ୟ ଶୁଣି
ମାୟାମୋହିନୀ ଚକ୍ରପାଣି
ମୋହନ ମନ୍ଦହାସ ମୁଖେ
ଅପାଙ୍ଗ କଟାକ୍ଷ ସୁରେଖେ
ଅମୃତ ସମାନ ବଚନ
କହନ୍ତି ଜଗତ-ମୋହନ । ୮ ।

ଶ୍ରୀଭଗବାନୁବାଚ —

ତୁମ୍ଭେ ଯେ କଶ୍ୟପ-ନନ୍ଦନ
ଶୁଣ ହୋ ମୋହର ବଚନ
ସ୍ୱଭାବେ ମୋର ସ୍ୱାମୀ ନାହିଁ
କୁଳଟା ବାଦ ମୋର ତହିଁ
ଅସତୀ ନାରୀଙ୍କ ସ୍ୱଭାବ
କେ ଅବା ବିଶ୍ୱାସ କରିବ
କହିଲି ତୁମ୍ଭ ଆଗେ ସତ
ଏ ନୋହେ ପଣ୍ଡିତଙ୍କ ମତ । ୯ ।

ଶ୍ରୀଶୁକଉବାଚ—

କନ୍ୟାର ଚତୁର ବଚନ
ଶୁଣି ଅସୁରେ ତୋଷମନ
ଭାବ ସୁନ୍ଦରୀର ବଚନ
ମନ୍ଦଭାଗ୍ୟେ ଯେତ୍ନେ ସୁଧାପାନ
ଅମୃତ ଭାଣ୍ଡ ଆଣି ବେଗେ
ସମର୍ପି ଦେଲେ କନ୍ୟା ଆଗେ ।୧୦

ଶ୍ରୀ ଶୁକ ଉବାଚ ।

ଇତ ତେ କ୍ଷ୍ୱେଲତୈସ୍ତସ୍ୟା ଆଶ୍ୱସ୍ତମନସୋଽସୁରାଃ ।
ଜହସୁର୍ଭାବଗମ୍ଭୀରଂ ଦଦୁଶ୍ଚାମୃତଭାଜନମ୍ । ୧୧ ।
ତତୋ ଗୃହୀତ୍ୱାମୃତଭାଜନଂ ହରିର୍ବଭାଷ ଈଷତ୍ସ୍ମିତଶୋଭୟା ଗିରା ।
ଯଦ୍ୟଭ୍ୟୁପେତ କ୍ୱ ଚ ସାଧ୍ୱସାଧୁ ବା କୃତଂ ମୟା ବୋ ବିଭଜେ ସୁଧାମିମାମ୍ ।୧୨।
ଇତ୍ୟଭିବ୍ୟାହୃତଂ ତସ୍ୟା ଆକର୍ଣ୍ଣ୍ୟାସୁରପୁଙ୍ଗବାଃ ।
ଅପ୍ରମାଣବିଦସ୍ତସ୍ୟାସ୍ତତ୍ ତଥେତ୍ୟନ୍ୱମଂସତ । ୧୩ ।
ଅଥୋପୋଷ୍ୟ କୃତସ୍ନାନା ହୁତ୍ୱା ଚ ହବିଷାନଲମ୍ ।
ଦତ୍ୱା ଗୋବିପ୍ରଭୂତେଭ୍ୟଃ କୃତସ୍ୱସ୍ତ୍ୟୟନା ଦ୍ୱିଜୈଃ । ୧୪ ।
ଯଥୋପଜୋଷଂ ବାସାଂସି ପରିଧାୟାହତାନି ତେ ।
କୁଶେଷୁ ପ୍ରାବିଶନ୍ ସର୍ବେ ପ୍ରାଗଗ୍ରେଷ୍ୱଭିଭୂଷିତାଃ । ୧୫ ।

---

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଅସୁରମାନେ ସେହି କାମିନୀର ଏପରି ଶ୍ଳେଷଯୁକ୍ତ ପରିହାସ ବାକ୍ୟ ଶ୍ରବଣ କରି ଆଶ୍ୱସ୍ତ ଚିତ୍ତ ହୋଇ ଅତି ଗମ୍ଭୀର ଭାବରେ ହାସ୍ୟକରି ସେହି ନାରୀ ହସ୍ତରେ ଅମୃତପାତ୍ର ଅର୍ପଣ କରିଥିଲେ । ୧

ତଦନନ୍ତର ଭଗବାନ୍ ଶ୍ରୀହରି ହାସ୍ୟ ଶୋଭିତ ବାକ୍ୟରେ କହିଲେ ମୁଁ ଯାହା କରିବି ତାହା ଭଲ ହେଉ ବା ମନ୍ଦ ହେଉ ତାହା ଯେବେ ତୁମ୍ଭେମାନେ ସ୍ୱୀକାର କରିବ, ତେବେ ମୁଁ ଏହି ଅମୃତ ବଣ୍ଟନ କରିଦେବି ।୧୨।

ଅସୁରମାନଙ୍କ ମଧ୍ୟରୁ ଶ୍ରେଷ୍ଠ ବ୍ୟକ୍ତିମାନେ ମୋହିନୀ କନ୍ୟାର ବାକ୍ୟ ମର୍ମ ନ ଜାଣି ତହିଁରେ ସମ୍ମତି ପ୍ରଦାନ କରିଥିଲେ ।୧୩।

ତଦନନ୍ତର ଅସୁରମାନେ ଉପବାସ ଓ ସ୍ନାନ କରି ଅଗ୍ନିରେ ଘୃତାହୁତି ଦ୍ୱାରା ହୋମକରି ଗୋ, ବ୍ରାହ୍ମଣ ଏବଂ ଭୂତମାନଙ୍କୁ ନମସ୍କାର କରି ଯଥା ବିହିତ ନୂତନ ବସ୍ତ୍ର ପରିଧାନ ଓ ଅଳଙ୍କାର ଗ୍ରହଣ କରି କୁଶାସନରେ ଉପବେଶନ କରିଥିଲେ । ୧୪, ୧୫ ।

---

ଅସୁରଙ୍କର ବୋଲେ ପୁଣି
ଆନନ୍ଦେ ପ୍ରଭୁ ଚକ୍ରପାଣି
ଅମୃତ ଭାଣ୍ଡ କାଖେ ଧରି
ଅଳପ-ହାସ-ମୁଖ କରି
ବୋଲନ୍ତି ପ୍ରଭୁ ଭବଗ୍ରାହୀ
ସଭିଙ୍କୁ ଅସୁରଙ୍କୁ ଚାହିଁ
ସାଧୁ ଅସାଧୁ ନ ଜାଣଇଁ
ସର୍ବେ ସମାନ ଦେବି ଭାଇ
ବିଭାଗେ ଦେବି ସୁଧା ରସ
ସ୍ୱୀକାରଦେହେତୁମ୍ଭେବଶ।୧୧-୧୨
ଶ୍ରୀଶୁକଉବାଚ—

ଏମନ୍ତେ ମୋହିନୀ ବଚନେ
ଦେବ-ଦାନବେ ତୋଷମନେ
ପ୍ରଥମେ ଉପବାସ କରି
ପ୍ରାତ ସ୍ନାହାନ ସନ୍ଧ୍ୟା ସାରି
ଆନନ୍ଦେ ଘୃତ ହୋମ କଲେ
ଗୋ-ବିପ୍ର ଚରଣେ ପୂଜିଲେ
ଭୂତଙ୍କୁ ଦେଇ ଭୂତବଳି
ସ୍ୱସ୍ତ୍ୟୟନ କଲେ ଦ୍ୱିଜେ ମିଳି
ଅହତ ବସ୍ତ୍ର ଯୁଗ ପିନ୍ଧି
ଶୋଭନ ଗନ୍ଧେ ନାନା ବିଧି
କୁଶ ଆସନେ ସର୍ବେ ବସି
ବଦନ କଲେ ପୂର୍ବ ଦିଶି

ପ୍ରାଙ୍ମୁଖେଷୂପବିଷ୍ଟେଷୁ ସୁରେଷୁ ଦିତିଜେଷୁ ଚ ।
ଧୂପାମୋଦିତଶାଳାୟାଂ ଜୁଷ୍ଟାୟାଂ ମାଲ୍ୟଦୀପକୈଃ । ୧୬ ।
ତସ୍ୟାଂ ନରେନ୍ଦ୍ର କରଭୋରୁ ରୁଶଦ୍ଦୁକୂଳଶ୍ରୋଣୀତଟାଳସଗତିର୍ମଦବିହ୍ୱଳାକ୍ଷୀ ।
ସା କୂଜତୀ କନକନୂପୁରଶିଞ୍ଜିତେନ କୁମ୍ଭସ୍ତନୀ କଳଶପାଣିରଥାବିବେଶ । ୧୭ ।
ତାଂ ଶ୍ରୀସଖୀଂ କନକକୁଣ୍ଡଳଚାରୁକର୍ଣ୍ଣନାସାକପୋଳବଦନାଂ ପରଦେବତାଖ୍ୟାମ୍ ।
ସଂବୀକ୍ଷ୍ୟ ସଂମୁମୁହୁରୁତ୍ସ୍ମିତବୀକ୍ଷଣେନ ଦେବାସୁରା ବିଗଳିତସ୍ତନପଟ୍ଟିକାନ୍ତାମ୍ । ୧୮
ଅସୁରାଣାଂ ସୁଧାଦାନଂ ସର୍ପାଣାମିବ ଦୁର୍ନୟମ୍ ।
ମତ୍ୱା ଜାତିନୃଶଂସାନାଂ ନ ତାଂ ବ୍ୟଭଜଦଚ୍ୟୁତଃ । ୧୯ ।
କଳ୍ପୟିତ୍ୱା ପୃଥକ୍ ପଂକ୍ତିରୁଭୟେଷାଂ ଜଗତ୍ପତିଃ ।
ତାଂଶ୍ଚୋପବେଶୟାମାସ ସ୍ୱେଷୁ ସ୍ୱେଷୁ ଚ ପଂକ୍ତିଷୁ । ୨୦ ।

---

ହେ ରାଜନ୍ ! ଦେବତା ଓ ଅସୁରମାନେ ପୂର୍ବମୁଖ ହୋଇ ଉପବେଶନ କରନ୍ତେ ସେହି ଗୃହ ମାଲ୍ୟ ଓ ଦୀପଦ୍ୱାରା ଅଳଙ୍କୃତ ଓ ଧୂପ ଗନ୍ଧରେ ଆମୋଦିତ ହୋଇଥିଲା ।୧୬।

ହେ ରାଜେନ୍ଦ୍ର ! କରଭୋରୁ ( ହାତୀ ଛୁଆର ଶୁଣ୍ଢପରି ଉରୁ ) ବିଶିଷ୍ଟ, କୌଶେୟ ବସନ ପରିହିତା, ନିତମ୍ବଭରରେ ମନ୍ଦଗତି, ମଦବିହ୍ୱଳ ନୟନା, କୁମ୍ଭସ୍ତନୀ, ନୂପୁର ବାଜେଣୀରେ ମଧୁରଧ୍ୱନି କାରିଣୀ ସେହି ମାୟାରମଣୀ ଅମୃତ କଳସ ହସ୍ତରେ ସେହି ଗୃହରେ ପ୍ରବେଶ କରିଥିଲେ ।୧୭।

ପରମ ଦେବତା ନାମ୍ନୀ ସେହି ରମଣୀ ଲକ୍ଷ୍ମୀଙ୍କର ସଖୀ, ତାହାଙ୍କର କୁଣ୍ଡଳଦ୍ୱୟ ସ୍ୱର୍ଣ୍ଣକମଳ, କର୍ଣ୍ଣ, ନାସିକା, କପୋଳ ଓ ବଦନ ଅତ୍ୟନ୍ତ ମନୋହର ଓ ତାହାଙ୍କର ସ୍ତନାବରଣ ବସ୍ତ୍ରର ପ୍ରାନ୍ତଭାଗ ବିଗଳିତ ହୋଇ ପଡ଼ିଥିଲା । ତାହାଙ୍କୁ ଦେଖି ଓ ତାହାଙ୍କର ହାସ୍ୟ ଅବଲୋକନ କରି ଦେବତା ଓ ଅସୁରମାନେ ମୁଗ୍ଧ ହୋଇଥିଲେ ।୧୮।

ସର୍ପମାନଙ୍କୁ ଦୁଗ୍ଧଦାନ କରିବା ଯେପରି ଦୁର୍ନୀତି, ଅସୁରମାନଙ୍କୁ ଅମୃତ ଦାନକରିବା ସେପରି ଦୁର୍ନୀତି ବୋଲି ମନେକରି ଭଗବାନ୍ ଅଚ୍ୟୁତ ନୃଶଂସଜାତି ଅସୁରମାନଙ୍କମଧ୍ୟରେ ସୁଧା ବଣ୍ଟନକରି ନଥିଲେ ।୧୯।

ତଦନନ୍ତର ଦେବତା, ଅସୁର ଉଭୟପକ୍ଷ ପୃଥକ୍ ପୃଥକ୍ ଧାଡ଼ିରେ ଉପବେଶନ କରିଥିଲେ ।୨୦।

---

ଧୂପ ଆମୋଦ ଯଜ୍ଞଶାଳେ
ଆନନ୍ଦେ ବସିଲେ ସକଳେ
ସୁଗନ୍ଧ ମାଳା ଦୀପ ପନ୍ତି
ଆବୋ'ରୁପାନ-ପାତ୍ର'ଛନ୍ତି ୧୩-୧୬
ସେ ଯଜ୍ଞଶାଳେ ନରହରି
ଅତି ମୋହିନୀ ରୂପ ଧରି
ଅସୁରଙ୍କର ମନ ମୋହି
ଅମୃତ-କୁମ୍ଭ ତଳେ ଥୋଇ

ଅତି ମୋହନ ରୂପ ଦେଖି
ଦେବତା ଅସୁରଙ୍କ ଆଖି
ରହିଲା ହରି ବକ୍ଷସ୍ଥଳେ
ସୁସର୍ଥ କୁଚ ଯୁଗ ମୂଳେ ।୧୭,୧୮
ହରି ବିଚାର କଲେ ମନେ
ଅସୁରଗଣେ ସୁଧା ପାନେ
ଦେବେ ହୋଇବେ ଅରକ୍ଷିତ
ଏକଥା ନୁହଇ ଉଚିତ

ସର୍ପକୁ କ୍ଷୀର ଯେ ପିଆନ୍ତି
ସର୍ପର ଘାତେ ସେ ମରନ୍ତି
ଜାତି ସ୍ୱଭାବେ ନୃଶଂସକ
ଅସୁରେ ନୁହନ୍ତି ବିବେକ ।୧୯।
ଏମନ୍ତ ଚିନ୍ତେ କୃଷ୍ଣ ଚନ୍ଦ୍ର
ବୋଇଲେ ହୁଅ ଦେବ ସଂଘ
ବାମ-ଦକ୍ଷିଣେ ମୋର ବସ
କହି ହୁଅନ୍ତି ହସ ହସ । ୨୦ ।

ଦୈତ୍ୟାନ୍ ଗୃହୀତକଳସୋ ବଞ୍ଚୟନ୍ନୁପସଞ୍ଚରୈଃ ।
ଦୂରସ୍ଥାନ୍ ପାୟୟାମାସ ଜରାମୃତ୍ୟୁହରାଂ ସୁଧାମ୍ । ୨୧ ।
ତେ ପାଳୟନ୍ତଃ ସମୟମସୁରାଃ ସ୍ୱକୃତଂ ନୃପ !
ତୂଷ୍ଣୀମାସନ୍ କୃତସ୍ନେହାଃ ସ୍ତ୍ରୀବିବାଦଜୁଗୁପ୍ସୟା । ୨୨ ।
ତସ୍ୟାଂ କୃତାତପ୍ରଣୟାଃ ପ୍ରଣୟାପାୟକାତରାଃ ।
ବହୁମାନେନ ଚାବଦ୍ଧା ନୋଚୁଃ କିଞ୍ଚନ ବିପ୍ରିୟମ୍ । ୨୩ ।
ଦେବଲିଙ୍ଗପ୍ରତିଚ୍ଛନ୍ନଃ ସ୍ୱର୍ଭାନୁର୍ଦେବ ସଂସଦ ।
ପ୍ରବିଷ୍ଟଃ ସୋମମପିବଚ୍ଚନ୍ଦ୍ରାର୍କାଭ୍ୟାଞ୍ଚ ସୂଚିତଃ । ୨୪ ।

---

ସୁଧାଭାଣ୍ଡଧାରୀ ଭଗବାନ୍ ନାନାପ୍ରକାର ଅଙ୍ଗ ଭଙ୍ଗୀରେ ଗମନ କରି ଓ ପ୍ରିୟ ବାକ୍ୟ କହି ଦୈତ୍ୟମାନଙ୍କୁ ବଞ୍ଚନା କରି ଦୂରରେ ଉପବିଷ୍ଟ ଦେବତାମାନଙ୍କୁ ଜରାମରଣ ହାରିଣୀ ସୁଧା ପାନ କରାଇଥିଲେ ।୨୧।

ହେ ରାଜନ୍ ! ଅସୁରମାନେ ସେହି କାମିନୀପ୍ରତି ସ୍ନେହ ହେତୁ ନିଜ ନିଜର ଅଙ୍ଗୀକାର ବାକ୍ୟ ପାଳନ କରି ତୁନିହୋଇ ରହିଥିଲେ ଏବଂ ସ୍ତ୍ରୀଲୋକ ସହିତ ବିବାଦ କରିବା ନିନ୍ଦାଜନକ ବୋଲି ଭାବିଥିଲେ ।୨୨

ସେମାନେ ସେହି ରମଣୀପ୍ରତି ଅତିଶୟ ପ୍ରଣୟ କାଳେ ଭାଙ୍ଗିଯିବ ଏହି ଭୟରେ ଏବଂ ସେହି ସ୍ତ୍ରୀର ବହୁମାନ୍ୟ ଦ୍ୱାରା ଆବଦ୍ଧ ଅସୁରମାନେ କୌଣସି ଅପ୍ରିୟ କଥା କହି ନ ଥିଲେ ।୨୩।

ହେ ରାଜନ୍ ! ଦେବ ଚିହ୍ନଦ୍ୱାରା ପ୍ରଚ୍ଛନ୍ନ ରାହୁ ଦେବତାମାନଙ୍କ ପଂକ୍ତିରେ ବସି ଅମୃତ ପାନ କରିଥିବା କଥା ଚନ୍ଦ୍ର ଓ ସୂର୍ଯ୍ୟ ପ୍ରକାଶ କରିଥିଲେ ।୨୪।

---

ସୁନ୍ଦରେ ଅସୁରଙ୍କ ମନ
ହରିଲେ ଭଗବାନ
ରୂପ ଦେଖନ୍ତି ହୋଇଛନ୍ଦ
ବଦନ୍ତି ନ ସ୍ଫୁରେ ବଚନ,
ଦୂରେ ଯେ ଦେବଗଣେ ଥିଲେ
ତାହାଙ୍କ ପାତ୍ରେ ସୁଧା ଦେଲେ
ଅସୁରେ ସୁକୃତ ପାଳନେ
ନିସ୍ତବ୍ଧେ ବସିଲେ ମଉନେ

କାମିନୀ ସମ୍ମତ ପାଳନେ
ଧର୍ମେ ରହିଲେ ବୃଦ୍ଧମନେ
ମାୟେ ମୋହିଲେ ଚକ୍ରଧର
ବଦନେ ନଇଲ ଉତ୍ତର ।୨୧।୨୩
ଦେବଙ୍କୁ ପରଶିବା ବେଳେ
ରାହୁ ଯେ ଥିଲା ଦେବ ମେଳେ
ରୂପତେ ବସି ଦେବବୃନ୍ଦେ
ଅମୃତ ଭକ୍ଷିଲା ଆନନ୍ଦେ

ରବି ଶଶାଙ୍କ ତାହା ଦେଖି
ଉଠିଲେ ଆପନ ଉପେକ୍ଷି
ସ୍ତୁତିଲେ ଗୋବିନ୍ଦ ବଦନେ
ଚକ୍ଷୁରେ ଠାରିଲେ ମଉନେ ।୨୪।

ଚକ୍ରେଣ କ୍ଷୁରଧାରେଣ ଜହାର ପିବତଃ ଶିରଃ ।
ହରିସ୍ତସ୍ୟ କବନ୍ଧସ୍ତୁ ସୁଧୟାପ୍ଲାବିତୋଽପତତ୍ । ୨୫ ।
ଶିରସ୍ତ୍ୱମରତାଂ ନୀତମଜୋ ଗ୍ରହମଚୀକ୍ଳୃପତ୍ ।
ଯସ୍ତୁ ପର୍ବାଣି ଚନ୍ଦ୍ରାର୍କାବଭିଧାବତି ବୈରଧୀଃ । ୨୬ ।
ପୀତପ୍ରାୟେଽମୃତେ ଦେବୈର୍ଭଗବାନ୍ ଲୋକଭାବନଃ ।
ପଶ୍ୟତାମସୁରେନ୍ଦ୍ରାଣାଂ ସ୍ୱଂ ରୂପଂ ଜଗୃହେ ହରିଃ । ୨୭ ।

ଭଗବାନ୍ ଶ୍ରୀହରି କ୍ଷୁରଧାର ବିଶିଷ୍ଟ ଚକ୍ରଦ୍ୱାରା ସୁଧାପାନକାରୀ ରାହୁର ମସ୍ତକ ଛେଦନ କରିଥିଲେ ତତ୍ପରେ ରାହୁର କବନ୍ଧ ସୁଧାଦ୍ୱାରା ପ୍ଲାବିତ ହୋଇ ଛିନ୍ନ ଭାବରେ ପତିତ ହେଲା । ୨୫ ।

ଅମୃତ ସମ୍ପର୍କରେ ଅମରତ୍ୱ ପ୍ରାପ୍ତ ରାହୁଙ୍କର ମସ୍ତକକୁ ଭଗବାନ୍ ଶ୍ରୀହରି ଗ୍ରହ ବୋଲି କଳ୍ପନା କରିଥିଲେ ଏବଂ ଚନ୍ଦ୍ର ସୂର୍ଯ୍ୟଙ୍କ ପ୍ରତି ଶତ୍ରୁତା ହେତୁ ସେହି ରାହୁପର୍ବ କାଳରେ ( ପୂର୍ଣ୍ଣିମା ଓ ଅମାବାସ୍ୟାରେ ) ଧାବିତ ହୁଏ ।୨୬।

ଦେବତାମାନଙ୍କର ଅମୃତ ପାନ ଶେଷ ହେଲା । ଦେବ ଭାବନ ଶ୍ରୀହରି ଦର୍ଶନକାରୀ ପ୍ରଧାନ ପ୍ରଧାନ ଅସୁରେନ୍ଦ୍ରମାନଙ୍କ ସମକ୍ଷରେ ସ୍ତ୍ରୀରୂପ ପରିତ୍ୟାଗ କରି ନିଜରୂପ ଧାରଣ କରିଥିଲେ ।୨୭।



ରାହୁର ଶିର ଛେଦ ।

ସୁଦର୍ଶନେ ତାର ଶିର
ବେଗେ ଛେଦିଲେ ଚକ୍ରଧର
ଅମୃତ-ପାନେ ପଡ଼ି ମୁଣ୍ଡ
ତକ୍ଷଣେ ହୋଇ ଗଲା ଖଣ୍ଡ
ଅମର ହୋଇଲା ତକ୍ଷଣ
ଦେଖି ସନ୍ତୋଷ ନାରାୟଣ ।୨୫।
ବୋଇଲେ ବରମାଗ ତୁହି
ରାହୁ ବୋଇଲା ବସ୍ତୁ ନାହିଁ
ହେ ନାଥ ମୋର ଅବଶେଷ
ଅବଶ୍ୟ କରିବଇଁ ଗ୍ରାସ
ଶୁଣି ସନ୍ତୋଷ ମହାବାହୁ
ବୋଇଲେ ଏହି ବର ହେଉ,
ଏମନ୍ତ କହି ଭଗବାନ
ଗ୍ରହମଣ୍ଡଳେ ଦେଲେ ସ୍ଥାନ
ତେଣୁ ସେ ରାହୁ ପର୍ବକାଳେ
ଗିଳଇ ରବି ଚନ୍ଦ୍ର ବଳେ
ବଇରି ବୁଦ୍ଧି ନ ଛାଡ଼ଇ
ଅନ୍ୟନେ ଅନ୍ୟନେ ଗୋଡ଼ାଇ ।୨୬
ଦେବଙ୍କୁ ଦେଇ ସୁଧାପାନ
ତକ୍ଷଣେ ପ୍ରଭୁ ଭଗବାନ
ଦେଖନ୍ତି ଦେବତା ଅସୁର
ମାୟାଛାଡ଼ିଲେ ମାୟାଧର
ମୋହନୀ ରୂପ ଗଲା କେଉଁଣେ
ଯେ ରୂପ ଅମୃତ କାରଣେ ।୨୭।

ଏବଂ ସୁରାସୁରଗଣାଃ ସମଦେଶକାଲହେତ୍ୱର୍ଥକର୍ମମତୟୋଽପି ଫଲେ ବିକଳ୍ପାଃ ।
ତତ୍ରାମୃତଂ ସୁରଗଣାଃ ଫଲମଞ୍ଜସାପୁର୍ଯତ୍ପାଦପଙ୍କଜରଜଃଶ୍ରୟଣାନ୍ନ ଦୈତ୍ୟାଃ । ୨୮ ।

ଯଦ୍ୟୁଜ୍ୟତେଽସୁବସୁକର୍ମମନୋବଚୋଭି-
ର୍ଦେହାତ୍ମଜାଦିଷୁ ନୃଭିସ୍ତଦସତ୍ ପୃଥକ୍ତ୍ୱାତ୍ ।
ତୈରେବ ସଦ୍ଭବତି ଯତ୍ କ୍ରିୟତେଽପୃଥକ୍ତ୍ୱାତ୍-
ସର୍ବସ୍ୟ ତଦ୍ଭବତି ମୂଳନିଷେଚନଂ ଯତ୍ । ୨୯ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଅମୃତମଥନେ ନାମ
ନବମୋଽଧ୍ୟାୟଃ ।

---

ହେ ରାଜେନ୍ଦ୍ର ! ସୁର ଓ ଅସୁରମାନେ ସମାନ ଦେଶ, ସମାନ କାଳ, ସମାନ ପରିଶ୍ରମ ଓ ସମାନ ବୁଦ୍ଧି ପ୍ରୟୋଗ କରିଥିଲେ ମଧ୍ୟ ଫଳ ବିପରୀତ ହେଲା, କାରଣ ଭଗବାନ୍ ବିଷ୍ଣୁଙ୍କର ପାଦପଦ୍ମାଶ୍ରୟ ଗ୍ରହଣ କରି ଦେବତାମାନେ ଅମୃତପ୍ରାପ୍ତ ହେଲେ କିନ୍ତୁ ଦୈତ୍ୟମାନେ ପାଇଲେ ନାହିଁ । ମନୁଷ୍ୟମାନେ ଭଗବାନଙ୍କୁ ଅର୍ପଣ ନ କରି ପ୍ରାଣ,ଧନ, କର୍ମ ଓ ବାକ୍ୟ ଦ୍ୱାରା ଦେହ, ପୁତ୍ର ଓ କଳତ୍ରାଦି ନିମିତ୍ତ ଯାହା କରନ୍ତି; ସେ ସମସ୍ତ ଅସତ୍ । ବୃକ୍ଷର ମୂଳ ଦେଶରେ ଜଳସେଚନ କଲେ ଯେପରି ସମସ୍ତ ଶାଖା ପ୍ରଶାଖା ପରିତୃପ୍ତ ହୁଅନ୍ତି; ସେହିପରି ଭଗବାନଙ୍କୁ ଅର୍ପଣ କରି ଶରୀରାଦି ପୋଷଣ ନିମିତ୍ତ ଦେହାଦି ଦ୍ୱାରା ଯାହା କରାଯାଏ, ତାହା ସତ୍ ହୁଏ । ୨୮, ୨୯ ।

---

ଏରୂପେ ସୁରାସୁରଗଣେ
ସମାନ ଦେଶ କାଳ କର୍ମେ
ମଣ୍ଡିଲେ ସିନ୍ଧୁକୁଲ୍ୟ ବଳେ
ଲଭିଲେ ବିପରୀତ ଫଳେ;
କୃଷ୍ଣର ପାଦ ଯେଣୁ ଧ୍ୟାଇ
ଦେବେ ଅମୃତ ଫଳ ପାଇ
ଅସୁରେ ନ ସେବି ଚରଣ
କର୍ମର ଫଳେ ହେଲେ ହୀନ । ୨୮

ପୁତ୍ର କଳତ୍ର ଦେହ ଅର୍ଥେ
ଯେ ଯାହା କରଇ ଜଗତେ
ତାହା ନ କଲେ କୃଷ୍ଣାର୍ପଣ
କେବଳ ଶ୍ରମ ମାତ୍ର ଜାଣ
ମୂଳେ ସିଞ୍ଚିଲେ ସିନା ଜଳ
ବିକାଶେ ବୃକ୍ଷ ପତ୍ର ଡାଳ । ୨୯ ।
ବୋଲଇ ଦାସ ଜଗନ୍ନାଥ
ଅଷ୍ଟମସ୍କନ୍ଧେ ଭାଗବତ

ସେ ବିଷ୍ଣୁ ମାୟା ବିଦ୍ୟମାନେ
ଯେରୂପେ ସମୁଦ୍ର ମନ୍ଥନେ
ଦେବଙ୍କୁ ସୁଧା ପାନ ଦେଇ
ସୁଜନେ ତରି ଏହା ଗାଇ



**ଭାବାର୍ଥ—**

ଏହି ଅଧ୍ୟାୟରେ ପ୍ରଧାନତଃ ଉଦ୍ଦେଶ୍ୟ ପ୍ରସଙ୍ଗ ଦେଖାଯାଏ । ଦେବତାମାନେ ଓ ଅସୁରମାନେ ଉଭୟ ସମାନ ପରିଶ୍ରମ କରି ଅମୃତ ଲାଭ କରିଥିଲେ ମଧ୍ୟ ଦେବତାମାନେ ଭଗବାନଙ୍କର ଚରଣାଶ୍ରିତ ହେତୁ ଭଗବାନ୍ ସେମାନଙ୍କୁ ଅମୃତ ପ୍ରଦାନ କରିଥିଲେ ମାତ୍ର ଅସୁରମାନେ ତହିଁରୁ ବଞ୍ଚିତ ହୋଇଥିଲେ । ଅସୁରମାନେ ପାପ ବୁଦ୍ଧି ଯୁକ୍ତ, ଏ ଜଗତରେ ମନୁଷ୍ୟମାନଙ୍କ ମଧ୍ୟରେ ଦେବ ଓ ରାକ୍ଷସ ପ୍ରକୃତ ବିଶିଷ୍ଟ ଦୁଇ ଶ୍ରେଣୀର ଲୋକ ଦେଖାଯାନ୍ତି । ଦେବ ସ୍ୱଭାବଯୁକ୍ତ ବ୍ୟକ୍ତିମାନେ ଭଗବାନ୍‌ଙ୍କର ଭକ୍ତ, ତେଣୁ ଅମରତ୍ୱର ଯୋଗ୍ୟ, ମାତ୍ର ମୋହିନୀ ମୂର୍ତ୍ତି କାମ ପରାୟଣ ବ୍ୟକ୍ତିମାନଙ୍କର ଚିତ୍ତ ହରଣ କରି ସେମାନଙ୍କୁ ଅମୃତତ୍ୱ ଲାଭରୁ ବଞ୍ଚିତ କରିଥାଏ । ପାପ ସ୍ୱଭାବ ବ୍ୟକ୍ତି ଅମୃତତ୍ୱର ପ୍ରାପ୍ତ ହେଲେ ସଂସାରରେ ଅନେକ ଅନିଷ୍ଟ ସାଧନ କରି ନ ପାରେ, ତେଣୁ ଭଗବାନ୍ ଅସୁରମାନଙ୍କୁ ଅମୃତ ପ୍ରଦାନ କରି ନ ଥିଲେ ।

---

## ଦଶମୋଽଧ୍ୟାୟଃ ।

ଦଶମେ ମହାସୁରୈର୍ଦ୍ଦୈତ୍ୟୈରବଧ୍ୟେ ତୁ ମୃଧେଽସୁରୈଃ ।
ଦୈତ୍ୟମାୟାବିଷଣ୍ଣେଷୁ ଦେବେଷ୍ୱାବିରଭୂଦ୍ଧରିଃ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ଇତି ଦାନବଦୈତେୟା ନାବିନ୍ଦନ୍ନମୃତଂ ନୃପ ।
ଯୁକ୍ତାଃ କର୍ମ୍ମଣି ଯତ୍ତାଶ୍ଚ ବାସୁଦେବପରାଙ୍ମୁଖାଃ । ୧ ।

---

**ପରଶ୍ରୀକାତର ଅସୁରମାନଙ୍କ ସହିତ ଦେବତାମାନଙ୍କର ଯୁଦ୍ଧ ଓ ଭଗବାନଙ୍କର ଆବିର୍ଭାବ ।**

ଦଶମ ଅଧ୍ୟାୟରେ ବର୍ଣ୍ଣିତ ବିଷୟ ଏହି ଯେ ଅସୁରମାନେ ନ ସହିପାରି ଦେବତାମାନଙ୍କ ସହିତ ଯୁଦ୍ଧ ଆରମ୍ଭ କରନ୍ତେ, ଦେବତାମାନଙ୍କ ମଧ୍ୟରେ ଭଗବାନ୍ ଆବିର୍ଭାବ ହେଲେ । ୦ ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଦୈତ୍ୟ ଓ ଦାନବ ଉଭୟ ପରିଶ୍ରମ କରିଥିଲେ ମଧ୍ୟ ବିଷ୍ଣୁଭକ୍ତିହୀନ ଦୈତ୍ୟ ଓ ଦାନବମାନେ ଅତ୍ୟନ୍ତ ପରିଶ୍ରମ କରି ଅମୃତଲାଭ କରି ପାରିଲେ ନାହିଁ ।୧।

---

ଦଶମେ କ୍ରୋଧେ ଦୈତ୍ୟଗଣ । ଦେବଙ୍କ ସଙ୍ଗେ କଲେ ରଣ ॥

ଶ୍ରୀଶୁକଉବାଚ—

କଠୋର ସାଧି ଯାତୁଧାନେ
ବିମୁଖ ହେଲେ ସୁଧାପାନେ
କୃଷ୍ଣ ଭକତ ଯେଣୁ ନାହିଁ
ଅମୃତ ପାଇବେ ସେ କାହିଁ ।୧।

ସାଧୟିତ୍ୱାଽମୃତଂ ରାଜନ୍ ପାୟୟିତ୍ୱା ସ୍ୱକାନ୍ ସୁରାନ୍ ।
ପଶ୍ୟତାଂ ସର୍ବଭୂତାନାଂ ଯଯୌ ଗରୁଡ଼ବାହନଃ । ୨ ।
ସପତ୍ନାନାଂ ପରାମୃଦ୍ଧିଂ ଦୃଷ୍ଟ୍ୱା ତେ ଦିତିନନ୍ଦନାଃ ।
ଅମୃଷ୍ୟମାଣା ଉତ୍ପେତୁର୍ଦେବାନ୍ ପ୍ରତ୍ୟୁଦ୍ୟତାୟୁଧାଃ । ୩ ।
ତତଃ ସୁରଗଣାଃ ସର୍ବେ ସୁଧୟା ପୀତୟୈଧିତାଃ ।
ପ୍ରତିସଂୟୁୟୁଧୁଃ ଶସ୍ତ୍ରୈର୍ନାରାୟଣପଦାଶ୍ରୟାଃ । ୪ ।
ତତ୍ର ଦୈବାସୁରୋ ନାମ ରଣଃ ପରମଦାରୁଣଃ ।
ରୋଧସ୍ୟୁଦନ୍ୱତୋ ରାଜଂସ୍ତୁମୂଲୋ ରୋମହର୍ଷଣଃ । ୫ ।
ତତ୍ରାନ୍ୟୋଽନ୍ୟଂ ସପତ୍ନାସ୍ତେ ସଂରବ୍ଧମନସୋ ରଣେ ।
ସମାସାଦ୍ୟାସିଭିର୍ବାଣୈର୍ନିଜଘ୍ନୁର୍ବିବିଧାୟୁଧୈଃ । ୬ ।

---

ହେ ରାଜନ୍ ! ଗରୁଡ଼ବାହନ ବିଷ୍ଣୁ ନିଜର ଭକ୍ତ ଦେବତାମାନଙ୍କୁ ଅମୃତ ପାନ କରାଇ ସର୍ବଜନ ସମକ୍ଷରେ ଗରୁଡ଼ ବାହନରେ ସ୍ୱସ୍ଥାନକୁ ପ୍ରସ୍ଥାନ କରିଥିଲେ ।୨।

ସେହି ଦୈତ୍ୟମାନେ ଶତ୍ରୁ ଦେବଗଣଙ୍କର ପରମସମୃଦ୍ଧି ଦର୍ଶନ କରି ତାହା ସହ୍ୟ କରି ନ ପାରି ଯୁଦ୍ଧଲାଗି ଅସ୍ତ୍ରଶସ୍ତ୍ର ଧାରଣ କରି ଉପସ୍ଥିତ ହୋଇଥିଲେ ।୩।

ତଦନନ୍ତର ଅମୃତ ପାନରେ ପରିବର୍ଦ୍ଧିତ ବିଷ୍ଣୁ ପଦାଶ୍ରିତ ଦେବତାମାନେ ନାନାବିଧ ଅସ୍ତ୍ରଶସ୍ତ୍ର ଗ୍ରହଣ କରି ଦେବତାମାନଙ୍କ ସହିତ ଯୁଦ୍ଧ କରିବାକୁ ଆରମ୍ଭ କଲେ ।୪।

ହେ ରାଜନ୍ ! ସେତେବେଳେ ସେହି କ୍ଷୀର ସମୁଦ୍ର କୂଳରେ ଦେବଦାନବମାନଙ୍କ ମଧ୍ୟରେ ତୁମୁଳ ରୋମାଞ୍ଚକାରୀ ଅତି ଭୟଙ୍କର ଯୁଦ୍ଧ ଉପସ୍ଥିତ ହୋଇଥିଲା ।୫।

ସେହି ସଂଗ୍ରାମରେ ଅନ୍ୟନ୍ତ ବୈରଭାବାପନ୍ନ ଦେବତା ଓ ଅସୁରମାନେ ପରସ୍ପରକୁ ଆକ୍ରମଣ କରି ନାନାବିଧ ଅସ୍ତ୍ର, ଅସି ଓ ବାଣଦ୍ୱାରା ସେମାନଙ୍କୁ ବଧ କରିଥିଲେ ।୬।

---

ଦେବଙ୍କୁ ଅମୃତ ପିଆଇ
ଗରୁଡ଼େ ବସି ଭବଗ୍ରାହୀ
ନିଜ ଭୁବନେ ଗଲେ ହରି
ଶୁଣ ପରୀକ୍ଷ ଦଣ୍ଡଧାରୀ । ୨ ।
ଏମନ୍ତେ ବିଷ୍ଣୁର ମୋହନେ
ନିରାଶ ହୋଇ ସୁଧାପାନେ
ସର୍ବ ଦାନବ ଏକମତେ
ଜଣାଇ ବଳିର ଅଗ୍ରତେ
ଉଦ୍ୟମ କଲେ ଯୁଦ୍ଧ ଅର୍ଥେ
ନ ଲଭି ବିଧିର ଆୟୁଧେ

ଶତ୍ରୁଙ୍କ କାର୍ଯ୍ୟ ସିଦ୍ଧି ଦେଖି
ଖଳ ସକଳେ ମନେ ଦୁଃଖୀ
ସକଳେ ମିଳି ଯୂଥ ଯୂଥେ
ବିଗ୍ରହ କଲେ ଏକମତେ
ଦେବଙ୍କୁ ବାହୁବଳେ ମାରି
ସର୍ବ ସମ୍ପଦ ଯେବେ ହରି
ତେବେ ସେ ଜୀବନ ଆମ୍ଭର
ସଂଗ୍ରାମେ ହୋଇବ ସୁଫଳ
ଏମନ୍ତ ମନରେ ବିଗ୍ରହ
ସର୍ବେ ଧାଇଁଲେ ଶସ୍ତ୍ର ଧରି ।୩।

ଅମୃତ ପାନେ ଦେବଗଣ
ଇଚ୍ଛନ୍ତି ଅସୁରଙ୍କ ରଣ
ସ୍ୱଭାବେ ବିଷ୍ଣୁପରାୟଣେ
ଭୟ ସେ ନକରନ୍ତି ରଣେ ।୪।
ଏମନ୍ତ ଦେବାସୁର ରଣ
ସୁଘୋର ସୁଗ୍ରାମ ଦାରୁଣ
ଶତ ବରଷ କାଳନ୍ତରେ
ସମର କଲେ ଦେବାସୁରେ
ଶବଦକରି ବାହୁ ଭାଙ୍ଗେ
ଯୁଝିଲେ ବିବିଧ ଆୟୁଧେ । ୫,୬ ।

ଶଙ୍ଖତୂର୍ଯ୍ୟମୃଦଙ୍ଗାନାଂ ଭେରୀଡମରଣାଂ ମହାନ୍ ।
ହସ୍ତ୍ୟଶ୍ୱରଥପତ୍ତୀନାଂ ନଦତାଂ କଃସ୍ୱନୋଽଭବତ୍ । ୭ ।
ରଥିନୋ ରଥିଭିସ୍ତତ୍ର ପତ୍ତିଭିଃ ସହ ପତ୍ତୟଃ ।
ହୟା ହୟୈରଭ୍ୟଶ୍ଚୈଭିଃ ସମସଜ୍ଜନ୍ତ ସଂଯୁଗେ । ୮ ।
ଉଷ୍ଟ୍ରୈଃ କେଚଦଭେଃ କେଚଦପରେ ଯୁଯୁଧୁଃ ଖରୈଃ ।
କେଚଦ୍ଗୌରମୁଖୈରକ୍ଷୈର୍ଦ୍ୱୀପିଭିର୍ହରିଭିର୍ଭଟାଃ । ୯ ।
ଗୃଧ୍ରୈଃ କଙ୍କୈର୍ବକୈରନ୍ୟେ ଶ୍ୟେନଭାସୈସ୍ତିମିଙ୍ଗିଲୈଃ ।
ଶରଭୈର୍ମହିଷୈଃ ଖଡ୍ଗୈର୍ଗୋବୃଷୈର୍ଗବୟାରୁଣୈଃ । ୧୦ ।
ଶିବାଭିରାଖୁଭିଃ କେଚତ୍ କୃକଲାସୈଃ ଶଶୈର୍ନରୈଃ ।
ବସ୍ତୈରେକେ କୃଷ୍ଣସାରୈର୍ହଂସୈରନ୍ୟେ ଚ ଶୂକରୈଃ । ୧୧ ।
ଅନ୍ୟେ ଜଳସ୍ଥଳଖଗୈଃ ସତ୍ତ୍ୱୈର୍ବିକୃତବିଗ୍ରହୈଃ ।
ସେନୟୋରୁଭୟୋ ରାଜନ୍ ବିବିଶୁସ୍ତେଽଗ୍ରତୋଽଗ୍ରତଃ ।୧୨।

ସେହି ସଂଗ୍ରାମ ସ୍ଥଳରେ ଶଙ୍ଖ, ତୂରୀ, ମୃଦଙ୍ଗ, ପ୍ରଭୃତି ଏବଂ ନାଦକାରୀ ହସ୍ତୀ, ଅଶ୍ୱ, ରଥ, ପଦାତି ସୈନ୍ୟମାନେ ତୁମୁଳ ଶବ୍ଦ କରିଥିଲେ ।୭।

ଏହି ଯୁଦ୍ଧରେ ରଥାରୋହୀମାନଙ୍କ ସହିତ ରଥି ଅଶ୍ୱ, ଅଶ୍ୱମାନଙ୍କ ସହିତ, ହସ୍ତୀ ହସ୍ତୀମାନଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲେ । ୮ ।

କେତେକ ଯୋଦ୍ଧା ଉଷ୍ଟ୍ରମାନଙ୍କ ସହିତ, କେତେକ ହସ୍ତୀମାନଙ୍କ ସହିତ କେହି ଗର୍ଦ୍ଦଭ ସହିତ, କେହି ଭଲ୍ଲୁକ, କେହି ବ୍ୟାଘ୍ର, କେହି ସିଂହ, କେହି ଗୃଧ୍ର, କେହି କଙ୍କ, କେହି ବକ, କେହି ଶ୍ୟେନ, କେହି ଭାସ, କେହି ତିମିଙ୍ଗଳ, କେହି ଶରଭ, କେହି ଗଣ୍ଡା, କେହି ଗୋବୃଷ, କେହି ଗବୟ ସହିତ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହୋଇଥିଲେ ।୯, ୧୦।

ହେ ରାଜନ୍ । କେହି କେହି ଶୃଗାଳ, ମୂଷିକ, କୃକଳାସ, ଶଶ, ମନୁଷ୍ୟ, ଛାଗଳ, କୃଷ୍ଣସାର, ହଂସ, ଶୂକର; ଅନ୍ୟ କେହି ଜଳଚର ଓ ସ୍ଥଳଚର ନାନାବିଧ ପକ୍ଷୀ ଏବଂ ବିକୃତାକାର ବିଶିଷ୍ଟ ଜନ୍ତୁମାନଙ୍କ ସହିତ ଉଭୟ ସୈନ୍ୟ ସମ୍ମୁଖରେ ଉପସ୍ଥିତ ହୋଇଥିଲେ ।୧୧,୧୨।

ବାଜନ୍ତି ଶଙ୍ଖ ରଣ ଭେରୀ
ପଟହ ମର୍ଦ୍ଦଳ ମହୁରୀ
ସକଳ ମଙ୍ଗଳ ସୁବାଦ୍ୟେ
ଗଜ ତୁରଙ୍ଗ ରଥ ନାଦେ
ଶୁଭିଲ ଶବଦ ତୁମୁଳେ
ପ୍ରଳୟ ସିନ୍ଧୁର କଲ୍ଲୋଳେ ।୭।
ଲାଗିଲା ଯୁଦ୍ଧ ଏକେ ଏକେ
ଦନୁଜଗଣ ବୃନ୍ଦାରକେ

ଅଶ୍ୱକୁ ଅଶ୍ୱ ସଙ୍ଗ କଲେ
ହସ୍ତିକି ହସ୍ତୀ ଘେନି ଭୁଲେ
ନାନା ବାହନେ ବେଢ଼ି କରି
ରଣେ ଧାଇଁଲେ ଶସ୍ତ୍ର ଧରି
ଓଟର ପୃଷ୍ଠେ କେ ବସନ୍ତି
କେ ଭିଡ଼ି ଅଶ୍ୱ ଆରୋହନ୍ତି
ଗର୍ଦ୍ଦଭେ ବସି ଅବା ଖରେ
କେ ମୃଗ ବାନର ସ୍କନ୍ଧରେ

କେ ବ୍ୟାଘ୍ର ଭଲ୍ଲୁକ ଆରୋହି
କେ ଗୃଧ୍ର କଙ୍କ ବକେ ଧାଇଁ
ଶ୍ୟେନ ଭାସ ବା ତିମିଙ୍ଗିଳେ
ଶରଭ ମହିଷେ କେତେକେ ।୮-୯
ଅମୂଲ୍ୟରତ୍ନ ଦଣ୍ଡଛତ୍ର
ନୀଳ ଲୋହିତ ଶ୍ୱେତ ପୀତ
ବ୍ୟଜନ ବରହୀ ଚାମରେ
ସେନା ଭୂଷଣ ଯାଗ ଶିରେ

ଛତ୍ରଧ୍ୱଜପଟୈ ରାଜନ୍ନାତପତ୍ରୈଃ ସିତାମଳୈଃ ।
ମହାଧନୈର୍ବଜ୍ରଦଣ୍ଡୈର୍ବ୍ୟଜନୈର୍ବାର୍ହଚାମରୈଃ । ୧୩ ।
ବାତୋଦ୍ଧୂତୋତ୍ତରୋଷ୍ଣୀଷୈରର୍ଚ୍ଚିର୍ଭିର୍ବର୍ମ୍ମଭୂଷଣୈଃ ।
ସ୍ଫୁରଦ୍ଭିର୍ବିଶଦୈଃ ଶସ୍ତ୍ରୈଃ ସୁତରାଂ ସୂର୍ଯ୍ୟରଶ୍ମିଭିଃ । ୧୪ ।
ଦେବଦାନବବୀରାଣାଂ ଧ୍ୱଜିନ୍ୟୌ ପାଣ୍ଡୁନନ୍ଦନ ।
ରେଜତୁର୍ବୀରମାଳାଭିର୍ଯାଦସାମିବ ସାଗରୌ । ୧୫ ।
ବୈରୋଚନୋ ବଳିଃ ସଂଖ୍ୟେ ସୋଽସୁରାଣାଂ ଚମୂପତିଃ ।
ଯାନଂ ବୈହାୟସଂ ନାମ କାମଗଂ ମୟନିର୍ମିତମ୍ । ୧୬ ।
ସର୍ବସାଂଗ୍ରାମିକୋପେତଂ ସର୍ବାଶ୍ଚର୍ଯ୍ୟମୟଂ ପ୍ରଭୋ ।
ଅପ୍ରତର୍କ୍ୟମନିର୍ଦ୍ଦେଶ୍ୟଂ ଦୃଶ୍ୟମାନମଦର୍ଶନମ୍ । ୧୭ ।
ଆସ୍ଥିତସ୍ତଦ୍ବିମାନାଗ୍ର୍ୟଂ ସର୍ବାନୀକାଧିପୈର୍ବୃତଃ ।
ବାଲବ୍ୟଜନଛତ୍ରାଗ୍ର୍ୟୈ ରେଜେ ଚନ୍ଦ୍ର ଇବୋଦୟେ । ୧୮ ।

---

ହେ ପାଣ୍ଡୁନନ୍ଦନ ! ଅନନ୍ତର ଶରତ୍ର ଧ୍ୱଜପଟ, ନିର୍ମଳ ଶ୍ୱେତ ଛତ୍ର, ମହାମୂଲ୍ୟ ବଜ୍ରମୟ ଦଣ୍ଡ; ମୟୂର ପୁଚ୍ଛ ନିର୍ମିତ ଚାମର; ବାୟୁଦ୍ୱାରା ଚଳିତ, ଉତ୍ତରୀୟ ବସ୍ତ୍ର ଓ ଉଷ୍ଣୀଷ ସୂର୍ଯ୍ୟକିରଣ ଦ୍ୱାରା ଦେଦୀପ୍ୟମାନ ଶକ୍ତି, ବର୍ମ, ଭୂଷଣ ଏବଂ ବିବିଧ ଶସ୍ତ୍ରାଦି ଦ୍ୱାରା ଦେବାସୁର ସୈନ୍ୟମାନେ ବୀର ସମୂହଙ୍କ ଦ୍ୱାରା ଜଳ ଜନ୍ତୁମାନଙ୍କଦ୍ୱାରା ସସଜ୍ଜିତ ସମୁଦ୍ର ଦ୍ୱୟପରି ଶୋଭା ପାଇଥିଲେ । ୧୩, ୧୫ ।

ହେ ରାଜନ୍ ! ସେହି ଦେବାସୁର ଯୁଦ୍ଧରେ ବିରୋଚନ ପୁତ୍ର ଅସୁରରାଜ ବଳି, ଅସୁରମାନଙ୍କର ସେନାପତି ହୋଇ ମୟଦାନବ କର୍ତ୍ତୃକ ନିର୍ମିତ କାମଗାମୀ ବୈହାୟସ ନାମକ, ସର୍ବପ୍ରକାର ଯୁଦ୍ଧୋପକରଣ ଯୁକ୍ତ ଅଦ୍ଭୁତ ଓ ବୁଦ୍ଧିର ଅଗମ୍ୟ, କେତେବେଳେ ଦୃଶ୍ୟମାନ; କେତେବେଳେ ବା ଅଦୃଶ୍ୟ; ଶ୍ରେଷ୍ଠ ବିମାନରେ ଆରୋହଣ କରି ସର୍ବପ୍ରଧାନ ସୈନ୍ୟ ପରିବୃତ୍ତ ହୋଇ ଚାମର ଓ ଛତ୍ରାଦିଦ୍ୱାରା ପରିଶୋଭିତ ହୋଇ ଉଦୟ ଗିରିସ୍ଥିତ ଚନ୍ଦ୍ରତୁଲ୍ୟ ଶୋଭା ପାଇଥିଲେ । ୧୭, ୧୮ ।

---

ବିବିଧ ସଂଗ୍ରାମ ଭୂଷଣେ
ଗର୍ଜ୍ଜନ୍ତି ଦେବାସୁରଗଣେ
ବିବିଧ ତୀକ୍ଷ୍ଣ ଶସ୍ତ୍ର ହସ୍ତେ
ବିରାଜେ ରବି ରଶ୍ମି ତେଜେ
ଏମନ୍ତେ ଦେବାସୁର ବଳେ
ସ୍ୱଭାବେ ବଳିଷ୍ଠ ସକଳେ
ଅତି କୁପିତେ ଦୈତ୍ୟ ଦେବା
କିବା ଉପମା ଆଉ ଦେବା
ଶୋଭନ୍ତି ମହାବୀରେ ରଣେ
ଯେସନେ ଜଳଧି ମନ୍ଥନେ । ୧୩, ୧୫ ।

ଅସୁର ବଳ ହିତକାରୀ
ଯେ ଥିଲେ ବଳି ସେନାପତି
ଶୁଣ ରାଜନ କହୁ ତୋତେ
ବଳି ମହିମା ଅପ୍ରମିତେ
ମୟ ନିର୍ମିତ ଘୋର ଯାନ
ସ୍ୱଭାବେ ବୈହାୟସ ନାମ
ସମର ଅର୍ଥେ ଶସ୍ତ୍ର ଯେତେ
ସର୍ବ ପୂରିତ ମୟ ରଥେ
ମନ ବଚନ ଅଗୋଚର
ଦୃଶ୍ୟ ଅଦୃଶ୍ୟ ଭୟଙ୍କର

ଏମନ୍ତ ରଥେ ବଳି ବସେ
ବୀରେ ମଣ୍ଡଳେ ବଳିପାଶେ
ବାମ ଦକ୍ଷିଣ ମହାବୀରେ
ଛତ୍ର ଚାମର ଧରି କରେ
ମଧ୍ୟେ ବିରାଜେ ବଳି ଶୋଭି
କିବା ଉପମା ତାକୁ ଦେବା
ନକ୍ଷତ୍ର ମଧ୍ୟେ ପୂର୍ଣ୍ଣ ଶଶୀ
ଅସୁର ମଧ୍ୟେ ତେଣେ ବଳି
। ୧୬-୧୮ ।

ତସ୍ୟାସନ୍ ସର୍ବତୋ ଯାନୈର୍ୟୂଥାନାଂ ପତୟୋଽସୁରାଃ ।
ନମୁଚିଃ ଶମ୍ବରୋ ବାଣୋ ବିପ୍ରଚିତ୍ତିରୟୋମୁଖଃ । ୧୯ ।
ଦ୍ୱିମୂର୍ଦ୍ଧା କାଳନାଭୋଽଥ ପ୍ରହେତିର୍ହେତିରିଲ୍ୱଳଃ ।
ଶକୁନିର୍ଭୂତସନ୍ତାପୋ ବଜ୍ରଦଂଷ୍ଟ୍ରୋ ବିରୋଚନଃ । ୨୦ ।
ହୟଗ୍ରୀବଃ ଶଙ୍କୁଶିରାଃ କପିଳୋ ମେଘଦୁନ୍ଦୁଭିଃ ।
ତାରକଶ୍ଚକ୍ରଦୃକ୍ ଶୁମ୍ଭୋ ନିଶୁମ୍ଭୋ ଜମ୍ଭ ଉତ୍କଳଃ । ୨୧ ।
ଅରିଷ୍ଟୋଽରିଷ୍ଟନେମିଶ୍ଚ ମୟଶ୍ଚ ତ୍ରିପୁରାଧିପଃ ।
ଅନ୍ୟେ ପୌଲମକାଳେୟା ନିବାତକବଚାଦୟଃ । ୨୨ ।
ଅଲବ୍ଧଭାଗା ସୋମସ୍ୟ କେବଳଂ କ୍ଲେଶଭାଗିନଃ ।
ସର୍ବ ଏତେ ରଣମୁଖେ ବହୁଶୋ ନିର୍ଜିତାମରାଃ । ୨୩ ।
ସିଂହନାଦାନ୍ ବିମୁଞ୍ଚନ୍ତଃ ଶଙ୍ଖାନ୍ ଦଧ୍ମୁର୍ମହାରବାନ୍ ।
ଦୃଷ୍ଟ୍ୱା ସପତ୍ନାନୁତ୍ସିକ୍ତାନ୍ ବଳଭିତ୍ କୁପିତୋ ଭୃଶମ୍ । ୨୪ ।

---

ସେହି ଦାନବରାଜ ବଳିଙ୍କ ସହିତ ଯୁଦ୍ଧ କରିବାକୁ ଯେଉଁ ପ୍ରଧାନ ଯୋଦ୍ଧାମାନେ ଆଗମନ କରିଥିଲେ ସେମାନଙ୍କର ନାମ— ନମୁଚି, ଶମ୍ବର, ବାଣ, ବିପ୍ରଚିତ୍ତି, ଅୟୋମୁଖ, ଦ୍ୱିମୂର୍ଦ୍ଧା, କାଳନାଭ, ପ୍ରହେତି, ଇଲ୍ୱଳ, ଶକୁନି, ଭୂତସନ୍ତାପ, ବଜ୍ରଦଂଷ୍ଟ୍ର, ବିରୋଚନ, ହୟଗ୍ରୀବ, ଶଙ୍କୁଶିରା, କପିଳ, ମେଘଦୁନ୍ଦୁଭି, ତାରକ, ଚକ୍ରଜିତ୍, ଶୁମ୍ଭ, ନିଶୁମ୍ଭ, ଜମ୍ଭ, ଉତ୍କଳ, ଅରିଷ୍ଟ, ଅରିଷ୍ଟନେମୀ, ତ୍ରିପୁରାଧିପ, ମୟ, ପୌଲୋମ, କାଳେୟ, ନିବାତକବଚ ପ୍ରଭୃତି । ୧୯, ୨୨ ।

ଅସୁରମାନେ ଅମୃତର ଅଂଶ ନ ପାଇ କେବଳ ସମୁଦ୍ର ମନ୍ଥନରେ କ୍ଲେଶଭାଗୀ ହୋଇ ଅତ୍ୟନ୍ତ କ୍ରୁଦ୍ଧ ହୋଇ ସଂଗ୍ରାମରେ ଦେବତାମାନଙ୍କୁ ଜୟକରି ସିଂହନାଦ କରିଥିଲେ ଏବଂ ମହା ଶବ୍ଦଯୁକ୍ତ ଶଙ୍ଖମାନ ବଜାଇଥିଲେ । ସେତେବେଳେ ଦେବରାଜ ଇନ୍ଦ୍ର ଶତ୍ରୁମାନଙ୍କର ଗର୍ବିତଭାବ ଦର୍ଶନ କରି ଅତ୍ୟନ୍ତ କ୍ରୁଦ୍ଧ ହୋଇଥିଲେ । ୨୩, ୨୪ ।

---

ବଳି ସମୀପେ ସନ୍ତି ସନ୍ତି
ମିଳିଲେ ସର୍ବ ଯୂଥ ପତି
ଦେବ-ଅସୁର ଘୋର-ରଣେ
ବଳେ ଆଡୋଳି ଜଣେ ଜଣେ
କରନ୍ତି ଅଦ୍ଭୁତ ସଂଗ୍ରାମ
ଶୁଣ ହୋ ତାହାଙ୍କର ନାମ—
ନମୁଚି ଶମ୍ବର ଯେ ବାଣ
ବିପ୍ରଚିତ୍ତି ଲୋହ-ବଦନ
ଦ୍ୱିମୂର୍ଦ୍ଧା କାଳନାଭି ହେତି
ଇଲ୍ୱଳ ଆଉ ସୁପ୍ରହେତି
ଶକୁନି ଭୂତସନ୍ତାପନ
ବଜ୍ର-ଦଶନ ବିରୋଚନ
ହୟଗ୍ରୀବ ଯେ ଶଙ୍କୁଶିର
କପିଳା ନାମେ ମହାବୀର
ଜୀମୂତଦୁନ୍ଦୁଭି ଅଦ୍ଭୁତ
ତାରକା ପୁଣି ଚକ୍ରଜିତ
ଉତ୍କଳ ଶୁମ୍ଭ ଯେ ନିଶୁମ୍ଭ
ଅରିଷ୍ଟନେମି ପୁଣି ଜମ୍ଭ
ତ୍ରିପୁରାଧିପ ଯେଉଁ ମୟ
ପୌଲମ ଅରିଷ୍ଟ କାଳେୟ
ନିବାତ କବଚ ସହିତେ
ଅପରେ ଵୀର ଦୈତ୍ୟ ଯେତେ
। ୧୯-୨୨ ।
ନ ପାଇ ଅମୃତର ଭାଗ
ମନେ ବହିଲେ ମହାରାଗ
ଦେବଙ୍କୁ ଯୁଦ୍ଧକରି ବଳେ
ବେଢ଼ିଲେ ଅଶେଷ ଗହଳେ
କରନ୍ତି ସର୍ବେ ଶଙ୍ଖ ନାଦ
ଦୁନ୍ଦୁଭି ଭୁଲେ ବହୁ ବାଦ୍ୟ

ଐରାବତଂ ଦନ୍ତିରଣମାରୂଢ଼ଃ ଶୁଶୁଭେ ସ୍ୱରାଟ୍ ।
ଯଥା ସ୍ରବତ୍ପ୍ରସ୍ରବଣମୁଦୟାଦ୍ରିମହର୍ପତିଃ । ୨୫ ।
ତସ୍ୟାସନ୍ ସର୍ବତୋ ଦେବା ନାନାବାହଧ୍ୱଜାୟୁଧାଃ ।
ଲୋକପାଳାଃ ସହଗଣୈର୍ବାୟ୍ୱଗ୍ନିର୍ବରୁଣାଦୟଃ । ୨୬ ।
ତେଽନ୍ୟୋଽନ୍ୟମଭିସଂସୃତ୍ୟ କ୍ଷିପନ୍ତୋ ନାମଭିର୍ମିଥଃ ।
ଆହ୍ୱୟନ୍ତୋ ବିଶନ୍ତୋଽଗ୍ରେ ଯୁଯୁଧୁର୍ଦ୍ୱନ୍ଦ୍ୱଯୋଧିନଃ । ୨୭ ।
ଯୁଯୋଧ ବଲିରିନ୍ଦ୍ରେଣ ତାରକେଣ ଗୁହୋଽସ୍ୟତ ।
ବରୁଣୋ ହେତିନାୟୁଧ୍ୟନ୍ମିତ୍ରୋ ରାଜନ୍ ପ୍ରହେତିନା । ୨୮ ।
ଯମସ୍ତୁ କାଳନାଭେନ ବିଶ୍ୱକର୍ମ୍ମା ମୟେନ ବୈ ।
ଶମ୍ବରୋ ଯୁଯୁଧେ ତ୍ୱଷ୍ଟ୍ରା ସବିତ୍ରା ତୁ ବିରୋଚନଃ । ୨୯ ।

---

ସୂର୍ଯ୍ୟ ଯେପରି ଝର୍ଣ୍ଣାର ଜଳଯୁକ୍ତ ଉଦୟ ପର୍ବତକୁ ଅବଲମ୍ବନ କରନ୍ତି, ସେହିପରି ସ୍ୱର୍ଗାଧିପତି ଇନ୍ଦ୍ର ଆକାଶ ପଥରେ ମଦସ୍ରାବୀ ଐରାବତ ହସ୍ତୀ ଆରୋହଣ କରି ଶୋଭା ପାଇଥିଲେ ।୨୫।

ଦେବରାଜ ଇନ୍ଦ୍ରଙ୍କ ସହିତ ବିବିଧ ବାହନ, ଧ୍ୱଜ, ଆୟୁଧ ଧାରଣ କରି ବାୟୁ, ଅଗ୍ନି, ବରୁଣ ପ୍ରଭୃତି ଲୋକପାଳମାନେ ସ୍ୱଗଣ ସହିତ ଯୁଦ୍ଧରେ ଉପସ୍ଥିତ ହୋଇଥିଲେ ।୨୬।

ଦେବତା ଓ ଅସୁରମାନେ ପରସ୍ପର ସମ୍ମୁଖୀନ ହୋଇ ପରସ୍ପରର ନାମ ଉଚ୍ଚାରଣ କରି ପରସ୍ପରକୁ ତିରସ୍କାର କରି ଯୁଦ୍ଧାର୍ଥ ଆହ୍ୱାନ କରିଥିଲେ ।୨୭।

ହେ ରାଜନ୍ ! ଦୈତ୍ୟରାଜ ବଳି ଇନ୍ଦ୍ରଙ୍କ ସହିତ, କାର୍ତ୍ତିକେୟ ତାରକାସୁର ସହିତ, ବରୁଣ ହେତି ସହିତ, ମିତ୍ର ପ୍ରହେତି ସହିତ ଯୁଦ୍ଧ କରିଥିଲେ ।୨୮।

ଯମ କାଳନାଭ ସହିତ, ବିଶ୍ୱକର୍ମା ମୟଦାନବ ସହିତ, ଶମ୍ବର ତ୍ୱଷ୍ଟା ସହିତ, ବିରୋଚନ ସବିତା

---

ଏମନ୍ତେ ବଳି ବଳ ସ୍କନ୍ଧ
ସକଳ ଦେବେ କୋପ ବନ୍ଧ
ସାଜିଲେ ସୁରପତି ସଙ୍ଗେ
ଅଶେଷ ଘୋର ରଣ ରଙ୍ଗେ
ଐରାବତ ସ୍କନ୍ଧେ ବସି
ପୂର୍ଣ୍ଣିମା ରାତ୍ରେ ଯେହ୍ନେ ଶଶୀ
ସେ ଯୂଥପତିଙ୍କି ଆବୋରି
ଆନନ୍ଦେ ବାଦ୍ୟ ନାଦ କରି
ନିଜ ବାହନେ ଶକ୍ତ ହୁଲେ
ଅଶେଷ ଦେବେ ବଜେ କଲେ
ରଣ ସଙ୍କୁଳ ମହାଘୋଳେ
ସମୁଦ୍ର ତୀରେ ବେଳ ବଳେ
ଶବଦ ଶୁଭଇ ଭୂମୁଳେ
ମିଳିଲେ ସର୍ବଦଗପାଳେ ।୨୩,୨୬
ଶସ୍ତ୍ର ଉଠାଇ କୋପମନେ
ନାମ ଡାକନ୍ତି ଅନ୍ୟୋଅନ୍ୟେ
ଝଟକେ ମିଳି ଘୋର ନାଦେ
ଯୁଦ୍ଧ କରନ୍ତି ମାଲଯୁଦ୍ଧେ ।୨୭।
ଇନ୍ଦ୍ରର ହୁଲେ ବଳି ଯୁଦ୍ଧେ
ଦାରୁଣ ଦେବାସୁର ମଧ୍ୟେ
ସ୍କନ୍ଦ ତାରକ ଅବହେଳେ
ଯୁଦ୍ଧ କରନ୍ତି ବାହୁବଳେ
ବରୁଣ ହେତି ବେଳଖାରେ
ପ୍ରହେତି ମିତ୍ର ଯୁଦ୍ଧ କରେ

ଅପରାଜିତେନ ନମୁଚିରଶ୍ୱିନୌ ବୃଷପର୍ବଣା ।
ସୂର୍ଯ୍ୟୋ ବଲିସୁତୈର୍ଦ୍ଦେବୋ ବାଣଜ୍ୟେଷ୍ଠୈଃ ଶତେନ ଚ । ୩୦ ।
ରାହୁଣା ଚ ତଥା ସୋମଃ ପୁଲୋମ୍ନା ଯୁଯୁଧେଽନିଲଃ ।
ନିଶୁମ୍ଭଶୁମ୍ଭୟୋର୍ଦ୍ଦେବୀ ଭଦ୍ରକାଳୀ ତରସ୍ୱିନୀ । ୩୧ ।
ବୃଷାକପିସ୍ତୁ ଜମ୍ଭେନ ମହିଷେଣ ବିଭାବସୁଃ ।
ଇଲ୍ୱଲଃ ସହ ବାତାପିର୍ବ୍ରହ୍ମପୁତ୍ରୈରରିନ୍ଦମ । ୩୨ ।
କାମଦେବେନ ଦୁର୍ମର୍ଷ ଉତ୍କଳୋ ମାତୃଭିଃ ସହ ।
ବୃହସ୍ପତିଶ୍ଚୋଶନସା ନରକେଣ ଶନୈଶ୍ଚରଃ । ୩୩ ।
ମରୁତୋ ନିବାତକବଚୈଃ କାଳେୟୈର୍ବସବୋଽମରାଃ ।
ବିଶ୍ୱେଦେବାସ୍ତୁ ପୌଲୋମୈ ରୁଦ୍ରାଃ କ୍ରୋଧବଶୈଃ ସହ । ୩୪ ।

---

ସହିତ, ନମୁଚି ଅପରାଜିତ ସହିତ, ଅଶ୍ୱିନୀକୁମାର ଦ୍ୱୟ ବୃଷପର୍ବା ସହିତ, ସୂର୍ଯ୍ୟଦେବ ବାଣପ୍ରମୁଖ ବାଲିଙ୍କର ଏକଶତ ପୁତ୍ର ସହିତ ଯୁଦ୍ଧ କରିବାକୁ ଲଗିଲେ । ୨୯, ୩୦ ।

ହେ ଅରିନ୍ଦମ ! ଚନ୍ଦ୍ର ରାହୁଙ୍କ ସହିତ, ବାୟୁ ପୁଲୋମାଙ୍କ ସହିତ, ବେଗବତୀ ଭଦ୍ରକାଳୀ ଶୁମ୍ଭ ନିଶୁମ୍ଭଙ୍କ ସହିତ, ବୃଷାକପି ଜମ୍ଭାସୁର ସହିତ, ବିଭାବସୁ ମହିଷାସୁର ସହିତ ଏବଂ ଇଲ୍ୱଳ ଓ ବାତାପି ବ୍ରହ୍ମତନୟ ବଶିଷ୍ଠ ଙ୍କ ସହିତ ଯୁଦ୍ଧ କରିଥିଲେ । ୩୧, ୩୨ ।

କାମଦେବଙ୍କ ସହିତ ଦୁର୍ମର୍ଷ; ମାତୃଗଣଙ୍କସହିତ ଉତ୍କଳ, ଶୁକ୍ରଙ୍କସହିତ ବୃହସ୍ପତି, ନରକାସୁର ସହିତ ଶନୈଶ୍ଚର, କାଳେୟ ନାମକ ଅସୁର ସହିତ ବସୁମାନେ, ନିବାତକବଚମାନଙ୍କ ସହିତ ମରୁତଗଣ, ପୌଲୋମମାନଙ୍କ ସହିତ ବିଶ୍ୱଦେବମାନେ ଏବଂ କ୍ରୋଧବଶଗଣଙ୍କ ସହିତ ରୁଦ୍ରଦେବମାନେ ଯୁଦ୍ଧ କରିଥିଲେ । ୩୩, ୩୪ ।

---

ସମର ଭୁଲେ କାଳନାଭି
ବିଶ୍ୱକର୍ମ୍ମା ମୟ ଦାନବ
ଶମ୍ବର ତ୍ୱଷ୍ଟା ଭୁଲେ ରଣ
ସବିତା ଭୁଲେ ବିରୋଚନ
ନମୁଚି ଯେ ଅପରାଜିତେ
ଅଶ୍ୱିନୀ ବୃଷପର୍ବା ସାଥେ
ସୂର୍ଯ୍ୟର ଭୁଲେ ବାଣାସୁର
ରାହୁର ଭୁଲେ ନିଶାକର
ପୁଲୋମା ସଙ୍ଗତେ ସମର
କରଇ ଅନିଳ ଯେ ବୀର

ଶୁମ୍ଭ ନିଶୁମ୍ଭେ ଭଦ୍ରକାଳୀ
ଜମ୍ଭରେ ବୃଷାକପି ମିଳି
ମହିଷେ ବିଭାବସୁ ଯୁଝି
ଗହଳେ ଦେବାସୁର ମାଝି
ଇଲ୍ୱଳ ବାତାପିର ମେଳେ
ସଗ୍ରାମ ବ୍ରହ୍ମ-ପୁତ୍ର ଭୁଲେ
ଦୁର୍ମ୍ମର୍ଷ ଭୁଲେ ରତିପତି
ଉତ୍କଳେ ମାତୃକା ଯୁଝିଲି
ଗୁରୁ ଭାର୍ଗବେ ଯୁଦ୍ଧ ଘୋର
ନାରକା ଭୁଲେ ଶନିଶ୍ଚର

ନିବାତ କବଚେ ମରୁତେ
କାଳେୟ ବସୁଙ୍କ ସଙ୍ଗତେ
ପୁଲୋମା ବିଶ୍ୱେଦେବା ସଙ୍ଗେ
ଯୁଦ୍ଧ କରନ୍ତି ରଣରଙ୍ଗେ
ଦେବେ ଅସୁର ଗଣ ସଙ୍ଗେ
ନିର୍ଘାତ ଯୁଦ୍ଧ ରଣ ରଙ୍ଗେ
ରୁଦ୍ରଙ୍କ କ୍ରୋଧବଶ ଗଣ
ଆବୋରି କଲେ ଘୋରରଣ
। ୨୮-୩୪ ।

ତ ଏବ ମାଜାବସୁରାଃ ସୁରେନ୍ଦ୍ରା ଦ୍ୱନ୍ଦ୍ୱେନ ସଂହତ୍ୟ ଚ ଯୁଧ୍ୟମାନାଃ ।
ଅନ୍ୟୋଽନ୍ୟମାସାଦ୍ୟ ନିଜଘ୍ନୁରୋଜସା ଜିଗୀଷବସ୍ତୀକ୍ଷ୍ଣଶରାସିତୋମରୈଃ ।୩୫।
ଭୁଶୁଣ୍ଡିଭିଶ୍ଚକ୍ରଗଦର୍ଷ୍ଟିପଟ୍ଟିଶୈଃ ଶକ୍ତ୍ୟୁଲ୍ମୁକୈଃ ପ୍ରାସପରଶ୍ୱଧୈରପି ।
ନିସ୍ତ୍ରିଂଶଭଲ୍ଲୈଃ ପରିଘୈଃ ସମୁଦ୍ଗରୈଃ ସଭିନ୍ଦିପାଲୈଶ୍ଚ ଶିରାଂସି ଚିଚ୍ଛିଦୁଃ ।୩୬।
ଗଜାସ୍ତୁରଙ୍ଗାଃ ସରଥାଃ ପଦାତୟଃ ସାରୋହବାହା ବିବିଧା ବିଖଣ୍ଡିତାଃ ।
ନିକୃତ୍ତବାହୂରୁଶିରୋଧରାଙ୍ଘ୍ରୟଶ୍ଛିନ୍ନଧ୍ୱଜେଷ୍ୱାସତନୁତ୍ରଭୂଷଣାଃ । ୩୭ ।
ତେଷାଂ ପଦାଘାତରଥାଙ୍ଗଚୂର୍ଣ୍ଣିତାଦାୟୋଧନାଦୁଲ୍ବଣ ଉତ୍ଥିତସ୍ତଦା ।
ରେଣୁର୍ଦ୍ଦିଶଃ ଖଂ ଦ୍ୟୁମଣିଞ୍ଚ ଛାଦୟନ୍ ନ୍ୟବର୍ତ୍ତତାସୃକ୍‌ସ୍ରୁତିଭିଃ ପରିପ୍ଲୁତାତ୍ ।୩୮।
ଶିରୋଭିରୁଦ୍ଧୂତକିରୀଟକୁଣ୍ଡଳୈଃ ସଂରମ୍ଭଦୃଗ୍‌ଭିଃ ପରିଦଷ୍ଟଦଚ୍ଛଦୈଃ ।
ମହାଭୁଜୈଃ ସାଭରଣୈଃ ସହାୟୁଧୈଃ ସା ପ୍ରାସ୍ତୃତା ଭୂଃ କରଭୋରୁଭିର୍ବଭୌ ।୩୯।

---

ସେହି ଦେବାସୁର ଦ୍ୱନ୍ଦ୍ୱ ଯୁଦ୍ଧରେ ଦେବ ଓ ଅସୁରମାନେ ପରସ୍ପରକୁ ଜୟ କରିବା ଉଦ୍ଦେଶ୍ୟରେ ତୀକ୍ଷ୍ଣ ବାଣ, ଅସି, ତୋମର ଦ୍ୱାରା ପରସ୍ପରକୁ ପ୍ରହାର କରିଥିଲେ ଏବଂ ଭୁଷଣ୍ଡି ଚକ୍ର, ଗଦା, ପଟ୍ଟୀଶ, ଶକ୍ତି, ଭିନ୍ଦିପାଳ ଦ୍ୱାରା ପରସ୍ପରର ଶିରଚ୍ଛେଦନ କରିଥିଲେ । ୩୫ , ୩୬ ।

ବାହୁ, ଊରୁ, ମସ୍ତକ, ଗ୍ରୀବା, ଚରଣ ଏବଂ ଧ୍ୱଜ, ବାଣ, କବଚ ଓ ଭୂଷଣ ସମୂହ ଛିନ୍ନ ବିଛିନ୍ନ ହୋଇଥିଲା । ଆରୋହୀ ସହ ବାହାନାଦି ବିନଷ୍ଟହୋଇଥିଲେ । ଗଜ, ଅଶ୍ୱ, ରଥୀ ଓ ପଦାତି ସୈନ୍ୟମାନେ ଖଣ୍ଡ ବିଖଣ୍ଡ ହୋଇ ପତିତ ହୋଇଥିଲେ ।୩୭।

ସେମାଙ୍କ ପଦାଘାତରେ ଏବଂ ରଥଚକ୍ର ଗତିରେ ଚୂର୍ଣ୍ଣିତ ହୋଇ ଯୁଦ୍ଧ କ୍ଷେତ୍ରରୁ ଏପରି ଧୂଳି ଉଠିଲା ଯେ ଦିଗସମୂହ, ଆକାଶ, ସୂର୍ଯ୍ୟ ଆଚ୍ଛାଦିତ ହୋଇଗଲେ । ପରିଶେଷରେ ଯୋଦ୍ଧାମାନଙ୍କର ରକ୍ତରେ ରଣକ୍ଷେତ୍ର ସିକ୍ତ ହେବାରୁ ଆଉ ଧୂଳି ଉଠିଲା ନାହିଁ । ୩୮ ।

ସେହି ରଣଭୂମିରେ ପରିଭ୍ରଷ୍ଟ ମୁକୁଟ ଓ କୁଣ୍ଡଳ ବିଶିଷ୍ଟ ଆରକ୍ତ ନେତ୍ର ଏବଂ ବିକଟ ଦନ୍ତପଙ୍କ୍ତି ଏବଂ ଓଷ୍ଠାଧର ଦନ୍ତାଘାତ କ୍ଷତରେ ପତିତ ହୋଇ ଛିନ୍ନ ମସ୍ତକ ସମୂହ ଆଭରଣ ଓ ଅସ୍ତ୍ରଯୁକ୍ତ ବାହୁମାନ ଓ କରଭ ସଦୃଶ ଊରୁମାନଙ୍କ ଦ୍ୱାରା ପରିବ୍ୟାପ୍ତ ହୋଇ ଅତି ଭୀଷଣ ଦୃଶ୍ୟ ସୃଷ୍ଟି କରିଥିଲା ।୩୯।

---

ଏମନ୍ତେ ମହାରଣ ମଧ୍ୟେ
ଦେବ ଦାନବ ବାହୁଯୁଦ୍ଧେ
ଏମନ୍ତ ମାଲଯୁଦ୍ଧ ସାର
ଧାଇଁଲେ କରେ ଶସ୍ତ୍ର ଧର
ଖଡ୍ଗ ତୋମର ଶରବୃଷ୍ଟି
ଭୁଷଣ୍ଡି ଚକ୍ର ଗଦା ଋଷ୍ଟି
ପଟ୍ଟିଶ ଶକ୍ତି ଉଲ୍ମୁକରେ
ପ୍ରାସ ପରଶୁ କେ କୁଠାରେ

ନିସ୍ତ୍ରିଂଶ ଭଲ୍ଲ ଯେ ମୁଦ୍ଗର
ପରିଘ ପୁଣି ଭିନ୍ଦିପାଳ
ଏମନ୍ତେ ନାନା ଶସ୍ତ୍ର ଭେଦ
ଅସୁର ଙ୍କର ଶିରଚ୍ଛେଦ ।୩୫,୩୬
ଗଜ ତୁରଙ୍ଗ ପତ୍ତି ପନ୍ତି
ଯୁଦ୍ଧେ ପଡ଼ିଲେ ରଥପତି
ଶସ୍ତ୍ରେ ଖଣ୍ଡିତ କଳେବର
ନିରତେ ଗଳଇ ରୁଧିର

ବାହୁ ହୃଦୟ ଶିର ଛିଡ଼
ପଡ଼ିଲେ ଦଶନ କାମୋଡ଼
ନାନା ଆଭରଣ ଆୟୁଧେ
ଭୂମି ସହିତେ ନାନାଛନ୍ଦେ
ଗଜ ତୁରଙ୍ଗ ମୃଖୁ ପିଣ୍ଡେ
ଆଚ୍ଛାଦ ରହେ ଯୁଦ୍ଧ ଖଣ୍ଡେ
କବନ୍ଧ ଉଠି ରଣମଧ୍ୟେ
ନୃତ୍ୟ କରନ୍ତି ନାନା ବାଦ୍ୟେ

କବନ୍ଧାସ୍ତତ୍ର ଚୋତ୍ପେତୁଃ ପତତଃ ସ୍ୱଶିରୋକ୍ଷିଭିଃ ।
ଉଦ୍ୟତାୟୁଧଦୋର୍ଦ୍ଦଣ୍ଡୈରାଧାବନ୍ତୋ ଭଟାନ୍ ମୃଧେ ।୪୦।
ବଲିର୍ମହେନ୍ଦ୍ରଂ ଦଶଭିସ୍ତ୍ରିଭିରୈରାବତଂ ଶରୈଃ ।
ଚତୁର୍ଭିଶ୍ଚତୁରୋ ବାହାନେକେନାରୋହମାର୍ଚ୍ଛୟତ୍ ।୪୧।
ସ ତାନାପତତଃ ଶକ୍ରସ୍ତାବଦ୍ଭିଃ ଶୀଘ୍ରବିକ୍ରମଃ ।
ଚଚ୍ଛେଦ ନିଶିତୈର୍ଭଲ୍ଲୈରସଂପ୍ରାପ୍ତାନ୍ ହସନ୍ନିବ ।୪୨।
ତସ୍ୟ କର୍ମୋତ୍ତମଂ ବୀକ୍ଷ୍ୟ ଦୁର୍ମର୍ଷଃ ଶକ୍ତିମାଦଦେ ।
ତାଂ ଜ୍ୱଲନ୍ତୀଂ ମହୋଲ୍କାଭାଂ ହସ୍ତସ୍ଥାମଚ୍ଛିନଦ୍ଧରିଃ ।୪୩।

---

ସେତେବେଳେ ସେହି ଯୁଦ୍ଧ କ୍ଷେତ୍ରରେ ଛିନ୍ନମସ୍ତକ ବୀରଗଣ ପତିତ ସ୍ୱମସ୍ତକସ୍ଥ ନେତ୍ରଦ୍ୱାରା ଅବଲୋକନ କରି ବିବିଧ ଅସ୍ତ୍ରଶସ୍ତ୍ର ଧାରଣ ପୂର୍ବକ ଅତି ବେଗରେ ଶତ୍ରୁପକ୍ଷୀୟ ସେନାଙ୍କ ପ୍ରତି ଧାବିତ ହୋଇଥିଲେ ।୪୦।

ଦାନବରାଜ ବଳି ଦଶବାଣ ଦ୍ୱାରା ଇନ୍ଦ୍ରଙ୍କୁ, ତିନିବାଣ ଦ୍ୱାରା ଐରାବତ ହସ୍ତୀକୁ, ଚାରିବାଣ ଦ୍ୱାରା ଚାରି ଅଶ୍ୱଙ୍କୁ, ଏକବାଣ ଦ୍ୱାରା ଗଜଚାଳକଙ୍କୁ ବିଦ୍ଧ କରିଥିଲେ । ଇନ୍ଦ୍ର ମଧ୍ୟ ସହସା ବିକ୍ରମ ପ୍ରକାଶ କରି ହାସ୍ୟ କରୁ କରୁ ସେହି ପରିମାଣର ବାଣ ପ୍ରେରଣ କରି ବଳିଙ୍କର ବାଣମାନଙ୍କୁ ଛେଦନ କରିଥିଲେ । ୪୧, ୪୨ ।

ଇନ୍ଦ୍ରଙ୍କର ଏହି ଆଶ୍ଚର୍ଯ୍ୟ କର୍ମ ଦର୍ଶନ କରି ବଳି ଅତ୍ୟନ୍ତ କ୍ରୁଦ୍ଧ ହୋଇ ଶକ୍ତି ଅସ୍ତ୍ର ଧାରଣ କରିଥିଲେ । ମହୋଲ୍କା ସଦୃଶ ପ୍ରଜ୍ୱଳିତ ବଳିଙ୍କ ହସ୍ତସ୍ଥିତ ଏହି ଶକ୍ତିକୁ ଇନ୍ଦ୍ର ଛେଦନ କରିଥିଲେ ।

---

ତୀକ୍ଷ୍ଣ ଖଡ଼ଗ ଭୁଜ ଧରି
ଧାଆନ୍ତି କବନ୍ଧ ବସୁନ୍ଧରୀ
ଧାଆନ୍ତି ଓଠଙ୍କ ଉପରେ
ହୁଙ୍କାରେ ମହାନାଦ କରେ
।୩୭-୪୦।

ବଳି ଯେ ଚନ୍ଦ୍ରସଙ୍ଗେ ଥିଲା
ଅନେକ ବାହୁଯୁଦ୍ଧ କଲା
ଜିଣି ନ ପାରି ମାଲ୍ୟଯୁଦ୍ଧ
ବସି ମାସ୍ତୁ ବିମାନ ମଧ୍ୟ

ଧନୁରେ ଦଶଶର ଧରି
ଇନ୍ଦ୍ରେ ବିନ୍ଧିଲା କୋଧକରି
ତିନି ନାରାଚ ଐରାବତେ
ବିନ୍ଧିଲା ଆମ୍ଭର ଆସ୍ତୁତେ
ଚାରି ଅଶ୍ୱଙ୍କୁ ଚାରିବାଣ
ବେଗେ ବିନ୍ଧିଲା ଗରୁଠାଣ
ସାରଥି ଏକବାଣେ ଯୋଖି
ଇନ୍ଦ୍ର ଧଇଲା ତାହା ଦେଖି

ବଳିର ଯେତେକ ନାରାଜ
ବେଗେ ଛେଦିଲା ଦେବରାଜ
।୪୧-୪୨।

ବଳିକୁ ଚାହିଁ ମନ୍ଦହାସେ
ବେଗେ ମିଳିଲା ତାର ପାଶେ
ଇନ୍ଦ୍ର ଅଦ୍ଭୁତ କର୍ମ ଚାହିଁ
ବଳି ଯେ ମନେ ବିଚାରଇ
ପୁଣି ଶକ୍ତିଏ ଧରି କରେ
ପେଷିଲା ବାସବ ଉପରେ

ତତଃ ଶୂଳଂ ତତଃ ପ୍ରାସଂ ତତସ୍ତୋମରମୃଷ୍ଟୟଃ ।
ଯଦ୍‌ଯଚ୍ଛସ୍ତ୍ରଂ ସମାଦଦ୍ୟାତ୍ ସର୍ବଂ ତଦଚ୍ଛିନଦ୍ଧୁଭୂଃ । ୪୪ ।
ସସର୍ଜାଥାସୁରୀଂ ମାୟାମନ୍ତର୍ଦ୍ଧାନଗତୋଽସୁରଃ ।
ତତଃ ପ୍ରାଦୁରଭୂଚ୍ଛୈଳଃ ସୁରାନୀକୋପରି ପ୍ରଭୋ ! । ୪୫ ।
ତତୋ ନିପେତୁସ୍ତରବୋ ଦହ୍ୟମାନା ଦବାଗ୍ନିନା ।
ଶିଳାଃ ସଟଙ୍କଶିଖରାଶ୍ଚୂର୍ଣ୍ଣୟନ୍ତ୍ୟୋ ଦ୍ୱିଷଦ୍‌ବଳମ୍ । ୪୬ ।
ମହୋରଗାଃ ସମୁତ୍ପେତୁର୍ଦନ୍ଦଶୂକାଃ ସବୃଶ୍ଚିକାଃ ।
ସିଂହବ୍ୟାଘ୍ରବରାହାଶ୍ଚ ମର୍ଦ୍ଦୟନ୍ତୋ ମହାଗଜାଃ । ୪୭ ।
ଯାତୁଧାନ୍ୟଶ୍ଚ ଶତଶଃ ଶୂଳହସ୍ତା ବିବାସସଃ ।
ଛିନ୍ଧି ଭିନ୍ଧୀତ୍ୟବାଦନ୍ୟସ୍ତଥା ରକ୍ଷୋଗଣାଃ ପ୍ରଭୋ ।୪୮।

---

ତଦନନ୍ତର ଶୂଳ, ପ୍ରାସ, ତୋମର, ଋଷ୍ଟି ପ୍ରଭୃତି ଅସ୍ତ୍ର ବଳୀଧାରଣ କରିଥିଲେ କିନ୍ତୁ ବଳି ଯେଉଁ ଅସ୍ତ୍ର ଧାରଣ କରନ୍ତି ଇନ୍ଦ୍ର ତାହା ଛେଦନ କରନ୍ତି । ୪୩, ୪୪ ।

ତଦନନ୍ତର ଅନ୍ତର୍ହିତ ହୋଇ ବଳି ଆସୁରୀମାୟା ସୃଷ୍ଟି କରିଥିଲେ । ତଦନନ୍ତର ଦେବ ସୈନ୍ୟଙ୍କ ଉପରେ ପର୍ବତ ପତିତ ହେବାକୁ ଲଗିଲା ।୪୫।

ତଦନନ୍ତର ଦାବାଗ୍ନି ଦହ୍ୟମାନ ବୃକ୍ଷମାନ ପତିତ ହେଲା ଏବଂ ଟଙ୍କ ତୁଲ୍ୟ ତୀକ୍ଷ୍ଣଶିଖା ସହିତ ବହୁଶିଳା ବୃଷ୍ଟି ହେଲା ଏବଂ ଦେବ ସୈନ୍ୟମାନଙ୍କୁ ଚୂର୍ଣ୍ଣ କଲା ।୪୬।

ତଦନନ୍ତର ଦନ୍ଦଶୂକ ମହାସର୍ପଗଣ, ବୃଶ୍ଚିକମାନେ ଏବଂ ସିଂହ, ବ୍ୟାଘ୍ର, ବରାହ ପ୍ରଭୃତି ଓ ମହା ହସ୍ତୀମାନେ ଶବ୍ଦକରି ଉପସ୍ଥିତ ହେଲେ । ତାହାପରେ ବସ୍ତ୍ରହୀନ ଶୂଳଧାରିଣୀ ଶତ ଶତ ରାକ୍ଷସୀ ଓ ବହୁ ରାକ୍ଷସ ଛିନ୍ନ ଭିନ୍ନ କରି ଏହିପରି ଶବ୍ଦ କରି କରି ଉପସ୍ଥିତ ହେଲେ । ୪୭, ୪୮ ।

---

ଉଲ୍କା ଯେସନେ ଶୂନ୍ୟମାର୍ଗେ
ପଡ଼ ବିରାଜେ ଦଶଦିଗେ
ସେ ଶକ୍ତି ବଳି ହସ୍ତେ ଥିଲା
ଇଛିତେ ଇନ୍ଦ୍ର ତା ଛେଦିଲା
ଏମନ୍ତେ ଶୂଳ କୁନ୍ତ ଋଷ୍ଟି
ବଳିହସ୍ତରୁବେଗେକାଟି ।୪୩-୪୪।
ନ ପାରି ମାୟା ଆଚ୍ଛାଦିଲା
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲା
ମାୟାରେ ଶିଳା ବୃଷ୍ଟି ଘନ
ମେଘେ ଆଚ୍ଛାଦିଲା ଗଗନ

ଦେବଙ୍କ ଉପରେ ବରଷେ
ଜଳନ୍ତ ତ୍ରାସ ଦଶଦିଶେ
ପୁଣି କ୍ଷଣକେ ବହୁ ବୃଷ୍ଟି
ଶୁଷ୍କ ଇନ୍ଧନ କୋଟି କୋଟି
ଦବାଗ୍ନି ଦେବଙ୍କ ଉପରେ
ପଡ଼ନ୍ତି ସମୀର ବେଗରେ
ଶିଳା ପଡ଼ନ୍ତି ତାଙ୍କ ଶିରେ
ଗହନେ ଦେବଙ୍କ ଉପରେ
ପଡ଼ନ୍ତି ମହୋରଗ ଗଣ
ବୃଶ୍ଚିକ ଆଦି ବିଷ୍ଟଣ

ବରାହ ସିଂହ ବ୍ୟାଘ୍ର ହସ୍ତୀ
ସ୍ୱଭାବେ ଗର୍ଜ୍ଜନ କରନ୍ତି
ଶତ ସହସ୍ର ଯାତୁ ଧାନୀ
ଅନେକ ଶାକିନୀ ଡାକିନୀ
ବିବସ୍ତ୍ର ହୋଇ ଶୂଳ କରେ
ପିଟନ୍ତି ଦେବଙ୍କ ଉପରେ
ରାକ୍ଷସ ଛେଦ ଭେଦ ନାଦେ
ସମରେ ସାଜିଲେ ଆନନ୍ଦେ
।୪୫-୪୮।

ତତୋ ମହାଘନା ବ୍ୟୋମ୍ନି ଗମ୍ଭୀରପରୁଷସ୍ୱନାଃ ।
ଅଙ୍ଗାରାନ୍ ମୁମୁଚୁର୍ବାତୈରାହତାଃ ସ୍ତନୟିତ୍ନବଃ । ୪୯ ।
ସୃଷ୍ଟୋ ଦୈତ୍ୟେନ ସୁମହାନ୍ ବହ୍ନିଃ ଶ୍ୱସନସାରଥିଃ ।
ସାମ୍ବର୍ତ୍ତକ ଇବାତ୍ୟୁଗ୍ରୋ ବିବୁଧଧ୍ୱଜିନୀମଧାକ୍ । ୫୦ ।
ତତଃ ସମୁଦ୍ର ଉଦ୍‌ବେଲଃ ସର୍ବତଃ ପ୍ରତ୍ୟଦୃଶ୍ୟତ ।
ପ୍ରଚଣ୍ଡବାତୈରୁଦ୍ଧୂତତରଙ୍ଗାବର୍ତ୍ତଭୀଷଣଃ । ୫୧ ।
ଏବଂ ଦୈତ୍ୟୈର୍ମହାମାୟୈରଲକ୍ଷ୍ୟଗତିଭୀ ରଣେ ।
ସୃଜ୍ୟମାନାସୁ ମାୟାସୁ ବିଷେଦୁଃ ସୁରସୈନିକାଃ । ୫୨ ।
ନ ତତ୍ ପ୍ରତିବିଧିଂ ଯତ୍ର ବିଦୁରିନ୍ଦ୍ରାଦୟୋ ନୃପ ।
ଧ୍ୟାତଃ ପ୍ରାଦୁରଭୂତ୍ତତ୍ର ଭଗବାନ୍ ବିଶ୍ୱଭାବନଃ । ୫୩ ।

---

ତଦନନ୍ତର ଆକାଶରେ କଠୋର ଶବ୍ଦ କରି ମେଘ ଗୋଟିଏ ଏବଂ ବାୟୁଦ୍ୱାରା ଆହତ ହୋଇ ଗର୍ଜ୍ଜନକାରୀ ମେଘମାନେ ଅଙ୍ଗାର ବର୍ଷଣ କରିବାକୁ ଲାଗିଲେ ।୪୯।

ଦୈତ୍ୟସୃଷ୍ଟ ବାୟୁଦ୍ୱାରା ଜ୍ୱଳିତ ପ୍ରଳୟକାଳୀନ ଅଗ୍ନି ତୁଲ୍ୟ ଅତ୍ୟନ୍ତ ଭୀଷଣ ଅଗ୍ନି ବାହାରିଲା ଏବଂ ଦେବ ସୈନ୍ୟମାନଙ୍କୁ ଦଗ୍‌ଧ କରିବାକୁ ଲାଗିଲା ।୫୦।

ତଦନନ୍ତର ଦୈତ୍ୟମାୟା ଦ୍ୱାରା ପ୍ରବଳ ବାୟୁ ବେଗରେ ଉଚ୍ଛଳିତ ତରଙ୍ଗ ଓ ଆବର୍ତ୍ତମାନ ଉଦ୍‌ବେଳ ସମୁଦ୍ର ଉପସ୍ଥିତ ହେଲା ।୫୧।

ଏହାପରେ ଅଲକ୍ଷଗତି ଓ ଭୀଷଣ ମାୟାବୀ ଅନ୍ୟାନ୍ୟ ଅସୁରମାନଙ୍କ କର୍ତ୍ତୃକ ସୃଷ୍ଟ ବିବିଧ ମାୟାଦ୍ୱାରା ଦେବ ସୈନ୍ୟମାନେ ବିଷାଦଗ୍ରସ୍ତ ହୋଇଥିଲେ ।୫୨।

ହେ ରାଜନ୍ ! ଇନ୍ଦ୍ରାଦି ଦେବତାମାନେ ଦୈତ୍ୟମାୟା ନିବୃତ୍ତିର କୌଣସି ଉପାୟ ଉଦ୍ଭାବନ କରି ନ ପାରି ବିଶ୍ୱପାଳକ ଭଗବାନ୍ ବିଷ୍ଣୁଙ୍କୁ ସ୍ମରଣ କରନ୍ତେ ସେ ଉପସ୍ଥିତ ହୋଇଥିଲେ ।୫୩।

---

ପ୍ରଳୟକାରୀ ମେଘମାନେ
ମଣ୍ଡିଲେ ଗଗନ ମଣ୍ଡଳେ
ଗର୍ଜ୍ଜିଲେ ଘୋର ନାଦ କରି
ସଘନେ ବରଷନ୍ତି ବାରି
ପୁଣି କ୍ଷଣକେ ଘୋରବୃଷ୍ଟି
ପ୍ରଳୟ ସମୀର ପ୍ରକଟି
ପ୍ରଳୟ ପ୍ରାୟେ ଅତି ବେଗେ
ବହ୍ନି ବେଢ଼ିଲା ସୁରଦଳେ

ସମୁଦ୍ର ଉଚ୍ଛ୍ୱଳ ଲହରୀ
ଉଠିଲେ ଘୋରନାଦ କରି
ପ୍ରଚଣ୍ଡ ବାତେ ଊର୍ମିଗଣ
ଉଠନ୍ତେ ଦିଶଇ ଭୀଷଣ ।୪୯-୫୧
ଏମନ୍ତେ ଅସୁରଙ୍କ ମାୟା
ଦୃଶ୍ୟ ଅଦୃଶ୍ୟ ନାନା କାୟା
ନାନାପ୍ରକାରେ ମାୟା ବଳେ
ଯୁଝିଲେ ଦେବଗଣ ଭୁଲେ

ଅସୁର ମାୟାବଳ ଦେଖି
ତ୍ରିଦଶେ ସମରେ ଉପେକ୍ଷି
ଚକିତେ ଭ୍ରମନ୍ତି ଗହନେ
ଅସୁର ମାୟାବଳ ଛଳେ
ରହି ନ ପାରି ସ୍ୱର୍ଗ ସଥେ
ବିଷ୍ଣୁଙ୍କୁ ଧ୍ୟାନ କଲେ ଚିତ୍ତେ
।୫୨-୫୩

ତତଃ ସୁପର୍ଣ୍ଣାଂସକୃତାଙ୍ଘ୍ରି ପଲ୍ଲବଃ ପିଶଙ୍ଗବାସା ନବକଞ୍ଜଲୋଚନଃ ।
ଅଦୃଶ୍ୟତାଷ୍ଟାୟୁଧବାହୁରୁଲ୍ଲସଚ୍ଛ୍ରୀକୌସ୍ତୁଭାନର୍ଘ୍ୟକିରୀଟକୁଣ୍ଡଳଃ । ୫୪ ।
ତସ୍ମିନ୍ ପ୍ରବିଷ୍ଟେଽସୁରକୂଟକର୍ମଜା ମାୟା ବିନେଶୁର୍ମହିନା ମହୀୟସଃ ।
ସ୍ୱପ୍ନୋ ଯଥା ହି ପ୍ରତିବୋଧ ଆଗତେ ହରିସ୍ମୃତିଃ ସର୍ବବିପଦ୍ବିମୋକ୍ଷଣମ୍ । ୫୫ ।

ଦୃଷ୍ଟ୍ୱା ମୃଧେ ଗରୁଡ଼ବାହମିଭାରିବାହ
ଆବିଧ୍ୟ ଶୂଳମହିନୋଦଥ କାଳନେମିଃ ।
ତଲ୍ଲୀଲୟା ଗରୁଡ଼ମୂର୍ଦ୍ଧ୍ନି ପତଦ୍‌ଗୃହୀତ୍ୱା
ତେନାହନନ୍ନୃପ ସବାହମରିଂ ତ୍ର୍ୟଧୀଶଃ । ୫୬ ।

---

ତଦନନ୍ତର ଗରୁଡ଼ ସ୍କନ୍ଧାରୂଢ ପୀତବସନଧାରୀ, ପଦ୍ମନେତ୍ର, ଅଷ୍ଟାୟୁଧ ଯୁକ୍ତ ବାହୁ ବିଶିଷ୍ଟ, ଅତି ଉଜ୍ଜ୍ୱଳ ଶ୍ରୀଚିହ୍ନିତ, କୌସ୍ତୁଭ, ବହୁମୂଲ୍ୟ ମୁକୁଟ ଓ କୁଣ୍ଡଳ ଶୋଭିତ ଭଗବାନ୍ ବିଷ୍ଣୁ ଆବିର୍ଭୂତ ହୋଇଥିଲେ ।୫୪।

ସେହି ଭଗବାନ୍ ରଣ କ୍ଷେତ୍ରରେ ପ୍ରବେଶ କରିବା ମାତ୍ରେ ସେହି ମହାପୁରୁଷଙ୍କର ମହିମାରୁ ନିଦ୍ରା-ଭଙ୍ଗ ହେଲେ ଯେପରି ସ୍ୱପ୍ନ ତିରୋହିତ ହୁଏ, ସେହିପରି ଅସୁରମାନଙ୍କର କୂଟମାୟା ବିନଷ୍ଟ ହୋଇଥିଲା । ହେ ରାଜନ୍ ! ସେହିପରି ହରି ସ୍ମରଣରେ ବିପଦ ମୁକ୍ତ ହୋଇଥାଏ ।୫୫।

ହେ ରାଜନ୍ ! କାଳନେମୀ ସିଂହ ବାହନରେ ଗରୁଡ଼ବାହନ ବିଷ୍ଣୁଙ୍କୁ ଦେଖି ଅତ୍ୟନ୍ତ କମ୍ପିତ ହୋଇ ଶୂଳାଗ୍ର ନିକ୍ଷେପ କରିଥିଲା । ଗରୁଡ଼ ମସ୍ତକରେ ଏହା ପତିତ ହେବା ପୂର୍ବରୁ ତ୍ରିଜଗତେଶ୍ୱର ବିଷ୍ଣୁ ତାହା ଧାରଣ କରି ବାହନ ସହିତ ଶତ୍ରୁକୁ ବିନଷ୍ଟ କରିଥିଲେ ।୫୬।

---

ଦେବଙ୍କ ଭୟ ଦେଖି ହରି
ଗରୁଡ଼ ପୃଷ୍ଠେ ବିଜେ କରି
ପୀତବସନ ପରିଧାନ
ସୁରଙ୍ଗ କମଳ ଲୋଚନ
ଉଦିତ ଉର୍ଦ୍ଧେ ଅଷ୍ଟଭୁଜ
କର୍ଣ୍ଣେ କୁଣ୍ଡଳ ରତ୍ନେ ସାଜ
ଶ୍ରୀବତ୍ସ କଉସ୍ତୁଭ ମଣି
ଅମୂଲ୍ୟ ରତ୍ନେ ମୁକୁଟମଣି
ଏମନ୍ତ ରୂପ ଦଇତାରି
ଦେବଙ୍କ ମଧ୍ୟେ ବିଜେ କରି

ମାୟା ଦେବଙ୍କୁ ବେଢି ଥିଲା
ବିଷ୍ଣୁଙ୍କୁ ଦେଖି ନାଶଗଲା
ଦେବେ ଯେ ଦେଖନ୍ତି ଆକାଶେ
ତମ ଯେସନେ ରବିତ୍ରାସେ
ଜାଗ୍ରତେ ସ୍ୱପ୍ନ ଯେଉଁମତେ ମିଛ
ଗୋବିନ୍ଦ ଅଗ୍ରତେ ପ୍ରତ୍ୟକ୍ଷ
ଅସୁର ମାୟା ନାଶ ଗଲା
ଦେବଙ୍କୁ ନିର୍ଭୟ ହୋଇଲା
ହରି ସ୍ମରଣେ ବନ୍ଧ ମୋକ୍ଷ
ଏଣୁ ଦେବୁ ହେଲେ ପ୍ରତ୍ୟକ୍ଷ ।୫୪-୫୫

ଦେବଙ୍କ ମଧ୍ୟେ କାଳନେମି
ଲୁଚି ଯେ ଥିଲା ମାୟା ଘେନି
ଶୂଳ ବୁଲାଇ ଅନ୍ତରୀକ୍ଷେ
ମିଳିଲା ଗୋବିନ୍ଦ ସମକ୍ଷେ
ପିଟନ୍ତେ ଗୋବିନ୍ଦ ଉପରେ
ହରି ଧଇଲେ ବାମକରେ
ସେ ଶୂଳ କାଳନେମି ମୁଣ୍ଡେ
ହରି ପ୍ରହାରିଲେ ପ୍ରଚଣ୍ଡେ
ବାହ ସହିତେ ମହାସୁର
ହେଲା ଶତେକ ଖଣ୍ଡେ ଚୂର ।୫୬।

ମାଲୀ ସୁମାଲ୍ୟତିବଲୌ ଯୁଧି ପେତତୁର୍ୟଚକ୍ରେଣ କୃତ୍ତଶିରସାବଥ ମାଲ୍ୟବାଂସ୍ତମ୍ ।
ଆହତ୍ୟ ତୀଗ୍ମଗଦୟାହନଦଣ୍ଡଜେନ୍ଦ୍ରଂ ତାବଚ୍ଛିରୋଽଚ୍ଛିନଦରେର୍ନଦତୋଽରିଣାଦ୍ୟଃ ।୫୭

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଅଷ୍ଟମସ୍କନ୍ଧେ ଦେବାସୁରସଂଗ୍ରାମେ ଦଶମୋଽଧ୍ୟାୟଃ ।

---

ଯେଉଁ ଭଗବାନଙ୍କର ଚକ୍ରଦ୍ୱାରା ଅତି ବଳବାନ୍ ମାଳୀ ଓ ସୁମାଳୀ ଛିନ୍ନମସ୍ତକ ହୋଇ ଯୁଦ୍ଧରେ ପତିତ ହୋଇଥିଲେ; ମାଲ୍ୟବାନ୍ ତାହାଙ୍କୁ ପ୍ରହାର କରି ଭୀଷଣ ଗଦାଦ୍ୱାରା ଗରୁଡ଼ଙ୍କୁ ପ୍ରହାର କରିବାକୁ ଉଦ୍ୟତ ହୁଅନ୍ତେ, ବିଷ୍ଣୁ ଚକ୍ରଦ୍ୱାରା ଶବ୍ଦକାରୀ ସେହି ମାଲ୍ୟବାନର ମସ୍ତକ ଛେଦନ କରିଥିଲେ ।୫୭।

---

ମାଳୀ ସୁମାଳୀ ବେନି ଖରେ
ଦେଖି ମିଳିଲେ ଅତି ଖରେ
ତ୍ରିଶୂଳ ଗୋବିନ୍ଦ ଉପରେ
ପ୍ରହାର କଲେ ମହା ଘୋରେ
ତାହାଙ୍କ ତେଜ ଦେଖି ହରି
ସୁଦରଶନ କରେ ଧରି

ସେ ବେନିଙ୍କର ମୁଣ୍ଡ ହାଣି
ଶଙ୍ଖ ଶବଦେ ଚକ୍ର-ପାଣି
ମିଳିଲେ ଦେବାସୁର ମଧ୍ୟେ
ତ୍ରିଦଶେ ଦେଖିଲେ ଆନନ୍ଦେ ।୫୭।
ଯେ ହରିଚରଣ କମଳେ
ପୂଜନେ ଚିନ୍ତ ଧ୍ୟାନ ବଳେ

ଅଷ୍ଟମସ୍କନ୍ଧେ ଭାଗବତ
ଅଦ୍ଭୁତ ଗୋବିନ୍ଦ ଚରିତ
ଭାଷା ପ୍ରବନ୍ଧେ ହରି ଗୀତ
କହିଲେ ଦାସ ଜଗନ୍ନାଥ ॥

---

**ଭାବାର୍ଥ—**

ଏହି ଅଧ୍ୟାୟର ୫୭ ଶ୍ଳୋକରେ ସମଗ୍ର ଅଧ୍ୟାୟର ସାର କଥା ଉଲ୍ଲେଖ କରାଯାଇଅଛି । ଏହି ସଂସାରରେ ମନୁଷ୍ୟ ଜୀବନରେ ଦୈବୀ ଓ ଆସୁରୀ ଭାବର ସଂଗ୍ରାମ ଚାଲିଅଛି ଏବଂ ଆସୁରୀଭାବ ନାନାପ୍ରକାର ମାୟାଦ୍ୱାରା ମନୁଷ୍ୟକୁ ବିପଦର ସମ୍ମୁଖୀନ କରୁଅଛି । ସେହି ଆସୁରୀ ମାୟାରୁ ଉଦ୍ଧାର ପାଇବାକୁ ହେଲେ ଶ୍ରୀହରି ସ୍ମରଣହିଁ ମନୁଷ୍ୟର ଏକମାତ୍ର ପନ୍ଥା, ଦେବତାମାନେ ସେହି ଆସୁରୀମାୟା ପ୍ରଭାବରୁ ବିପନ୍ନ ହୋଇଥିଲେ । ଭଗବାନ୍ ବିଷ୍ଣୁଙ୍କୁ ସ୍ମରଣ କରିବା ମାତ୍ରେ ସେହି ମାୟାନ୍ଧକାର ବିଦୁରିତ ହେଲା ଏବଂ ସେମାନଙ୍କୁ ବିପଦରୁ ଉଦ୍ଧାରିବା ନିମନ୍ତେ ଭଗବାନ୍ ବ୍ୟବସ୍ଥା କଲେ । ସେହିପରି ଆମ୍ଭେମାନେ ମାୟା ମୋହରେ ପଡ଼ି ବିପନ୍ନ ଅବସ୍ଥାରେ ତାହାଙ୍କର ଶରଣାପନ୍ନ ହେଲେ ସେ ଆମ୍ଭମାନଙ୍କୁ ବିପଦରୁ ଉଦ୍ଧାର କରିବେ । ଶ୍ରୀମଦ୍ ଭଗବଦ୍‌ଗୀତାରେ କଥିତ ହୋଇଅଛି—

"ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚ ।"

ସମସ୍ତ ଧର୍ମ ପରିତ୍ୟାଗ କରି ମୋହର ଶରଣାପନ୍ନ ହୁଅ । ମୁଁ ତୁମ୍ଭଙ୍କୁ ସମସ୍ତ ପାପରୁ ମୋକ୍ଷ କରିବି କୌଣସି ଶୋଚନା କରନାହିଁ ।

## ଏକାଦଶୋଽଧ୍ୟାୟଃ ।

ଏକାଦଶେ ତୁ ଦେବେଷୁ ଦୈତ୍ୟଘାତଷୁ ନାରଦଃ ।
ଦେବାନବାରୟଚ୍ଛୁକ୍ରୋ ମୃତାନ୍ ଦୈତ୍ୟାନଜୀବୟତ୍ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକଉବାଚ । ଅଥୋ ସୁରାଃ ପ୍ରତ୍ୟୁପଲବ୍ଧଚେତସଃ ପରସ୍ୟ ପୁଂସଃ ପରୟାନୁକମ୍ପୟା ।
ଜଘ୍ନୁର୍ଭୃଶଂ ଶକ୍ରସମୀରଣାଦୟସ୍ତାଂସ୍ତାନ୍ ରଣେ ଯୈରଭିସଂହତାଃ ପୁରା । ୧ ।
ବୈରୋଚନାୟ ସଂରବ୍ଧୋ ଭଗବାନ୍ ପାକଶାସନଃ ।
ଉଦୟଚ୍ଛଦ୍ୟଦା ବଜ୍ରଂ ପ୍ରଜା ହା ହେତଚୁକ୍ରୁଶୁଃ । ୨ ।
ବଜ୍ରପାଣିସ୍ତମାହେଦଂ ତିରସ୍କୃତ୍ୟ ପୁରସ୍ଥିତମ୍ ।
ମନସ୍ୱିନଂ ସୁସମ୍ପନ୍ନଂ ବିଚରନ୍ତଂ ମହାମୃଧେ । ୩ ।

---

### ଦେବର୍ଷି ନାରଦଙ୍କ କର୍ତ୍ତୃକ ସନ୍ଧିସ୍ଥାପନ ।

ଏକାଦଶ ଅଧ୍ୟାୟରେ ଅସୁରମାନଙ୍କ ଦ୍ୱାରା ଯୁଦ୍ଧରେ ଦେବତାମାନେ ପ୍ରାଣ ହରାନ୍ତେ ମହର୍ଷି ନାରଦ ଯୁଦ୍ଧ ସ୍ଥଳରେ ଉପସ୍ଥିତ ହୋଇ ଉଭୟଙ୍କ ମଧ୍ୟରେ ସନ୍ଧିସ୍ଥାପନ କରିବା ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ତହିଁଉତ୍ତାରୁ ଇନ୍ଦ୍ରାଦି ଦେବଗଣ ପରମ ପୁରୁଷ ବିଷ୍ଣୁଙ୍କକୃପାରୁ ପରିବର୍ଦ୍ଧିତହୋଇ ପ୍ରଥମେ ଯେଉଁ ଅସୁରମାନେ ଦେବତାମାନଙ୍କୁ ପରାଜୟ କରିଥିଲେ, ସେମାନଙ୍କୁ ଅତ୍ୟନ୍ତ ପ୍ରହାର କରିଥିଲେ । ୧।

ଭଗବାନ୍ ଇନ୍ଦ୍ର ଅତ୍ୟନ୍ତ କ୍ରୁଦ୍ଧ ହୋଇ ବଳୀ ରାଜାଙ୍କ ପ୍ରତି ବଜ୍ର ନିକ୍ଷେପ କରିବାକୁ ଉଦ୍ୟତ ହୁଅନ୍ତେ ତାହାଙ୍କର ପ୍ରଜାମାନେ ହାହାକାର କଲେ ।୨।

ମନସ୍ୱୀ ବଳିରାଜା ସୁସଜ୍ଜିତ ହୋଇ ମହାରଣରେ ବିଚରଣ କରୁଥିବା ବେଳେ ଅମରାଧିପତି ଇନ୍ଦ୍ର ସମ୍ମୁଖରେ ବଳିରାଜାଙ୍କୁ ଦେଖି ତିରସ୍କାର କରିବାକୁ ଲାଗିଲେ ।୩।

---

ଦେବଅସୁର ଘୋରରଣ,ନାରଦ କଲେନିବାରଣ । ଶୁକ୍ର ଦୈତ୍ୟଙ୍କୁ ଜିଆଇଲେ,ଏମନ୍ତେ ଏକାଦଶେବୋଲେ ॥

ଶ୍ରୀଶୁକଉବାଚ—
ହରିଙ୍କି ଦେଖି ଦେବଗଣେ
ପୁଣି ମିଳିଲେ ଘୋର ରଣେ
ଗୋବିନ୍ଦ ଅନୁକମ୍ପା ବଳେ
ସମରେ ରହିଲେ ନିଷ୍ଠଳେ
ଇନ୍ଦ୍ର ପବନ ଆଦି ବଳେ
ବେଗେ ମିଳିଲେ ଜଗପାଳେ
କ୍ଷରନ୍ତେ ଅସୁରଙ୍କ ଗାତ୍ରେ
ପ୍ରହାର କଲେ ନାନା ଶସ୍ତ୍ରେ ।୧।
ଦେବଙ୍କ ଶସ୍ତ୍ର ଘାତେ ଲେଖି
ଅସୁରେ ମଲେ କୋଟି କୋଟି
ଅସୁରଙ୍କର ଭଗ୍ନ ଦେଖି
ଇନ୍ଦ୍ର ଯେ ସମର ଉପେକ୍ଷି
ବଳି ସମୀପେ ବେଗେ ମିଳି
ବଜ୍ର ଉଞ୍ଚାଇ ମହାବଳୀ
ବୋଲଇ ଅତି କୋପମନେ
କର୍କ୍କଶ ପରୁଷ ବଚନେ
ତୁ ଯେ ବୋଲଇ ମହାବୀର
ସମ୍ଭାଳ ବଜ୍ରଘାତ ମୋର
ଶୁନ୍ୟେ ବୁଲଇ ଶତେବାର
ଦେଖି କମ୍ପିଲେ ସୁରନର
ଅସୁରେ ଦେଖି ହାହାନାଦେ
ବଳି ଗର୍ଜ୍ଜଇ ଘୋର ନାଦେ
ବଳି ବଦନ ଇନ୍ଦ୍ର ଶୁଣି
ଉଦ୍ଧତ ବଚନ ବୋଲଇ । ୨,୩

ନଟବନ୍ମୂଢ଼ମାୟାଭିର୍ମାୟେଶାନ୍ ନୋ ଜିଗୀଷସି ।
ଜିତ୍ୱା ବାଲାନ୍ ନିବଦ୍ଧାକ୍ଷାନ୍ ନଟୋ ହରତି ତଦ୍ଧନମ୍ ।୪।
ଆରୁରୁକ୍ଷନ୍ତି ମାୟାଭିରୁତ୍ସିସୃପ୍ସନ୍ତି ଯେ ଦିବମ୍ ।
ତାନ୍ ଦସ୍ୟୂନ୍ ବିଧୁନୋମ୍ୟଜ୍ଞାନ୍ ପୂର୍ବସ୍ମାଚ୍ଚ ପଦାଦଧଃ । ୫ ।
ସୋଽହଂ ଦୁର୍ମାୟିନସ୍ତେଽଦ୍ୟ ବଜ୍ରେଣ ଶତପର୍ବଣା ।
ଶିରୋ ହରିଷ୍ୟେ ମନ୍ଦାତ୍ମନ୍ ଘଟସ୍ୱ ଜ୍ଞାତିଭିଃ ସହ । ୬ ।

ଶ୍ରୀ ବଳିରୁବାଚ । ସଂଗ୍ରାମେ ବର୍ତ୍ତମାନାନାଂ କାଳଚୋଦିତକର୍ମ୍ମଣାମ୍ ।
କୀର୍ତ୍ତିର୍ଜୟୋଽଜୟୋ ମୃତ୍ୟୁଃ ସର୍ବେଷାଂ ସ୍ୟୁରନୁକ୍ରମାତ୍ ।୭।
ତଦିଦଂ କାଳରଶନଂ ଜଗତ୍ପଶ୍ୟନ୍ତି ସୂରୟଃ ।
ନ ହୃଷ୍ୟନ୍ତି ନ ଶୋଚନ୍ତି ତତ୍ର ଯୂୟମପଣ୍ଡିତାଃ । ୮ ।

---

ରେ ମୂଢ ! କପଟ ମୂର୍ତ୍ତି ଦସ୍ୟୁମାନେ ବାଳକମାନଙ୍କ ଚକ୍ଷୁକର୍ଣ୍ଣ ନିରୋଧକରି ସେମାନଙ୍କର ଧନ ଅପହରଣ କଲାପରି ନଟତୁଲ୍ୟ ମାୟା ଦ୍ୱାରା ଈଶ୍ୱର ଆମ୍ଭମାନଙ୍କୁ ଜୟ କରିବାକୁ ଇଚ୍ଛା କରୁଅଛୁ ? ।୪।

ଯେଉଁମାନେ ମାୟାଦ୍ୱାରା ସ୍ୱର୍ଗାରୋହଣ କରିବାକୁ ଇଚ୍ଛା କରନ୍ତି କିମ୍ବା ସ୍ୱର୍ଗକୁ ଉଲ୍ଲଘଂନ କରିବାକୁ ଇଚ୍ଛା କରନ୍ତି ମୁଁ ସେହି ଅଜ୍ଞ ଦସ୍ୟୁମାନଙ୍କୁ ସେମାନଙ୍କର ପୂର୍ବାଧିକୃତ ପଦରୁ ଅଧଃପତିତ କରିଥାଏ ।୫।

ରେ ଦୁର୍ବୁଦ୍ଧି ! ସେହି ସର୍ବଶକ୍ତି ସମ୍ପନ୍ନ ଇନ୍ଦ୍ର ମୁଁ ଦୁରନ୍ତମାୟା ବିସ୍ତାରକାରୀ ତୋହର ମସ୍ତକ ଶତପର୍ବ ଯୁକ୍ତ ବଜ୍ରଦ୍ୱାରା ଛେଦନ କରିବି । ତୋହର ବାନ୍ଧବମାନଙ୍କ ସହିତ ତୁ ଯୁଦ୍ଧ ସକାଶେ ପ୍ରସ୍ତୁତ ହୁଅ । ୬ ।

ଦାନବରାଜ ବଳି କହିଲେ, "କାଳ ପ୍ରେରିତ ସଂଗ୍ରାମରେ ବ୍ୟକ୍ତିମାନଙ୍କର ଜୟ ପରାଜୟ କୀର୍ତ୍ତି ବା ମୃତ୍ୟୁ ଘଟିଥାଏ" ।୭।

ଅତ ଏବ ପଣ୍ଡିତମାନେ ଏହି ଜଗତକୁ କାଳଯନ୍ତ୍ରିତ ବୋଲି ବିବେଚନା କରିଥାନ୍ତି ଏବଂ ସେଥିପାଇଁ ହର୍ଷ ବା ଶୋକ କରନ୍ତି ନାହିଁ, ଅତଏବ ତୁମ୍ଭେ ଏ ବିଷୟରେ ଅଜ୍ଞ ।୮।

---

ରେ ମୂଢ ମୋତେ ମାୟାକରି
ଜିଣିମା ପ୍ରାୟ ମନେ ଧରି
ନଟର ପ୍ରାୟ ମାୟା କରୁ
ନିଜ ସ୍ୱଭାବ ଦେଖାଇଲୁ
କୁହକେ ଯେସନ୍ତେ ନଟ ଜନ
ମାୟାରେ ହରେ ପ୍ରାଣିମନ ।୪।
ମାୟାର ବଳେ ସ୍ୱର୍ଗ ଜିଣି
ଇଚ୍ଛା କରନ୍ତି ଯେବା ପ୍ରାଣୀ
ତାହାଙ୍କ ଦର୍ପ ଗଞ୍ଜି ବେଗେ
ମୁହିଁ ପେଷଇ ଅଧୋଭାଗେ । ୫ ।

ଏବେ ଏ କାରପଣ ତୋର
କୁଳିଶ ଘାତ ସହ ମୋର
ଏ ବଜ୍ରେ ତୋର ଶିର ଛେଦି
ରଖିବି ଅମର ସମୃଦ୍ଧି
ଏବେ ଏ ବଜ୍ରଘାତ ସହ
ଜ୍ଞାତିଙ୍କ ତୁଲେ ଯୁଝ ହୁଅ
ଏମନ୍ତ ଇନ୍ଦ୍ରର ବଚନେ
ବଳି ବୋଲଇ କୋପମନେ ।୬।
ବଳିରୁବାଚ—
କାଳର ବଳେ ଏ ସଂସାରେ
ଯୁଦ୍ଧେ ମିଳନ୍ତି ଯେତେ ବୀରେ

ଜୟ ଅଜୟ ମୃତ୍ୟୁ ଯଶ
ଯେ ଅବା ରହେ ଅବଶେଷ
ଯୁଦ୍ଧେ ମାରଣ ଜୟ ଘୋଷି
ମରଣେ ସ୍ୱର୍ଗେ ଯେଣୁ ବସି
ଏଣୁ ଶାସ୍ତ୍ରେ ଯେତେ ଜନ
କାଳ ଗର୍ବସେ ନିବନ୍ଧନ
ପଣ୍ଡିତ ଜନ ଏହା ଜାଣି
ଧର୍ମ୍ମ ଅଧର୍ମ୍ମ ସରିମାଣି
ଶୋକ ହରଷ ପଥେ ମନ
କେବେହେଁ ନ କରନ୍ତି ଛଳ ।୭,୮

ନ ବୟଂ ମନ୍ୟମାନାନାମାତ୍ମାନଂ ତତ୍ର ସାଧନମ୍ ।
ଗିରେଂ ବଃ ସାଧୁ ଶୋଚ୍ୟାନାଂ ଗୃହ୍ଣୀମୋ ମର୍ମ୍ମତାଡ଼ନାଃ । ୯ ।

ଶ୍ରୀ ଶୁକ ଉବାଚ ।

ଇତ୍ୟାକ୍ଷିପ୍ୟ ବିଭୁଂ ବୀରୋ ନାରାଚୈର୍ବୀରମର୍ଦ୍ଦନଃ ।
ଆକର୍ଣ୍ଣପୂର୍ଣ୍ଣୈରହନଦାକ୍ଷେପୈରାହତଂ ପୁନଃ । ୧୦ ।
ଏବଂ ନିରାକୃତୋ ଦେବୋ ବୈରିଣା ତଥ୍ୟବାଦିନା ।
ନାମୃଷ୍ୟତ୍ତଦଧିକ୍ଷେପଂ ତୋତ୍ରାହତ ଇବ ଦ୍ୱିପଃ । ୧୧ ।
ପ୍ରାହରତ୍ କୁଳିଶଂ ତସ୍ମା ଅମୋଘଂ ପରମର୍ଦ୍ଦନଃ ।
ସଯାନୋ ନ୍ୟପତଦ୍‌ଭୂମୌ ଛିନ୍ନପକ୍ଷ ଇବାଚଳଃ । ୧୨ ।

---

ଯେଉଁମାନେ ନିଜକୁ ଜୟ ପରାଜୟର କାରଣ ବୋଲି ମନେ କରନ୍ତି ସେମାନେ ଶୋକର ପାତ୍ର, ତୁମ୍ଭର ମର୍ମ ପୀଡ଼ା ଦାୟକ ବାକ୍ୟକୁ ମୁଁ ଉତ୍ତମ ବୋଲି ଗ୍ରହଣ କରି ନ ପାରେ ।୯।

ଶ୍ରୀ ଶୁକଦେବ କହିଲେ :—

ଶତ୍ରୁ ଦମନକାରୀ ମହାବୀର ବଳି ଦେବରାଜ ଇନ୍ଦ୍ରଙ୍କୁ ଏହିପରି ତିରସ୍କାର କରି ବାକ୍ୟବାଣ ଦ୍ୱାରା ଆହତ କରନ୍ତେ ବ୍ୟଥିତ ଇନ୍ଦ୍ର ପୁନର୍ବାର ଆକର୍ଣ୍ଣ ବିସ୍ତାର କରି ବାଣ ପ୍ରହାର କରିଥିଲେ ।୧୦।

ସ୍ପଷ୍ଟବାଦୀ ଶତ୍ରୁ ବଳି ଏହିପରି ତିରସ୍କାର କରନ୍ତେ ଦେବରାଜ ଇନ୍ଦ୍ର ଅଙ୍କୁଶ ଦ୍ୱାରା ଆହତ ହସ୍ତୀତୁଲ୍ୟ ବ୍ୟଥିତ ହୋଇଥିଲେ ଏବଂ ଏହି ତିରସ୍କାର ସହ୍ୟ କରି ପାରିନଥିଲେ । ୧୧ ।

ଦେବରାଜ ଇନ୍ଦ୍ର ବଳିଙ୍କ ପ୍ରତି ଶତ୍ରୁ ସଂହାରକ ଅମୋଘ ବଜ୍ର ନିକ୍ଷେପ କରିଥିଲେ ତହୁଁ ବଳି ଛିନ୍ନପକ୍ଷ ପର୍ବତ ତୁଲ୍ୟ ବାହନ ସହିତ ଭୂତଳରେ ପତିତ ହୋଇଥିଲେ ।୧୨।

---

ଆମ୍ଭେ ସକଳ ଏହା ଜାଣି
ଆଗମ ନିଗମ ପ୍ରମାଣି
ଏଣୁ ଏ ତୋହର ବଚନେ
ମର୍ମ୍ମ ତାଡ଼ନ ଅନୁମାନେ
ଆମ୍ଭେତ କେବେହେଁ ନ ଗଣି
ତୁମ୍ଭର ମୂଢ଼ପଣ ଜାଣି । ୯ ।

ଶ୍ରୀଶୁକଉବାଚ—

ଏମନ୍ତେ ଇନ୍ଦ୍ର ଆଗେ କହି
ନିଜ ଧନୁରେ ଗୁଣ ଦେଇ
ଆକର୍ଣ୍ଣ ପୂରି ଦଶ ବାଣ
ବଳି ବିନ୍ଧିଲା ଗରୁ ଠାଣ । ୧୦ ।
ଇନ୍ଦ୍ର ଉପରେ ବାଣ ବାଜି
ତଳେ ପଡ଼ିଲା ବେଗେ ଖଜି
ଗଜ ଶରୀରେ ପୁଷ୍ପମାଳ
ବାଜି ପଡ଼ଇ ଯେସନେ ତଳ
ଇନ୍ଦ୍ର ଅମୋଘ ବଜ୍ର ଧରି
ଘୋର ହୁଁକାର ନାଦ କରି
ହୃଦୟେ ବାଜି ଶତକୋଟି
ତକ୍ଷଣେ ବକ୍ଷସ୍ଥଳେ ଫୁଟି
ବଳି ପଡ଼ିଲା ମହୀତଳେ
ସ୍ୱର୍ଗେ ଦେଖନ୍ତି ଦିଗପାଳେ
। ୧୧-୧୨

ସଖାୟଂ ପତିତଂ ଦୃଷ୍ଟ୍ୱା ଜମ୍ଭୋ ବଳସଖଃ ସୁହୃତ୍ ।
ଅଭ୍ୟୟାତ୍ ସୌହୃଦଂ ସଖ୍ୟୁର୍ହତସ୍ୟାପି ସମାଚରନ୍ । ୧୩ ।
ସ ସିଂହବାହ ଆସାଦ୍ୟ ଗଦାମୁଦ୍ୟମ୍ୟ ରଂହସା ।
ଜତ୍ରାବତାଡ଼ୟଚ୍ଛକ୍ରଂ ଗଜଞ୍ଚ ସୁମହାବଳଃ । ୧୪ ।
ଗଦାପ୍ରହାରବ୍ୟଥିତୋ ଭୃଶଂ ବିହ୍ୱଳିତୋ ଗଜଃ ।
ଜାନୁଭ୍ୟାଂ ଧରଣୀଂ ସ୍ପୃଷ୍ଟ୍ୱା କଶ୍ମଳଂ ପରମଂ ଯଯୌ । ୧୫ ।
ତତୋ ରଥୋ ମାତଲିନା ହରିଭିର୍ଦଶଶତୈର୍ବୃତଃ ।
ଆନୀତୋଦ୍ୱୀପମୁତ୍ସୃଜ୍ୟ ରଥମା ରୁରୁହେ ବିଭୁଃ । ୧୬ ।
ତସ୍ୟ ତତ୍ପୂଜୟନ୍ କର୍ମ୍ମ ଯନ୍ତୁର୍ଦାନବସତ୍ତମଃ ।
ଶୂଳେନ ଜ୍ୱଳତା ତଂ ତୁ ସ୍ମୟମାନୋ ହନନ୍ମୃଧେ । ୧୭ ।

---

ବଳିଙ୍କର ସଖା ଜମ୍ଭବଳିଙ୍କୁ ପତିତ ହେବାର ଦେଖି ବନ୍ଧୁପ୍ରତି ପ୍ରେମ ପ୍ରଦର୍ଶନ କରି ଯୁଦ୍ଧଲାଗି ଇନ୍ଦ୍ରଙ୍କ ନିକଟକୁ ଆଗମନ କଲେ ।୧୩।

ମହାବଳ ସିଂହବାହନ ଜମ୍ଭାସୁର ଇନ୍ଦ୍ରଙ୍କ ନିକଟକୁ ଆଗମନ କରି ବେଗରେ ଗଦା ଉତ୍ତୋଳନ ପୂର୍ବକ ଇନ୍ଦ୍ରଙ୍କୁ ଏବଂ ଗଜର ସ୍କନ୍ଧଦେଶରେ ପ୍ରହାର କରିଥିଲେ ।୧୪।

ଗଦା ପ୍ରହାରରେ ଅତ୍ୟନ୍ତ ବ୍ୟଥିତ ହୋଇ ଗଜେନ୍ଦ୍ର ଜାନୁଦ୍ୱାରା ଭୂମି ସ୍ପର୍ଶକରି ମୂର୍ଚ୍ଛିତ ପ୍ରାୟ ହୋଇଥିଲେ ।୧୫।

ତଦନନ୍ତର ମାତଳି ( ଇନ୍ଦ୍ରଙ୍କ ସାରଥି ) ସହସ୍ର ଅଶ୍ୱଯୁକ୍ତ ରଥ ଆଣି ପହଞ୍ଚାଇଥିଲେ, ତହୁଁ ଇନ୍ଦ୍ର ହସ୍ତୀ ପରିତ୍ୟାଗ କରି ରଥରେ ଆରୋହଣ କରିଥିଲେ ।୧୬।

ଦାନବଶ୍ରେଷ୍ଠ ଗର୍ବିତ ଜମ୍ଭ ମାତଳିର କାର୍ଯ୍ୟର ପ୍ରଶଂସା କରୁ କରୁ ରଣକ୍ଷେତ୍ରରେ ପ୍ରଜ୍ୱଳିତ ଶୂଳଦ୍ୱାରା ମାତଳିକୁ ପ୍ରହାର କରିଥିଲେ । ମାତଳି ସତ୍ତ୍ୱଗୁଣ ଅବଲମ୍ବନ କରି ସେହି ଶୂଳ ପ୍ରହାର ହେତୁ ଜାତ

---

ବଳିକୁ ଭୂମିଗତ ଦେଖି
ଜମ୍ଭ ମିଳିଲା ବେଗେ ଯାଇଁ
ସଖାର ଦେଖିଣ ମରଣ
ଆଚରିଲା କଲା ଘୋର ରଣ ।୧୩।
ସିଂହ ବାହନେ ବେଗେ ମିଳି
ହୁଁକାର ନାଦେ ଗଦା ତୋଳି
ଇନ୍ଦ୍ର ଉପରେ ପ୍ରହାରିଲା
ସେହି ଗଦା ହସ୍ତୀରେ ପଡ଼ିଲା

ଗଦା ପ୍ରହାରେ ଜ୍ଞାନ ହାରି
ଗଜ ପଡ଼ିଲା ବସୁନ୍ଧରୀ
ଗଜ ଚରଣ ମାଡ଼ି ପଡ଼ି
କରଇ ନାଦ ଘଡ଼ଘଡ଼ି
ପଡ଼ିଲା ଅଚେତନ ହୋଇ
ଦେଖି ମାତଳି ବେଗେ ଧାଇଁ
।୧୪-୧୫।
ବିମାନେ ସସ୍ର ଅଶ୍ୱ ଯୋଡ଼ି
ଇନ୍ଦ୍ର ନିକଟେ କରି ଯୋଡ଼

ବିମାନ ଦେଖି ସୁରପତି
ତକ୍ଷଣେ ତେଜି ନିଜହସ୍ତୀ
ବିମାନେ ବସି ବଜ୍ର ହସ୍ତେ
ସମରେ ରହିଲେ ଅଗ୍ରତେ
ଜମ୍ଭ ମାତଳି କର୍ମ୍ମ ଦେଖି
ଧନ୍ୟ ବଚନେ ପ୍ରଶଂସଇ
ଜଳନ୍ତାଶୂଳ ଧରି ବେଗେ
ପିଟିଲା ମାତଳିର ଅଙ୍ଗେ ।୧୬,୧୭

ସେହେ ରୁଜଂ ସୁଦୁର୍ମ୍ମର୍ଷାଂ ସତ୍ତ୍ୱମାଲମ୍ବ୍ୟମାତଳଃ ।
ଇନ୍ଦ୍ରୋ ଜମ୍ଭସ୍ୟ ସଂକ୍ରୁଦ୍ଧୋ ବଜ୍ରେଣାପାହରଚ୍ଛିରଃ ।୧୮।
ଜମ୍ଭଂ ଶ୍ରୁତ୍ୱା ହତଂ ତସ୍ୟ ଜ୍ଞାତୟୋ ନାରଦାଦୃଷେଃ ।
ନମୁଚିଶ୍ଚ ବଳଃ ପାକସ୍ତତ୍ରାପେତୁସ୍ତ୍ୱରାନ୍ୱିତାଃ ।୧୯।
ବଚୋଭିଃ ପରୁଷୈରିନ୍ଦ୍ରମର୍ଦ୍ଦୟନ୍ତୋଽସ୍ୟ ମର୍ମ୍ମସୁ ।
ଶରୈରବାକିରନ୍ମେଘାଃ ଧାରାଭିରିବ ପର୍ବତମ୍ ।୨୦ ।
ହରୀନ୍ ଦଶଶତାନ୍ୟାଜୌ ହର୍ଯ୍ୟଶ୍ୱସ୍ୟ ବଳଃ ଶରୈଃ ।
ତାବଦ୍ଭିରର୍ଦ୍ଦୟାମାସ ଯୁଗପଲ୍ଲଘୁହସ୍ତବାନ୍ ।୨୧ ।
ଶତାଭ୍ୟାଂ ମାତଳିଂ ପାକୋ ରଥଂ ସାବୟବଂ ପୃଥକ୍ ।
ସକୃତ୍ସନ୍ଧାନମୋକ୍ଷେଣ ତଦଦ୍ଭୁତମଭୂଦ୍ରଣେ ।୨୨ ।

---

ରୁଃସହ ବେଦନା ସହ୍ୟକରିଥିଲେ । ଇନ୍ଦ୍ର କ୍ରୁଦ୍ଧ ହୋଇ ଜମ୍ଭାସୁରର ମସ୍ତକ ଛେଦନ କରିଥିଲେ ।୧୭,୧୮

ହେ ରାଜନ୍ ! ଜମ୍ଭାସୁର ନିହତ ହେବାର ସମ୍ବାଦ ତାହାର ଜ୍ଞାତି ନମୁଚି, ବଳ ଓ ପାକ ପ୍ରଭୃତି ନାରଦଙ୍କ ଠାରୁ ଶ୍ରବଣ କରି ତ୍ୱରିତ ସେଠାକୁ ଆଗମନ କରିଥିଲେ ।୧୯।

ସେମାନେ ନାନାପ୍ରକାର ପରୁଷ ବାକ୍ୟଦ୍ୱାରା ଇନ୍ଦ୍ରଙ୍କର ମର୍ମଭେଦ କରି ମେଘ ଧାରା ବାରୁ ଦ୍ୱାରା ପର୍ବତ ଆଚ୍ଛନ୍ନ କଲାପରି ଶରବର୍ଷଣ କରି ଇନ୍ଦ୍ରଙ୍କୁ ଆଚ୍ଛାଦନ କରିଥିଲେ ।୨୦।

ଅତ୍ୟନ୍ତ ଲଘୁହସ୍ତ ସମ୍ପନ୍ନ ବା କ୍ଷିପ୍ର ପରାକ୍ରମୀ ବଳ ନାମକ ଅସୁର ଏକ ସମୟରେ ଯୁଦ୍ଧରେ ସହସ୍ର ଶରଦ୍ୱାରା ଇନ୍ଦ୍ରଙ୍କର ସହସ୍ର ଅଶ୍ୱଙ୍କୁ ପୀଡ଼ିତ କରିଥିଲା ।୨୧।

ପାକ ନାମକ ଅସୁର ଦୁଇଟି ଶର ଦ୍ୱାରା ମାତଳି ଏବଂ ଅବୟବ ସମେତ ରଥକୁ ବଦ୍ଧ କରିଥିଲା । ଏକ ସମୟରେ ଉପରେ ଓ କ୍ରମରେ ପୃଥକ୍ ପୃଥକ୍ ଶର ନିକ୍ଷେପ ହେତୁ ସଂଗ୍ରାମ ଅଦ୍ଭୁତ ହୋଇଥିଲା ।୨୨

---

ସେ ଶୂଳ ପ୍ରହାର ମାତଳି
ସହେ ସ୍ୱଭାବେ ମହା-ବଳି
ଇନ୍ଦ୍ର ଧାଇଁଲେ ଦେଖି ବେଗେ
ବଜ୍ର ପ୍ରହାରେ ଜମ୍ଭ ଅଙ୍ଗେ ।୧୮।
ଜମ୍ଭ ମରଣ ବଜ୍ରଘାତେ
ଦେଖି ତାହାର ଜ୍ଞାତି ଯେତେ
ନାରଦ ମୁଖୁଁ ବାକ୍ୟ ଶୁଣି
ଜମ୍ଭ ଅଜୟ ନ ପ୍ରମାଣି
ନମୁଚି ବଳ ପାକ ସଙ୍ଗେ
ଧାଇଁଲେ ଶସ୍ତ୍ର ଘେନି ରଙ୍ଗେ

ଇନ୍ଦ୍ର ନିକଟେ ବେଗେ ମିଳି
ରୁକ୍ଷିତବାକ୍ୟେ ଦେଇ ଗାଳି
ଶସ୍ତ୍ର ବରଷନ୍ତି ଗହଳେ
ଯେସନେ ଆକାଶ ମଣ୍ଡଳେ
ପବନ ବଳେ ମେଘମାନେ
ଯେସନେ ବରଷନ୍ତି ଜଳେ
ଗର୍ଜ୍ଜନ କରି ମେଘ ପନ୍ତି
ପର୍ବତ ଶିଖେ ବରଷନ୍ତି ।୧୯,୨୦
ବଳ ସହସ୍ରେ ଶର ସନ୍ଧି
ଅଶ୍ୱଙ୍କ ଉପରକୁ ବିନ୍ଧି

ଦଶ ନାରାଚେ ଦେବରାଜ
ଛେଦିଲେ ସହସ୍ର ନାରାଚ
ଶର ସନ୍ଧାନ ଭଗ୍ନ ଗଲା
ତା ଦେଖି ପାକ କୋପ କଲା
ଧନୁ ଆକର୍ଷି କର୍ଣ୍ଣ ମୂଳେ
ବେନି ନାରାଚ କୋପାନଳେ
ମାତଳି ଉପରେ ପ୍ରହାରି
ଅଦ୍ଭୁତ ଘୋରନାଦକରି ।୨୧,୨୨

ନମୁଚି ପଞ୍ଚଦଶଭିଃ ସ୍ୱର୍ଣ୍ଣପୁଙ୍ଖୈର୍ମହେଷୁଭିଃ ।
ଆହତ୍ୟ ବ୍ୟନଦତ୍ ସଂଖ୍ୟେ ସତୋୟ ଇବ ତୋୟଦଃ । ୨୩ ।
ସର୍ବତଃ ଶରକୂଟେନ ଶକ୍ରଂ ସରଥସାରଥିମ୍ ।
ଛାଦୟାମାସୁରସୁରାଃ ପ୍ରାବୃଟ୍ ସୂର୍ଯ୍ୟମିବାମ୍ବୁଦାଃ । ୨୪ ।
ଅଲକ୍ଷୟନ୍ତସ୍ତମତୀବ ବିହ୍ୱଳା ବିଚୁକ୍ରୁଶୁର୍ଦେବଗଣାଃ ସହାନୁଗାଃ ।
ଅନାୟକାଃ ଶତ୍ରୁବଳେ ବିସର୍ଜିତା ବଣିକ୍‌ପଥା ଭିନ୍ନନବୋ ଯଥାର୍ଣ୍ଣବେ । ୨୫ ।
ତତସ୍ତୁରାଷାଡ଼ିଷୁ ବଦ୍ଧପଞ୍ଜରାଦ୍ୱିନିର୍ଗତଃ ସାଶ୍ୱରଥଧ୍ୱଜାଗ୍ରଣୀଃ ।
ବଭୌ ଦିଶଃ ଖଂ ପୃଥିବୀଞ୍ଚ ରୋଚୟନ୍ ସ୍ୱତେଜସା ସୂର୍ଯ୍ୟ ଇବ କ୍ଷପାତ୍ୟୟେ । ୨୬
ନିରୀକ୍ଷ୍ୟ ପୃତନାଂ ଦେବଃ ପରୈରଭ୍ୟର୍ଦିତାଂ ରଣେ ।
ଉଦୟଚ୍ଛଦ୍ରିପୁଂ ହନ୍ତୁଂ ବଜ୍ରଂ ବଜ୍ରଧରୋ ରୁଷା । ୨୭ ।

---

ଯୁଦ୍ଧ କ୍ଷେତ୍ରରେ ନମୁଚି ସୁବର୍ଣ୍ଣ ମୟ ଫଳକ ବିଶିଷ୍ଟ ପଞ୍ଚଦଶ ମହାବାଣ ଦ୍ୱାରା ଇନ୍ଦ୍ରଙ୍କୁ ବିଦ୍ଧ କରି ସଜଳ ମେଘ ତୁଲ୍ୟ ସିଂହନାଦ କରିଥିଲେ ।୨୩।

ମେଘ ସମୂହ ଯେପରି ବର୍ଷାକାଳରେ ସୂର୍ଯ୍ୟଙ୍କୁ ଆଚ୍ଛାଦନ କରନ୍ତି, ସେହିପରି ଅସୁରମାନେ ସର୍ବଦିଗରୁ ଶର ବର୍ଷଣ କରି ଇନ୍ଦ୍ରଙ୍କୁ ଓ ତାହାଙ୍କର ରଥ ଓ ସାରଥିଙ୍କୁ ଆଚ୍ଛାଦନ କରିଥିଲେ ।୨୪।

ସମୁଦ୍ର ମଧ୍ୟରେ ତରଣୀ ଭଗ୍ନ ହେଲେ ବଣିକ ଯେପରି ଆଶ୍ରୟହୀନ ହୋଇଥାଏ, ସେହିପରି ସାନୁଚର ଦେବତାମାନେ ଇନ୍ଦ୍ରଙ୍କୁ ନ ଦେଖି ଅନାଥ ହୋଇଥିଲେ ଓ ଶତ୍ରୁ ହସ୍ତରେ ନିପତିତ ହୋଇ ଅତ୍ୟନ୍ତ ବ୍ୟାକୁଳ ଭାବରେ ଆର୍ତ୍ତନାଦ କରିଥିଲେ ।୨୫।

ତଦନନ୍ତର ସାରଥି, ଅଶ୍ୱ ଓ ରଥାଦି ସହିତ ଇନ୍ଦ୍ର ଅସୁରମାନଙ୍କକୃତ ଶରବଦ୍ଧ ପଞ୍ଜରରୁ ସ୍ୱତେଜରେ ନିର୍ଗତ ହୋଇ ନିଶାବସାନରେ ସୂର୍ଯ୍ୟତୁଲ୍ୟ ନିଜର ପ୍ରଭାବ ଦ୍ୱାରା ଆକାଶ, ଦିକ୍ ସମୂହ ଏବଂ ପୃଥିବୀକୁ ପ୍ରକାଶ କରି ଶୋଭା ପାଇଥିଲେ ।୨୬।

ହେ ରାଜନ୍ ! ବଜ୍ରଧାରୀ ଇନ୍ଦ୍ର ଶତ୍ରୁ କର୍ତ୍ତୃକ ନିଜର ସୈନ୍ୟମାନଙ୍କୁ ଅତିଶୟ ପୀଡ଼ିତ ଦେଖି କ୍ରୋଧରେ ଶତ୍ରୁକୁଳ ବିନାଶ କରିବା ନିମିତ୍ତ ବଜ୍ରଧାରଣ କରିଥିଲେ ।୨୭।

---

ନମୁଚି କରି ମହାରୋଷ
ବାଣ ବିନ୍ଧିଲା ପଞ୍ଚଦଶ
ସୁବର୍ଣ୍ଣ ପକ୍ଷ ଲୋହ ମଖେ
ଇନ୍ଦ୍ର ତା ଦୂରେ ଥାଇଁ ଦେଖେ
ବିନ୍ଧି ଗର୍ଜଇ ଘୋରରଣେ
ଜଳଦ ଅମ୍ବରେ ଯେସନେ ।୨୩।
ଏମନ୍ତେ ଅସୁରଙ୍କ ଶସ୍ତ୍ରେ
ଆଚ୍ଛାଦେ ଦେବରାଜ ରଥେ

ବରଷାକାଳ ରବି ଯେହ୍ନେ
ଜୀମୂତ ଆଚ୍ଛାଦେ ଗଗନେ ।୨୪।
ଅସୁର ରଣରଙ୍ଗ ଦେଖି
ଦେବେ ହୋଇଲେ ମନେ ଦୁଃଖୀ
ଅନାଥ ହୋଇଲେ ଶତ୍ରୁ ଡରେ
ବଣିକେ ଯେହ୍ନେ ସିନ୍ଧୁ ନୀରେ
ଅସୁରବଳ ମଧ୍ୟଗତେ
ଦେବେ ପଡ଼ିଲେ ଅନାଥତେ ।୨୫

ପଞ୍ଜରେ ଯେହ୍ନେ ପକ୍ଷିଗଣେ
ଇନ୍ଦ୍ର ଯେ ଥିଲେ ଘୋରରଣେ
ଆବୋରି ଥିଲେ ଯେ ଦାନବ
ଏମନ୍ତ ସମୟେ ବାସବ
ବାହାର ହେଲେ ଦିବ୍ୟ ରଥେ
ରବି ଯେସନେ ରାହୁ ଅନ୍ତେ ।୨୬
ଅସୁରବାଣେ ଦେବେ ଦୁଃଖୀ
ସଂଭ୍ରମେ ଇନ୍ଦ୍ର ତାହା ଦେଖି

ସ ତେନୈବାଷ୍ଟଧାରେଣ ଶିରସି ବଳପାକୟୋଃ ।
ଜ୍ଞାତୀନାଂ ପଶ୍ୟତାଂ ରାଜନ୍ ଜହାର ଜନୟନ୍ ଭୟମ୍ । ୨୮ ।
ନମୁଚିସ୍ତଦ୍ବଧଂ ଦୃଷ୍ଟ୍ୱା ଶୋକାମର୍ଷରୁଷାନ୍ୱିତଃ ।
ଜିଘାଂସୁରିନ୍ଦ୍ରଂ ନୃପତେ ଚକାର ପରମୋଦ୍ୟମମ୍ । ୨୯ ।
ଅଶ୍ମସାରମୟଂ ଶୂଳଂ ଘଣ୍ଟାବଦ୍ଧେମଭୂଷଣମ୍ ।
ପ୍ରଗୃହ୍ୟାଭ୍ୟଦ୍ରବତ୍କ୍ରୁଦ୍ଧୋ ହତୋଽସୀତି ବିତର୍ଜୟନ୍ ।
ପ୍ରାହିଣୋଦ୍ଦେବରାଜାୟ ନିନଦନ୍ମୃଗରାଡିବ । ୩୦ ।
ତଦାପତଦ୍ଗଗନତଳେ ମହାଜବଂ ବିଚିଚ୍ଛିଦେ ହରିରିଷୁଭିଃ ସହସ୍ରଧା ।
ତମାହନନ୍ନୃପ କୁଳିଶେନ କନ୍ଧରେ ରୁଷାନ୍ୱିତସ୍ତ୍ରିଦଶପତିଃ ଶିରୋ ହରନ୍ । ୩୧ ।

---

ହେ ରାଜନ୍ ! ଦେବରାଜ ଇନ୍ଦ୍ର ଅଷ୍ଟଧାର ବଜ୍ର ଧାରଣ କରି ବଳ ଓ ପାକ ନାମକ ଅସୁର ଦ୍ୱୟଙ୍କ ମସ୍ତକ ଛେଦନ କରିଥିଲେ । ତାହା ଦେଖି ବଳ ଓ ପାକ ନାମକ ଅସୁରଙ୍କ ଜ୍ଞାତିବର୍ଗଙ୍କ ହୃଦୟରେ ଭୀତି ଜନ୍ମିଥିଲା ।୨୮।

ହେ ରାଜନ୍ ! ପାକ ଓ ବଳଙ୍କର ବିନାଶ ଦର୍ଶନ କରି ଶୋକ, ଈର୍ଷା ଓ କ୍ରୋଧରେ ପରିପୂର୍ଣ୍ଣ ହୋଇ ନମୁଚି ଇନ୍ଦ୍ରଙ୍କୁ ବଧ କରିବାକୁ ଉଦ୍ୟମ କରିଥିଲେ । ୨୯ ।

ତଦନନ୍ତର ଲୌହମୟ ଘଣ୍ଟାଯୁକ୍ତ, ସ୍ୱର୍ଣ୍ଣ ଭୂଷିତ ଶୂଳାସ୍ତ୍ର ଧାରଣ କରି "ନିହତ ହେଲୁ" ବୋଲି କହି ଇନ୍ଦ୍ରଙ୍କୁ ତିରସ୍କାର କରି କ୍ରୁଦ୍ଧ ସିଂହ ତୁଲ୍ୟ ଗର୍ଜ୍ଜନ କରି ଇନ୍ଦ୍ରଙ୍କ ଉପରକୁ ତାହା ନିକ୍ଷେପ କରିଥିଲେ ।୩୦।

ଦେବରାଜ ଇନ୍ଦ୍ର ଆକାଶ ତଳେ ସମାଗତ ମହାବେଗଶାଳୀ ଏହି ଶୂଳାସ୍ତ୍ରକୁ ସହସ୍ର ଭାଗରେ ଖଣ୍ଡ ଖଣ୍ଡ କରି ପକାଇଥିଲେ । ହେ ରାଜନ୍ ! ସେତେବେଳେ ତ୍ରିଦଶାଧିପତି କ୍ରୁଦ୍ଧ ହୋଇ ସେହି ଅସୁରର ମସ୍ତକ ଛେଦନ କରିବା ନିମିତ୍ତ ବଜ୍ରଦ୍ୱାରା ତାହାର ଗ୍ରୀବା ଦେଶରେ ପ୍ରହାର କରିଥିଲେ ।୩୧।

---

ପୁଣି ଧଇଲା ରଣ ମଧ୍ୟେ
ବଜ୍ର ଉଞ୍ଚାଇ ଘୋର ନାଦେ
ସେ ଅଷ୍ଟଧାର ବଜ୍ରଘାତେ
ଜୀମୂତେ ଯେହ୍ନେ ଘୋର ବାତେ
ବଳ ପାକର ଶିରହାଣି
ଘୋର ଶବଦେ ବଜ୍ରପାଣି
ଦେଖିଣ ତାର ବନ୍ଧୁବଳ
ଭୟକେ ପାଡ଼ନ୍ତି ଚହଳ ।୨୭,୨୮

ନମୁଚି ତାଙ୍କ ବଧ ଦେଖି
ଦଣ୍ଡେ ହୋଇଲା ଅଶ୍ରୁମୁଖି
ଶୋକସାଗରେ ସେ ବୁଡ଼ିଲା
ପୁଣି କ୍ଷଣକେ କୋପ କଲା
ଲୋହ ନିର୍ମିତ ଶୂଳ କରେ
ଘେନି ଧାଇଁଲା ଅତି ଖରେ
ଯେ ଶୂଳ ସୁବର୍ଣ୍ଣେ ବିରାଜେ
ଝୁଲନ୍ତେ ଘଣ୍ଟାରବ ବାଜେ

ସେ ଶୂଳ ଘେନି ଅତି ବେଗେ
ମାଇଲା ସୁରନାଥ ଆଗେ
ଇନ୍ଦ୍ର ଉପରେ ପ୍ରହାରିଲା
ନିର୍ଭୟେ ସିଂହନାଦ କଲା ।୨୯,୩୦
ଶୂଳ ଆସନ୍ତେ ଶୂନ୍ୟ ପଥେ
ଇନ୍ଦ୍ରହିଁ ଧନୁ ଧରି ହସ୍ତେ
ବାଣେ ଛେଦିଲା ଶତେ ଖଣ୍ଡେ
ପାଷାଣ ଯେହ୍ନେ ଛଭୁ ପିଣ୍ଡେ

ନ ତସ୍ୟ ହି ତ୍ୱଚମପି ବଜ୍ର ଊର୍ଜିତୋ ବିଭେଦ ଯଃ ସୁରପତିନୌଜସେରିତଃ ।
ତଦଦ୍ଭୁତଂ ପରମତିବୀର୍ଯ୍ୟବୃତ୍ରଭିତ୍ତିରସ୍କୃତୋ ନମୁଚିଶିରୋଧରତ୍ୱଚା ।୩୨।

ତସ୍ମାଦିନ୍ଦ୍ରୋଽବିଭେଚ୍ଛତ୍ରୋର୍ବଜ୍ରଃ ପ୍ରତିହତୋ ଯତଃ ।
କିମିଦଂ ଦୈବଯୋଗେନ ଭୂତଂ ଲୋକବିମୋହନମ୍ । ୩୩ ।

ଯେନ ମେ ପୂର୍ବମଦ୍ରୀଣାଂ ପକ୍ଷଚ୍ଛେଦଃ ପ୍ରଜାତ୍ୟୟେ ।
କୃତୋ ନିବିଶତାଂ ଭାରୈଃ ପତତ୍ରୈଃ ପତତାଂ ଭୁବି । ୩୪ ।

ତପଃସାରମୟଂ ତ୍ୱାଷ୍ଟ୍ରଂ ବୃତ୍ରୋ ଯେନ ବିପାଟିତଃ ।
ଅନ୍ୟେଽପି ବଲୋପେତାଃ ସର୍ବାସ୍ତ୍ରୈରକ୍ଷତତ୍ୱଚଃ । ୩୫ ।

ସୋଽୟଂ ପ୍ରତିହତୋ ବଜ୍ରୋ ମୟା ମୁକ୍ତୋଽସୁରେଽଲ୍ପକେ ।
ନାହଂ ତଦାଦଦେ ଦଣ୍ଡଂ ବ୍ରହ୍ମତେଜୋଽପ୍ୟକାରଣମ୍ । ୩୬ ।

---

ତଦନନ୍ତର ଦେବରାଜ ଇନ୍ଦ୍ର ଅତ୍ୟନ୍ତ ବେଗବାନ୍ ଓ ଅତିଶୟ ପ୍ରଭାବ ସମ୍ପନ୍ନ ବଜ୍ର ନିକ୍ଷେପ କଲେ ମଧ୍ୟ ତାହା ନମୁଚିଙ୍କର ଚର୍ମଭେଦ କଲା ନାହିଁ । ଯେଉଁ ବଜ୍ର ଅତ୍ୟନ୍ତ ବୀର୍ଯ୍ୟଶାଳୀ ବୃତ୍ରାସୁରକୁ ବଧ କରିଥିଲା, ତାହା ନମୁଚିଙ୍କର ଚର୍ମ ବିଦାରଣ ନ କରିବା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ।୩୨।

ତାହାଙ୍କର ବଜ୍ର ଯେଉଁ ଶତ୍ରୁଠାରେ ବ୍ୟର୍ଥ ହୋଇ ଫେରିଆସେ ସେହି ଶତ୍ରୁକୁ ଇନ୍ଦ୍ର ଅତ୍ୟନ୍ତ ଭୟ କରିଥାନ୍ତି । ଇନ୍ଦ୍ର ଚିନ୍ତା କଲେ ଯେ ଦୈବ କି ଆଶ୍ଚର୍ଯ୍ୟ ବ୍ୟାପାର ଘଟାଇଲା ।୩୩।

ପ୍ରଜାମାନଙ୍କର ବିନାଶ ଉପସ୍ଥିତ ହୁଅନ୍ତେ ଯେଉଁ ବଜ୍ରଦ୍ୱାରା ମୁଁ ପୂର୍ବେ ଅତ୍ୟନ୍ତ ଭାର ବିଶିଷ୍ଟ ପକ୍ଷଦ୍ୱାରା ଗମନଶୀଳ ଭୂମିରେ ପତିତ ପର୍ବତ ସମୂହର ପକ୍ଷ ଛେଦନ କରିଥିଲି ( ସେ ଆଜି ବ୍ୟର୍ଥ ହେଲା ) । ୩୪ ।

ଯେଉଁ ବଜ୍ରଦ୍ୱାରା ତ୍ୱଷ୍ଟାଙ୍କର ତପୋବୀର୍ଯ୍ୟର ସାର ସ୍ୱରୂପ ବୃତ୍ରାସୁରକୁ ବିଦୀର୍ଣ୍ଣ କରିଥିଲି ଏବଂ ଯେଉଁ ବଜ୍ରଦ୍ୱାରା, ଅନ୍ୟାନ୍ୟ ଅସ୍ତ୍ରଦ୍ୱାରା ଅଭେଦ୍ୟ ଅନ୍ୟାନ୍ୟ ବୀରଗଣଙ୍କୁ ବିଦାରଣ କରିଥିଲି (ସେ ଆଜି ବ୍ୟର୍ଥ ହେଲା ) ।୩୫।

ମୋର ବଜ୍ର ଗୋଟାଏ ତୁଚ୍ଛ ଅସୁରକୁ ବିନାଶ କରି ପାରିଲା ନାହିଁ । ଦଧୀଚିଙ୍କର ବ୍ରହ୍ମତେଜ ବ୍ୟର୍ଥ ହେଲା । ସୁତରାଂ ଖଣ୍ଡେ କାଷ୍ଠଦଣ୍ଡ ତୁଲ୍ୟ ଏହି ବଜ୍ରକୁ ଆଉ ଧାରଣ କରିବି ନାହିଁ ।୩୬।

---

ବଜ୍ର ଫୋପିଲା ପୁରନ୍ଦର
ପଡ଼ିଲା ନମୁଚି ଉପର
ବଜ୍ର ପ୍ରହାର ନ କାଟିଲା
ଜଙ୍ଘରୁ ଚର୍ମ ନ ଛେଦିଲା

ତା ଦେଖି ଇନ୍ଦ୍ର ବିସ୍ମରଇ
ଅଦ୍ଭୁତ ଦେଖିଲିତ ନାହିଁ
ବଜ୍ରେ ଏ ବର୍ତ୍ତିଲା କେମନ୍ତେ
ଏତ ସଂଶୟ ମୋର ଚିତ୍ତେ

ଏ ଶସ୍ତ୍ର ଅସୁରଙ୍କୁ ରଣେ
ପ୍ରହାର କଲି ଅକାରଣେ ।୩୨-୩୬

ଇତ ଶକ୍ରଂ ବଷୀଦନ୍ତମାହ ବାଗଶରୀରଣୀ ।
ନାୟଂ ଶୁଷ୍କୈରଥୋ ନାର୍ଦ୍ରୈର୍ବଧମର୍ହତ ଦାନବଃ । ୩୭ ।
ମୟାସ୍ମୈ ଯଦ୍‌ବରୋ ଦତ୍ତୋ ମୃତ୍ୟୁର୍ନୈବାର୍ଦ୍ରଶୁଷ୍କୟୋଃ ।
ଅତୋଽନ୍ୟଶ୍ଚିନ୍ତନୀୟସ୍ତ ଉପାୟୋ ମଘବନ୍ ରପୋଃ । ୩୮ ।
ତାଂ ଦୈବୀଂ ଗିରମାକର୍ଣ୍ଣ୍ୟ ମଘବାନ୍ ସୁସମାହତଃ ।
ଧ୍ୟାୟନ୍ ଫେନମଥାପଶ୍ୟଦୁପାୟମୁଭୟାତ୍ମକମ୍ । ୩୯ ।
ନ ଶୁଷ୍କେଣ ନ ଚାର୍ଦ୍ରେଣ ଜହାର ନମୁଚେଃ ଶିରଃ ।
ତଂ ତୁଷ୍ଟବୁର୍ମୁନଗଣା ମାଲ୍ୟୈଶ୍ଚାବାକରନ୍ ବଭୁମ୍ । ୪୦ ।

---

ଏହାପରେ ବଷାଦଗ୍ରସ୍ତ ଇନ୍ଦ୍ରଙ୍କୁ ଦୈବବାଣୀ କହାଲ, ହେ ଇନ୍ଦ୍ର ! ଏ ଦାନବ ଶୁଷ୍କ ବା ଆର୍ଦ୍ର କୌଣସି ଅସ୍ତ୍ରରେ ନହତ ହେବ ନାହିଁ ।୩୭।

ଯେହେତୁ ମୁଁ ଏହ ଅସୁରକୁ ବର ଦେଇଅଛି ଯେ ଆର୍ଦ୍ର ବା ଶୁଷ୍କ ଅସ୍ତ୍ରଦ୍ୱାରା ଏହାର ମୃତ୍ୟୁ ଘଟିବ ନାହିଁ, ସୁତରାଂ ହେ ଇନ୍ଦ୍ର ! ଏହାର ମୃତ୍ୟୁ ପାଇଁ ତୁମ୍ଭେ ଅନ୍ୟ ଉପାୟ ଚିନ୍ତା କର ।୩୮।

ଇନ୍ଦ୍ର ସେହ ଦୈବବାଣୀ ଶ୍ରବଣ କରି ସଯତ ଚିତ୍ତରେ ଚିନ୍ତାକରି ଆର୍ଦ୍ର ଓ ଶୁଷ୍କ ଏହ ଉଭୟାତ୍ମକ ଫେନ ସ୍ଥିର କରିଥିଲେ ।୩୯।

ଦେବରାଜ ଇନ୍ଦ୍ର ନୁହେଁ ଶୁଷ୍କ, ନୁହେଁ ଆର୍ଦ୍ର ଏପରି ଫେନାସ୍ତ୍ରକୁ ନକ୍ଷେପ କରି ନମୁଚିର ମସ୍ତକ ଛେଦନ କରିଥିଲେ । ତହୁଁ ମୁନମାନେ ଇନ୍ଦ୍ରଙ୍କୁ ସ୍ତବ କରିବାକୁ ଲାଗିଲେ ଏବଂ ଇନ୍ଦ୍ରଙ୍କ ଉପରେ ପୁଷ୍ପବୃଷ୍ଟି କରିଥିଲେ ।୪୦।

---

ଏମନ୍ତେ ରଣମଧ୍ୟଗତେ
ଶବଦ ଶୁଭେ ଶୂନ୍ୟପଥେ
ଶୁଣ ହେ ଶକ୍ର ଏକଚିତ୍ତେ
ନ ଭେଦେ ଶୁଷ୍କ ଆର୍ଦ୍ର ଅସ୍ତ୍ରେ
ପୂର୍ବେ ଏ କଲା ତପ ଘୋର
ଏହାକୁ ଦେଇଅଛି ବର
ଅମର ହୋଇଲା ଶରୀର
ଅଚ୍ଛେଦ୍ୟ ଯୁଦ୍ଧେ ମହାସୁର
ଶୁଷ୍କ ଆର୍ଦ୍ରକ ଅସ୍ତ୍ର-ଶସ୍ତ୍ରେ
ଯେଣୁ ନ ଭେଦେ ଏହା ଗାତ୍ରେ

ତୁ ଏବେ ଶୁଣ ମଘବାନ
ଏହା ମରଣ କରଧ୍ୟାନ
ଯେ ତୋତେ ଦିଶେ ଧ୍ୟାନ ମାର୍ଗେ
ତେଣେ ଜୀବନ ହର ବେଗେ
। ୩୭-୩୮ ।

ଏମନ୍ତେ ଦୈବ ବାଣୀଶୁଣି
ବାସବ ଧ୍ୟାନେ ମନେ ଗୁଣି
ଧ୍ୟାନେ ଦେଖଇ ଜଳ-ଫେନ
ତା ଦେଖି ବଶ୍ୱରଇ ମନ
ଏ ଆର୍ଦ୍ର-ଶୁଷ୍କ ନ ବୋଲାଏ
ଏଣେ ନାଶିବ ଏହା କାୟେ

ଏମନ୍ତ ମନେ ବଚାରନ୍ତେ
ଫେନ ମିଳଲା ଆସି ହସ୍ତେ
ନମୁଚ ଦେହେ ପ୍ରହାରଲା
ତକ୍ଷଣେ ଶିର ତା ଛେଦଲା
ସମରେ ନମୁଚ ମରଣେ
ମିଳଲେ ଋଷି-ଦେବଗଣେ
ଇନ୍ଦ୍ର ଉପରେ ପୁଷ୍ପବୃଷ୍ଟି
କରନ୍ତି ଚିତ୍ତେ ହୋଇ ତୁଷ୍ଟି
। ୩୯,୪୦ ।

ଗନ୍ଧର୍ବମୁଖ୍ୟୌ ଜଗତୁର୍ବିଶ୍ୱାବସୁପରାବସୂ ।
ଦେବଦୁନ୍ଦୁଭୟୋ ନେଦୁର୍ନର୍ତ୍ତକ୍ୟୋ ନନୃତୁର୍ମୁଦା । ୪୧ ।
ଅନ୍ୟେଽପ୍ୟେବଂ ପ୍ରତଦ୍ୱନ୍ଦ୍ୱାନ୍ ବାୟ୍ୱଗ୍ନି ବରୁଣାଦୟଃ ।
ସୁଦୟାମାସୁରସୁରାନ୍ ମୃଗାନ୍ କେଶରଣୋ ଯଥା । ୪୨ ।
ବ୍ରହ୍ମଣା ପ୍ରେଷିତୋ ଦେବାନ୍ ଦେବର୍ଷିର୍ନାରଦୋ ନୃପ ।
ବାରୟାମାସ ବିବୁଧାନ୍ ଦୃଷ୍ଟ୍ୱା ଦାନବସଂକ୍ଷୟମ୍ । ୪୩ ।
ଶ୍ରୀ ନାରଦ ଉବାଚ ।
ଭବଦ୍ଭିରମୃତଂ ପ୍ରାପ୍ତଂ ନାରାୟଣ ଭୁଜାଶ୍ରୟୈଃ ।
ଶ୍ରିୟା ସମେଧିତାଃ ସର୍ବ ଉପାରମତ ବିଗ୍ରହାତ୍ । ୪୪ ।

---

ବିଶ୍ୱାବସୁ, ପରାବସୁ ନାମକ ଶ୍ରେଷ୍ଠ ଗନ୍ଧର୍ବ ଦ୍ୱୟ ଗାନ କରୁଥିଲେ; ଦେବତାମାନଙ୍କର ଦୁନ୍ଦୁଭି ବାଜିବାକୁ ଲାଗିଲା । ଏବଂ ନର୍ତ୍ତକୀମାନେ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ ।୪୧।

ସିଂହ ଯେପରି ମୃଗମାନଙ୍କୁ ନଷ୍ଟ କରେ ସେହିପରି ବାୟୁ, ଅଗ୍ନି, ବରୁଣ ପ୍ରଭୃତି ଦେବତାମାନେ ବିପକ୍ଷ ପକ୍ଷ ଅସୁରମାନଙ୍କୁ ବିନାଶ କରିଥିଲେ ।୪୨।

ହେ ରାଜନ୍ ! ବ୍ରହ୍ମା ଦାନବମାନଙ୍କର ବିନାଶ ଦର୍ଶନ କରି ଦେବର୍ଷି ନାରଦଙ୍କୁ ଦେବତାମାନଙ୍କ ନିକଟକୁ ପ୍ରେରଣ କରିଥିଲେ । ଦେବର୍ଷିନାରଦ ଦେବତାମାନଙ୍କୁ ଦାନବବଧରୁ ନିବୃତ୍ତ କରାଇଥିଲେ ।୪୩।

ଶ୍ରୀ ନାରଦ କହିଲେ :—

ହେ ଦେବଗଣ ! ଭଗବାନ୍ ନାରାୟଣଙ୍କର ବାହୁବଳ ଆଶ୍ରୟକରି ଆପଣମାନେ ଅତ୍ୟନ୍ତ ଶ୍ରୀସମ୍ପନ୍ନ ହୋଇଅଛନ୍ତି । ଅତଏବ ବର୍ତ୍ତମାନ ଦାନବମାନଙ୍କ ସହିତ ଯୁଦ୍ଧ ନ କରି ନିବୃତ୍ତ ହେଉନ୍ତୁ ।୪୪।

---

ଗନ୍ଧର୍ବ ଅପସରା ବୃନ୍ଦେ
ନୃତ୍ୟ କରନ୍ତି ଗୀତ ନାଦେ
ଜୟ ଦୁନ୍ଦୁଭିଗଣ ବାଜେ
ଦେବ-ଦାନବ ରଣମାଝେ ।୪୧।
ଏହି ପ୍ରକାରେ ହରପାକେ
ବରୁଣ ପବନ ଅନଳେ
ଅସୁରବଳ ସର୍ବ ମାରି
ପଶୁଙ୍କୁ ଯେସନେ କେଶରୀ । ୪୨

ନାରଦ ପେଷି କୁଶପାଣି
ଅସୁରବଳ ଭଗ୍ନ ଶୁଣି
ଦେବଗଣଙ୍କୁ ବୋଧ କଲେ
ଯୁଦ୍ଧ ନ କର ଆଜ୍ଞା ଦେଲେ ।୪୩
ନାରଦ ସର୍ବ ଦେବଗଣେ
ନିଷେଧ କଲେ ଜଣେ ଜଣେ
ସମର କରି କିସ ପାଇଁ
ଏମନ୍ତ ବାକ୍ୟ ତାଙ୍କୁ କହି

ସିନ୍ଧୁ ମନ୍ଥନେ ପାଇ ଶ୍ରୀରେ
ଅସୁରେ ହୋଇଲେ ନିରାଶ
ତୁମ୍ଭେ ଅମୃତ ପାନ କରି
ସ୍ୱର୍ଗେ ଲଭିଲ ଦେବଶିରୀ ।୪୪।

ଶ୍ରୀ ଶୁକ ଉବାଚ ।

ସଂଯମ୍ୟ ମନ୍ୟୁସଂରମ୍ଭଂ ମାନୟନ୍ତୋ ମୁନେର୍ବଚଃ ।
ଉପଗୀୟମାନାନୁଚରୈର୍ଯୟୁଃ ସର୍ବେ ତ୍ରିବିଷ୍ଟପମ୍ । ୪୫ ।
ଯେଽବଶିଷ୍ଟା ରଣେ ତସ୍ମିନ୍ ନାରଦାନୁମତେନ ତେ ।
ବଳିଂ ବିପନ୍ନମାଦାୟ ଅସ୍ତଂ ଗିରିମୁପାଗମନ୍ । ୪୬ ।
ତତ୍ରାବିନଷ୍ଟାବୟବାନ୍ ବିଦ୍ୟମାନଶିରୋଧରାନ୍ ।
ଉଶନା ଜୀବୟାମାସ ସଞ୍ଜୀବନ୍ୟା ସ୍ୱବିଦ୍ୟୟା । ୪୭ ।
ବଳିଶ୍ଚୋଶନସା ସ୍ପୃଷ୍ଟଃ ପ୍ରତ୍ୟାପନ୍ନେନ୍ଦ୍ରିୟସ୍ମୃତିଃ ।
ପରାଜିତୋଽପି ନାଖିଦ୍ୟଲ୍ଲୋକତତ୍ତ୍ୱବିଚକ୍ଷଣଃ । ୪୮ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଦେବାସୁରଯୁଦ୍ଧ-
ଏକାଦଶୋଽଧ୍ୟାୟଃ ।

---

ଦେବତାମାନେ ନାରଦଙ୍କ ବାକ୍ୟ ଗ୍ରହଣ କରି କ୍ରୋଧ ପରିତ୍ୟାଗ ପୂର୍ବକ ଅନୁଚରମାନଙ୍କ ସହିତ ସ୍ୱର୍ଗକୁ ଗମନ କରିଥିଲେ ।୪୫।

ସେହି ଯୁଦ୍ଧରେ ଯେଉଁମାନେ ଅବଶିଷ୍ଟ ଥିଲେ; ସେହି ଦାନବଗଣ ନାରଦଙ୍କ ଅନୁମତି ଗ୍ରହଣ କରି ବିପନ୍ନ ବଳିଙ୍କୁ ନେଇ ଅସ୍ତାଚଳକୁ ଗମନ କରିଥିଲେ ।୪୬।

ଏହି ଯୁଦ୍ଧରେ ଯେଉଁମାନଙ୍କର ହସ୍ତ ପଦାଦି ଅବୟବମାନ ନଷ୍ଟ ହୋଇ ନଥିଲା ଓ ମସ୍ତକ ଛିନ୍ନ ହୋଇ ନ ଥିଲା ସେହି ଦାନବମାନଙ୍କୁ ଶୁକ୍ରାଚାର୍ଯ୍ୟ ସ୍ୱୀୟ ସଞ୍ଜୀବନୀ ବିଦ୍ୟାଦ୍ୱାରା ପୁନର୍ଜୀବିତ କରାଇଥିଲେ । ୪୭ ।

ଶୁକ୍ରାଚାର୍ଯ୍ୟଙ୍କ ସ୍ପର୍ଶ ଲାଭକରି ବଳି ପୁନର୍ବାର ଇନ୍ଦ୍ରିୟବଳ ଓ ସ୍ମୃତି ଲାଭ କରିଥିଲେ ଏବଂ ବ୍ୟବହାର ନିପୁଣ ବଳି ପରାଜିତ ହୋଇଥିଲେ ବୋଲି ଦୁଃଖ ପ୍ରକାଶ କଲେ ନାହିଁ ।୪୮।

---

ଶ୍ରୀଶୁକଉବାଚ—
ଏମନ୍ତେ ବ୍ରହ୍ମା-ସୁତ ବୋଇଲେ
ତ୍ରିଦଶେ ସମର ନ କଲେ
ଆନନ୍ଦେ ନୃତ୍ୟ ଗୀତ କରି
ତ୍ରିଦଶେ ଗଲେ ନିଜପୁରୀ ।୪୫।
ଯୁଦ୍ଧେ ଅସୁରେ ଯେତେ ଥିଲେ
ନାରଦ ବାକ୍ୟେ ବାହୁଡ଼ିଲେ
ବ୍ରହ୍ମା-ନନ୍ଦନ ବାକ୍ୟ ମାନି
ବଳିର ମୃତ୍ୟୁପିଣ୍ଡ ନେଇ
ସକଳେ ମିଳି ଏକମେଳେ
ପଶ୍ଚିମ ଅସ୍ତଗିରି ଗଲେ ।୪୬।
ଯେ ଅବା ଶିର ଉର ଛିଡ଼ି
ସଂଗ୍ରାମ ମଧ୍ୟେ ଥିଲେ ପଡ଼ି
ଶୁକ୍ରର ମୃତ୍ୟୁ ସଞ୍ଜୀବନେ
ସକଳେ ଲଭିଲେ ଜୀବନେ ।୪୭
ବଳିକି ଶୁକ୍ର ଧରି କୋଳେ
ଆସନେ ବସାଇ ନିଷ୍ଠକେ
ଶୁକ୍ର ସ୍ମରଣେ ବଳି ସ୍ମୃତି
ଲଭିଲା ଇନ୍ଦ୍ରି ବଳବୃଦ୍ଧି
ଯୁଦ୍ଧେ ହାରିବା କୋପାରମ୍ଭେ
ସହିଲି ରହେ ନିଜ ଦମ୍ଭେ ।୪୮।
ବୋଲଇ ବିପ୍ର ଜଗନ୍ନାଥ
ସୁଭଗ ବିଷ୍ଣୁର ଚରିତ
ସୁଜନେ ଏଣେ କରି ଭାବ
ଏ ଭାବେ ସଂସାରୁ ତରିବ ॥

# ଦ୍ୱାଦଶୋଽଧ୍ୟାୟଃ ।

ଦ୍ୱାଦଶେ ମୋହିନୀରୂପବିଭ୍ରମା ଲ୍ଲୋକନୋତ୍ସୁକମ୍ ।
ଭବଂ ସମ୍ମୋହୟାମାସ ହରିଃ ପୁନରପାନ୍ତ୍ୱୟଦ୍ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ବାଦରାୟଣୀରୁବାଚ ।

ବୃଷଧ୍ୱଜୋ ନିଶମ୍ୟେଦଂ ଯୋଷିଦ୍ରୂପେଣ ଦାନବାନ୍ ।
ମୋହୟିତ୍ୱାସୁରଗଣାନ୍ ହରିଃ ସୋମମପାୟୟତ୍ । ୧ ।
ବୃଷମାରୁହ୍ୟ ଗିରିଶଃ ସର୍ବଭୂତଗଣୈର୍ବୃତଃ ।
ସହ ଦେବ୍ୟା ଯଯୌ ଦ୍ରଷ୍ଟୁଂ ଯତ୍ରାସ୍ତେ ମଧୁସୂଦନଃ । ୨ ।
ସଭାଜିତୋ ଭଗବତା ସାଦରଂ ସୋମୟା ଭବଃ ।
ସୂପବିଷ୍ଟ ଉବାଚେଦଂ ପ୍ରତିପୂଜ୍ୟ ସ୍ମୟନ୍ ହରିମ୍ । ୩ ।

---

## ମୋହିନୀ ମୂର୍ତ୍ତି ଧାରୀ ଶ୍ରୀହରିଙ୍କର ଶିବ ମୋହନ ।

ଦ୍ୱାଦଶରେ ଶିବ, ମୋହିନୀରୂପ ଦର୍ଶନ ଅଭିଳାଷୀ ହୁଅନ୍ତେ ବିଷ୍ଣୁଙ୍କର ମୋହିନୀରୂପ ଧାରଣ ଏବଂ ଶିବଙ୍କର ମୋହ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ—

ହେ ରାଜନ୍ ! ଭଗବାନ୍ ବିଷ୍ଣୁ ସ୍ତ୍ରୀରୂପଧାରଣ କରି ଅସୁରମାନଙ୍କୁ ମୋହିତ କରି ଦେବତାମାନଙ୍କୁ ଅମୃତ ପାନ କରାଇଥିଲେ । ଏହା ଶ୍ରବଣ କରି ବୃଷଧ୍ୱଜ ଶଙ୍କର ସେଠାକୁ ଗମନ କରିଥିଲେ ।୧।

ଭୂତଗଣ ପରିବୃତ ହୋଇ ଭଗବାନ୍ ଶଙ୍କର ପାର୍ବତୀଙ୍କ ସହିତ ବୃଷାରୋହଣ କରି ଯେଉଁଠାରେ ଶ୍ରୀହରି ଥିଲେ ତାହାଙ୍କୁ ଦେଖିବା ନିମିତ୍ତ ସେଠାକୁ ଗମନ କଲେ ।୨।

ଶିବ ପାର୍ବତୀଙ୍କ ସହିତ ଆଗମନ କରିଅଛନ୍ତି ଜାଣି ବିଷ୍ଣୁ ତାହାଙ୍କୁ ସମାଦର କରିଥିଲେ ଏବଂ ଶିବ ସୁଖାସୀନ ହୋଇ ସହାସ୍ୟ ବଦନରେ ତାହାଙ୍କ ପ୍ରତ୍ୟଭିବାଦନ କରିଥିଲେ ।୩।

---

ହରି ମୋହିନୀ ରୂପ ହେଲେ, ମୋହିତ କଲେ ଦ୍ୱାଦଶରେ ॥

ଶ୍ରୀଶୁକଉବାଚ—

କୃଷ୍ଣ ଯେ ମୋହିନୀ ସ୍ୱରୂପେ
ଅମୃତ ହରି ମୋହ କଲେ
ଦେବଙ୍କୁ କରାଇଲେ ପାନ
ମାୟା ମୋହିନୀ ଭଗବାନ
ସେ କଥା ଶୁଣି ବିପରୀତ
ବୃଷେ ଆରୋହି ବିଶ୍ୱନାଥ
ସକଳ ଭୂତଗଣ ମେଳେ ।
ଅମ୍ବିକା ଘେନି ନିଜ କୋଳେ
ଦେଖିବା ଅର୍ଥେ ଗଲେ ହରି
ଯହିଁ ବିଜୟେ ମାୟାଧରି ।୧ ୨।
ଗୋବିନ୍ଦ ରୁଦ୍ର ଦେଖି ତୋଷେ
ଆସନେ ବସାଇ ହରଷେ
ପୂଜିଲେ ହରି ଗୌରୀ ପାଦେ
ପ୍ରେମ ହରଷ ଗଦଗଦେ
ସାନନ୍ଦ ସେ ହର-ଗଉରୀ
ହରଷେ ହସ୍ତେ ହସ୍ତ ଧରି
ସନ୍ତୋଷ କରି କୃଷ୍ଣ ମନ
ବୋଲନ୍ତି ମଧୁର ବଚନ । ୩

ଶ୍ରୀ ମହାଦେବ ଉବାଚ ।

ଦେବଦେବ ଜଗଦ୍ୱ୍ୟାପିନ୍ ! ଜଗଦୀଶ ଜଗନ୍ମୟ ।
ସର୍ବେଷାମପି ଭାବାନାଂ ତ୍ୱମାତ୍ମା ହେତୁରୀଶ୍ୱରଃ । ୪ ।
ଆଦ୍ୟନ୍ତାବସ୍ୟ ଯନ୍ମଧ୍ୟମିଦମନ୍ୟଦହଂ ବହିଃ ।
ଯତୋଽବ୍ୟୟସ୍ୟ ନୈତାନି ତତ୍ସତ୍ୟଂ ବ୍ରହ୍ମଚିଦ୍‌ଭବାନ୍ । ୫ ।
ତବୈବ ଚରଣାମ୍ଭୋଜଂ ଶ୍ରେୟସ୍କାମା ନିରାଶିଷଃ ।
ବିସୃଜ୍ୟୋଭୟତଃ ସଙ୍ଗଂ ମୁନୟଃ ସମୁପାସତେ । ୬ ।
ତ୍ୱଂ ବ୍ରହ୍ମ ପୂର୍ଣ୍ଣମମୃତଂ ବିଗୁଣଂ ବିଶୋକମାନନ୍ଦମାତ୍ରମବିକାରମନନ୍ୟଦନ୍ୟତ୍ ।
ବିଶ୍ୱସ୍ୟ ହେତୁରୁଦୟସ୍ଥିତିସଂଯମାନାମାତ୍ମେଶ୍ୱରଶ୍ଚ ତଦପେକ୍ଷତୟାନପେକ୍ଷଃ ।୭।

---

ଶ୍ରୀ ମହାଦେବ କହିଲେ :—

ହେ ଦେବ ଦେବ ! ହେ ଜଗତ୍‌ବ୍ୟାପୀ ! ହେ ଜଗଦୀଶ୍ୱର ! ହେ ଜଗନ୍ମୟ ! ଆପଣ ସର୍ବ ବିଷୟର କାରଣ, ଚୈତନ୍ୟ ସ୍ୱରୂପ ଓ ନିୟନ୍ତା ।୪।

ଏହି ଜଗତର ଜନ୍ମ, ମୃତ୍ୟୁ, ସ୍ଥିତି ପ୍ରତ୍ୟକ୍ଷ ପରିଦୃଶ୍ୟମାନ ବସ୍ତୁ, ଅପ୍ରତ୍ୟକ୍ଷ ଅହଙ୍କାର ମୁଁ ଓ ମୋର ଏହି ଭାବ, ଯହିଁରୁ ପ୍ରକଟିତ ହୋଇଅଛି, ବିକାର ରହିତ ଆପଣଙ୍କଠାରେ ଏ ସମସ୍ତ କିଛି ମାତ୍ର ନାହିଁ, କାରଣ ଆପଣ ସତ୍ୟସ୍ୱରୂପ, ବ୍ରହ୍ମ ସ୍ୱରୂପ ଓ ଚୈତନ୍ୟ ସ୍ୱରୂପ ଅଟନ୍ତି ।୫।

ମଙ୍ଗଳକାମୀ କାମନାଶୂନ୍ୟ ମୁନିମାନେ ଐହିକ ଓ ପାରତ୍ରିକ ଭୋଗପ୍ରଦ ଆସକ୍ତି ପରିତ୍ୟାଗ କରି ଆପଣଙ୍କର ପାଦପଦ୍ମକୁ ସମ୍ୟକ୍‌ରୂପେ ଚିନ୍ତା କରିଥାନ୍ତି ।୬।

ହେ ଭଗବାନ୍ ! ଆପଣ ସର୍ବବ୍ୟାପୀ ବ୍ରହ୍ମ, ଅମୃତସ୍ୱରୂପ, ଗୁଣକ୍ଷୋଭ ରହିତ, ଶୋକ ହୀନ, ଆନନ୍ଦ ସ୍ୱରୂପ ଓ ବିକାର ଶୂନ୍ୟ, ଆପଣ ସର୍ବବ୍ୟାପୀ ସୁତରାଂ ଆପଣଙ୍କ ବ୍ୟତୀତ କିଛିହିଁ ନାହିଁ । ବିଶ୍ୱର କୌଣସି ପଦାର୍ଥରେ ଆପଣଙ୍କର ଆସକ୍ତି ନାହିଁ । ଆପଣ ଏହି ବିଶ୍ୱର ସୃଷ୍ଟି, ସ୍ଥିତି, ପ୍ରଳୟର କାରଣ ଏବଂ ଆତ୍ମା ଓ ନିୟାମକ । ଆପଣ ସ୍ୱୟଂ ନିରପେକ୍ଷ ସୁତରାଂ ଆପଣଙ୍କର ଅନ୍ୟ କୌଣସିପାଇଁ ଅପେକ୍ଷା ନାହିଁ ।୭।

---

ଶ୍ରୀମହାଦେବଉବାଚ—
ହେ ଦେବ ଦେବ ଜଗତ୍‌ବ୍ୟାପି !
ଜଗଦୀଶ୍ୱର-ବିଶ୍ୱରୂପି !
ସର୍ବ ଶରୀରେ ଆତ୍ମାରୂପେ
ତୁ ନାଥ ବସୁ ମୋହ କଳ୍ପେ
ସକଳ ହେତୁ ତୋ ଗୋଚର
ତୁ ସର୍ବ ପ୍ରଭୁ ଯେ ଈଶ୍ୱର । ୪
ଜଗତ ଆଦି ମଧ୍ୟ ଅନ୍ତ
ଏଣୁ ତୁ ବୋଲାଉ ଅନନ୍ତ

ଚରଣ କମଳ ତୋହର
ଚିନ୍ତନ୍ତେ ଶ୍ରେୟ ପ୍ରାଣିଙ୍କର
ବିଷୟ ସଙ୍ଗ ଦୂର କରି
ମୁନି ସନ୍ୟାସୀ ବ୍ରହ୍ମଚାରୀ
ଚିନ୍ତନ୍ତି ତୋ ଚରଣେ ହୃଦେ
ଅନ୍ତେ ପଶନ୍ତି ମୋକ୍ଷପଦେ ।୫ ,୬।
ତୁ ପୂର୍ଣ୍ଣବ୍ରହ୍ମ ସୁଧାଧାର
ନିର୍ଗୁଣ ବିଶୋକ ମନ୍ଦିର

ଆନନ୍ଦ-ମାତ୍ର, ନିର୍ବିକାର
ଅନେ୍ୟାଽନେ୍ୟ ଥାଇ ତୁ ଅନ୍ତର
ବିଶ୍ୱର ହେତୁ ନିରଞ୍ଜନ
ସ୍ଥିତି ଉଦୟେ ସଂଯମନ
ଆତ୍ମାର ଆତ୍ମା କାଳରୂପୀ
ଯେଣୁ ଅଶେଷ ଦେହବ୍ୟାପୀ ।୭।

ଏକସ୍ତ୍ୱମେବ ସଦସଦ୍ୱୟମଦ୍ୱୟଞ୍ଚ ସ୍ୱର୍ଣ୍ଣଂ କୃତାକୃତମିବେହ ନ ବସ୍ତୁଭେଦଃ ।
ଅଜ୍ଞାନତସ୍ତ୍ୱୟି ଜନୈର୍ବିହିତୋ ବିକଳ୍ପୋ ଯସ୍ମାଦ୍‌ଗୁଣବ୍ୟତିକରୋ ନିରୁପାଧିକସ୍ୟ ।୮।
ତ୍ୱାଂ ବ୍ରହ୍ମ କେଚିଦବଯନ୍ତ୍ୟୁତ ଧର୍ମମେକେ ଏକେ ପରଂ ସଦସତୋଃ ପୁରୁଷଂ ପରେଶମ୍ ।
ଅନ୍ୟେଽବଯନ୍ତି ନବଶକ୍ତିଯୁତଂ ପରଂ ତ୍ୱାଂ କେଚିନ୍ମହାପୁରୁଷମବ୍ୟୟମାତ୍ମତନ୍ତ୍ରମ୍ । ୯ ।
ନାହଂ ପରାୟୁରୃଷୟୋ ନ ମରୀଚିମୁଖ୍ୟା ଜାନନ୍ତି ଯଦ୍ୱିରଚିତଂ ଖଳୁ ସତ୍ତ୍ୱସର୍ଗାଃ ।
ଯନ୍ମାୟୟା ମୁଷିତଚେତସ ଈଶ ଦୈତ୍ୟମର୍ତ୍ତ୍ୟାଦୟଃ କିମୁତ ଶଶ୍ୱଦଭଦ୍ରବୃତ୍ତାଃ ।୧୦।

---

ଏହି ଜଗତରେ ସତ୍ ଓ ଅସତ୍ କାର୍ଯ୍ୟ ଓ କାରଣ ଏ ଉଭୟର ଏକମାତ୍ର ବିକାର ଭାବ ପ୍ରାପ୍ତ କୁଣ୍ଡଳ ଏବଂ ଅଧିକୃତ ସୁବର୍ଣ୍ଣ ତୁଲ୍ୟ, ଆପଣ ଅଭିନ୍ନରୂପେ ଅବସ୍ଥିତ ( ଅର୍ଥାତ୍ ସୁବର୍ଣ୍ଣରେ କୁଣ୍ଡଳ ପ୍ରସ୍ତୁତ ସୁତରାଂ ସୁନା ଓ କୁଣ୍ଡଳ ମଧ୍ୟରେ ପାର୍ଥକ୍ୟ ନାହିଁ, ସେହିପରି କାର୍ଯ୍ୟ କାରଣ ଭଗବାନଙ୍କ ଠାରୁ ଉତ୍ପନ୍ନ ତାଙ୍କସହିତ କାର୍ଯ୍ୟ କାରଣ ପ୍ରଭୃତିର ପାର୍ଥକ୍ୟ ନାହିଁ) ଅଜ୍ଞନତା ହେତୁ ମନୁଷ୍ୟମାନେ ତୁମ୍ଭଠାରେ ଭେଦଭାବ କଳ୍ପନା କରିଥାନ୍ତି, ଯେହେତୁ ତୁମ୍ଭେ ନିରୁପାଧିକ ବା ଗୁଣାତୀତ; ସୁତରାଂ କେବଳ ଗୁଣଦ୍ୱାରା ତୁମ୍ଭର ଭେଦ କଳ୍ପିତ କିନ୍ତୁ ସ୍ୱାଭାବିକ ନୁହେଁ ।୮।

ବେଦବିତ୍‌ମାନେ ଆପଣଙ୍କୁ ବ୍ରହ୍ମବୋଲି କୀର୍ତ୍ତନ କରନ୍ତି, ମୀମାଂସକମାନେ ଆପଣଙ୍କୁ ଧର୍ମ ବୋଲି କଳ୍ପନା କରନ୍ତି, ସାଙ୍ଖ୍ୟ ଶାସ୍ତ୍ରବିତ୍‌ମାନେ ଆପଣଙ୍କୁ ପ୍ରକୃତି ପୁରୁଷରେ ପରମପୁରୁଷ ବୋଲି କହିଥାନ୍ତି । ପଞ୍ଚରାତ୍ର ବେତ୍ତାମାନେ ନବଶକ୍ତି ଯୁକ୍ତ ପରମ ପୁରୁଷ ବୋଲି ତୁମ୍ଭଙ୍କୁ କଳ୍ପନା କରିଥାନ୍ତି । ପାତଞ୍ଜଳ ବେତ୍ତାମାନେ ତୁମ୍ଭଙ୍କୁ ଅବ୍ୟୟ, ସ୍ୱାଧୀନ ମହାପୁରୁଷ ବୋଲି କଳ୍ପନା କରିଥାନ୍ତି କିନ୍ତୁ କେହି ଆପଣଙ୍କର ତତ୍ତ୍ୱ ସମ୍ୟକ୍‌ରୂପେ ଅବଗତ ନୁହନ୍ତି ।୯।

ମୁଁ ( ଶିବ ) ବ୍ରହ୍ମା, ମରୀଚି ପ୍ରଭୃତି ଋଷିଗଣ ସମସ୍ତେ ସତ୍ତ୍ୱଗୁଣ ଶ୍ରେଷ୍ଠ ହୋଇ ମଧ୍ୟ ଆପଣଙ୍କ ମାୟାରେ ଅପହୃତ ଚିତ୍ତ ହୋଇ ଆପଣଙ୍କ ରଚିତ ଏହି ବିଶ୍ୱକୁ ଯଥାର୍ଥରୂପେ ଜାଣିପାରୁ ନାହୁଁ । ଆପଣଙ୍କର ମାୟାମୁଗ୍ଧ, ଅସତ୍ ସ୍ୱଭାବ ସମ୍ପନ୍ନ, ଦୈତ୍ୟ ଓ ମନୁଷ୍ୟମାନେ ତାହା କିପରି ଜାଣିବେ ? ।୧୦।

---

ସୁବର୍ଣ୍ଣ; କୁଣ୍ଡଳର ପ୍ରାୟ
ସ୍ୱଭାବେ ଅଭେଦ ତୋ ଦେହ
ଅଜ୍ଞାନୀ ଦମ୍ଭ ତୋରଠାରେ
ବିକଳ୍ପ କଳ୍ପନ୍ତି ସଂସାରେ
ତୁ ନିରୁପାଧି ତୋର ଗୁଣେ
ଭେଦ କରନ୍ତି ଅକାରଣେ ।୮।

ସତ ଅସତ ପରେ ସ୍ଥିତ
ପରମ ପୁରୁଷ କେ ଚିନ୍ତି
ପ୍ରକୃତି ପୁରୁଷ ରୂପର
କେ ସାଂଖ୍ୟେ କରନ୍ତି ବିଚାର
ଅନ୍ୟେ ବଦନ୍ତି ନବଶକ୍ତି
ଯେ ଅଟ୍ଟା ଛନ୍ତି ପାଞ୍ଚରାତ୍ରି

ଅବ୍ୟୟ ଆତ୍ମା-ତନ୍ତ୍ର-ରୂପୀ
କେ ମହା ପୁରୁଷ ବୋଲନ୍ତି ।୯।
ମୁଁ ବ୍ରହ୍ମା ଦେବ ମୁନି ଯେତେ
ତୋ ମାୟାବଳେ ଏ ଜଗତେ
ତୋ ରୂପ ନ ଜାଣନ୍ତି କେହି
ଦୁଷ୍ଟେ ଜାଣିବେ ଅବା କାହିଁ ।୧୦।

ସ ତ୍ୱଂ ସମୀହିତମଦଃ ସ୍ଥିତିଜନ୍ମନାଶଂ ଭୂତେହିତଂ ଚ ଜଗତୋ ଭବବନ୍ଧମୋକ୍ଷୌ ।
ବାୟୁର୍ଯଥା ବିଶତି ଖଞ୍ଚରାଚରାଖ୍ୟଂ ସର୍ବଂ ତଦାତ୍ମକତୟାବଗମୋଽବରୁନ୍ତ୍ସେ । ୧୧ ।
ଅବତାରା ମୟା ଦୃଷ୍ଟା ରମମାଣସ୍ୟ ତେ ଗୁଣୈଃ ।
ସୋଽହଂ ତଦ୍ରଷ୍ଟୁମିଚ୍ଛାମି ଯତ୍ତେ ଯୋଷିଦ୍ବପୁର୍ଧୃତମ୍ । ୧୨ ।
ଯେନ ସମ୍ମୋହିତା ଦୈତ୍ୟାଃ ପାୟିତାଶ୍ଚାମୃତଂ ସୁରାଃ ।
ତଦ୍ଦିଦୃକ୍ଷବ ଆୟାତା ପରଂ କୌତୂହଳଂ ହି ନଃ । ୧୩ ।
ଶ୍ରୀ ଶୁକ ଉବାଚ ।
ଏବମଭ୍ୟର୍ଥିତୋ ବିଷ୍ଣୁର୍ଭଗବାନ୍ ଶୂଳପାଣିନା ।
ପ୍ରହସ୍ୟ ଭାବଗମ୍ଭୀରଂ ଗିରୀଶଂ ପ୍ରତ୍ୟଭାଷତ । ୧୪ ।

---

ହେ ଭଗବନ୍ ! ଆପଣ ଜଗତର ଜନ୍ମ, ସ୍ଥିତି ଓ ନାଶ, ପ୍ରାଣିମାନଙ୍କର ଚେଷ୍ଟା ଏବଂ ଜଗତର ଭବବନ୍ଧନ ଓ ମୋଚନ ସମସ୍ତ ଜାଣନ୍ତି । ବାୟୁ ଯେପରି ଚର ଓ ଅଚର ଦେହ ସମୂହ ଏବଂ ଆକାଶ ବ୍ୟାପୀ ରହିଅଛି ସେହିପରି ଆପଣ ଆତ୍ମତତ୍ତ୍ୱ ରୂପେ ସମଗ୍ର ଚରାଚର ବ୍ୟାପୀ ରହି ଅଛନ୍ତି । ଆପଣ ଜ୍ଞାନ ସ୍ୱରୂପ, ସୁତରାଂ ସମସ୍ତଙ୍କର ଆତ୍ମା । ୧୧ ।

ହେ ପ୍ରଭୋ ! ସତ୍ତ୍ୱାଦି ଗୁଣଦ୍ୱାରା କ୍ରୀଡ଼ା କରି ଆପଣ ଯେଉଁ ଅବତାର ଗ୍ରହଣ କରିଅଛନ୍ତି, ସେ ସମସ୍ତ ମୁଁ ଦେଖିଅଛି । ବର୍ତ୍ତମାନ ଯେଉଁ ସ୍ତ୍ରୀ ମୂର୍ତ୍ତିଧାରଣ କରିଥିଲେ ତାହା ମୁଁ ଦେଖିବାକୁ ଇଚ୍ଛା କରେ ।୧୨।

ଯେଉଁ ମୋହିନୀ ମୂର୍ତ୍ତି ଦ୍ୱାରା ଆପଣ ଦୈତ୍ୟମାନଙ୍କୁ ସମ୍ମୋହନ କରି ଦେବତାମାନଙ୍କୁ ଅମୃତପାନ କରାଇଥିଲେ; ସେହିରୂପ ଦେଖିବାକୁ କୌତୂହଳୀ ହୋଇ ଆମ୍ଭେମାନେ ଆସିଅଛୁଁ ।୧୩।

ଶ୍ରୀ ଶୁକଦେବ କହିଲେ :—

ଶୂଳପାଣି ଶିବଙ୍କ ଦ୍ୱାରା ଏହିପରି ଅଭ୍ୟର୍ଥିତ ହୋଇ ଭଗବାନ୍ ବିଷ୍ଣୁ ଗମ୍ଭୀର ଭାବରେ ଗିରିଶଙ୍କୁ କହିଲେ ।୧୪।

---

ଜଗତ ସ୍ଥିତି ଜନ୍ମ ନାଶ
ଭୂତଙ୍କ ଦେହେ ତୋ ପ୍ରକାଶ
ଜୀବର ବନ୍ଧ ମୋକ୍ଷ ଜାଣ
ତୁ ନାଥ କରୁ ମାୟା ଘେନ
ଆକାଶେ ଯେସନେ ବାୟୁ ବହେ
ପାର୍ଥିବ ରେଣୁ ବହେ ଦେହେ
ତୋ ଦେହେ କେହି ନ ଲାଗନ୍ତି
ଏମନ୍ତ ଈଶ୍ୱରର ଗତି
ସଚରାଚର ଘୋର ଦେହେ
ସବନେ ରେଣୁ ପ୍ରାୟେ ରହେ ।୧୧

ତୁ ଏ ସଂସାର ଉପକାରୀ
ତ୍ରିଗୁଣେ ନାନା ରୂପ ଧରି
ଯେତେ ସାଧିଲୁ କ୍ରୀଡ଼ା ଅର୍ଥେ
ସେ ରୂପେ ଦେଖିଲି ମୁଁ ତୋତେ
ଏବେ ଯେ ସମୁଦ୍ର ମନ୍ଥନେ
ଦେବ ଦାନବ ଏକମନେ
ଅମୃତ ଅର୍ଥେ ଅନ୍ୟୋନ୍ୟେ
ତା ଦେଖି ଦେବେ ଦୁଃଖମନେ
ତୋତେ ଚିନ୍ତିଲେ ଧ୍ୟାନ କରି
ତୁ ନାଥ ମାୟାରୂପ ଧରି

ମୋହିନୀ ରୂପେ ଭଗବାନ
ମୋହିଲୁ ଅସୁରଙ୍କ ମନ
ସେ ରୂପ ଦେଖାଅ ତୁ ମୋତେ
ଦେଖିବୁଁ ଗଉରୀ ସମେତେ
ତୋ ରୂପ ପରମ ମଙ୍ଗଳ
ମୋ ଦେଖିବାକୁ କୁତୂହଳ
ଏମନ୍ତେ ରୁଦ୍ର ବୋଲି ଶୁଣି
ହସି କହନ୍ତି ଚକ୍ରପାଣି ।୧୨-୧୪।

ଶ୍ରୀ ଭଗବାନୁବାଚ ।

କୌତୂହଲାୟ ଦୈତ୍ୟାନାଂ ଯୋଷିଦ୍‌ବେଶୋ ମୟା ଧୃତଃ ।
ପଶ୍ୟତା ସୁରକାର୍ଯ୍ୟାଣି ଗତେ ପୀୟୁଷଭଜନେ । ୧୫ ।
ତତ୍ତେଽହଂ ଦର୍ଶୟିଷ୍ୟାମି ଦିଦୃକ୍ଷୋଃ ସୁରସତ୍ତମ ।
କାମିନାଂ ବହୁମନ୍ତବ୍ୟଂ ସଙ୍କଳ୍ପପ୍ରଭବୋଦୟମ୍ । ୧୬ ।

ଶ୍ରୀ ଶୁକ ଉବାଚ

ଇତି ବ୍ରୁବାଣୋ ଭଗବାଂସ୍ତତ୍ରୈବାନ୍ତରଧୀୟତ ।
ସର୍ବତଶ୍ଚାରୟଂଶ୍ଚକ୍ଷୁର୍ଭବ ଆସ୍ତେ ସହୋମୟା । ୧୭ ।
ତତୋ ଦଦର୍ଶୋପବନେ ବରସ୍ତ୍ରିୟଂ ବିଚିତ୍ରପୁଷ୍ପାରୁଣପଲ୍ଲବଦ୍ରୁମେ ।
ବିକ୍ରୀଡ଼ତୀଂ କନ୍ଦୁକଲୀଳୟା ଲସଦ୍ଦୁକୂଳପର୍ଯ୍ୟସ୍ତନିତମ୍ବମେଖଳାମ୍ । ୧୮ ।

---

ଶ୍ରୀ ଭଗବାନ୍ କହିଲେ :—

ହେ ଗିରିଶ ! ଅମୃତ ପାତ୍ର ଦୈତ୍ୟମାନଙ୍କର ହସ୍ତଗତ ହୁଅନ୍ତେ ଦେବକାର୍ଯ୍ୟ ସାଧନ ନିମିତ୍ତ ଦୈତ୍ୟମାନଙ୍କର କୌତୁହଳାର୍ଥ ମୁଁ ସ୍ତ୍ରୀରୂପ ଧାରଣ କରିଥିଲି । ହେ ସୁରସତ୍ତମ ! ତୁମ୍ଭେ ମୋର ସେହି ସ୍ତ୍ରୀରୂପ ଦର୍ଶନ କରିବାକୁ ଇଚ୍ଛୁକ, କାମୀମାନଙ୍କର ବହୁସମ୍ମତ ଓ କାମୋଦ୍ଦୀପକ ସେହି ସ୍ତ୍ରୀରୂପ ତୁମ୍ଭଙ୍କୁ ଦେଖାଇବି । ୧୫, ୧୬ ।

ଶ୍ରୀ ଶୁକଦେବ କହିଲେ :—

ଭଗବାନ୍ ବିଷ୍ଣୁ ଏହା କହି ସେଠାରୁ ଅନ୍ତର୍ହିତ ହୋଇଗଲେ । ଏଣେ ଶିବ ଉମାଙ୍କ ସହିତ ଚତୁର୍ଦ୍ଦିଗରେ ଦୃଷ୍ଟି ସଞ୍ଚାଳନ କରୁଥାନ୍ତି ।୧୭।

କିୟତ୍‌କ୍ଷଣ ପରେ ନାନାବିଧ ପୁଷ୍ପପତ୍ରଶୋଭିତ ଉପବନରେ କନ୍ଦୁକ ଖେଳ କ୍ରୀଡ଼ାରତା ଅତ୍ୟୁଜ୍ଜ୍ୱଳ-ବସ୍ତ୍ର ପରିହିତା ନିତମ୍ବ ଦେଶରେ ମେଖଳାଧାରିଣୀ ଗୋଟିଏ ପରମସୁନ୍ଦରୀ ସ୍ତ୍ରୀ ଦେଖାଗଲା ।୧୮।

---

ଶ୍ରୀଭଗବାନୁବାଚ —
ଅସୁରେ ସୁଧା ନେବା ବେଳେ
ମୁହିଁ ଯେ ଦେବଙ୍କ ବିକଳେ
ମାୟା ମୋହିନୀ ରୂପ ଧରି
ଅସୁର ଜନେ ମାୟାକରି
ଅମୃତ ଦେବଗଣେ ଦେଲି
ସେ ମାୟାରୂପ ସଂହରିଲି
ଏବେ ତୁ ଦେଖିବାର ଆଶେ
ଯେବେ ଅଇଲୁ ମୋର ପାଶେ
ସେ ରୂପ ଦେଖାଇବି ମୁହିଁ
ଯେବେ ସମ୍ଭାଳି ପାରୁ ତୁହି
କାମିମାନଙ୍କ ମହାମୋହ
ପୁରୁଷ କେ ଧରିବ ଦେହ ।। ୧୫,୧୬
ଶ୍ରୀଶୁକଉବାଚ —
ଏମନ୍ତେ କହି ଭଗବାନ
ତକ୍ଷଣେ ହୋଇ ଅନ୍ତର୍ଦ୍ଧାନ
ରୁଦ୍ର ରହିଲେ ଦଣ୍ଡେଶେ
ଗଉରୀ ସଙ୍ଗେ ପ୍ରିୟରସେ
ଅଗ୍ରେ ଯେ ଅଛି ଉପବନ
ନାନାକୁସୁମେ ତରୁ ଘନ
ତହିଁ ବିଜୟ ଦଇତ୍ୟାରି
ଜଗନ୍ମୋହନୀ ରୂପ ଧରି
ହସ୍ତେ କନ୍ଦୁକ ସାରି ଶୋହେ
ଯେରୂପେ ଜଗଜ୍ଜନ ମୋହେ
ନିତମ୍ବ ବେଷ୍ଟିତ ଅମ୍ବର
କଟୀ ମେଖଳା ରତ୍ନ ସାର
। ୧୭-୧୮ ।

ଆବର୍ତ୍ତନୋଦ୍ୱର୍ତ୍ତନକମ୍ପିତସ୍ତନପ୍ରକୃଷ୍ଟହାରୋରୁଭରୈଃ ପଦେ ପଦେ ।
ପ୍ରଭଜ୍ୟମାନାମିବ ମଧ୍ୟତଶ୍ଚଲପଦପ୍ରବାଲଂ ନୟତୀଂ ତତସ୍ତତଃ । ୧୯ ।
ଦିକ୍ଷୁ ଭ୍ରମତ୍କନ୍ଦୁକଚାପଲୈର୍ଭୃଶଂ ପ୍ରୋଦ୍‌ବିଗ୍ନତାରାୟତଲୋଲଲୋଚନାମ୍ ।
ସ୍ୱକର୍ଣ୍ଣବିଭ୍ରାଜିତକୁଣ୍ଡଳୋଲ୍ଲସତ୍ କପୋଳନୀଳାଳକମଣ୍ଡିତାନନାମ୍ । ୨୦ ।
ଶ୍ଲଥଦ୍‌ଦୁକୂଳଂ କବରୀଞ୍ଚ ବିଚ୍ୟୁତାଂ ସଂନହ୍ୟତୀଂ ବାମକରେଣ ବଲ୍ଗୁନା ।
ବିନିଘ୍ନତୀମନ୍ୟକରେଣ କନ୍ଦୁକଂ ବିମୋହୟନ୍ତୀଂ ଜଗଦାତ୍ମମାୟୟା । ୨୧ ।
ତାଂ ବୀକ୍ଷ୍ୟ ଦେବ ଇତି କନ୍ଦୁକଲୀଲୟେଷଦ୍‌ବ୍ରୀଡାସ୍ଫୁଟସ୍ମିତବିସୃଷ୍ଟକଟାକ୍ଷମୁଷ୍ଟଃ ।
ସ୍ତ୍ରୀପ୍ରେକ୍ଷଣପ୍ରତିସମୀକ୍ଷଣବିହ୍ୱଳାତ୍ମା ନାତ୍ମାନମନ୍ତିକ ଉମାଂ ସ୍ୱଗଣାଂଶ୍ଚ ବେଦ । ୨୨ ।

ପତନ ଓ ଉତ୍ପତନଶୀଳ କନ୍ଦୁକ ଲୀଳା ବଶତଃ ଦେହରେ ଉନ୍ନତ ଓ ଅବନତ ଭାବରେ କମ୍ପିତ ସ୍ତନଦ୍ୱୟ ଏବଂ ଉତ୍ତମହାର ଏପରି କମ୍ପିତ ହେଉଥିଲା ଯେ ଏ ସମସ୍ତର ଗୁରୁଭାରରେ ସେ ମଧ୍ୟ ଭାଗରେ ଭାଙ୍ଗିଯାଇ ପ୍ରବାଳ ତୁଲ୍ୟ କୋମଳ ଚରଣ ଇତସ୍ତତଃ ବିନ୍ୟାସ କରୁଥିଲେ । ୧୯।

ଚତୁଃପାର୍ଶ୍ୱରେ କ୍ଷିପ୍ୟମାଣ କନ୍ଦୁକର ଚାଞ୍ଚଲ୍ୟ ହେତୁ ତାହାର ସୁଦୀର୍ଘ ଚଞ୍ଚଳ ନେତ୍ର ଦ୍ୱୟର ତାରା ଯେପରି ଉଦ୍‌ବେଗ ସହିତ ତହିଁରେ ଆକୃଷ୍ଟ ହୋଇଥିଲା ଏବଂ ନିଜର କର୍ଣ୍ଣଦ୍ୱୟରେ ଦୀପ୍ୟମାନ କୁଣ୍ଡଳ ଦ୍ୱୟର ଶୋଭାରେ ଗଣ୍ଡଦେଶ ଏବଂ ନୀଳବର୍ଣ୍ଣ କେଶଗୁଚ୍ଛ ଦ୍ୱାରା ମୁଖପଦ୍ମ ଅତ୍ୟନ୍ତ ଶୋଭା ପାଉଥିଲା । ୨୦।

ଅତି ମନୋହର ବାମହସ୍ତ ଦ୍ୱାରା ଖସି ପଡୁଥିବା ଲୁଗା ଏବଂ ଫିଟିଯାଉଥିବା କବରୀ ବନ୍ଧନକୁ ସଂଯତ କରି ଦକ୍ଷିଣ ହସ୍ତରେ କନ୍ଦୁକ ଚାଳନା କରୁ କରୁ ନିଜର ମାୟାଦ୍ୱାରା ଜଗତକୁ ମୋହିତ କରୁଥିଲେ । ୨୧।

ଏହିପରି କନ୍ଦୁକର କ୍ରୀଡ଼ାଦ୍ୱାରା ଈଷତ୍ ଲଜ୍ଜାଯୁକ୍ତ ସହାସ୍ୟ ଦୃଷ୍ଟିରେ ଅତ୍ୟନ୍ତ ଆକୃଷ୍ଟ ହୋଇ ଏବଂ ସେହି ରମଣୀକୁ ଦର୍ଶନକରି ଏବଂ ତାହାଦ୍ୱାରା ହୃତଚିତ୍ତ ହୋଇ ମହାଦେବ ଏପରି ବିମୁଗ୍ଧ ହୋଇଗଲେ ଯେ ସେ ନିଜକୁ ଏବଂ ପାର୍ଶ୍ୱସ୍ଥିତା ପାର୍ବତୀଙ୍କୁ ନନ୍ଦୀଶ୍ୱରାଦି ଶିବଗଣଙ୍କୁ ଏକାବେଳକେ ବିସ୍ମୃତ ହୋଇ ଯାଇଥିଲେ । ୨୨ ।

ହୃଦେ କମ୍ପଇ ଘନ କୁଚ
ହାର କାଞ୍ଚିଲ ଅତି ସଞ୍ଚ
ଅତି ସୁସଞ୍ଚ କ୍ଷୀଣ ମଝି
କ ପଟାନ୍ତର ଦେବା ବୁଝି
ସ୍ୱଭାବେ ତମ୍ବୁରୁ ଆକାର
ଖଚିତ ନାନାଅଳଂକାର
ଶିରେ ସୀମନ୍ତ ମଣିମୟେ
ନୀଳ ଅଳକେ ମୁଖ ଶୋହେ

ଶିରେ ସୁନ୍ଦର ଭ୍ରୂଲ ସାଜେ
ଚଞ୍ଚଳ ଲୋଚନ ବିରାଜେ
ହେମ କୁଣ୍ଡଳ ଶୋହେ କର୍ଣ୍ଣେ
ଦଶନ ହସିତ ବଦନେ
କବରୀ ଶ୍ଲଥ ଫିଟେ ବାସ
କରଇ କନ୍ଦର୍ପ ବିକାଶ
ଅଳକା ତୋଳେ ବାମ କରେ
ସୁରଙ୍ଗ ଅଙ୍ଗୁଳି ଉପରେ

କନ୍ଦୁକ ଅନ୍ୟ କରେ ଧରି
ସେ ଲୀଳା ଲୁବ୍ଧେ ମୋଦ ଭରି
। ୧୯-୨୧ ।
ଏମନ୍ତରୂପ ହର ଦେଖି
ପିଷ୍ଟିଡ଼ି ନ ପାରନ୍ତି ଆଖି
ଲୀଳା କଟାକ୍ଷେ ରୂପ ସିନ୍ଧି
ହୃଦୟେ ଚିତ୍ତ ନ ରହଇ
ସ୍ୱଗଣ ଗଉରୀ ସମେତେ
ସକଳେ ସ୍ମୃହାନ୍ତି ଚକିତେ

ତସ୍ୟାଃ କରାଗ୍ରାତ୍ ସ ତୁ କନ୍ଦୁକୋ ଯଦା ଗତୋ ବିଦୂରଂ ତମନୁବ୍ରଜତ୍ ସ୍ତ୍ରିୟାଃ ।
ବାସଃ ସସୂତ୍ରଂ ଲଘୁମାରୁତୋଽହରଦ୍‌ଭବସ୍ୟ ଦେବସ୍ୟ କିଲାନୁପଶ୍ୟତଃ । ୨୩ ।

ଏବଂ ତାଂ ରୁଚିରାପାଙ୍ଗୀଂ ଦର୍ଶନୀୟାଂ ମନୋରମାମ୍ ।
ଦୃଷ୍ଟ୍ୱା ତସ୍ୟାଂ ମନଶ୍ଚକ୍ରେ ବିସଜ୍ଜନ୍ତ୍ୟାଂ ଭବଃ କିଲ । ୨୪ ।
ତୟାପହୃତବିଜ୍ଞାନସ୍ତତ୍‌କୃତସ୍ମରବିହ୍ୱଳଃ ।
ଭବାନ୍ୟା ଅପି ପଶ୍ୟନ୍ତ୍ୟା ଗତହ୍ରୀସ୍ତତ୍ପଦଂ ଯଯୌ । ୨୫ ।
ସା ତମାୟାନ୍ତମାଲୋକ୍ୟ ବିବସ୍ତ୍ରା ବ୍ରୀଡ଼ିତା ଭୃଶମ୍ ।
ନିଲୀୟମାନା ବୃକ୍ଷେଷୁ ହସନ୍ତୀ ନାନ୍ୱତିଷ୍ଠତ । ୨୬ ।
ତାମନ୍ୱଗଚ୍ଛଦ୍‌ଭଗବାନ୍ ଭବଃ ପ୍ରମୁଷି[ତେ]ନ୍ଦ୍ରିୟଃ ।
କାମସ୍ୟ ଚ ବଶଂ ନୀତଃ କରେଣୁମିବ ଯୂଥପଃ । ୨୭ ।

---

ସେହି କନ୍ଦୁକ କେତେବେଳେ ହାତରୁ ଦୂରକୁ ଖସିଯାଏ, କେତେବେଳେ ତହିଁର ପଛରେ ଧାବମାନା ଏହି ରମଣୀର କାଞ୍ଚି ସହିତ ସୂକ୍ଷ୍ମବସ୍ତ୍ର ଦର୍ଶନକାରୀ ଶିବଙ୍କ ସମକ୍ଷରେ ପବନ ଉଡ଼ାଇ ନିଏ । ୨୩ ।

ଅତ୍ୟନ୍ତ ଦର୍ଶନଯୋଗ୍ୟା ସେହି ମନୋରମା ସୁନ୍ଦରୀଙ୍କୁ ବିବସ୍ତ୍ରାବସ୍ଥାରେ ଦର୍ଶନ କରି ମହାଦେବ ସପ୍ରେମ କଟାକ୍ଷରେ ଦର୍ଶନକାରିଣୀ ଏହି ରମଣୀଠାରେ ଅତ୍ୟନ୍ତ ଆକୃଷ୍ଟ ହୋଇଥିଲେ ।୨୪।

ସେହି ମୋହିନୀ କର୍ତ୍ତୃକ ଅପହୃତଜ୍ଞାନ ଏବଂ ତାହାପାଇଁ କାମବିହ୍ୱଳ ଶିବ ନିର୍ଲ୍ଲଜ ହୋଇ ପାର୍ବତୀଙ୍କ ସମ୍ମୁଖରେ ତାହା ନିକଟକୁ ଗମନ କରିଥିଲେ । ୨୫ ।

ବିବସ୍ତ୍ରା ସେହି ମୋହିନୀ ଶିବଙ୍କୁ ପଶ୍ଚାଦ୍ଦେଶରେ ଆଗମନ କରୁଥିବାର ଦେଖି ଅତ୍ୟନ୍ତ ଲଜ୍ଜିତା ହେଲେ ଏବଂ ହସି ହସି ବୃକ୍ଷାନ୍ତରାଳରେ ଅନ୍ତର୍ହିତ ହେଲେ । ନ ବସି ଗମନ କରିବାକୁ ଲାଗିଲେ ।୨୬।

ଅତ୍ୟନ୍ତ ବିକଳେନ୍ଦ୍ରିୟ କାମ ବଶୀଭୂତ ଶଙ୍କର ହସ୍ତୀ ହସ୍ତିନୀ ପଛରେ ଧାବିତ ହେଲା ପରି ସେହି ରମଣୀର ପଶ୍ଚାଦ୍ଧାବନ କରିଥିଲେ ।୨୭।

---

ଏମନ୍ତେ ମୋହିନୀର କରେ
ଥିଲା କନ୍ଦୁକ ଖସି ଧୀରେ
ତକ୍ଷଣେ ଭୂମିରେ ପଡ଼ିଲା
ପଡ଼ି ଅନେକ ଦୂର ଗଲା
କନ୍ଦୁକ ଆଣିବାର ଛଳେ
ବୃକ୍ଷ ବାହାଡ଼େ ଅତି ଖରେ
ଧାମନ୍ତେ ଅଦ୍ଭୁତ ଅବଳା
ଛୁଟିଲୁ ବସ୍ତ୍ର ଉଡ଼ିଗଲା

ପବନେ ଉଡ଼େ ଜାନୁ ବାସ
ଜାନୁ ଯୁଗଳ ହେଲା ଦୃଶ୍ୟ
ବସ୍ତ୍ର ତୋଳନ୍ତି ବାମ ହସ୍ତେ
ପୀଡ଼ିତ ଲଜ୍ଜା ଭୟ ଚିତ୍ତେ
ଅଳକା ଅଙ୍ଗୁଳିର ଅଗ୍ରେ
କପୋଳୁ ତୋଳି ବେଗବେଗେ
ଏମନ୍ତ ରୂପ ତାର ଦେଖି
ଈଶ୍ୱର ଗଉରୀ ଉପେକ୍ଷି

ମନ ବୁଡ଼ିଲା ତାର ସଙ୍ଗେ
ମଦନ ବାଣ ପୀଡ଼େ ଅଙ୍ଗେ
ଉମା ଦେଖନ୍ତେ ଲଜ୍ଜା ଛାଡ଼ି
ଧାମନ୍ତେ କାମେ ମନ ବୁଡ଼ି
ହରଙ୍କୁ ଦେଖି ବେଗେ ଧାଇଁ
ବୃକ୍ଷ ଗହଳେ ସେ ଲୁଚଇ
ରୁଦ୍ର ଧାଇଁଲେ ଅତି ବେଗେ
ମିଳିଲେ ବୃକ୍ଷଙ୍କର ଲଗେ

ସୋଽନୁବ୍ରଜ୍ୟାତିବେଗେନ ଗୃହୀତ୍ୱାନିଚ୍ଛତୀଂ ସ୍ତ୍ରିୟମ୍ ।
କେଶବନ୍ଧ ଉପାନୀୟ ବାହୁଭ୍ୟାଂ ପରିଷସ୍ୱଜେ । ୨୮ ।
ସୋପଗୂଢ଼ା ଭଗବତା କରେଣା କରିଣୀ ଯଥା ।
ଇତସ୍ତତଃ ପ୍ରସର୍ପନ୍ତୀ ବିପ୍ରକୀର୍ଣ୍ଣଶିରୋରୁହା । ୨୯ ।
ଆତ୍ମାନଂ ମୋଚୟିତ୍ୱାଙ୍ଗ ! ସୁରର୍ଷଭଭୁଜାନ୍ତରାତ୍ ।
ପ୍ରାଦ୍ରବତ୍ ସା ପୃଥୁଶ୍ରୋଣୀ ମାୟା ଦେବବିନିର୍ମିତା । ୩୦ ।
ତସ୍ୟାସୌ ପଦବୀଂ ରୁଦ୍ରୋ ବିଷ୍ଣୋରଦ୍ଭୁତକର୍ମଣଃ ।
ପ୍ରତ୍ୟପଦ୍ୟତ କାମେନ ବୈରିଣେବ ବିନିର୍ଜିତଃ । ୩୧ ।
ତସ୍ୟାନୁଧାବତୋ ରେତଶ୍ଚସ୍କନ୍ଦାମୋଘରେତସଃ ।
ଶୁଷ୍ମିଣୋ ଯୂଥପସ୍ୟେବ ବାସିତାମନୁଧାବତଃ । ୩୨ ।

---

ମହାଦେବ ଅତ୍ୟନ୍ତ ବେଗରେ ତାହାର ନିକଟବର୍ତ୍ତୀ ହୋଇ ଆକୃଷ୍ଟ ହେବାକୁ ଅନିଚ୍ଛୁକା ସେହି ରମଣୀର କେଶାକର୍ଷଣ କରି ତାହାକୁ ନିକଟକୁ ଅଣି ବାହୁଦ୍ୱାରା ଆଲିଙ୍ଗନ କରିଥିଲେ ।୨୮।

ହସ୍ତିନୀ ହସ୍ତୀ କର୍ତ୍ତୃକ ଆଲିଙ୍ଗିତ ହେଲପରି ସେହି ମୋହିନୀ ମହାଦେବଙ୍କ କର୍ତ୍ତୃକ ଆଲିଙ୍ଗିତା ଓ ଆଲୁଳାୟିତ କେଶା ହୋଇ ଇତସ୍ତତଃ ଗମନ ନିମନ୍ତେ ବ୍ୟାକୁଳ ହେଲେ । ୨୯ ।

ହେ ରାଜନ୍ ! ବିଷ୍ଣୁଙ୍କ କର୍ତ୍ତୃକ ସୃଷ୍ଟା ମାୟାମୟୀ ବିପୁଳ ନିତମ୍ବିନୀ ରମଣୀ ମହାଦେବଙ୍କ ବାହୁବନ୍ଧନରୁ ମୁକ୍ତ ହୋଇ ଶୀଘ୍ର ପଳାୟନ କରିଥିଲେ ।୩୦।

ଶତ୍ରୁ ପରି କାମକର୍ତ୍ତୃକ ଅତ୍ୟନ୍ତ ଆକୃଷ୍ଟ ହୋଇ ମହାଦେବ ଅଦ୍ଭୁତ ଲୀଳାକାରୀ ସେହି ବିଷ୍ଣୁଙ୍କୁ ଅନୁସରଣ କରିଥିଲେ ।୩୧।

ଋତୁମତୀ ହସ୍ତିନୀର ଅନୁସରଣକାରୀ ହସ୍ତୀତୁଲ୍ୟ ଅମୋଘ ବୀର୍ଯ୍ୟ ସମ୍ପନ୍ନ ମହାଦେବଙ୍କର ରେତଃ ପଥ ମଧ୍ୟରେ ସ୍ଖଳିତ ହୋଇଥିଲା ।୩୨।

---

ବୃଷଭୁ ବୃଷ ଯାନ୍ତି ଚଳି
ହସ୍ତ ଦେଖାନ୍ତି ବେଗ ହୋଇ
ଦେଖି ଧାମନ୍ତି ରୁଦ୍ର ବେଗ
ବସ୍ତ୍ରହିଁ ନାହିଁ କଟୀ ଲାଗେ
ଜଟା କଳାପ ଅସମ୍ଭାଳ
କପୋଳ ଗଲେ ଶ୍ରମ ହୋଇ
କରିଣୀ ଦେଖି ଯେସନ୍ତେ ଗଜ
ଧାମନ୍ତି ହୋଇ ଉଚ୍ଚେ ଭୁଜ
ରୁଦ୍ର ଧଇଲେ ତାକୁ ବଳେ
ଆବୋରି ବେନି ଭୁଜେ କୋଳେ

ପୁଣି ମୋହିନୀ କରୁଁ ଚଳ
ଧାମଇଁ ଜାନୁ ବସ୍ତ୍ର ହୋଇ
କବରୀଭାର ଫିଟି ତଳେ
ଖସି ପଡ଼ଇ ଫୁଲମାଳେ
ପୁଣି ଧରନ୍ତେ ହର କୋଳେ
ମୋହିନୀ ଗଲେ ଭୁଜ ତଳେ
ମୁକତ କେଶ ଅଧୋମୁଖେ
ଧାମନ୍ତି ବଦନ ସୁଖେ
ପୃଥୁ ନିତମ୍ବ ଟଳେ ଧୀରେ
ପୁଣି ଧଇଲେ ରୁଦ୍ର କରେ

ଏମନ୍ତେ ବିଷ୍ଣୁ-ମାୟାବଳେ
ଶଙ୍କର ମଦନ ଆକୁଳେ
ବଇରି ବଶେ ସେ ବିକଳେ
ପୁଣି ଧରନ୍ତି କାମ ଭୋଳେ
ପୁଣ ପଳାନ୍ତି ଭୁଜ ହୋଇ
ରୁଦ୍ର ଶରୀରୁଁ ରେତଗଲା
ଉନ୍ମତ୍ତ ଭାବେ ବୃଷ ଯେସନ୍ତେ
ଧାମଇ ଉଠଇ ଅଙ୍ଗରେ ।୨୨-୩୨

ଯତ୍ର ଯତ୍ରାପତନ୍ମହ୍ୟାଂ ରେତସ୍ତସ୍ୟ ମହାତ୍ମନଃ ।
ତାନି ରୂପ୍ୟସ୍ୟ ହେମ୍ନଶ୍ଚ କ୍ଷେତ୍ରାଣ୍ୟାସନ୍ମହୀପତେ । ୩୩ ।
ସରିତ୍ସରଃସୁ ଶୈଳେଷୁ ବନେଷୂପବନେଷୁ ଚ ।
ଯତ୍ର କ୍ୱ ଚାସନ୍ନୃଷୟସ୍ତତ୍ର ସନ୍ନିହିତୋ ହରଃ । ୩୪ ।
ସ୍କନ୍ନେ ରେତସି ସୋଽପଶ୍ୟଦାତ୍ମାନଂ ଦେବମାୟୟା ।
ଜଡ଼ୀକୃତଂ ନୃପଶ୍ରେଷ୍ଠ ସଂନ୍ୟବର୍ତ୍ତତ କଶ୍ମଳାତ୍ । ୩୫ ।
ଅଥାବଗତମାହାତ୍ମ୍ୟ ଆତ୍ମନୋ ଜଗଦାତ୍ମନଃ ।
ଅପରିଜ୍ଞେୟବୀର୍ଯ୍ୟସ୍ୟ ନ ମେନେ ତଦୁହାଦ୍ଭୁତମ୍ । ୩୬ ।
ତମବିକ୍ଲବମବ୍ରୀଡ଼ମାଲକ୍ଷ୍ୟ ମଧୁସୂଦନଃ ।
ଉବାଚ ପରମପ୍ରୀତୋ ବିଭ୍ରତ୍ ସ୍ୱାଂ ପୌରୁଷୀଂ ତନୁମ୍ । ୩୭ ।

---

ହେ ରାଜନ୍ ! ଶିବଙ୍କର ରେତଃ ଯେଉଁ ଯେଉଁ ସ୍ଥାନରେ ସ୍ଖଳିତ ହୋଇଥିଲା ସେହିସେହି ସ୍ଥାନମାନ [ସ୍ୱର୍ଣ୍ଣ ଓ ରୌପ୍ୟ କ୍ଷେତ୍ର ହୋଇଥିଲା ।୩୩।

ଏହିପରି ସେହି ରମଣୀଙ୍କୁ ଅନୁସରଣ କରି ଶିବ ନଦୀ, ସରୋବର, ପର୍ବତ ବନ, ଉପବନ ଏବଂ ଯେଉଁ ସ୍ଥାନରେ ଋଷିମାନେ ଅବସ୍ଥାନ କରୁଥିଲେ, ସେହି ସେହି ସ୍ଥାନମାନଙ୍କୁ ଗମନ କରିଥିଲେ ।୩୪।

ହେ ନୃପଶ୍ରେଷ୍ଠ ! ଏହିପରି ସ୍ଖଳିତ ଶୁକ୍ର ହୋଇ ଶିବ ନିଜକୁ ବିଷ୍ଣୁମାୟା ଜଡ଼ିତ ବୋଲି ଭାବି ମୋହ ସ୍ୱରୂପ ପାପକର୍ମରୁ ନିବୃତ୍ତ ହୋଇଥିଲେ ।୩୫।

ତଦନନ୍ତର ମହାଦେବ ଏହା ଜଗତର ଆତ୍ମାସ୍ୱରୂପୀ ବିଷ୍ଣୁଙ୍କର ମାୟାର ମହିମା ଏହିପରି ଅବଗତ ହୋଇ ଅପରିଜ୍ଞେୟ ବିଷ୍ଣୁ ମହିମା ବୁଝିବାର ଯୋଗ୍ୟତା କାହାର ନାହିଁ; ସୁତରାଂ ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟ ଜନକ ବୋଲି ମନେ କରିଥିଲେ ।୩୬।

ତଦନନ୍ତର ଭଗବାନ୍ ମଧୁସୂଦନ ନିଜ ମୂର୍ତ୍ତି ଧାରଣ କରି ରୁଦ୍ରଙ୍କୁ ଅକ୍ଷୁବ୍ଧ ଓ ଅଲଜ୍ଜିତ ଦର୍ଶନ କରି ପରମପ୍ରୀତ ହୋଇଥିଲେ ଏବଂ ନିଜର ପୌରୁଷ ଶରୀର ଗ୍ରହଣ କରିଥିଲେ ।୩୭।

---

ରେତ ପଡ଼ିଲା ଯହିଁ ତହିଁ
ମୋହିନୀ ବଶେ ମୋହ ପାଇ
ସୁବର୍ଣ୍ଣ ହୋଇଲା ତକ୍ଷଣେ
ଲତା ଗହନ ଘୋରବନେ
ନଦୀ ପର୍ବତ ସରୋବରେ
ଧାଅନ୍ତି ରେତ ବୃଷ୍ଟିଧାରେ

କୂପେ ପଡ଼ନ୍ତେ ରସ କୂପ
ତେଜ ସମୁହେ ସନ୍ଦୀପକ
ଏମନ୍ତେ ବିଷ୍ଣୁ ମାୟା ବଶେ
ଈଶ୍ୱର ଧାଇଁ ବନଦେଶେ
ନିରାଶ ହୋଇ ନିବର୍ତ୍ତିଲେ
ଗଉରୀ ନିକଟେ ମିଳିଲେ

ବିଷ୍ଣୁ ମାୟାରେ ମୋହ ମନ
ରୁଦ୍ର ହୋଇଲେ ଛନ୍ନ ଛନ୍ନ
ଈଶ୍ୱର ଦୁଃଖ ବିଷ୍ଣୁ ଦେଖି
ମୋହିନୀ ଶରୀରର ଉପେକ୍ଷି
ନିଜ ମୂରତି ଧରି ହରି
ରୁଦ୍ର ସମୀପେ ବିଜେକରି

। ୩୩-୩୭ ।

ଶ୍ରୀ ଭଗବାନୁବାଚ ।
ଦିଷ୍ଟ୍ୟା ତ୍ୱଂ ବିବୁଧଶ୍ରେଷ୍ଠ ସ୍ୱାଂ ନିଷ୍ଠାମାତ୍ମନ ସ୍ଥିତଃ ।
ଯନ୍ମେ ସ୍ତ୍ରୀରୂପୟା ସ୍ୱୈରଂ ମୋହିତୋଽପ୍ୟଙ୍ଗ ମାୟୟା ।୩୮।
କୋ ନୁ ମେଽତିତରେନ୍ମାୟାଂ ବିଷକ୍ତସ୍ତ୍ୱଦୃତେ ପୁମାନ୍ ।
ତାଂସ୍ତାନ୍ ବିସୃଜତୀଂ ଭାବାନ୍ ଦୁସ୍ତରାମକୃତାତ୍ମଭିଃ । ୩୯ ।
ସେୟଂ ଗୁଣମୟୀ ମାୟା ନ ତ୍ୱାମଭିଭବିଷ୍ୟତି ।
ମୟା ସମେତା କାଳେନ କାଳରୂପେଣ ଭାଗଶଃ । ୪୦ ।
ଶ୍ରୀ ଶୁକ ଉବାଚ । ଏବଂ ଭଗବତା ରାଜନ୍ ଶ୍ରୀବତ୍ସାଙ୍କେନ ସତ୍କୃତଃ ।
ଆମନ୍ତ୍ର୍ୟ ତଂ ପରିକ୍ରମ୍ୟ ସଗଣଃ ସ୍ୱାଳୟଂ ଯଯୌ । ୪୧ ।
ଆତ୍ମାଂଶଭୂତାଂ ତାଂ ମାୟାଂ ଭବାନୀଂ ଭଗବାନ୍ ଭବଃ ।
ସମ୍ମତାମୃଷିମୁଖ୍ୟାନାଂ ପ୍ରୀତ୍ୟାଚଷ୍ଟାଥ ଭାରତ । ୪୨ ।

---

ଶ୍ରୀ ଭଗବାନ୍ କହିଲେ, ହେ ! ବିବୁଦ୍ଧ ଶ୍ରେଷ୍ଠ, ସ୍ତ୍ରୀ ରୂପିଣୀ ମୋର ମାୟାରେ ବିମୁଗ୍ଧ ହୋଇ ସୁଦ୍ଧା ଆପଣ ସ୍ୱୟଂ ଯେ ପ୍ରକୃତସ୍ଥ ରହିଲେ ଏହା ପରମ ଭାଗ୍ୟର କଥା ।୩୮।

ଆପଣଙ୍କ ବ୍ୟତୀତ ଯେ କୌଣସି ବ୍ୟକ୍ତି ଏପରି ଆଶକ୍ତ ହୋଇ ପୁନର୍ବାର ଅଜିତେନ୍ଦ୍ରିୟମାନଙ୍କର ଦୁଃସ୍ତେଜ୍ୟା ବିବିଧ ଭାବ ସୃଜନକାରିଣୀ ମୋହର ମାୟାକୁ ଅତିକ୍ରମ କରି ପାରନ୍ତି ନାହିଁ ।୩୯।

ସେହି ସେହି ଗୁଣମୟୀ ମାୟା ସୃଷ୍ଟି ପ୍ରଭୃତିର କାଳରୂପୀ, ମୋ ସହିତ ରଜଃ ପ୍ରଭୃତି ଅଂଶଦ୍ୱାରା ମିଳିତ ହୋଇ କେତେବେଳେ ଆପଣାଙ୍କୁ ମୁଗ୍ଧ କରିବାକୁ ସମର୍ଥ ହୁଏ ନାହିଁ ।୪୦।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଏହିପରି ଶ୍ରୀବତ୍ସାଙ୍କ ଭଗବାନ୍ ବିଷ୍ଣୁଙ୍କ କର୍ତ୍ତୃକ ଆଦୃତ ହୋଇ ଶଙ୍କର ବିଷ୍ଣୁଙ୍କୁ ସମ୍ଭାଷଣ ଓ ପ୍ରଦକ୍ଷୀଣ କରି ସ୍ୱଗଣ ସହିତ ସ୍ୱଧାମକୁ ଫେରି ଯାଇଥିଲେ ।୪୧।

ହେ ଭାରତ ! ଭଗବାନ୍ ଶଙ୍କର ନିଜର ଅଂଶଭୂତା ମାୟାରୂପା; ମୁନିଶ୍ରେଷ୍ଠମାନଙ୍କର କର୍ତ୍ତୃକ ସମ୍ମତା ଭବାନୀଙ୍କୁ ପ୍ରୀତି ସହକାରେ କହିଲେ ।୪୨।

---

କହନ୍ତି ରୁଦ୍ର ମୃଗ ରହି
କୋମଳ ବାକ୍ୟ ଭାବଗ୍ରାହୀ
ଶ୍ରୀଭଗବାନୁବାଚ—
ହେ ଦେବଦେବ ବିଶ୍ୱନାଥ
ତୁ ହେଲୁ ମାୟାରେ ମୋହିତ
ଅଶେଷ ଜନ ମାୟାବଳେ
ଭ୍ରମନ୍ତି ଅବନୀ ମଣ୍ଡଳେ
ନାନାପ୍ରକାରେ ତନୁ ଧରି
କେ ବା ପାରିବ ତହୁଁ ତରି

ହେ ରୁଦ୍ର ମହିମା ତୋହର
ଅଜ୍ଞାନ ଜନେ ଅଗୋଚର
ଯେ ବିଷ୍ଣୁମାୟା ଗୁଣମୟୀ
ସେ ତୋତେ ଲଗିବଟି ନାହିଁ
ତୁ ନାଥ ନିଜ ମାୟାବଳେ
ତ୍ରିଗୁଣ ରାପୁ ଅନ୍ତକାଳେ ।୩୮,୪୦

ଶ୍ରୀଶୁକଉବାଚ—
ଶୁଣ ରାଜନ ଏକ ଚିତ୍ତେ
ହରଙ୍କୁ ପ୍ରବୋଧି ଏମନ୍ତେ
ଶିବଙ୍କୁ ପ୍ରଦକ୍ଷିଣ କଲେ
ନିଜ ଭୁବନେ ହରି ଗଲେ
ରୁଦ୍ର ଭବାନୀ ଗଣ ଭୁଲେ
ନିଜ ଭୁବନେ ବିଜେ କଲେ
ଋଷିଙ୍କ ମଧ୍ୟେ ହର ବସି
ବିଷ୍ଣୁ ମହିମା ପରଶଂସି ।୪୧,୪୨

ଅପି ବ୍ୟପଶ୍ୟସ୍ତ୍ୱମଜସ୍ୟ ମାୟାଂ ପରସ୍ୟ ପୁଂସଃ ପରଦେବତାୟାଃ ।
ଅହଂ କଳାନାମୃଷଭୋଽପି ମୁହ୍ୟେ ଯୟାବଶୋଽନ୍ୟେ କିମୁତାସ୍ୱତନ୍ତ୍ରାଃ ।୪୩।
ଯଂ ମାମପୃଚ୍ଛସ୍ତ୍ୱମୁପେତ୍ୟ ଯୋଗାତ୍ ସମାସହସ୍ରାନ୍ତ ଉପାରତଂ ବୈ ।
ସ ଏଷ ସାକ୍ଷାତ୍ ପୁରୁଷଃ ପୁରାଣୋ ନ ଯତ୍ର କାଳୋ ବିଶତେ ନ ବେଦଃ । ୪୪ ।

ଶ୍ରୀ ଶୁକ ଉବାଚ ।

ଇତି ତେଽଭିହିତସ୍ତାତ ବିକ୍ରମଃ ଶାର୍ଙ୍ଗଧନ୍ୱନଃ ।
ସିନ୍ଧୋର୍ନିର୍ମଥନେ ଯେନ ଧୃତଃ ପୃଷ୍ଠେ ମହାଚଳଃ । ୪୫ ।

ଏତନ୍ମୁହୁଃ କୀର୍ତ୍ତୟତୋଽନୁଶୃଣ୍ୱତୋ ନ ରିଷ୍ୟତେ ଜାତୁ ସମୁଦ୍ୟମଃ କ୍ୱଚିତ୍ ।
ଯଦୁତ୍ତମଶ୍ଲୋକଗୁଣାନୁବର୍ଣ୍ଣନଂ ସମସ୍ତସଂସାରପରିଶ୍ରମାପହମ୍ । ୪୬ ।

---

ପ୍ରିୟତମେ । ପରମ ଦେବତା ପରମ ପୁରୁଷ ଭଗବାନଙ୍କର ମାୟା ଦେଖିଲ ତ ? ମୁଁ ସମସ୍ତ କଳାର ଅଧୀଶ୍ୱର ଏବଂ ଜିତେନ୍ଦ୍ରିୟ ହୋଇ ମଧ୍ୟ ଯହିଁରେ ମୁଗ୍ଧ ହେଲି, ସାଧାରଣ ଅସ୍ୱତନ୍ତ୍ର ବ୍ୟକ୍ତିମାନେ ମୁଗ୍ଧ ହେବେ ଏଥିରେ ସନ୍ଦେହ କଣ ? ।୪୩।

ହେ ସତି । ସହସ୍ର ବର୍ଷ ପୂର୍ବେ ମୁଁ ଯୋଗ ନିବୃତ୍ତି ହୁଅନ୍ତେ ତୁମ୍ଭେ ଯାହାଙ୍କ କଥା ମତେ ପ୍ରଶ୍ନ କରିଥିଲ ଏ ସେହି ସାକ୍ଷାତ୍ ପରମ ପୁରୁଷ ବିଷ୍ଣୁ, କାଳ ସର୍ବତ୍ର ପ୍ରବେଶ କରିବାକୁ ସକ୍ଷମ ହେଲେ ମଧ୍ୟ ଏହାଙ୍କ ଠାରେ ପ୍ରବେଶ କରି ନ ପାରେ, ଏବଂ ବେଦ ସମସ୍ତ ବିଷୟ ଜାଣି ମଧ୍ୟ ଏହାଙ୍କୁ ଜାଣି ନ ପାରେ ।୪୪।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଯେଉଁ ଶାର୍ଙ୍ଗଧନ୍ୱା ସମୁଦ୍ରମନ୍ଥନ ବେଳେ ମନ୍ଦର ପର୍ବତକୁ ପୃଷ୍ଠରେ ଧାରଣ କରିଥିଲେ ତାହାଙ୍କର ବିକ୍ରମ ପ୍ରସଙ୍ଗ ତୁମ୍ଭ ନିକଟରେ ବର୍ଣ୍ଣନା କଲି ।୪୫।

ଯେଉଁ ବ୍ୟକ୍ତି ଭକ୍ତି ସହକାରେ ଏହି ବିଷୟ ଶ୍ରବଣ ଓ କୀର୍ତ୍ତନ କରନ୍ତି, ସେମାନଙ୍କର ଉଦ୍ୟମ ଭଙ୍ଗ ହୁଏ ନାହିଁ । କାରଣ ଉତ୍ତମଶ୍ଲୋକ ଭଗବାନଙ୍କର ଗୁଣ କୀର୍ତ୍ତନ ସାଂସାରିକ ସମସ୍ତ କ୍ଲେଶ ବିନାଶକାରୀ ।୪୬।

---

ଈଶ୍ୱରଉବାଚ—

ଶୁଣ ଅଶେଷ ବିଷିବରେ
ବିଷ୍ଣୁର ମାୟା ଏ ଶମ୍ଭୁ କେ
ଅଶେଷ ଜନ-ମନ ହରେ
କେବା ଏ ସଂସାରୁ ନିସ୍ତରେ

ସେ ମାୟାଧରର ବିଶେଷେ
ମାୟା ଦେଖିଲ ଥାଇ ପାଶେ
ଯା ମାୟାବଳେ ମୋହେ ଶିବ
ଆନ କେ ସେ ମାୟା ତରିବ
ବିଷ୍ଣୁର ମାୟା ଅଗୋଚର
ଯହିଁ ଭ୍ରମନ୍ତି ବ୍ରହ୍ମା ହର ।୪୩,୪୪

ଶ୍ରୀଶୁକଉବାଚ—

ଏମନ୍ତ ହରିର ମହିମା
କେ କହିପାରେ ଗୁଣ ସୀମା
ଯେ ହରି ଜଗତ ଉଦ୍ଧରେ
କପଟେ କୂର୍ମ୍ମରୂପ ଧରେ

ଅସଦବିଷଦମଙ୍ଘ୍ରିଂ ଭାବଗମ୍ୟଂ ପ୍ରପନ୍ନାନ୍-
ଅମୃତମମରବର୍ଯ୍ୟା ନାଶୟତ୍ ସିନ୍ଧୁମଥ୍ୟମ୍ ।
କପଟଯୁବତୀବେଶୋ ମୋହୟନ୍ ଯଃ ସୁରାରୀଂ-
ସ୍ତମହମୁପସୃତାନାଂ କାମପୂରଂ ନତୋଽସ୍ମି । ୪୭ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶଙ୍କରମୋହନଂ ନାମ
ଦ୍ୱାଦଶୋଽଧ୍ୟାୟଃ ।

---

ମାୟାନାରୀ ବେଶଧାରୀ ଯେ ଦାନବମାନଙ୍କୁ ମୋହିତ କରି ତାଙ୍କର ଚରଣାଶ୍ରିତ ଦେବତାମାନଙ୍କୁ ସମୁଦ୍ର ମନ୍ଥନରୁ ଜାତ ଅମୃତ ପାନ କରାଇଥିଲେ, ଯାହାଙ୍କର ଚରଣ ଅସଜ୍ଜନ ଲୋକମାନଙ୍କର ଅଗୋଚର କେବଳ ଉପାସନା ଦ୍ୱାରା ଲଭ୍ୟ, ଯେ ଆଶ୍ରିତ ଜନର ଅଭିଳାଷ ପୂରଣକାରୀ, ମୁଁ ତାହାଙ୍କୁ ଭକ୍ତି ପୂର୍ବକ ପ୍ରଣାମ କରୁଅଛି ।୪୭।

---

ତାର ଚରିତ ଶୁଣି କର୍ଣ୍ଣେ
ମୁଖେ ଗୁଣନ୍ତି ଯେବା ଜନେ
ଯେ ଅବା ପ୍ରସ୍ତାବେ ବଖାଣି
ଘୋର ସଂସାରୁ ତରେ ପ୍ରାଣୀ
। ୪୬,୪୭ ।

ବୋଲଇ ବିପ୍ର ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ
ଅଷ୍ଟମେ ସ୍କନ୍ଧେ ବିଷ୍ଣୁବାଣୀ
ଶୁଣି ସଂସାରୁ ତରି ପ୍ରାଣୀ ॥





## ତ୍ରୟୋଦଶୋଽଧ୍ୟାୟଃ ।

ତ୍ରୟୋଦଶେ ତୁ ବର୍ଣ୍ଣ୍ୟନ୍ତେ ସପ୍ତମାଦୀନ୍ୟନୁକ୍ରମାତ୍ ।
ମନ୍ୱନ୍ତରାଣି ସର୍ବାଣି ଷଡ଼୍‌ଦଧାନ ପୃଥକ୍ ପୃଥକ୍ ।୦। ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ

ମନୁର୍ବିବସ୍ୱତଃ ପୁତ୍ରଃ ଶ୍ରାଦ୍ଧଦେବ ଇତି ଶ୍ରୁତଃ ।
ସପ୍ତମୋ ବର୍ତ୍ତମାନୋ ଯସ୍ତଦପତ୍ୟାନି ମେ ଶୃଣୁ । ୧ ।
ଇକ୍ଷ୍ୱାକୁର୍ନଭଗଶ୍ଚୈବ ଧୃଷ୍ଟଃ ଶର୍ଯ୍ୟାତିରେବ ଚ ।
ନରିଷ୍ୟନ୍ତୋଽଥ ନାଭଗଃ ସପ୍ତମୋ ଦିଷ୍ଟ ଉଚ୍ୟତେ । ୨ ।
ତରୁଷଶ୍ଚ ପୃଷଧ୍ରଶ୍ଚ ଦଶମୋ ବସୁମାନ୍ ସ୍ମୃତଃ ।
ମନୋର୍ବୈବସ୍ୱତସ୍ୟୈତେ ଦଶ ପୁତ୍ରାଃ ପରନ୍ତପ । ୩ ।

---

## ସପ୍ତାଦି ମନ୍ୱନ୍ତର ପ୍ରସଙ୍ଗ ।

ତ୍ରୟୋଦଶ ଅଧ୍ୟାୟରେ ସପ୍ତମଠାରୁ ଚତୁର୍ଦ୍ଦଶ ପର୍ଯ୍ୟନ୍ତ ସମସ୍ତ ମନୁମାନଙ୍କ ବିଷୟ ପୃଥକ୍ ପୃଥକ୍ ଭାବରେ ବର୍ଣ୍ଣନା କରି ଯାଇଅଛି । ० ।

ଶ୍ରୀ ଶୁକଦେବ କହିଲେ—

ବିବସ୍ୱାନଙ୍କର ପୁତ୍ର ଶ୍ରାଦ୍ଧଦେବ ନାମରେ ଖ୍ୟାତ ସପ୍ତମମନୁ , ତାଙ୍କର ସନ୍ତାନମାନଙ୍କର କଥା ଶ୍ରବଣ କରନ୍ତୁ ।୧।

ଇକ୍ଷ୍ୱାକୁ, ନଭଗ, ଧୃଷ୍ଟ, ଶର୍ଯ୍ୟାତି, ନରିଷ୍ୟନ୍ତ, ନାଭଗ, ଦିଷ୍ଟ, ତରୁଷ, ପୃଷଧ୍ର, ବସୁମାନ୍ ଏମାନେ ଦଶଜଣ ବୈବସ୍ୱତ ମନୁଙ୍କର ପୁତ୍ର । ୨, ୩ ।

---

ସପ୍ତମୁ ଚତୁର୍ଦ୍ଦଶ ଯାଏ, ଯେ ଅଷ୍ଟମନ୍ୱନ୍ତର ହୋଏ । ସେ ସର୍ବ ମନୁଙ୍କ ଚରିତ, ତ୍ରୟୋଦଶରେ ଏ ବର୍ଣ୍ଣିତ।।

ଶ୍ରୀଶୁକଉବାଚ—

ଶୁଣ ହେ ଅଭିମନ୍ୟୁ ସୁତ
ସପ୍ତମେ ମନୁ-ବଂଶେ ଯାତ
ସୂର୍ଯ୍ୟ ତନୟ ଅନୁପମ
ତାହାର ଶ୍ରାଦ୍ଧଦେବ ନାମ
ବର୍ତ୍ତମାନ ଯା ଭୋଗକାଳ
ଯେ ଶୁଦ୍ଧ ସୁଗୁଣ ସୁଶୀଳ
ତାର ସନ୍ତତି ହେଲେ ଯେତେ
କହିବି ଶୁଣ ଏକଚିତ୍ତେ । ୧ ।
ଇକ୍ଷ୍ୱାକୁ ନଭଗ ଶଯ୍ୟାତି
ଧୃଷ୍ଟ ନରିଷ୍ୟନ୍ତ ସନ୍ତତି
ନାଭଗ ଦ୍ରିଷ୍ଟ ଯେ ସପ୍ତମ
କରୁଷ ପୃଷଧ୍ର ନବମ
ଦଶମ ବସୁମାନ ନାମ
ବୈବସ୍ୱତର ଏ ନନ୍ଦନ । ୨,୩ ।

ଆଦିତ୍ୟା ବସବୋ ରୁଦ୍ରା ବିଶ୍ୱେଦେବା ମରୁଦ୍‌ଗଣାଃ ।
ଅଶ୍ୱିନାବୃଭବୋ ରାଜନ୍ନିନ୍ଦ୍ରସ୍ତେଷାଂ ପୁରନ୍ଦରଃ । ୪ ।
କଶ୍ୟପୋଽତ୍ରିର୍ବଶିଷ୍ଠଶ୍ଚ ବିଶ୍ୱାମିତ୍ରୋଽଥ ଗୌତମଃ ।
ଜମଦଗ୍ନିର୍ଭରଦ୍ୱାଜ ଇତି ସପ୍ତର୍ଷୟଃ ସ୍ମୃତାଃ । ୫ ।
ଅତ୍ରାପି ଭଗବଜ୍ଜନ୍ମ କଶ୍ୟପାଦଦିତେରଭୂତ୍ ।
ଆଦିତ୍ୟାନାମବରଜୋ ବିଷ୍ଣୁର୍ବାମନରୂପଧୃକ୍ । ୬ ।
ସଂକ୍ଷେପତୋ ମୟୋକ୍ତାନି ସପ୍ତ ମନ୍ୱନ୍ତରାଣି ତେ ।
ଭବିଷ୍ୟାଣ୍ୟଥ ବକ୍ଷ୍ୟାମି ବିଷ୍ଣୋଃ ଶକ୍ତ୍ୟାନ୍ୱିତାନି ଚ ।୭।
ବିବସ୍ୱତଶ୍ଚ ଦ୍ୱେ ଜାୟେ ବିଶ୍ୱକର୍ମସୁତେ ଉଭେ ।
ସଂଜ୍ଞା ଛାୟା ଚ ରାଜେନ୍ଦ୍ର ଯେ ପ୍ରାଗଭିହିତେ ତବ । ୮ ।

---

ହେ ରାଜନ୍ ! ଏ ମନ୍ୱନ୍ତରରେ ଆଦିତ୍ୟ, ବସୁ, ରୁଦ୍ର, ମରୁଦ୍‌ଗଣ, ବିଶ୍ୱେଦେବଗଣ, ଅଶ୍ୱିନୀକୁମାରଦ୍ୱୟ, ଋଭୁଗଣ ଏମାନେ ଦେବତା, ପୁରନ୍ଦର ଏହି ଦେବତାମାନଙ୍କର ଇନ୍ଦ୍ର ।୪।

କଶ୍ୟପ, ଅତ୍ରି, ବଶିଷ୍ଠ, ବିଶ୍ୱାମିତ୍ର, ଗୌତ , ଯମଦଗ୍ନି ଭରଦ୍ୱାଜ ଏମାନେ ସପ୍ତର୍ଷି ।୫।

ଏହି ମନ୍ୱନ୍ତରରେ ପ୍ରଜାପତି କଶ୍ୟପଙ୍କ ଠାରୁ ଅଦିତିଙ୍କ ଗର୍ଭରେ ଭଗବାନ ଜନ୍ମ ହୋଇଥିଲେ। ସେ ଆଦିତ୍ୟମାନଙ୍କର ସର୍ବ କନିଷ୍ଠ ବାମନ ରୂପଧାରୀ ବିଷ୍ଣୁ । ୬ ।

ହେ ରାଜନ୍ ! ତୁମ୍ଭ ନିକଟରେ ସଂକ୍ଷେପରେ ସାତୋଟି ମନ୍ୱନ୍ତରପ୍ରସଙ୍ଗ କହିଲି । ବର୍ତ୍ତମାନ ଭବିଷ୍ୟତ୍ ବିଷ୍ଣୁଙ୍କର ଶକ୍ତି ଯୁକ୍ତ ଅନ୍ୟ ମନୁଙ୍କ କଥା କହିବି ।୭।

ସୂର୍ଯ୍ୟଙ୍କର ଦୁଇପତ୍ନୀ । ଉଭୟେ ବିଶ୍ୱକର୍ମାଙ୍କର କନ୍ୟା—ସଂଜ୍ଞା ଓ ଛାୟା । ପୂର୍ବେ ଏମାନଙ୍କ ପ୍ରସଙ୍ଗ ତୁମ୍ଭଙ୍କୁ କହିଅଛି ।୮।

---

ସେ ମନୁକାଳେ ଦେବଗଣ
ତାହାଙ୍କ ନାମ ଏବେ ଶୁଣ
ଆଦିତ୍ୟ ବସୁ ରୁଦ୍ର ବିଶ୍ୱ
ଅଶ୍ୱିନୀ ଋଭୁ ଅଣଚାଶ
ତାହାଙ୍କମଧ୍ୟେ ଦେବବର
ଇନ୍ଦ୍ରର ନାମ ପୁରନ୍ଦର । ୪ ।
ଯେ ଇନ୍ଦ୍ରକାଳେ ସପ୍ତଋଷି
ଭ୍ରମନ୍ତି ଧ୍ରୁବ ଚକ୍ରେ ବସି
କଶ୍ୟପ ଅତ୍ରି ଆଦି ଶ୍ରେଷ୍ଠ
ତୃତୀୟ ତନୟ ବଶିଷ୍ଠ
ଗୌତମ ବିଶ୍ୱାମିତ୍ର ଦ୍ୱିଜ
ଜମଦଗ୍ନି ଯେ ଭରଦ୍ୱାଜ
ଏ ଆଦି ନାମେ ସପ୍ତମୁନି
ଚକ୍ରେ ଭ୍ରମନ୍ତି କର୍ମ୍ମ ଘେନି । ୫ ।
ବଇବସ୍ୱତ ମନୁ କାଳେ
ଗୋବିନ୍ଦ ବାମନ ସ୍ୱରୂପେ
ଜନ୍ମିଲେ ଅଦିତି ଉଦର
କଶ୍ୟପ ବୀର୍ଯ୍ୟେ ଦେବବର ।୬।
ଏ ସପ୍ତ ମନ୍ୱନ୍ତର ଯେତେ
ଏବେ କହିଲୁଁ ତୋ ଅଗ୍ରତେ
ଏବେ ଭବିଷ୍ୟ ମନୁ ସପ୍ତ
ଶୁଣ ସୁମନେ ପରୀକ୍ଷିତ । ୭ ।
ବିଶ୍ୱକର୍ମାର କନ୍ୟା ବେନି
ସୂର୍ଯ୍ୟ ବରିଲେ ଭାର୍ଯ୍ୟା ଘେନି
ରୂପେ ଦିଶନ୍ତି ଅନୁପମ
ତାହାଙ୍କ ସଂଜ୍ଞା ଛାୟା ନାମ । ୮ ।

ତୃତୀୟାଂ ବଡ଼ବାମେକେ ତାସାଂ ସଂଜ୍ଞା ସୁତାସ୍ତ୍ରୟଃ ।
ଯମୋ ଯମୀ ଶ୍ରାଦ୍ଧଦେବଶ୍ଛାୟାୟାଶ୍ଚ ସୁତାନ୍ ଶୃଣୁ । ୯ ।
ସାବର୍ଣ୍ଣିସ୍ତପତୀ କନ୍ୟା ଭାର୍ଯ୍ୟା ସଂବରଣସ୍ୟ ଯା ।
ଶନୈଶ୍ଚରସ୍ତୃତୀୟୋଽଭୂଦଶ୍ୱିନୌ ବଡ଼ବାତ୍ମଜୌ । ୧୦ ।
ଅଷ୍ଟମେଽନ୍ତର ଆୟାତେ ସାବର୍ଣ୍ଣିର୍ଭବିତା ମନୁଃ ।
ନିର୍ମୋକବିରଜସ୍କାଦ୍ୟାଃ ସାବର୍ଣ୍ଣିତନୟା ନୃପ । ୧୧ ।
ତତ୍ର ଦେବା ସୁତପସୋ ବିରଜା ଅମୃତପ୍ରଭାଃ ।
ତେଷାଂ ବିରୋଚନସୁତୋ ବଳିରିନ୍ଦ୍ରୋ ଭବିଷ୍ୟତି । ୧୨ ।
ଦତ୍ତ୍ୱେମାଂ ଯାଚମାନାୟ ବିଷ୍ଣବେ ଯଃ ପଦତ୍ରୟମ୍ ।
ରାଦ୍ଧମିନ୍ଦ୍ରପଦଂ ହିତ୍ୱା ତତଃ ସିଦ୍ଧିମବାପ୍‌ସ୍ୟତି । ୧୩ ।

---

କୌଣସି କୌଣସି ଋଷି କହନ୍ତି - ସୂର୍ଯ୍ୟଙ୍କର ତୃତୀୟପତ୍ନୀ ବଡ଼ବା, ସେମାନଙ୍କ ମଧ୍ୟରୁ ସଂଜ୍ଞାଙ୍କର ତିନୋଟି ସନ୍ତାନ—ଯମ, ଯମୀ ଓ ଶ୍ରାଦ୍ଧଦେବ; ଛାୟାଙ୍କର ସନ୍ତାନମାନଙ୍କ ପ୍ରସଙ୍ଗ ଶ୍ରବଣ କର ।୯।

ସାବର୍ଣ୍ଣି ଓ ତପତୀ, ସେମାନେ ସମ୍ବରଣଙ୍କର ଭାର୍ଯ୍ୟା ହୋଇଥିଲେ । ତୃତୀୟରେ ଶନୈଶ୍ଚର, । ବଡ଼ବାଙ୍କର ଦୁଇଟି ଯମଜ ପୁତ୍ର—ଅଶ୍ୱିନୀକୁମାର ଦ୍ୱୟ ।୧୦।

ଅଷ୍ଟମ ମନ୍ୱନ୍ତରରେ ସାବର୍ଣ୍ଣି ମନୁ ହେବେ । ହେ ନୃପ ! ନିର୍ମୋକ, ବିରଜସ୍କ ପ୍ରଭୃତି ସାବର୍ଣ୍ଣିଙ୍କର ପୁତ୍ର । ୧୧ ।

ଏହି ମନ୍ୱନ୍ତରରେ ସୁତପା, ବିରଜା ଓ ଅମୃତପ୍ରଭ ପ୍ରଭୃତି ଦେବତା ଏବଂ ବିରୋଚନ ପୁତ୍ର ବଳି ସେମାନଙ୍କର ଇନ୍ଦ୍ର ହେବେ ।୧୨।

ଯେଉଁ ବଳି ବିଷ୍ଣୁଙ୍କ ପ୍ରାର୍ଥନାରେ ତ୍ରିପାଦ ଭୂମି ଛଳରେ ତ୍ରିଲୋକ ଦାନ କରି ଏବଂ ନିଜେ ଇନ୍ଦ୍ର ପଦ ପ୍ରାପ୍ତ ହୋଇ ତାହା ତ୍ୟାଗ କରିଥିଲେ; ସେ ପରେ ମୁକ୍ତିଲାଭ କରିବେ । ୧୩ ।

---

ସୂର୍ଯ୍ୟର ତେଜ ଅସହନେ
ସଂଜ୍ଞା ଅଶ୍ୱିନୀ-ରୂପେ ବନେ
ସୂର୍ଯ୍ୟ ରମିଲେ ତାର ତୁଲେ
ଅଶ୍ୱିନୀ କୁମାର ଜନ୍ମିଲେ
ପ୍ରଥମେ ସୂର୍ଯ୍ୟ ତୁଲେ ରମି
ସଂଜ୍ଞା ପ୍ରସବେ ପୁତ୍ର ତିନି
ଯମ ଯମୁନା ଭାଇ ଭଗ୍ନୀ
ଜନ୍ମିଲେ ଶ୍ରାଦ୍ଧ ଦେବ ତିନି

କେ କହିପାରୁ ତାଙ୍କ ସ୍ତବେ
ଛାୟା ଅପତ୍ୟ ଶୁଣ ଏବେ । ୯ ।
ସାବର୍ଣ୍ଣି ନାମେ ସୂର୍ଯ୍ୟ ସୁତ
କନ୍ୟା ତପତୀ ନାମେ ଜାତ
ତୃତୀୟ ପୁତ୍ର ଶନୈଶ୍ଚର
ଏବେ ହୋ ଶୁଣ ନୃପବର ।୧୦।
ସାବର୍ଣ୍ଣି ଅଷ୍ଟ ମନ୍ୱନ୍ତରେ
ଭଜିବ ସଂସାର ବେଭାରେ

ନିର୍ମୋକ ବିରଜସ୍କ ଆଦି
ସାବର୍ଣ୍ଣି ତନୟ ସମ୍ପାଦି
ବିରଜ ଆଦି ଦେବଗଣେ
ଜନମ ସଂସାର କାରଣେ
ତାହାଙ୍କ ପାଳନ ପ୍ରବନ୍ଧେ
ବଳି ବସିବ ଇନ୍ଦ୍ରପଦେ ।। ୧୧,୧୨
ଯାହାକୁ ଛଳିଲେ ବାମନ
ଯଜ୍ଞେ ପୃଥିବୀ ଦେଲା ଦାନ

ଯୋଽସୌ ଭଗବତା ବଦ୍ଧଃ ପ୍ରୀତେନ ସୁତଳେ ପୁନଃ ।
ନିବେଶିତୋଽଧିକେ ସ୍ୱର୍ଗାଦଧୁନାସ୍ତେ ସ୍ୱରାଡ଼ିବ । ୧୪ ।
ଗାଲବୋ ଦୀପ୍ତିମାନ୍ ରାମୋ ଦ୍ରୋଣପୁତ୍ର କୃପସ୍ତଥା ।
ଋଷ୍ୟଶୃଙ୍ଗଃ ପିତାସ୍ମାକଂ ଭଗବାନ୍ ବାଦରାୟଣଃ । ୧୫ ।
ଇମେ ସପ୍ତର୍ଷୟସ୍ତତ୍ର ଭବିଷ୍ୟନ୍ତି ସ୍ୱଯୋଗତଃ ।
ଇଦାନୀମାସତେ ରାଜନ୍ ସ୍ୱେ ସ୍ୱେ ଆଶ୍ରମମଣ୍ଡଳେ । ୧୬ ।
ଦେବଗୁହ୍ୟାତ୍ ସରସ୍ୱତ୍ୟାଂ ସାର୍ବଭୌମ ଇତି ପ୍ରଭୁଃ ।
ସ୍ଥାନଂ ପୁରନ୍ଦରାଦ୍ଧୃତ୍ୱା ବଳୟେ ଦାସ୍ୟତୀଶ୍ୱରଃ । ୧୭ ।
ନବମୋ ଦକ୍ଷସାବର୍ଣ୍ଣିର୍ମନୁର୍ବରୁଣସମ୍ଭବଃ ।
ଭୂତକେତୁର୍ଦୀପ୍ତକେତୁରିତ୍ୟାଦ୍ୟାସ୍ତସ୍ୟ ସୁତା ନୃପ । ୧୮ ।

---

ଭଗବାନ୍ ପ୍ରୀତ ହୋଇ ତାହାଙ୍କୁ ବନ୍ଧନକରି ସ୍ୱର୍ଗଠାରୁ ଅଧିକ ସୁଖତର ସୁତଳରେ ସ୍ଥାପନ କରି ଅଛନ୍ତି । ସେ ବର୍ତ୍ତମାନ ଇନ୍ଦ୍ରତୁଲ୍ୟ ସେଠାରେ ରହିଅଛନ୍ତି ।୧୪।

ପୂର୍ବୋକ୍ତ ମନ୍ୱନ୍ତରରେ ଗାଲବ ଦୀପ୍ତିମାନ୍ ପରଶୁରାମ, ଅଶ୍ୱତ୍ଥାମା, କୃପ, ଋଷ୍ୟଶୃଙ୍ଗ, ଆମର ପିତା ଭଗବାନ୍ ବ୍ୟାସଦେବ ଏମାନେ ସପ୍ତର୍ଷି ହେବେ । ଏମାନେ ବର୍ତ୍ତମାନ ଯୋଗ ଅବଲମ୍ବନ କରି ନିଜ ନିଜର ଆଶ୍ରମରେ ଅବସ୍ଥାନ କରୁଅଛନ୍ତି । ୧୫, ୧୬ ।

ହେ ରାଜନ୍ ! ଏହି ମନ୍ୱନ୍ତରରେ ଦେବଗୁହ୍ୟଙ୍କ ଠାରୁ ସରସ୍ୱତୀଙ୍କ ଗର୍ଭରେ ଭଗବାନ୍ ଅବତୀର୍ଣ୍ଣ ହୋଇ ସାର୍ବଭୌମ ନାମରେ ବିଖ୍ୟାତ ହେବେ । ସେ ପୁରନ୍ଦରଙ୍କଠାରୁ ଇନ୍ଦ୍ରତ୍ୱ ଅପହରଣ କରି ବଳିଙ୍କୁ ଇନ୍ଦ୍ରତ୍ୱ ପ୍ରଦାନ କରିବେ ।୧୭।

ବରୁଣଙ୍କ ପୁତ୍ର ଦକ୍ଷ ସାବର୍ଣ୍ଣି ନବମ ମନୁ ଭୂତକେତୁ, ଦୀପ୍ତକେତୁ ପ୍ରଭୃତି ତାହାଙ୍କର ପୁତ୍ର ।୧୮।

---

ତିନି ଚରଣ ଦାନ ଦେଇ
ବାମନ ପାଦ ମୁଣ୍ଡେ ବହି
କେତେହେଁ କାଳ ଦାନ ଫଳେ
ସେ ଭୋଗ ଭୁଞ୍ଜିବ ପାତାଳେ
ସ୍ୱର୍ଗ ବସିବ ଇନ୍ଦ୍ରପଣେ
ଅନ୍ତେ ପଶିବ ନାରାୟଣେ ।୧୩,୧୪
ସେ ବଳି କାଳେ ସପ୍ତ-ମୁନି
ଭବିଷ୍ୟ ନିଜ ତେଜ ଘେନି
ସେ ରୂପେ ସଂସାର ଧାରଣ
ତାହାଙ୍କ ନାମ ଏବେ ଶୁଣ
ଗାଲବ ଦୀପ୍ତି ମାନ ରାମ
କୃପ ଯେ ଦ୍ରୋଣର ନନ୍ଦନ
ଅପରେ ଋଷ୍ୟଶୃଙ୍ଗ ବ୍ୟାସ
କହିଲି ଋଷିଙ୍କ ବିଶେଷ
ଏ ଆଦି ସପ୍ତ ଋଷିଗଣେ
ବ୍ରହ୍ମାର ଆଜ୍ଞା ପରମାଣେ
ହୋଇବେ ଭବିଷ୍ୟତ କାଳେ
ଅଛନ୍ତି ଆଶ୍ରମ ମଣ୍ଡଳେ ।୧୫,୧୬
ସେ କାଳେ ବିଷ୍ଣୁ ନିଜ ଭାବେ
ବଳିକି ଇନ୍ଦ୍ରପଦ ଦେବେ
ହୋଇବ ସେହି ସୁରେଶ୍ୱର
ଅମରପୁରେ ପୁରନ୍ଦର । ୧୭ ।
ଏବେ ହୋ ବରୁଣ ନନ୍ଦନ
ଦକ୍ଷ ସାବର୍ଣ୍ଣି ଯେ ନବମ

ପାର ମରୀଚଗର୍ଭାଦ୍ୟା ଦେବା ଇନ୍ଦ୍ରୋଽଦ୍ଭୁତଃ ସ୍ମୃତଃ ।
ଦ୍ୟୁତିମତ୍ପ୍ରମୁଖାସ୍ତତ୍ର ଭବିଷ୍ୟନ୍ତ୍ୟୃଷୟସ୍ତତଃ । ୧୯ ।
ଆୟୁଷ୍ମତୋଽମ୍ବୁଧାରାୟାମୃଷଭୋ ଭଗବତ୍କଳା ।
ଭବିତା ଯେନ ସଂରାଦ୍ଧାଂ ତ୍ରିଲୋକୀଂ ଭୋକ୍ଷ୍ୟତେଽଦ୍ଭୁତଃ । ୨୦ ।
ଦଶମୋ ବ୍ରହ୍ମସାବର୍ଣ୍ଣିରୁପଶ୍ଳୋକସୁତୋ ମନୁଃ ।
ତତ୍ସୁତା ଭୂରିଷେଣାଦ୍ୟା ହବିଷ୍ମତ୍ପ୍ରମୁଖା ଦ୍ୱିଜାଃ । ୨୧ ।
ହବିଷ୍ମାନ୍ ସୁକୃତଃ ସତ୍ୟୋ ଜୟୋ ମୂର୍ତ୍ତିସ୍ତଦା ଦ୍ୱିଜାଃ ।
ସୁବାସନବିରୁଦ୍ଧାଦ୍ୟା ଦେବାଃ ଶମ୍ଭୁଃ ସୁରେଶ୍ୱରଃ । ୨୨ ।
ବିଷ୍ୱକ୍ସେନୋ ବିଷୂଚ୍ୟାନ୍ତୁ ଶମ୍ଭୋଃ ସଖ୍ୟଂ କରିଷ୍ୟତି ।
ଜାତଃ ସ୍ୱାଂଶେନ ଭଗବାନ୍ ଗୃହେ ବିଶ୍ୱସୃଜୋ ବିଭୁଃ । ୨୩ ।

---

ଏହି ମନ୍ୱନ୍ତରରେ ପାର, ମରୀଚ ଗର୍ଭ ପ୍ରଭୃତି ଦେବତା, ଅଦ୍ଭୁତ ନାମରେ ଇନ୍ଦ୍ର ହେବେ ଏବଂ ଦ୍ୟୁତିମାନ୍ ପ୍ରଭୃତି ସପ୍ତର୍ଷି ହେବେ । ଏହି ମନ୍ୱନ୍ତରରେ ଆୟୁଷ୍ମାନଙ୍କଠାରୁ ଅମ୍ବୁଧାରାଙ୍କ ଗର୍ଭରେ ଭଗବାନ୍ ବିଷ୍ଣୁ ଜନ୍ମଗ୍ରହଣ କରି ଋଷଭ ନାମରେ ବିଖ୍ୟାତ ହେବେ। ସେ ସବୁ ସମ୍ପଦଯୁକ୍ତ ଏହି ତ୍ରିଲୋକକୁ ଅଦ୍ଭୁତ ନାମକ ଇନ୍ଦ୍ରଙ୍କୁ ପ୍ରଦାନ କରିବେ । ୧୯, ୨୦ ।

ଉପଶ୍ଳୋକଙ୍କ ପୁତ୍ର ବ୍ରହ୍ମସାବର୍ଣ୍ଣି ଦଶମ ମନୁ ଭୂରିଷେଣାଦି ତାହାଙ୍କର ପୁତ୍ର ଏବଂ ହବିଷ୍ମାନ୍ ପ୍ରମୁଖ ସପ୍ତର୍ଷି ହେବେ । ହବିଷ୍ମାନ୍ ସୁକୃତ, ସତ୍ୟ, ଜୟ, ମୂର୍ତ୍ତି ଇତ୍ୟାଦି ସପ୍ତର୍ଷି । ସୁବାସନ, ବିରୁଦ୍ଧ ପ୍ରଭୃତି ଦେବତା ଏବଂ ଈଶ୍ୱର ଶମ୍ଭୁ ଇନ୍ଦ୍ର ହେବେ । ୨୧, ୨୨ ।

ଦଶମ ମନ୍ୱନ୍ତରରେ ଭଗବାନ୍ ବିଷ୍ଣୁ ବିଶ୍ୱସୃକ୍ ନାମକ ବିପ୍ରଗୃହରେ ବିସୂଚୀଙ୍କ ଗର୍ଭରେ ଅଂଶାବତାର ରୂପେ ଜନ୍ମ ଗ୍ରହଣ କରି ବିଶ୍ୱକ୍ସେନ ନାମରେ ବିଖ୍ୟାତ ହେବେ ଏବଂ ସେତେବେଳେ ଇନ୍ଦ୍ର ଶମ୍ଭୁଙ୍କ ସହିତ ସଖ୍ୟଭାବ ସ୍ଥାପନ କରିବେ ।୨୩।

---

ପୁତ୍ର ଜନ୍ମିଲେ ତାର ରେଭୁଁ
ଯେ ଦ୍ଭୁତକେତୁ ଦୀପ୍ତ-କେତୁ
ପାରମରୀଚ ଗର୍ଭ ଆଦି
ଏ ନାମେ ଦେବଗଣ ସିଦ୍ଧି
ଇନ୍ଦ୍ର ହେବ ଅଦ୍ଭୁତ ନାମ
ଭୋଗ କରିବ ସ୍ୱର୍ଗ ଗ୍ରାମ
ଋଷିଏ ଦ୍ୟୁତିମାନ ଆଦି
ହୋଇବେ ସେ ମନୁସମ୍ପାଦି ।୧୮,୨୦

ଦଶମେ ଉପଶ୍ଳୋକ ସୁତ
ବ୍ରହ୍ମ-ସବର୍ଣ୍ଣି ନାମେ ଖ୍ୟାତ
ତାର କୁମର ବହୁବାଧି
ଜନ୍ମିବେ ଭୂରିଷେଣ ଆଦି
ହବିଷ୍ୟ ଆଦି ଋଷିଗଣ
ଦେବେ ବିରୁଦ୍ଧ ସୁବାସନ
ଇନ୍ଦ୍ରର ନାମ ଶମ୍ଭୁ ଜାଣ
ଏବେ ହୋଇବ ହବା ଶୁଣ ।୨୧,୨୨

ବିଶ୍ୱସୃଜର ଘରେ ହରି
ବିସୂଚି ଗର୍ଭେ ଅବତରି
ବିଶ୍ୱକସେନ ନାମସଙ୍ଗେ
ଇନ୍ଦ୍ରର ମିତ୍ର କୃତଯୁଗେ । ୨୩।

ମନୁର୍ବୈ ଧର୍ମସାବର୍ଣ୍ଣିରେକାଦଶମ ଆତ୍ମବାନ୍ ।
ଅନାଗତାସ୍ତତ୍ସୁତାଶ୍ଚ ସତ୍ୟଧର୍ମାଦୟୋ ଦଶ । ୨୪ ।
ବିହଙ୍ଗମାଃ କାମଗମା ନିର୍ବାଣରୁଚୟଃ ସୁରାଃ ।
ଇନ୍ଦ୍ରଶ୍ଚ ବୈଧୃତସ୍ତେଷାମୃଷୟଶ୍ଚାରୁଣାଦୟଃ । ୨୫ ।
ଆର୍ଯ୍ୟକସ୍ୟ ସୁତସ୍ତତ୍ର ଧର୍ମସେତୁରିତି ସ୍ମୃତଃ ।
ବୈଧୃତାୟାଂ ହରେରଂଶସ୍ତ୍ରିଲୋକୀଂ ଧାରୟିଷ୍ୟତି ।୨୬।
ଭବିତା ରୁଦ୍ରସାବର୍ଣ୍ଣୀ ରାଜନ୍ ଦ୍ୱାଦଶମୋ ମନୁଃ ।
ଦେବବାନୁପଦେବଶ୍ଚ ଦେବଶ୍ରେଷ୍ଠାଦୟଃ ସୁତାଃ । ୨୭ ।
ଋତଧାମା ଚ ତତ୍ରେନ୍ଦ୍ରୋ ଦେବାଶ୍ଚ ହରିତାଦୟଃ ।
ଋଷୟଶ୍ଚ ତପୋମୂର୍ତ୍ତିସ୍ତପସ୍ୱ୍ୟଗ୍ନୀଧ୍ରକାଦୟଃ । ୨୮ ।

---

ଏକାଦଶ ମନ୍ୱନ୍ତରରେ ମନସ୍ୱୀ ଧର୍ମ ସାବର୍ଣ୍ଣି ମନୁ ହେବେ । ଏହି ମନୁଙ୍କର ସତ୍ୟଧର୍ମ ପ୍ରଭୃତି ଦଶୋଟି ପୁତ୍ର ଜନ୍ମିବେ ।୨୪।

ଏହି ମନ୍ୱନ୍ତରରେ ବିହଙ୍ଗମ, କାମଗମ, ନିର୍ବାଣରୁଚି ଏମାନେ ଦେବତା । ବୈଧୃତ ସେମାନଙ୍କର ଇନ୍ଦ୍ର । ଅରୁଣାଦି ଋଷି ।୨୫।

ଭଗବାନ୍ ହରି ଆର୍ଯ୍ୟକ ଗୃହରେ ଅଂଶବତାର ହୋଇ ଧର୍ମସେତୁ ନାମରେ ବିଖ୍ୟାତ ହେବେ । ହେ ରାଜନ୍ ! ଏହି ଅଂଶରେ ତ୍ରିଲୋକଧାରଣ କରିବେ ।୨୬।

ହେ ନୃପ ! ରୁଦ୍ରସାବର୍ଣ୍ଣି ଦ୍ୱାଦଶ ମନୁ ହେବେ । ଦେବବାନ୍, ଉପଦେବ ଓ ଶ୍ରେଷ୍ଠଦେବ ପ୍ରଭୃତି ତାହାଙ୍କର ପୁତ୍ର ହେବେ ।୨୭।

ସେହି ମନ୍ୱନ୍ତରରେ ଋତଧାମା ଇନ୍ଦ୍ର ହରିତାଦି ଦେବତା ତପୋମୂର୍ତ୍ତି ତପସ୍ୱୀ ଓ ଅଗ୍ନିଧ୍ରକାଦି ସପ୍ତର୍ଷି । ୨୮ ।

---

ଧର୍ମ-ସାବର୍ଣ୍ଣି ମନୁ ହୋଇ
ପାଳିବେ ଏକାଦଶ ମହୀ
ତାର ହୋଇବେ ପୁତ୍ର ଦଶ
ପାଳିବେ ମହୀ ସ୍ୱର୍ଗ ଦେଶ
ଇନ୍ଦ୍ର ହୋଇବ ବିଧୃତ
ଋଷି ଅରୁଣ ଆଦି ଖ୍ୟାତ

ସେ ବିଧୃତ ଗର୍ଭେ ହରି
ଆର୍ଯ୍ୟକ ଗୃହୁଁ ଅବତରି
ଧର୍ମସେତୁ ଯେ ଏକାଦଶେ
ଜନ୍ମିବେ ନାରାୟଣ ଅଂଶେ ।୨୪,୨୬
ରୁଦ୍ର ସାବର୍ଣ୍ଣି ଯେ ଦ୍ୱାଦଶେ
ଜନ୍ମିବେ ନାରାୟଣ ଅଂଶେ

ଯେ ଦେବବାନ ଉପଦେବ
ଦେବଶ୍ରେଷ୍ଠ ଆଦି ସମ୍ଭବ
ଇନ୍ଦ୍ର ହୋଇବ ଋତଧାମ
ହରିତ ଆଦି ଦେବେ ଜାଣ
ତପୋମୂର୍ତ୍ତି ଆଉ ତପସ୍ୱୀ
ଅଗ୍ନିଧ୍ର ଆଦି ସପ୍ତଋଷି

ସ୍ୱଧାମାଖ୍ୟୋ ହରେରଂଶଃ ସାଧୟିଷ୍ୟତ ତନ୍ମନୋଃ ।
ଅନ୍ତରଂ ସତ୍ୟସହସଃ ସୁନୃତାୟାଃ ସୁତୋ ବିଭୁଃ । ୨୯ ।
ମନୁସ୍ତ୍ରୟୋଦଶୋ ଭାବ୍ୟୋ ଦେବସାବର୍ଣ୍ଣିରାତ୍ମବାନ୍ ।
ଚିତ୍ରସେନ ବିଚିତ୍ରାଦ୍ୟା ଦେବସାବର୍ଣ୍ଣିଦେହଜାଃ । ୩୦ ।
ଦେବାଃ ସୁକର୍ମସୁତ୍ରାମସଂଜ୍ଞା ଇନ୍ଦ୍ରୋ ଦିବସ୍ପତିଃ ।
ନିର୍ମୋକତତ୍ତ୍ୱଦର୍ଶାଦ୍ୟା ଭବିଷ୍ୟନ୍ତ୍ୟୃଷୟସ୍ତଦା । ୩୧ ।
ଦେବହୋତ୍ରସ୍ୟ ତନୟ ଉପହର୍ତ୍ତା ଦିବସ୍ପତେଃ ।
ଯୋଗେଶ୍ୱରୋ ହରେରଂଶୋ ବୃହତ୍ୟାଂ ସମ୍ଭବିଷ୍ୟତି । ୩୨ ।
ମନୁର୍ବା ଇନ୍ଦ୍ରସାବର୍ଣ୍ଣିଶ୍ଚତୁର୍ଦ୍ଦଶମ ଏଷ୍ୟତି ।
ଉରୁଗମ୍ଭୀରବୁଦ୍ଧ୍ୟାଦ୍ୟା ଇନ୍ଦ୍ରସାବର୍ଣ୍ଣିବୀର୍ଯ୍ୟଜାଃ । ୩୩ ।

---

ସତ୍ୟସହାଙ୍କ ଔରସରେ ପତ୍ନୀ ସୁନୃତାଙ୍କ ଗର୍ଭରେ ଭଗବାନ୍ ହରି ଅଂଶାବତାର ହୋଇ ଜନ୍ମ ଗ୍ରହଣ କରି ସ୍ୱଧାମା ନାମରେ ବିଖ୍ୟାତ ହେବେ ଏବଂ ଏହି ମନ୍ୱନ୍ତରକୁ ପ୍ରସିଦ୍ଧ କରିବେ ।୨୯।

ଆତ୍ମବାନ୍ ଦେବସାବର୍ଣ୍ଣି ତ୍ରୟୋଦଶ ମନୁ ହେବେ । ଚିତ୍ରସେନ ବିଚିତ୍ର ପ୍ରଭୃତି ଏହି ଦେବ ସାବର୍ଣ୍ଣିଙ୍କର ପୁତ୍ର ହେବେ । ୩୦ ।

ଏହି ମନ୍ୱନ୍ତରରେ ସୁକର୍ମା, ସୁତ୍ରାମା ପ୍ରଭୃତି ଦେବତା ଓ ଦିବସ୍ପତି ଇନ୍ଦ୍ର ଏବଂ ନିର୍ମୋକ, ତତ୍ତ୍ୱଦର୍ଶୀ ସପ୍ତର୍ଷି ହୋଇବେ । ୩୧ ।

ଏହି ସମୟରେ ଭଗବାନ୍ ଶ୍ରୀହରିଙ୍କ ଅଂଶରେ ବୃହତୀଙ୍କ ଗର୍ଭରେ ଦେବ ହୋତ୍ରଙ୍କର ଗୋଟିଏ ପୁତ୍ର ଜାତ ହେବ ଏବଂ ସେ ଯୋଗେଶ୍ୱର ନାମରେ ପ୍ରସିଦ୍ଧି ଲାଭ କରି ଦିବସ୍ପତି ଇନ୍ଦ୍ରଙ୍କ କାର୍ଯ୍ୟ କରିବେ ।୩୨।

ଇନ୍ଦ୍ର ସାବର୍ଣ୍ଣି ନାମରେ ଚତୁର୍ଦ୍ଦଶ ମନୁ ହେବେ । ଉରୁଗମ୍ଭୀର, ବୁଦ୍ଧି ପ୍ରଭୃତି ଇନ୍ଦ୍ର ସାବର୍ଣ୍ଣିଙ୍କର ପୁତ୍ର ହେବେ ।୩୩।

---

ଏ ମନ୍ୱନ୍ତରେ ହରି ଅଂଶ
ସ୍ୱଧାମା ନାମରେ ପ୍ରକାଶ ।୨୮,୨୯
ଦେବ-ସାବର୍ଣ୍ଣି ତ୍ରୟୋଦଶ
ମନୁ ଯେ ହୋଇବ ପ୍ରକାଶ
ଚିତ୍ର ବିଚିତ୍ରେନ ପୋଏ
ସୁକର୍ମା ଆଦି ଦେବେ ହୋଏ

ଇନ୍ଦ୍ର ଯେ ଦିବସ୍ପତି ନାମେ
ଜନ୍ମିଲେ ବସେ ସ୍ୱର୍ଗ ଧାମେ
ନିର୍ମୋକ ତତ୍ତ୍ୱଦର୍ଶୀମାନେ
ହୋଇବେ ସପ୍ତଋଷି ଗଣେ
ସେ ଇନ୍ଦ୍ର କାଳେ ଜଗନ୍ନାଥ
ହୋଇବେ ଦେବହୋତ୍ର ସୁତ
। ୩୦,୩୨ ।

ଇନ୍ଦ୍ର-ସାବର୍ଣ୍ଣି ଚତୁର୍ଦ୍ଦଶେ
ହୋଇବ ନାରାୟଣ ଅଂଶେ
ଉରୁ ଗମ୍ଭୀର ବୁଧ ଆର
ଜନ୍ମିବେ ତାହାର କୁମର
ପବିତ୍ର ନାମେ ଦେବଗଣେ
ହୋଇବେ ସଂସାର ଧାରଣେ

ପବିତ୍ରାଶ୍ଚାକ୍ଷୁଷା ଦେବାଃ ଶୁଚିରିନ୍ଦ୍ରୋ ଭବିଷ୍ୟତି ।
ଅଗ୍ନିର୍ବାହୁଃ ଶୁଚିଃ ଶୁଦ୍ଧୋ ମାଗଧାଦ୍ୟାସ୍ତପସ୍ୱିନଃ । ୩୪ ।
ସତ୍ରାୟଣସ୍ୟ ତନୟୋ ବୃହଦ୍‌ଭାନୁସ୍ତଦା ହରିଃ ।
ବିତାନାୟାଂ ମହାରାଜ କ୍ରିୟାତନ୍ତୂନ୍ ବିତାୟିତା । ୩୫ ।
ରାଜଂଶ୍ଚତୁର୍ଦ୍ଦଶୈତାନି ତ୍ରିକାଳାନୁଗତାନି ତେ ।
ପ୍ରୋକ୍ତାନ୍ୟେଭିର୍ମିତଃ କଳ୍ପୋ ଯୁଗସାହସ୍ରପର୍ଯ୍ୟୟଃ ।୩୬।
ଇତି ଶ୍ରୀ ମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ

ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ମନ୍ୱନ୍ତରାନୁବର୍ଣ୍ଣନଂ
ନାମ ତ୍ରୟୋଦଶୋଽଧ୍ୟାୟଃ ।

---

ଏହି ମନ୍ୱନ୍ତରରେ ପବିତ୍ର ଚକ୍ଷୁସମାନେ ଦେବତା, ଶୁଚି ଇନ୍ଦ୍ର ହେବେ । ଅଗ୍ନି, ବାହୁ, ଶୁଚି, ଶୁଦ୍ଧ, ମାଗଧାଦି ସପ୍ତର୍ଷି ହେବେ । ୩୪ ।

ହେ ମହାରାଜ ! ଏମନ୍ୱନ୍ତରରେ ଭଗବାନ୍ ହରି ବିତାନାଙ୍କ ଗର୍ଭରେ ଜନ୍ମଗ୍ରହଣ କରି ସତ୍ରାୟଣଙ୍କ ପୁତ୍ର ହେବେ ଏବଂ ବୃହଦ୍‌ଭାନୁ ନାମରେ ପ୍ରସିଦ୍ଧ ହୋଇ କ୍ରିୟାକଳାପ ବିସ୍ତାର କରିବେ ।୩୫।

ହେ ରାଜନ୍ ! ଭୂତ, ଭବିଷ୍ୟ, ବର୍ତ୍ତମାନ ଏହି ତ୍ରିକାଳାନ୍ତର୍ଗତ ଚତୁର୍ଦ୍ଦଶ ମନୁଙ୍କ ପ୍ରସଙ୍ଗ ତୁମ୍ଭ ନିକଟରେ ବର୍ଣ୍ଣନା କଲି । ଏହି ଚତୁର୍ଦ୍ଦଶ ମନୁଙ୍କ କାଳ ଏକ କଳ୍ପ, ସହସ୍ରଯୁଗ କଳ୍ପ ଏହାର ପର୍ଯ୍ୟାୟ ଶବ୍ଦ । ୩୬ ।

---

ହୋଇବ ଶୁଚିନାମେ ଇନ୍ଦ୍ର
ସୁଖେ ପାଳିବ ଦେବବୃନ୍ଦ
ଅଗ୍ନି ଯେ ବାହୁ ଶୁଚି ଶୁଦ୍ଧି
ମାଗଧ ଆଦି ଋଷି ସିଦ୍ଧି
ଏ ସର୍ବେ ନିତ୍ୟ ତପସ୍ୱିନ
ହୋଇବେ ଏ କଥା ପ୍ରମାଣ
ବୃହଦ୍‌ଭାନୁ ଯେ ଅବତାରେ
ବିଷ୍ଣୁ ଯେ ସତ୍ରାୟଣ ଘରେ
ଜନ୍ମିତାରିବେ ଏ ସଂସାର
ଏବେ ହେ। ଶୁଣ ନୃପବର
। ୩୩-୩୫ ।

ଚତୁର୍ଦ୍ଦଶ ମନୁଯୁଗେ
ଶୁକେ କହିଲେ ତୋର ଆଗେ
କଳ୍ପେନ୍ତ ମନୁ ଚତୁର୍ଦ୍ଦଶ
ଏମନ୍ତେ ବ୍ରହ୍ମାର ଦିବସ
ସହସ୍ରଯୁଗ କାଳ ଯେତେ
କଳ୍ପ ବୋଲଇ ଏ ଜଗତେ
ଏମନ୍ତେ ବେନି କଳ୍ପ ଗଲେ
ବ୍ରହ୍ମାର ଅହୋରାତ୍ର ହେଲେ ।୩୬।
ବୋଲଇ ଦିନ ଜଗନ୍ନାଥ
ଅଷ୍ଟମ-ସ୍କନ୍ଧେ ଭାଗବତ ॥



## ଚତୁର୍ଦ୍ଦଶୋଽଧ୍ୟାୟଃ ।

ଚତୁର୍ଦ୍ଦଶେ ତୁ ସର୍ବେଷାଂ ମନ୍ୱାଦୀନାଂ ଯଥାଯଥମ୍ ।
ପୃଥକ୍‌କର୍ମ୍ମାଣି ବର୍ଣ୍ଣ୍ୟନ୍ତେ ଭଗବଦ୍‌ବଶବର୍ତ୍ତିନାମ୍ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ରାଜୋବାଚ ।

ମନ୍ୱନ୍ତରେଷୁ ଭଗବନ୍ ଯଥା ମନ୍ୱାଦୟସ୍ତ୍ୱିମେ ।
ଯସ୍ମିନ୍ କର୍ମଣି ଯେ ଯେନ ନିଯୁକ୍ତାସ୍ତଦ୍‌ବଦସ୍ୱ ମେ । ୧ ।

ଶ୍ରୀ ଋଷିରୁବାଚ ।

ମନବୋ ମନୁପୁତ୍ରାଶ୍ଚ ମୁନୟଶ୍ଚ ମହୀପତେ ।
ଇନ୍ଦ୍ରାଃ ସୁରଗଣାଶ୍ଚୈବ ସର୍ବେ ପୁରୁଷଶାସନାଃ । ୨ ।

---

### ମନ୍ୱାଦି ଧର୍ମ କଥନ ।

ଭଗବଦ୍ ବଶବର୍ତ୍ତୀ ମନୁମାନଙ୍କର ଭିନ୍ନ ଭିନ୍ନ କର୍ମ ସମୂହ ଏହି ଚତୁର୍ଦ୍ଦଶ ଅଧ୍ୟାୟରେ ପୃଥକ୍ ଭାବରେ ବର୍ଣ୍ଣନା କରାଯାଇଅଛି । ୦ ।

ରାଜା ପରୀକ୍ଷିତ କହିଲେ—

ହେ ଭଗବନ୍ ! ମନ୍ୱନ୍ତରମାନଙ୍କରେ ମନ୍ୱାଦିମାନେ ଯେଉଁ ପରି ଯାହା କର୍ତ୍ତୃକ ଯେଉଁ କାର୍ଯ୍ୟରେ ନିଯୁକ୍ତ ହୋଇଥାନ୍ତି; ତାହା ଅନୁଗ୍ରହ ପୂର୍ବକ କହନ୍ତୁ । ୧ ।

ଶ୍ରୀ ଶୁକଦେବ କହିଲେ—

ହେ ରାଜନ୍ ! ମନୁଗଣ, ମନୁପୁତ୍ରଗଣ, ମୁନିଗଣ, ଇନ୍ଦ୍ରମାନେ ଦେବତାମାନେ ସମସ୍ତେ ପୁରୁଷ କର୍ତ୍ତୃକ ନିଯୁକ୍ତ ହୋଇଥାନ୍ତି । ୨ ।

---

ଯେ ମନୁକାଳେ ଯେବା କର୍ମ୍ମ । ଚତୁର୍ଦ୍ଦଶରେ ତା ବର୍ଣ୍ଣନ ॥

ରାଜୋବାଚ —
ଏ କଳେ ବ୍ରହ୍ମାର ଦିବସ
ମନୁ ହୋଇଲେ ଚତୁର୍ଦ୍ଦଶ
ସେ ମନୁଙ୍କେ ଯେବା କର୍ମ
ଯୁଗ ସ୍ୱଭାବେ ଯଥା ଧର୍ମ

ବିଷ୍ଣୁର ଆଜ୍ଞା ପରମାଣେ
ଯେବା ସାଧିଲେ ଜଣେ ଜଣେ
ସେ କଥା କହ ମୁନି ମୋତେ
ସେ ଅବା କର୍ମ କଲେ ଯେତେ । ୧

ଶ୍ରୀଶୁକଉବାଚ—
ଯେ ମନୁ ମନୁର ତନୁଜେ
ଯେ ସପ୍ତଋଷି ସୃଷ୍ଟି ମାଝେ
ଯେତେ ଯେ ଇନ୍ଦ୍ର ଦେବଗଣ
ଏ ସର୍ବରୂପ ନାରାୟଣ । ୨ ।

ଯଜ୍ଞାଦୟୋ ଯାଃ କଥିତାଃ ପୌରୁଷ୍ୟସ୍ତନବୋ ନୃପ ।
ମନ୍ୱାଦୟୋ ଜଗଦ୍ଯାତ୍ରାଂ ନୟନ୍ତ୍ୟାଭିଃ ପ୍ରଚୋଦିତାଃ । ୩ ।
ଚତୁର୍ଯୁଗାନ୍ତେ କାଳେନ ଗ୍ରସ୍ତାନ୍ ଶ୍ରୁତିଗଣାନ୍ ଯଥା ।
ତପସା ଋଷୟୋଽପଶ୍ୟନ୍ ଯତୋ ଧର୍ମ୍ମଃ ସନାତନଃ । ୪ ।
ତତୋ ଧର୍ମ୍ମଂ ଚତୁଷ୍ପାଦଂ ମନବୋ ହରଣୋଦିତାଃ ।
ଯୁକ୍ତାଃ ସଞ୍ଚାରୟନ୍ତ୍ୟଦ୍ଧା ସ୍ୱେ ସ୍ୱେ କାଳେ ମହୀଂ ନୃପ ।୫।
ପାଳୟନ୍ତି ପ୍ରଜାପାଳା ଯାବଦନ୍ତଂ ବିଭାଗଶଃ ।
ଯଜ୍ଞଭାଗଭୁଜୋ ଦେବା ଯେ ଚ ତତ୍ରାନ୍ୱିତାଶ୍ଚ ତୈଃ । ୬ ।
ଇନ୍ଦ୍ରୋ ଭଗବତା ଦତ୍ତାଂ ତ୍ରୈଲୋକ୍ୟଶ୍ରିୟମୂର୍ଜ୍ଜିତାମ୍ ।
ଭୁଞ୍ଜାନଃ ପାତି ଲୋକାଂସ୍ତ୍ରୀନ୍ କାମଂ ଲୋକେ ପ୍ରବର୍ଷତି । ୭ ।

---

ହେ ରାଜନ୍ ! ଯଜ୍ଞାଦି ଯେଉଁ ପୌରୁଷୀ ମୂର୍ତ୍ତି ଅର୍ଥାତ୍ ଈଶ୍ୱରାବତାର କଥା କହିଲି, ସେହି ସମସ୍ତ ମୂର୍ତ୍ତି କର୍ତ୍ତୃକ ନିୟୋଜିତ ହୋଇ ମନ୍ୱାଦିମାନେ ଜଗତର କାର୍ଯ୍ୟ ନିର୍ବାହ କରିଥାନ୍ତି ।୩।

ହେ ରାଜନ୍ ! ଚତୁର୍ଯୁଗାନ୍ତେ କାଳଗ୍ରସ୍ତ ବେଦ ସମୂହକୁ ସେହି ମନ୍ୱନ୍ତରର ଋଷିମାନେ ତପସ୍ୟା ଦ୍ୱାରା ଅବଲୋକନ କରନ୍ତି ଅର୍ଥାତ୍ ଯେଉଁ ଶ୍ରୁତିଦ୍ୱାରା ସନାତନ ଧର୍ମ ପ୍ରବର୍ତ୍ତିତ ହୁଏ; ତାହା କାଳ ପ୍ରଭାବରେ ନଷ୍ଟ ହେଲେ ତାହାକୁ ଉଦ୍ଧାର କରନ୍ତି ।୪।

ତଦନନ୍ତର ଭଗବାନ୍ ଶ୍ରୀହରିଙ୍କର ଆଦେଶରେ ମନୁମାନେ କାଳକୁ ସଂଯତ କରି ପୃଥିବୀରେ ଚତୁଷ୍ପାଦ ଧର୍ମ ପ୍ରବର୍ତ୍ତିତ କରନ୍ତି ।୫।

ପ୍ରଜାପାଳକମାନେ ଅର୍ଥାତ୍ ମନୁପୁତ୍ରମାନେ ସେହି ମନ୍ୱନ୍ତରାବସାନ କାଳ ପର୍ଯ୍ୟନ୍ତ ପୁତ୍ର ପୌତ୍ରାଦି କ୍ରମେ ଧର୍ମ ପାଳନ କରନ୍ତି ଏବଂ ଧର୍ମଭାଗଭୋଗୀ ଦେବତାମାନେ ଏବଂ ସେହି ପାଳନ କାର୍ଯ୍ୟରେ ଯେଉଁମାନଙ୍କର ସମ୍ବନ୍ଧ, ସେମାନେ ମଧ୍ୟ ଧର୍ମ ପାଳନ କରନ୍ତି । ସେମାନଙ୍କ ସହିତ ଭଗବାନ୍ ଇନ୍ଦ୍ର ମଧ୍ୟ ଭଗବଦ୍ ଦତ୍ତ ତ୍ରୈଲୋକ୍ୟ ସମ୍ପଦ ଭୋଗ କରନ୍ତି ଓ ତ୍ରିଲୋକ ପାଳନ କରନ୍ତି ଏବଂ ସେ ପର୍ଯ୍ୟାପ୍ତ ରୂପେ ବାରିବର୍ଷଣ କରନ୍ତି ।୬, ୭ ।

---

ତା ବିନୁ ଆନ ନାହିଁ କେହି
ସେ ସର୍ବ ଆତ୍ମା ମଧ୍ୟେ ରହି
ଯଜ୍ଞାଦି ନାନା ଅବତାରେ
ସେ ଧର୍ମ୍ମ ପାଳେ ନିରନ୍ତରେ ।୩।
କଳ୍ପ ଅନ୍ତରେ କାଳବଳେ
ତ୍ରୈଲୋକ୍ୟ ମଜ୍ଜନ୍ତି ସଲିଳେ

କାଳ ଗରାସେ ଶ୍ରୁତିପଥ
ତ୍ରୈଲୋକ୍ୟ ଦିଶଇ ଅନାଥ
ଋଷି ସକଳେ ତପୋବଳେ
ଧର୍ମ୍ମକୁ ଦେଖାନ୍ତି ଶସ୍ତ୍ରଳେ
ଧର୍ମ୍ମ ପାଳନ୍ତି ମନୁଗଣେ
ଶ୍ରୁତି ସଂଯୋଗ ବିସ୍ତାରଣେ

ଇନ୍ଦ୍ର ପାଳଇ ତ୍ରିଭୁବନ
ଆଦରି ବିଷ୍ଣୁର ବଚନ । ୪-୭

ଜ୍ଞାନଞ୍ଚାନୁଯୁଗଂ ବ୍ରୂତେ ହରିଃ ସିଦ୍ଧସ୍ୱରୂପଧୃକ୍ ।
ଋଷିରୂପଧରଃ କର୍ମ୍ମ ଯୋଗଂ ଯୋଗେଶରୂପଧୃକ୍ । ୮ ।
ସର୍ଗଂ ପ୍ରଜେଶରୂପେଣ ଦସ୍ୟୂନ୍ ହନ୍ୟାତ୍ ସ୍ୱରାଡ୍ ବପୁଃ ।
କାଳରୂପେଣ ସର୍ବେଷାମଭାବାୟ ପୃଥଗ୍‌ଗୁଣଃ । ୯ ।
ସ୍ତୂୟମାନୋ ଜନୈରେଭିର୍ମାୟୟା ନାମରୂପୟା ।
ବିମୋହିତାତ୍ମଭିର୍ନାନା ଦର୍ଶନୈର୍ନ ଚ ଦୃଶ୍ୟତେ । ୧୦ ।
ଏତତ୍‌କଳ୍ପବିକଳ୍ପସ୍ୟ ପ୍ରମାଣଂ ପରିକୀର୍ତ୍ତିତମ୍ ।
ଯତ୍ର ମନ୍ୱନ୍ତରାଣ୍ୟାହୁଶ୍ଚତୁର୍ଦ୍ଦଶ ପୁରାବିଦଃ । ୧୧ ।

ଇତି ଶ୍ରୀ ମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଚତୁର୍ଦ୍ଦଶୋଽଧ୍ୟାୟଃ ।

---

ହେ ରାଜନ୍ ! ଭଗବାନ୍ ଶ୍ରୀହରି ପ୍ରତ୍ୟେକ ଯୁଗରେ ସନକାଦି ସିଦ୍ଧ ରୂପ ଧାରଣ କରି ଜ୍ଞାନୋପଦେଶ ପ୍ରଦାନ କରନ୍ତି, ଯାଜ୍ଞବଲ୍କ୍ୟାଦି ଋଷିରୂପ ଧାରଣ କରି କର୍ମୋପଦେଶ ଏବଂ ଦତ୍ତାତ୍ରେୟାଦି ଯୋଗେଶ୍ୱର ରୂପ ଧାରଣ କରି ଯୋଗୋପଦେଶ ପ୍ରଦାନ କରିଥାନ୍ତି ।୮।

ସେ ମରୀଚ୍ୟାଦି ପ୍ରଜାପତିରୂପେ ସୃଷ୍ଟି କରନ୍ତି । ରାଜମୂର୍ତ୍ତି ଧାରଣ କରି ଦସ୍ୟୁ ବିନାଶ ଓ ପ୍ରଜାପାଳନ କରନ୍ତି । କାଳରୂପୀ ହୋଇ ସମସ୍ତ ପ୍ରଜାସଂହାର କରନ୍ତି, ପ୍ରତ୍ୟେକ କାର୍ଯ୍ୟ କାଳରେ ତାହାଙ୍କର ବିଭିନ୍ନ ଗୁଣ ଅର୍ଥାତ୍ ସତ୍ତ୍ୱ, ରଜଃ ତମ ପ୍ରକାଶିତ ହୁଏ ।୯।

ହେ ରାଜନ୍ ! ନାମରୂପାତ୍ମିକା ମାୟା ମୁଗ୍ଧ ମନୁଷ୍ୟମାନେ ଏହି ଶାସ୍ତ୍ରମାନ ଓ ନାନା ଦର୍ଶନଦ୍ୱାରା ସ୍ତୂୟମାନ ବା ନିରୂପ୍ୟମାଣ ଶ୍ରୀହରିଙ୍କୁ ଦେଖି ପାରନ୍ତି ନାହିଁ ।୧୦।

ହେ ରାଜନ୍ ! ତୁମ୍ଭ ନିକଟରେ କଳ୍ପ ଓ ଅବାନ୍ତର କଳ୍ପ ପ୍ରସଙ୍ଗ ଓ ପ୍ରମାଣ କହିଲି । ପୁରାଣବିତ୍‌ମାନେ ଏହାକୁ ଚତୁର୍ଦ୍ଦଶ ମନ୍ୱନ୍ତର ବୋଲି ବର୍ଣ୍ଣନା କରିଥାନ୍ତି ।୧୧।

---

ସେ ହରି ସିଦ୍ଧରୂପ ବହେ
ଯୁଗାନୁକ୍ରମେ ଜ୍ଞାନ କହେ
ସେ ହରି ପ୍ରଜାପତି ରୂପେ
ସଂସାର ସର୍ଜନକୁ କଲେ
ଆତ୍ମାର ମାୟା ଯୋଗବଳେ
ନାନା ଶରୀର ଏ ଶମ୍ଭଳେ

ସଂହାର କରେ ପଦ୍ମନାଭ
ଯା ନାମ ଭବ-ଜଳେ ନାବ
ଦୃଶ୍ୟେ ଅଦୃଶ୍ୟେ ସେ ନ ମିଶେ
କେବଳ ଜ୍ଞାନରୂପେ ଦିଶେ ।୮,୯।
କହିଲି କଳ୍ପ ସଂଖ୍ୟା ତୋତେ
ଯେ କଳ୍ପେ ଭୁଞ୍ଜନ୍ତି ଯେମନ୍ତେ

ଯେ ଏହା ଶୁଣେ କର୍ଣ୍ଣ ପଥେ
ନିଶ୍ଚଳ ମନେ ଶୁଦ୍ଧ ଚିତ୍ତେ
ଚିତ୍ତେ ନ ରହେ ମନ ଭ୍ରାନ୍ତି
ଘୋର ସଂସାରୁ ତରିଯାନ୍ତି ।୧୧।
ବୋଲଇ ଦାସ ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ

## ପଞ୍ଚଦଶୋଽଧ୍ୟାୟଃ ।

ବଲିଂ ପଞ୍ଚଦଶେ ବିଶ୍ୱଜିତାଭୃଗ୍ୱର୍ଯ୍ୟା ଅଯାଜୟନ୍ ।
ତତୋଽସୌ ସ୍ୱର୍ଗମଜୟଦ୍‌ଭୟାଦ୍ଦେବା ନିଲିଲ୍ୟିରେ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ରାଜୋବାଚ ।

ବଲେଃ ପଦତ୍ରୟଂ ଭୂମେଃ କସ୍ମାଦ୍ଧରିରୟାଚତ ।
ଭୂତେଶ୍ୱରଃ କୃପଣବଲ୍ଲବ୍ଧାର୍ଥୋଽପି ବବନ୍ଧ ତମ୍ । ୧ ।
ଏତଦ୍ବେଦିତୁମିଚ୍ଛାମୋ ମହତ୍ କୌତୂହଳଂ ହି ନଃ ।
ଯାଚ୍ଞେଶ୍ୱରସ୍ୟ ପୂର୍ଣ୍ଣସ୍ୟ ବନ୍ଧନଂ ଚାପ୍ୟନାଗସଃ । ୨ ।

---

### ବଳିଙ୍କର ବିଶ୍ୱଜିତ୍ ଯଜ୍ଞାନୁଷ୍ଠାନ, ସ୍ୱର୍ଗଜୟ ଓ ଦେବତାମାନଙ୍କର ପଳାୟନ ।

ଅସୁର ଗୁରୁ ଶୁକ୍ରାଚାର୍ଯ୍ୟ ଅସୁରରାଜ ବଳିଙ୍କୁ ବିଶ୍ୱଜିତ୍ ଯଜ୍ଞ କରାଇଥିଲେ । ତେଣୁ ବଳି ବଳରେ ସ୍ୱର୍ଗଜୟ କରିଥିଲେ ଏବଂ ଦେବତାମାନେ ଭୟରେ ପଳାଇଥିଲେ; ଏହାହିଁ ପଞ୍ଚଦଶ ଅଧ୍ୟାୟର ବିଷୟ ।୦।

ରାଜା ପରୀକ୍ଷିତ କହିଲେ :—

ହେ ଭଗବନ୍ ! ଭଗବାନ୍ ଶ୍ରୀହରି ଲୋକ ସମୂହର ଈଶ୍ୱର ହେଲେ ମଧ୍ୟ ଦରିଦ୍ର ବ୍ୟକ୍ତି ତୁଲ୍ୟ କି ହେତୁ ବଳିଠାରୁ ତ୍ରିପଦ ଭୂମି ମାଗିଥିଲେ ଏବଂ ତାଙ୍କ ପ୍ରାର୍ଥନା ପୂରଣ ହେଲେ ମଧ୍ୟ କି ହେତୁ ବଳିଙ୍କୁ ବନ୍ଧନ କରିଥିଲେ ? ।୧।

ଏ ବିଷୟ ଜାଣିବାକୁ ମୋର ବିଶେଷ ଇଚ୍ଛା । ଏ ବିଷୟରେ ମୋର ବିଶେଷ କୌତୁହଳ ଜନ୍ମିଅଛି ଯେ ଈଶ୍ୱର ହୋଇ ଭିକ୍ଷା କରିବା ଏବଂ ନିରପରାଧ ବ୍ୟକ୍ତିକୁ ବନ୍ଧନ କରିବା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ । ୨ ।

---

(ବଳି ଯେ ବିଶ୍ୱଜିତ ଯାଗ, କରି ଜିଣିଲା ଯହୁଁ ସ୍ୱର୍ଗ ॥ ଭୟେ ଦେବଙ୍କ ପଳାୟନ, ପନର ଅଧ୍ୟାରେ ବର୍ଣ୍ଣନ )

ଶ୍ରୀରାଜୋବାଚ —

ଶୁକ ଚରଣ କରେ ଧରି
ବୋଲେ ପରୀକ୍ଷିତ ଦଣ୍ଡଧାରୀ
ହେ ମୁନି ତୁମ୍ଭ ମୁଖୁଁ ଶୁଣି
ଦୁର୍ଗମ ଅସମ୍ଭବ ବାଣୀ
ସଂଶୟ କଲା ମୁହିଁ ଚିତ୍ତେ
ସେ କଥା କହ ମୁନି ମୋତେ
ବଳିର ଯଜ୍ଞ ଭଗ୍ନ ଅର୍ଥେ
ବାମନ ଜନ୍ମ ହେଲେ କେମନ୍ତେ
ଧରଣୀ ତିନିପାଦ ଦାନେ
ବଳିକି ଛଳିଲେ ବନ୍ଧନେ
ସେ ପୂର୍ଣ୍ଣ ସ୍ୱଭାବେ ଈଶ୍ୱର
ଅଶେଷ ଦ୍ରବ୍ୟ ଅଧିକାର
କୃପଣ ପ୍ରାୟେ ତାଙ୍କୁ ଧରି
କିମ୍ପା ବାନ୍ଧିଲେ ନରହରି ।୧,୨

ଶ୍ରୀ ଶୁକ ଉବାଚ ।

ପରାଜିତଶ୍ରୀରସୁଭିଶ୍ଚ ହାପିତୋ ହୀନ୍ଦ୍ରେଣ ରାଜନ୍ ଭୃଗୁଭିଃ ସ ଜୀବିତଃ ।
ସର୍ବାତ୍ମନା ତାନଭଜଦ୍‌ଭୃଗୂନ୍ ବଳିଃ ଶିଷ୍ୟୋ ମହାତ୍ମାର୍ଥନିବେଦନେନ । ୩ ।
ତଂ ବ୍ରାହ୍ମଣା ଭୃଗବଃ ପ୍ରୀୟମାଣା ଅଯାଜୟନ୍ ବିଶ୍ୱଜିତା ତ୍ରିନାକମ୍ ।
ଜିଗୀଷମାଣଂ ବିଧିନାଭିଷିଚ୍ୟ ମହାଭିଷେକେଣ ମହାନୁଭାବାଃ । ୪ ।
ତତୋ ରଥଃ କାଞ୍ଚନପଟ୍ଟନଦ୍ଧୋ ହୟାଶ୍ଚ ହର୍ଯ୍ୟଶ୍ୱତୁରଙ୍ଗବର୍ଣ୍ଣାଃ ।
ଧ୍ୱଜଶ୍ଚ ସିଂହେନ ବିରାଜମାନୋ ହୁତାଶନାଦାସ ହବିର୍ଭିରିଷ୍ଟାତ୍ । ୫ ।

---

ଶ୍ରୀ ଶୁକଦେବ କହିଲେ :—

ଅସୁରରାଜ ବଳି ଯୁଦ୍ଧରେ ଇନ୍ଦ୍ରଙ୍କ କର୍ତ୍ତୃକ ପରାଜିତ ହୋଇ ଏପରିକି ପ୍ରାଣହୀନ ଅବସ୍ଥା ପର୍ଯ୍ୟନ୍ତ ଭୋଗି ପରେ ଶୁକ୍ରାଚାର୍ଯ୍ୟଙ୍କ ଦ୍ୱାରା ଜୀବିତ ହୋଇଥିଲେ । ଭୃଗୁବଂଶର ଶିଷ୍ୟ ମହାତ୍ମା ବଳି ସମସ୍ତ ଅର୍ଥ ଓ ଆତ୍ମ ନିବେଦନ ପର୍ଯ୍ୟନ୍ତ ବିଶେଷ ଯତ୍ନରେ ଶୁକ୍ରାଚାର୍ଯ୍ୟ ପ୍ରଭୃତି ଗୁରୁଙ୍କ ଉପାସନା କରୁଥିଲେ ।୩।

ହେ ରାଜନ୍ ! ମହାନୁଭବ ଭୃଗୁବଂଶୀୟ, ସ୍ୱର୍ଗଜୟାଭିଳାଷୀ ବଳିଙ୍କୁ ମହାଭିଷେକ ବିଧି ଦ୍ୱାରା ଯଥାବିଧି ଅଭିଷେକ କରି ବିଶ୍ୱଜିତ୍ ନାମକ ଯଜ୍ଞଦ୍ୱାରା ଯାଜନ କରୁଥିଲେ ।୪।

ଉପଯୁକ୍ତରୂପେ ଘୃତାହୁତି ଦେବାରୁ ଅଗ୍ନିରୁ କାଞ୍ଚନ ପଟ୍ଟବଦ୍ଧ ରଥ, ଇନ୍ଦ୍ରଙ୍କର ଅଶ୍ୱତୁଲ୍ୟ ବର୍ଣ୍ଣ ବିଶିଷ୍ଟ ଅଶ୍ୱମାନ ଏବଂ ସିଂହ ପ୍ରତିମୂର୍ତ୍ତି ଯୁକ୍ତ ଧ୍ୱଜ; ସୁବର୍ଣ୍ଣ ବନ୍ଧ ଯୁକ୍ତ ଧନୁ, ଅକ୍ଷୟ ବାଣ ପୂର୍ଣ୍ଣ ଦୁଇଟି

---

ଶ୍ରୀଶୁକଉବାଚ—
ଶୁଣ ହେ ଅଭିମନ୍ୟୁ-ସୁତ
ଅଦ୍ଭୁତ କୃଷ୍ଣର ଚରିତ
ଯେମନ୍ତେ ଖର୍ବ ରୂପେ ଛଳି
ବଳିକି ଚାପିଲେ ପାତାଳେ
ପୂର୍ବେ ଯେ ଦେବାସୁର ରଣେ
ଯୁଦ୍ଧେ ଜିଣିଲେ ଦେବଗଣେ
ବଳି ସହିତେ ମରିଗଲେ
ଶେଷ ଦାନବ ଯେତେ ଥିଲେ
ବଳିର ମୃତ୍ୟୁ ପିଣ୍ଡ ନେଇ
ପଶ୍ଚିମ ଗିରି ପୃଷ୍ଠେ ଥୋଇ
ଶୁକ୍ରଙ୍କୁ ଆଣି ଗଉରବେ
ବିଶ୍ୱାସି କହିଲେ ଦାନବେ
ଅସୁରଙ୍କର ଗୁରୁ ଯେଣୁ
ଶୁକ୍ର ଯେ ମୃତ୍ୟୁ-ସଞ୍ଜୀବନୀ

ମନ୍ତ୍ରେ ଜୀଆଇଲେ ତକ୍ଷଣେ
ନମିଲେ ଶୁକ୍ରର ଚରଣେ
ବୋଇଲେ ଶୁକ୍ର ମୁଖ ଚାହିଁ
ଅନାଥ ହୋଇଲୁଁ ଗୋସାଇଁ
ଦେବେ ଯେ ଅମୃତ ଭକ୍ଷଣେ
ଅମର ହୋଇ ଘୋରରଣେ
ଆମ୍ଭଙ୍କୁ ମାରିଗଲେ ସର୍ବେ
ତୁମ୍ଭେ ଜୀବନ ଦେଲ ଏବେ
ତୁମ୍ଭେ ଆମ୍ଭଙ୍କ ସାହା ହୁଅ
ଏବେ ହେ କି କରିବୁଁ କହ
ଏମନ୍ତ ଅସୁରଙ୍କ ବାକ୍ୟ
ଶୁକ୍ର ଚିନ୍ତିଲେ ବସି ଏକେ
ବିଚାର କରି ଶୁଦ୍ଧ ଚିତ୍ତେ
କହନ୍ତି ବଳିର ଅଗ୍ରତେ

। ତୁ ଯଜ୍ଞ ସଥିଁ ବେଗେ କର
ଯେମନ୍ତେ ଜିଣିବୁଁ ଅମର
ଏମନ୍ତେ ଗୁରୁ ବାକ୍ୟ ଶୁଣି
ବଳି ଯଜ୍ଞର ବିଧି ଆଣି
ଋତ୍ୱିଜ ଆଣି ଜଣେ ଜଣେ
ବରିଲ ଯଜ୍ଞର କାରଣେ
ତ୍ରିପୁର-ଜୟ ନାମ କରୁ
କଲି ଅମର ଜୟ ହେତୁ
ବ୍ରାହ୍ମଣେ ମିଳି ବେଦବାକ୍ୟେ
ମାର୍ଜ୍ଜନ କଲେ ଏକେ ଏକେ
ତ୍ରିଲୋକ ମଧ୍ୟେ ରାଜା ଏକ
ଏଣୁବେ କଲେ ଅଭିଷେକ ।୩,୪।
ସୁବର୍ଣ୍ଣ-ରଥ ମନ୍ତ୍ରତେଜେ
ବାକ୍ୟେ ଉପୁଜେ ଶୂନ୍ୟ ମାଝେ

ଧନୁଶ୍ଚ ଦିବ୍ୟଂ ପୁରଟୋପନଦ୍ଧଂ ତୂଣାବରିକ୍ତୌ କବଚଞ୍ଚ ଦିବ୍ୟମ୍ ।
ପିତାମହସ୍ତସ୍ୟ ଦଦୌ ଚ ମାଳାମମ୍ଳାନପୁଷ୍ପାଂ ଜଳଜଞ୍ଚ ଶୁକ୍ରଃ । ୬ ।
ଏବଂ ସ ବିପ୍ରାର୍ଜିତଯୋଧନାର୍ଥସ୍ତୈଃ କଳ୍ପିତସ୍ୱସ୍ତ୍ୟୟନୋଽଥ ବିପ୍ରାନ୍ ।
ପ୍ରଦକ୍ଷିଣୀକୃତ୍ୟ କୃତପ୍ରଣାମଃ ପ୍ରହ୍ଲାଦମାମନ୍ତ୍ର୍ୟ ନମଶ୍ଚକାର । ୭ ।
ଅଥାରୁହ୍ୟ ରଥଂ ଦିବ୍ୟଂ ଭୃଗୁଦତ୍ତଂ ମହାରଥଃ ।
ସୁସ୍ରଗ୍ଧରୋଽଥ ସନ୍ନହ୍ୟ ଧନ୍ୱୀ ଖଡ୍ଗୀ ଧୃତେଷୁଧିଃ । ୮ ।
ହେମାଙ୍ଗଦଲସଦ୍‌ବାହୁଃ ସ୍ଫୁରନ୍ମକରକୁଣ୍ଡଳଃ ।
ରରାଜ ରଥମାରୂଢୋ ଧିଷ୍ଣ୍ୟସ୍ଥ ଇବ ହବ୍ୟବାଟ୍ । ୯ ।

---

ତୂଣୀର୍ ଏବଂ ଦିବ୍ୟକବଚ ଉଠିବାରୁ ବଳି ଯଜ୍ଞାଗ୍ନିରୁ ଏ ସମସ୍ତ ଦ୍ରବ୍ୟ ପ୍ରାପ୍ତ ହୁଅନ୍ତେ ତାହାଙ୍କର ପିତାମହ ପ୍ରହ୍ଲାଦ ତାହାଙ୍କୁ ଗୋଟିଏ ଅମ୍ଲାନ ପୁଷ୍ପମାଳା ଏବଂ ଶୁକ୍ରାଚାର୍ଯ୍ୟ ଗୋଟିଏ ଶଙ୍ଖ, ପ୍ରଦାନ କରିଥିଲେ । ୫, ୬ ।

ଏହାପରେ ଭୃଗୁବଂଶୀୟ ବ୍ରାହ୍ମଣମାନଙ୍କ କର୍ତ୍ତୃକ ବଳି ଯୁଦ୍ଧୋପକରଣମାନ ଲଭ କରିଥିଲେ ଏବଂ ସେମାନେ ବଳିଙ୍କ ପାଇଁ ସ୍ୱସ୍ତ୍ୟୟନ କରିଥିଲେ । ବଳି ବ୍ରାହ୍ମଣମାନଙ୍କୁ ପ୍ରଦକ୍ଷିଣ ଓ ପ୍ରଣାମ କରି ପିତାମହ ପ୍ରହ୍ଲାଦଙ୍କ ପାଦ ଗ୍ରହଣ କରି ନମସ୍କାର କରିଥିଲେ ।୭।

ତଦନନ୍ତର ମାଲ୍ୟ ଓ କବଚଧାରୀ ଧନୁର୍ବାଣ ଖଡ୍‌ଗ ଓ ତୂଣୀର୍ ଧାରଣ କରି ମହାବୀର ବଳି ସ୍ୱର୍ଣ୍ଣ ନିର୍ମିତ ବଳୟ ଓ ମକର କୁଣ୍ଡଳ ଶୋଭିତ ହୋଇ ଭୃଗୁଦତ୍ତ ରଥାରୋହଣ ପୂର୍ବକ ରଥସ୍ଥ ହୋଇ କୁଣ୍ଡ ମଧ୍ୟସ୍ଥ ପ୍ରଜ୍ୱଳିତ ଅଗ୍ନି ତୁଲ୍ୟ ଶୋଭା ପାଇଥିଲେ । ୮, ୯ ।

---

ହରିତ ବର୍ଣ୍ଣ ଅଶ୍ୱଗଣ
ଯେସନେ ରବି ରଥେ ଯୋଗ
ଗଗନ ମାର୍ଗେ ରଥ ଯାଜେ
ସୁବର୍ଣ୍ଣ-ସିଂହ ଥାଇ ଧ୍ୱଜ
ସ୍ୱର୍ଣ୍ଣ-ନିର୍ମିତ ଧନୁ-ତୋଣ
ଅଭେଦ କବଚ ଭୂଷଣ
ଅମଳ ପଦ୍ମ ମାଳା ପୁଣି
ଗଳେ ପ୍ରହ୍ଲାଦ ଦେଲେ ଆଣି

ଭୃଗୁ ଯେ ଶଙ୍ଖ ଦେଲେ କରେ
ଯେ ନାଦେ ତ୍ରିଭୁବନ ପୂରେ ।୫,୬
ବିପ୍ରେ ଆଶିଷ ମନ୍ତ୍ର କଲେ
ସ୍ୱସ୍ତ୍ୟୟନ କରି ସୁମଙ୍ଗଳେ
ବିପ୍ରଙ୍କୁ ପ୍ରଦକ୍ଷିଣ କରି
ବୀରମାନଙ୍କୁ ମୋଦ ଭରି
ପ୍ରହ୍ଲାଦପାଦେ ପ୍ରଣମିତ
ବଳି ଆରୋହି ଦିବ୍ୟ ରଥ ।୭।

ମାଳ କବଚ କଲେବରେ
ଧନୁ ଖଡ଼ଗ ଧରି କରେ
ରତ୍ନ-କଙ୍କଣ ବାହୁମୂଳେ
ବିରାଜେ ମୁକୁଟ କୁଣ୍ଡଳେ
ବିରାଜେ ରଥ ମଧ୍ୟେ ବସି
ଅନଳ ପ୍ରାୟ ତେଜରାଶି ।୮,୯।

ତୁଲ୍ୟୈଶ୍ୱର୍ଯ୍ୟବଳଶ୍ରୀଭିଃ ସ୍ୱଯୂଥୈର୍ଦୈତ୍ୟଯୂଥପୈଃ ।
ପିବଦ୍ଭିରିବ ଖଂ ଦୃଗ୍ଭିର୍ଦହଦ୍ଭିଃ ପରିଧୀନିବ । ୧୦ ।
ବୃତୋ ବିକର୍ଷନ୍ ମହତୀମାସୁରୀଂ ଧ୍ୱଜିନୀଂ ବିଭୁଃ ।
ଯଯାବିନ୍ଦ୍ରପୁରୀଂ ସ୍ୱୃଦ୍ଧାଂ କମ୍ପୟନ୍ନିବ ରୋଦସୀ । ୧୧ ।
ରମ୍ୟାମୁପବନୋଦ୍ୟାନୈଃ ଶ୍ରୀମଦ୍ଭିର୍ନନ୍ଦନାଦିଭିଃ ।
କୂଜଦ୍ୱିହଙ୍ଗମିଥୁନୈର୍ଗାୟନ୍ମତ୍ତମଧୁବ୍ରତୈଃ । ୧୨ ।
ପ୍ରବାଳଫଳପୁଷ୍ପୋରୁଭାରଶାଖାମରଦ୍ରୁମୈଃ ।
ହଂସସାରସଚକ୍ରାହ୍ୱକାରଣ୍ଡବକୁଳାକୁଳାଃ ।
ନଳିନ୍ୟୋ ଯତ୍ର କ୍ରୀଡନ୍ତି ପ୍ରମଦାଃ ସୁରସେବିତାଃ । ୧୩ ।

---

ତଦନନ୍ତର ନିଜ ନିଜର ଯୂଥସହ ଦୈତ୍ୟ ଯୂଥପତିମାନେ ଯେ ଯାହାର ବଳ, ଐଶ୍ୱର୍ଯ୍ୟ ଓ ଶୋଭାନୁରୂପ ବଳିଙ୍କ ତୁଲ୍ୟ ଉପସ୍ଥିତ ହୋଇଥିଲେ । ଏବଂ ସେମାନେ ନିଜ ନିଜର ଦୃଷ୍ଟିଦ୍ୱାରା ଆକାଶମଣ୍ଡଳକୁ ପାନ ଓ ଦିକ୍ ସମୂହକୁ ଦଗ୍ଧ କରୁଥିଲେ ।୧୦।

ସେମାନେ ଯାଇଁ ବଳିଙ୍କ ସହିତ ମିଳିତ ହେଲେ । ବଳି ସେମାନଙ୍କ ଦ୍ୱାରା ପରିବୃତ ହୋଇ ଓ ବୃହତ୍ତମ ଅସୁର ବାହିନୀକୁ ନେଇ ସମୃଦ୍ଧିଶାଳୀ ଇନ୍ଦ୍ର ପୁରୀକୁ ଗମନ କରୁଥିଲେ । ସେମାନଙ୍କର ଗମନ କାଳରେ ସ୍ୱର୍ଗ ଏବଂ ପୃଥିବୀ କମ୍ପିତ ହୋଇଥିଲା ।୧୧।

ଏହି ଇନ୍ଦ୍ରପୁରୀ ଶୋଭାଶାଳୀ ନନ୍ଦନାଦି ଉପବନ ଉଦ୍ୟାନାଦି ଦ୍ୱାରା ଅତ୍ୟନ୍ତ ରମଣୀୟ ହୋଇଥିଲା । ସେହି ଉଦ୍ୟାନ ଓ ଉପବନରେ ବିହଙ୍ଗମାନଙ୍କର ସୁମଧୁର କାକଳି ଏବଂ ମତ୍ତ ଭ୍ରମରମାନଙ୍କର ସୁସ୍ୱର ଗାନ ଶୁଭୁଥିଲା । ସେଠାରେ ଯେଉଁ ସୁର ଦ୍ରୁମମାନ ଥିଲା, ତହିଁର ଶାଖାମାନ ପ୍ରବାଳ ଓ ଫଳମାନଙ୍କର ଗୁରୁଭାରରେ ଅବନତ ହୋଇଥିଲା । ୨।

ସେଠାରେ ଦେବଭୋଗ୍ୟ ସୁରାଙ୍ଗନାମାନେ କ୍ରୀଡ଼ା କରୁଥିଲେ । ହଂସ, ସାରସ, ଚକ୍ରବାକ, କାରଣ୍ଡବ ପ୍ରଭୃତି ଏକତ୍ରିତ ହୋଇ ପଦ୍ମ ସମନ୍ୱିତ ସରୋବର ଓ ସେହି ଉପବନମାନଙ୍କର ଶୋଭା ବର୍ଦ୍ଧିତ କରୁଥିଲେ ।୧୩।

---

ତୁଲ୍ୟ ଐଶ୍ୱର୍ଯ୍ୟ ବଳ ତେଜେ
ଅସୁର ବଳିମଧ୍ୟେ ରାଜେ
ଏମନ୍ତେ ଦୈତ୍ୟବଳ ଘେନି
ଚଳନ୍ତେ କମ୍ପଇ ମେଦିନୀ
ସକଳେ ହୋଇ ଏକମନ
ଦଶେ ନ ପିଇବେ ଗଗନ
ଅସୁର ସେନା ରଥେ ବସି
ଧାଇଁଲେ ଗଗନଗରାସି

ଚଳନ୍ତେ କମ୍ପେ ଦଶଦଶ
କେ ସହୁ ଅସୁରଙ୍କ ତ୍ରାସ
ମିଳିଲେ ଇନ୍ଦ୍ରର ଭୁବନେ
ସକଳେ ବଧିରବ୍ୟାଧାନେ ।୧୦,୧୧
ନନ୍ଦନ ଆଦି ବନପନ୍ତି
କଳ୍ପ ପାଦପେ ବିରାଜନ୍ତି
ବିହଙ୍ଗ ମିଥୁନେ ନାଦନ୍ତି
ମତ୍ତ କୋକିଳ ରାବଦ୍ୟନ୍ତି

ହଂସ ସାରସ ଚକ୍ରବାକ
କାରଣ୍ଡବ ଆଦି ଡାହୁକ
ପ୍ରବାଳ ପୁଷ୍ପ ଫଳଭରେ
ଡାଳନ୍ତି ସୁଗନ୍ଧ ସମୀରେ
ନଳିନୀ ଦଳ ମନୋହର
ସୁର କାମିନୀ କ୍ରୀଡ଼ା-ଘର ।୧୨-୧୩

ଆକାଶଗଙ୍ଗୟା ଦେବ୍ୟା ବୃତାଂ ପରିଖଭୂତୟା ।
ପ୍ରାକାରେଣାଗ୍ନିବର୍ଣ୍ଣେନ ସାଟ୍ଟାଲେନୋନ୍ନତେନ ଚ । ୧୪ ।
ରୁକ୍ମପଟ୍ଟକବାଟୈଶ୍ଚ ଦ୍ୱାରୈଃ ସ୍ଫଟିକଗୋପୁରୈଃ ।
ଯୁଷ୍ଟାଂ ବିଭକ୍ତପ୍ରପଥାଂ ବିଶ୍ୱକର୍ମ୍ମବିନିର୍ମିତାମ୍ । ୧୫ ।
ସଭାଚତ୍ୱରରଥ୍ୟାଢ୍ୟାଂ ବିମାନୈର୍ନ୍ୟର୍ବୁଦୈର୍ଯୁତାମ୍ ।
ଶୃଙ୍ଗାଟକୈର୍ମଣିମୟୈର୍ବଜ୍ରବିଦ୍ରୁମବେଦିଭିଃ । ୧୬ ।
ଯତ୍ର ନିତ୍ୟବୟୋରୂପାଃ ଶ୍ୟାମା ବିରଜବାସସଃ ।
ଭ୍ରାଜନ୍ତେ ରୂପବନ୍ନାର୍ଯ୍ୟୋ ଅର୍ଚ୍ଚିଭିରିବ ବହ୍ନୟଃ । ୧୭ ।
ସୁରସ୍ତ୍ରୀକେଶବିଭ୍ରଷ୍ଟନବସୌଗନ୍ଧିକସ୍ରଜାମ୍ ।
ଯତ୍ରାମୋଦମୁପାଦାୟ ମାର୍ଗ ଆବାତି ମାରୁତଃ । ୧୮ ।

---

ସେଠାରେ ଆକାଶ ଗଙ୍ଗା ପରିଖାରୂପେ ଅବସ୍ଥିତ ଓ ଉନ୍ନତ ଯୁଦ୍ଧସ୍ଥାନ ମାନ ଅଗ୍ନିବର୍ଣ୍ଣ ପ୍ରାଚୀର ଦ୍ୱାରା ପରିବେଷ୍ଟିତ, କପାଟଗୁଡ଼ିକ ସ୍ୱର୍ଣ୍ଣମୟ, ଦ୍ୱାରବନ୍ଧ ଗୁଡ଼ିକ ସ୍ଫଟିକ ମଣି ନିର୍ମିତ, ଏବଂ ରାଜପଥ ସମୂହ ସୁନ୍ଦର ରୂପେ ବିଭକ୍ତ । ବିଶ୍ୱକର୍ମା ନିର୍ମିତ ଏହି ସ୍ୱର୍ଗପୁରୀ ସୁଶୋଭିତ ହୋଇଥିଲା । ୧୪, ୧୫ ।

ସେହି ଇନ୍ଦ୍ରପୁରୀ, ଉପବେଶନ ସ୍ଥାନ ଅଗଣ ଏବଂ ଉପମାର୍ଗମାନ ସୁମଣ୍ଡଳ । କୋଟି କୋଟି ବିମାନ ଦ୍ୱାରା ପରିବ୍ୟାପ୍ତ ତନ୍ନତ୍ୟ ଚତୁଷ୍ପଥମାନ, ବିଦ୍ରୁମାଦି ମଣିମୟ ବେଦିକାଦ୍ୱାରା ସୁଶୋଭିତ ।୧୬।

ସେଠାରେ ସ୍ଥିର ଯୌବନା, ନିର୍ମଳ ବସନା, ଦିବ୍ୟାଳଙ୍କାର ଭୂଷିତା ଶ୍ୟାମା ରମଣୀମାନେ ଦୀପ୍ତିଦ୍ୱାରା ଅଗ୍ନିପରି ଶୋଭା ପାଉଥିଲେ ।୧୭।

ସେଠାରେ ବାୟୁ ଦେବାଙ୍ଗନାମାନଙ୍କର କେଶରୁ ପତିତ ସୁଗନ୍ଧ ମାଲ୍ୟଗନ୍ଧ ବହନ କରି ପଥରେ ପ୍ରବାହିତ ହେଉଥିଲା ।୧୮।

---

ପାଚେରି ପରିଖା ବେଷ୍ଟନ
ଆକାଶ ଗଙ୍ଗା ବହେ ତାଣ
ଉପରେ ଦିଶେ ଅଗ୍ନିବର୍ଣ୍ଣ
ଅଟ୍ଟାଳି ସ୍ତୂପରେଖ ଶୋଭନ ।୧୪।
ଦ୍ୱାରେ କବାଟ ହେମମୟେ
ଦେଖିଲା ପ୍ରାଣୀ ମନ ମୋହେ
ସ୍ଫଟିକମୟ ପୁର-ଦ୍ୱାର
ଯେସନ୍ତ ବିରାଜେ ନିଶାକର
କେ କହୁ ରୂପ ଗଣି ସୀମା
ଯାହା ଗଢ଼ିଲି ବିଶ୍ୱକର୍ମା । ୧୫ ।

ସଭା ଚତ୍ୱର ପଥା ଶୋହେ
ତପସ୍ୱି ଜନ ମନ ମୋହେ
ଅପୂର୍ବ ବିମାନ ସଙ୍କୁଳ
ମଣି ନିର୍ମିତ ସୁମଙ୍ଗଳ
ପ୍ରବାଳ ବେଦିକା ବିରାଜେ
ମଣି ନିର୍ମିତ ମହାତେଜେ । ୧୬ ।
ଦିବ୍ୟ କାମିନୀଗଣ ଯହିଁ
ନବୀନ ବୟୁ ରୂପ ବହି
ଶ୍ୟାମ ବିରଜ ବସ୍ତ୍ର ଯୁକ୍ତ
ଯହିଁ ଚଳନ୍ତି ଯୂଥ ଯୂଥ

ଶୋଭା କରନ୍ତି ନାନାବର୍ଣ୍ଣେ
ପ୍ରଦୀପ ଶିଖା ଅଗ୍ନି ଯେସନ୍ତେ ।୧୭
କବରୀ ବନ୍ଧେ ଭୃଙ୍ଗମାଳା
ଅମର ପ୍ରସୂନ ମେଖଳା
ନାନା ସୁଗନ୍ଧ ଲେପି ଦେହେଁ
ପ୍ରମୋଦେମୋଦ ବାୟୁ ବହେ ।୧୮

ହେମଜାଲାକ୍ଷନିର୍ଗଚ୍ଛଦ୍‌ଧୂମେନାଗୁରୁଗନ୍ଧିନା ।
ପାଣ୍ଡରେଣ ପ୍ରତିଚ୍ଛନ୍ନମାର୍ଗେ ଯାନ୍ତି ସୁରପ୍ରିୟାଃ । ୧୯ ।
ମୁକ୍ତାବିତାନୈର୍ମଣିହେମକେତୁଭିର୍ନାନାପତାକାବଲଭୀଭିରାବୃତାମ୍ ।
ଶିଖଣ୍ଡିପାରାବତଭୃଙ୍ଗନାଦିତାଂ ବୈମାନିକସ୍ତ୍ରୀକଲଗୀତମଙ୍ଗଳାମ୍ । ୨୦ ।
ମୃଦଙ୍ଗଶଙ୍ଖାନକଦୁନ୍ଦୁଭିସ୍ୱନୈଃ ସତାଳବୀଣାମୁରଜେଷ୍ଟବେଣୁଭିଃ ।
ନୃତ୍ୟୈଃ ସବାଦ୍ୟୈରୁପଦେବଗୀତକୈର୍ମନୋରମାଂ ସ୍ୱପ୍ରଭୟା ଜିତପ୍ରଭାମ୍ ।୨୧।
ଯାଂ ନ ବ୍ରଜନ୍ତ୍ୟଧର୍ମିଷ୍ଠାଃ ଖଳା ଭୂତଦ୍ରୁହଃ ଶଠାଃ ।
ମାନିନଃ କାମିନୋ ଲୁବ୍ଧା ଏଭିର୍ହୀନା ବ୍ରଜନ୍ତି ଯତ୍ । ୨୨ ।

---

ସେଠାରେ ସୁବର୍ଣ୍ଣ ଗବାକ୍ଷ ଛିଦ୍ରରୁ ନିର୍ଗତ ଶୁଭ୍ରବର୍ଣ୍ଣ ଅଗରୁ ଗନ୍ଧଯୁକ୍ତ ଧୂମଦ୍ୱାରା ଘେରିଥିବା ପଥରେ ଅପ୍‌ସରାମାନେ ପରିଭ୍ରମଣ କରୁଥିଲେ ।୧୯।

ମୁକ୍ତାମୟ, ଚନ୍ଦ୍ରାତପମଣି, ହେମମୟ ଧ୍ୱଜା ବିବିଧ ପତାକାଦ୍ୱାରା ଶୋଭିତ ବିମାନର ଅଗ୍ରବର୍ତ୍ତୀ ଗୃହ ସମୂହ ଦ୍ୱାରା ପରିବ୍ୟାପ୍ତ, ମୟୂର ପାରାବତ ଓ ଭ୍ରମର ପ୍ରଭୃତିଙ୍କ ଶବ୍ଦରେ ନିନାଦିତ ବିମାନଚାରିଣୀ କାମିନୀମାନଙ୍କ ସୁମଧୁର ସଙ୍ଗୀତରେ ରମଣୀୟ ହୋଇଥିଲା ।୨୦।

ମୃଦଙ୍ଗ, ଶଙ୍ଖ, ଦୁନ୍ଦୁଭି ସ୍ୱନରେ ଶବ୍ଦାୟମାନ ସତାଳବୀଣା ମୁରଜ, ଅଷ୍ଟବେଣୁ ପ୍ରଭୃତି ବାଦ୍ୟ ଓ ଗନ୍ଧର୍ବମାନଙ୍କର ନୃତ୍ୟ ଏବଂ ସଙ୍ଗୀତରେ ଅତ୍ୟନ୍ତ ମନୋହର ହୋଇଥିଲା ଏବଂ ନିଜର ପ୍ରଭାଦ୍ୱାରା ଅନ୍ୟାନ୍ୟ ପ୍ରଭାକୁ ପରାଜିତ କରୁଥିଲା ।୨୧।

ପାପୀ, ଖଳ, ପ୍ରତିହିଂସକ, ଦର୍ପିକ, ଅଭିମାନୀ, କାମୀ, ଲୋଭପରାୟଣ ବ୍ୟକ୍ତିମାନେ ଯେଉଁ ପୁରୀରେ ପ୍ରବେଶ କରି ନ ପାରନ୍ତି, ଯେଉଁଠାରେ ଖଳାଦିଦୋଷ ରହିତ ସାଧୁମାନେ ପ୍ରବେଶ କରିବାକୁ ସମର୍ଥ ହୁଅନ୍ତି ନାହିଁ । ୨୨ ।

---

ସୁବର୍ଣ୍ଣ କଟକ ଜାଲାରନ୍ଧ୍ରେ
ମୋହେ ଅପୂର୍ବ ଧୂପ ଗନ୍ଧେ
ନିର୍ଗତ ଚଳନ୍ତେ ଧୂପ ଧୂଆଁ
ମଧ୍ୟେ ଚଳନ୍ତି ସ୍ୱର୍ଗବାମା
ପାଣ୍ଡୁର ବରଣ ସନ୍ତ ସନ୍ତ
ଧୂମ ମଣ୍ଡଳ ଘୋଟିଛନ୍ତି । ୧୯ ।
ମଣି ଖଚିତ ହେମକାଚେ
ଶିଷ୍ଟ ବସନ୍ତି ମାର୍ଗେ ଯାନ୍ତେ

ଉଗଣା ଅଛାଲ ସୁପଟଣି
ପତାକା ଶୋହେ ଅତି ଭଲେ
ମୟୂର ପାରାବତ ନାଦେ
ମଙ୍ଗଳ ସଙ୍ଗୀତ ଶବଦେ । ୨୦ ।
ମୃଦଙ୍ଗ ଶଙ୍ଖ ଭେରୀନାଦ
ତାଳ ମୁରଲୀ ବୀଣା ବାଦ୍ୟ
ତାଣ୍ଡବେ ନାନା ବାଦ୍ୟ ଶୋହେ
ଗୀତ ପ୍ରବନ୍ଧେ ମନ ମୋହେ ।୨୧।

ଯେ ପୁର ବେଗେ ତପ ନାହିଁ
ପାପିଷ୍ଠେ ନ ପାରନ୍ତି ଯାଇ
ଲୁତ ସନ୍ତାପି ଖଳ ଜନେ
ସୁଜନେ ପୀଡ଼ନ୍ତି ଅଜ୍ଞାନେ
ଶଠ ହୃଦୟ କାମୀ ଲୋଭୀ
ଯେ ଥିବେ ପରହିଂସା ଲୋଭ
ସେ କାହିଁ ଯିବେ ସେ ଭୁବନେ
ଯାହା ଚଳନ୍ତି ଯୋଗିଜନେ ।୨୨।

ତାଂ ଦେବଧାନୀଂ ସ ବରୂଥିନୀପତିର୍ବହିଃ ସମନ୍ତାଦ୍ରୁରୁଧେ ପୃତନ୍ୟୟା ।
ଆଚାର୍ଯ୍ୟଦତ୍ତଂ ଜଳଜଂ ମହାସ୍ୱନଂ ଦଧ୍ମୌ ପ୍ରଯୁଞ୍ଜନ୍ ଭୟମିନ୍ଦ୍ରଯୋଷିତାମ୍ ।୨୩।
ମଘବାଂସ୍ତମଭିପ୍ରେତ୍ୟ ବଳେଃ ପରମମୁଦ୍ୟମମ୍ ।
ସର୍ବଦେବଗଣୋପେତୋ ଗୁରୁମେତଦୁବାଚ ହ । ୨୪ ।
ଭଗବନ୍ନୁଦ୍ୟମୋ ଭୂୟାନ୍ ବଳେର୍ନଃ ପୂର୍ବବୈରିଣଃ ।
ଅବିଷହ୍ୟମିମଂ ମନ୍ୟେ କେନାସୀତ୍ତେଜସୋର୍ଜ୍ଜିତଃ । ୨୫ ।
ନୈନଂ କଶ୍ଚିତ୍ କୁତୋ ବାପି ପ୍ରତିବୋଢ଼ୁମଧୀଶ୍ୱରଃ ।
ପିବନ୍ନିବ ମୁଖେନେଦଂ ଲିହନ୍ନିବ ଦିଶୋ ଦଶ ।
ଦହନ୍ନିବ ଦିଶୋ ଦୃଗ୍‌ଭିଃ ସମ୍ବର୍ତ୍ତାଗ୍ନିରିବୋତ୍ଥିତଃ । ୨୬ ।

---

ବଳୀୟ ସୈନ୍ୟାଧ୍ୟକ୍ଷ ବଳବାନ୍ ବଳି ସୈନ୍ୟଦ୍ୱାରା ଇନ୍ଦ୍ର ପୁରୀକୁ ସବୁ ଆଡୁ ଅବରୋଧ କରିଥିଲେ ଏବଂ ଇନ୍ଦ୍ରଙ୍କ ସ୍ତ୍ରୀମାନଙ୍କ ହୃଦୟରେ ଭୀତି ଜନ୍ମାଇ ଶୁକ୍ରାଚାର୍ଯ୍ୟଦତ୍ତ ମହାନାଦଯୁକ୍ତ ଶଙ୍ଖ ବଜାଇଥିଲେ ।୨୩

ଇନ୍ଦ୍ର ବଳିଙ୍କର ଏହି ମହାନ୍ ଉଦ୍ୟମ ଜାଣିପାରି ସମସ୍ତ ଦେବତାମାନଙ୍କ ସହିତ ଦେବଗୁରୁ ବୃହସ୍ପତିଙ୍କ ନିକଟକୁ ଗମନ କରିଥିଲେ ।୨୪।

ଇନ୍ଦ୍ର କହିଲେ—

ଆମ୍ଭମାନଙ୍କର ପୂର୍ବଶତ୍ରୁ ବଳି ମହାନୁଦ୍ୟମ କରିଅଛି । ମୋର ମନେ ହୁଏ ବଳିଙ୍କର ଉଦ୍ୟମ ସହ୍ୟ କରି ହେବନାହିଁ । ବଳି କାହାତେଜରେ ଏପରି ବଳବାନ୍ ହୋଇଅଛି ? ।୨୫।

କୌଣସି ବ୍ୟକ୍ତି କୌଣସି ଉପାୟରେ ତାହାର ଗତିରୋଧ କରି ପାରିବନାହିଁ, କାରଣ ବଳି ମୁଖରେ ଏହି ବିଶ୍ୱକୁ ପାନ କରିବାକୁ, ଜିହ୍ୱା ଦ୍ୱାରା ଦଶଦିଗ ଲେହନ କରିବାକୁ ଏବଂ ଦୃଷ୍ଟି ଦ୍ୱାରା ଦଶଦିଗ ଦଗ୍ଧ କରିବାକୁ ଉଦ୍ୟତ ହୋଇ ପ୍ରଳୟକାଳୀନ ଅଗ୍ନି ତୁଲ୍ୟ ବିଦ୍ୟମାନ ରହିଅଛି ।୨୬।

---

ଏମନ୍ତ ପୁରେ ସକ୍ରନ୍ଦନ
ବଳି ମିଳିଲା ଅତି ବେଗେ
ବେଢ଼ିଲା ସୈନ୍ୟ ଅଷ୍ଟଦିଗ
କେ ସହୁ ଅସୁରଙ୍କ ବେଗ
ଭୂମି ଗଗନ ଅନ୍ତରାଳେ
ବାକ୍ୟ ନ ସ୍ଫୁରଇ ଚହଳେ
ଶୁକ୍ରର ଶଙ୍ଖ କରେ ଘେନି
ବଳି କରଇ ଘୋର ଧ୍ୱନି
ଶବଦେ ଭୁବନ କମ୍ପିଲା
ସେ ରବେ ଇନ୍ଦ୍ର ଭୟ କଲା ।୨୩।

ବଳି ଉଦ୍ୟମ ଇନ୍ଦ୍ର ଶୁଣି
ସଭୟ ଚିତ୍ତେ ମନେ ଗୁଣି
ଭେଟିଲା ଜାଇ ଗୁରୁମାନେ
କେମନ୍ତେ ରହିବ ଜୀବନେ
ଅସୁରେ ଅମୃତ ନ ପାଇ
ଅତି କଠୋରେ ଥିଲେ ରହି
ଶୁକ୍ରର ମୃତ୍ୟୁ ସଞ୍ଜୀବନେ
ପ୍ରାଣ ପାଇଲେ ଯାତୁଧାନେ
କିବା ଉଦ୍ୟମ ପରମାଣି
ଆଇଲେ ଆମ୍ଭେ ତ ନ ଜାଣି

ହେ ଗୁରୁ ! ନମୁଁ ତୋର ପାୟେ
ସ୍ୱର୍ଗେ କେମନ୍ତେ ଥିବୁଁ ଭୟେ
କହ କି କରିବି ଉପାୟେ
ଯାବତ ରଜନୀ ନ ପାହେ
ଦେଖ ଏହାର ତେଜରାଶି
ମିଳିଲା ଗଗନ ଗରାସି
ମୁଖେ କି ଆକାଶ ପିଇବ
ଦଶଦିଗ ଜିହ୍ୱାରେ ଲେହିବ ।୨୪,୨୬

ବ୍ରୂହି କାରଣମେତସ୍ୟଦୁର୍ଦ୍ଧର୍ଷତ୍ୱସ୍ୟ ମଦ୍ରିପୋଃ ।
ଓଜଃ ସହୋ ବଳଂ ତେଜୋ ଯତ ଏତତ୍ସମୁଦ୍ୟମଃ । ୨୬ ।

ଶ୍ରୀ ଗୁରୁରୁବାଚ ।

ଜାନାମି ମଘବନ୍ ଶତ୍ରୋରୁନ୍ନତେରସ୍ୟ କାରଣମ୍ ।
ଶିଷ୍ୟାୟୋପଭୃତଂ ତେଜୋ ଭୃଗୁଭିର୍ବ୍ରହ୍ମବାଦଭିଃ । ୨୮ ।
ଓଜସ୍ୱିନଂ ବଳଂ ଜେତୁଂ ନ ସମର୍ଥୋଽସ୍ତି କଶ୍ଚନ ।
ଭବଦ୍ୱିଧୋ ଭବାନ୍ ବାପି ବର୍ଜୟିତ୍ୱେଶ୍ୱରଂ ହରମ୍ । ୨୯ ।
ବିଜେଷ୍ୟତ ନ କୋଽପ୍ୟେନଂ ବ୍ରହ୍ମତେଜଃ ସମେଧିତମ୍ ।
ନାସ୍ୟ ଶକ୍ତଃ ପୁରଃସ୍ଥାତୁଂ କୃତାନ୍ତସ୍ୟ ଯଥା ଜନାଃ । ୩୦ ।
ତସ୍ମାନ୍ନିଳୟମୁତ୍ସୃଜ୍ୟ ଯୂୟଂ ସର୍ବେ ତ୍ରିବିଷ୍ଟପମ୍ ।
ଯାତ କାଳଂ ପ୍ରତୀକ୍ଷନ୍ତୋ ଯତଃ ଶତ୍ରୋର୍ବିପର୍ଯ୍ୟୟଃ । ୩୧ ।

---

ମୋର ଶତ୍ରୁ ଏପରି ଦୁର୍ଦ୍ଧର୍ଷ ହେବାର କାରଣ କଣ କୁହନ୍ତୁ ? ତାହାର ଏପରି ସାମର୍ଥ୍ୟ, ସାହସ, ବଳ ଓ ତେଜ କିପରି ହେଲା ; ଯଦ୍ଦ୍ୱାରା ସେ ଏପରି ମହା ଉଦ୍ୟମ ପ୍ରକାଶ କରୁଅଛି ।୨୭।

ବୃହସ୍ପତି କହିଲେ :—

ହେ ଇନ୍ଦ୍ର ! ତୁମ୍ଭର ଏପରି ଶତ୍ରୁର ଉନ୍ନତିର କାରଣ ମୁଁ ଜାଣିଅଛି । ବ୍ରହ୍ମଜ୍ଞ ଭୃଗୁବଂଶୀୟ ଶୁକ୍ରାଚାର୍ଯ୍ୟାଦି ବ୍ରାହ୍ମଣମାନେ ଭକ୍ତ ଶିଷ୍ୟକୁ ତେଜପ୍ରଦାନ କରିଅଛନ୍ତି । ହେ ଦେବେନ୍ଦ୍ର ! ଏକମାତ୍ର ଭଗବାନ୍ ବିଷ୍ଣୁଙ୍କ ଭିନ୍ନ ବଳଶାଳୀ ଏହି ବଳିକୁ ଜୟ କରିବାର ଶକ୍ତି ତୁମ୍ଭର ବା ଅନ୍ୟ କାହାର ନାହିଁ । ବ୍ରହ୍ମତେଜ ଦ୍ୱାରା ସମ୍ୟକ୍‌ରୂପେ ବର୍ଦ୍ଧିତ ଏହି ବଳିକୁ କେହି ଜୟ କରି ପାରିବେନାହିଁ । ଯେପରି ଯମ ନିକଟରେ କେହି ଦଣ୍ଡାୟମାନ ହୋଇ ନ ପାରନ୍ତି ; ସେହିପରି ଏହାର ସମ୍ମୁଖରେ କେହି ଅବସ୍ଥାନ କରି ପାରିବେ ନାହିଁ । ୨୮-୩୦ ।

ସୁତରାଂ ଯେତେଦିନ ଯାଏ ଏହି ବଳବାନ୍ ଶତ୍ରୁ ପରାଜିତ ନ ହୁଏ, ସେତେଦିନ ଯାଏ ତୁମ୍ଭେମାନେ ସ୍ୱର୍ଗଧାମ ପରିତ୍ୟାଗ କରି ଲୁକ୍କାୟିତ ଭାବରେ ଅବସ୍ଥାନ କର ।୩୧।

---

ଇନ୍ଦ୍ରର ବାକ୍ୟେ ବୃହସ୍ପତି
ଇନ୍ଦ୍ର କୁଶଳ ମନେ ଚିନ୍ତି
ବୋଲନ୍ତି ଶୁଣ ସୁରପତି
ବେଗେ ତୁ ଛାଡ଼ ତାରସ୍ଥିତି
ଶୁଣ ଯେ ଅସୁରଙ୍କୁ ତାର
ଶତ୍ରୁ ପ୍ରତିଷ୍ଠା ଅଛି କରି
ସଙ୍କଳ୍ପ କରି ପୁରୋହିତେ
ଯଜ୍ଞ କଲିଲ ଇନ୍ଦ୍ରଜିତେ

ତାହାର ମନ୍ତ୍ରବଳ ତେଜେ
ତୁ କାହିଁ ଥିବୁ ସ୍ୱର୍ଗରାଜ୍ୟେ
ଜୀବନେ ଯେବେ ଅଛି କାର୍ଯ୍ୟ
ବେଗେ ଅମରାବତୀ ତେଜ
ମୁଁ ଏହା ଜାଣେ ଯୋଗଧ୍ୟାନେ
ବଳି ଯେ ଶୁକ୍ରର ବଚନେ
ଘୋର ସମରେ ତୋତେ ଜିଣି
ତିନି ଭୁବନେ ସ୍ୱାମୀ ମଣି

ରାଜା ହୋଇବ ଯଜ୍ଞବଳେ
ତୁ ଏବେ ରହ ଯା ଲୁଚିଲେ
ହରିଙ୍କି ପଶ ଯା ଶରଣ
ତୋତେ ରଖିବେ ନାରାୟଣ
କାଳରବଶେ ବଳି ଏବେ
ଚିନ୍ତି ସେ ହରି ପାଦଯୁଗେ
ଯାବତ ବଳି ତେଜ ନାଶେ
ତାବତ ରହି ବନ ଦେଶେ

ଏଷ ବିପ୍ରବଲୋଦର୍କଃ ସମ୍ପ୍ରତ୍ୟୂର୍ଜିତବିକ୍ରମଃ ।
ତେଷାମେବାପମାନେନ ସାନୁବନ୍ଧୋ ବିନଙ୍କ୍ଷ୍ୟତି । ୩୨ ।
ଏବଂ ସୁମନ୍ତ୍ରିତାର୍ଥାସ୍ତେ ଗୁରୁଣାର୍ଥାନୁଦର୍ଶିନା ।
ହିତ୍ୱା ତ୍ରିବିଷ୍ଟପଂ ଜଗ୍ମୁର୍ଗୀର୍ବାଣାଃ କାମରୂପିଣଃ । ୩୩ ।
ଦେବେଷ୍ୱଥ ନିଲୀନେଷୁ ବଲିର୍ବୈରୋଚନଃ ପୁରୀମ୍ ।
ଦେବଧାନୀମଧିଷ୍ଠାୟ ବଶଂ ନିନ୍ୟେ ଜଗତ୍ତ୍ରୟମ୍ । ୩୪ ।
ତଂ ବିଶ୍ୱଜୟିନଂ ଶିଷ୍ୟଂ ଭୃଗବଃ ଶିଷ୍ୟବତ୍ସଲାଃ ।
ଶତେନ ହୟମେଧାନାମନୁବ୍ରତମଯାଜୟନ୍ । ୩୫ ।
ତତସ୍ତଦନୁଭାବେନ ଭୁବନତ୍ରୟବିଶ୍ରୁତାମ୍ ।
କୀର୍ତ୍ତିଂ ଦିକ୍ଷୁ ବିତନ୍ୱାନଃ ସ ରେଜ ଉଡୁରାଡ଼ିବ । ୩୬ ।
ବୁଭୁଜେ ଚ ଶ୍ରିୟଂ ସ୍ୱୃଦ୍ଧାଂ ଦ୍ୱିଜଦେବୋପଲମ୍ଭିତାମ୍ ।
କୃତକୃତ୍ୟମିବାତ୍ମାନଂ ମନ୍ୟମାନୋ ମହାମନାଃ । ୩୭ ।

---

ସମ୍ପ୍ରତି ବଳି ବ୍ରହ୍ମତେଜ ଦ୍ୱାରା ବର୍ଦ୍ଧିତ ହୋଇ ପ୍ରବଳ ପରାକ୍ରମୀ ହୋଇଅଛି, ପୁନର୍ବାର ସେହି ବ୍ରାହ୍ମଣ ଅବଜ୍ଞା କରି ସବଂଶରେ ବିନଷ୍ଟ ହେବ ।୩୨।

ତତ୍ତ୍ୱଜ୍ଞ ବୃହସ୍ପତିଙ୍କଠାରୁ କର୍ତ୍ତବ୍ୟ ସମ୍ବନ୍ଧେ ଏହିପରି ଉପଦେଶ ଗ୍ରହଣ କରି ସ୍ୱର୍ଗଧାମ ପରିତ୍ୟାଗ କରି କାମରୂପୀ ଦେବତାମାନେ ଅନ୍ୟତ୍ର ଗ୍ଲଲଗଲେ । ୩୩ ।

ତଦନନ୍ତର ଦେବତାମାନେ ଅଦୃଶ୍ୟ ହୁଅନ୍ତେ ବିରୋଚନ ପୁତ୍ର ବଳି ଇନ୍ଦ୍ରପୁରୀ ଆକ୍ରମଣ କରି ସ୍ୱର୍ଗରେ ଅବସ୍ଥାନ ପୂର୍ବକ ତ୍ରିଭୁବନକୁ ଆପଣାର ବଶୀଭୂତ କରିଥିଲେ ।୩୪।

ଶିଷ୍ୟବତ୍ସଳ ଭୃଗୁ ବଂଶୀୟ ଶୁକ୍ରାଦି ବ୍ରାହ୍ମଣମାନେ ଏହି ବିଶ୍ୱବିଜୟୀ ଅନୁଗତ ଶିଷ୍ୟ ବଳିଙ୍କ ଦ୍ୱାରା ଶତ ସଂଖ୍ୟକ ଅଶ୍ୱମେଧ ଯଜ୍ଞ କରାଇଥିଲେ । ତାହାଙ୍କର ଏହି ଯଜ୍ଞ ପ୍ରଭାବ ତ୍ରିଭୁବନରେ ପ୍ରସିଦ୍ଧ କୀର୍ତ୍ତି ଚନ୍ଦ୍ର ତୁଲ୍ୟ ଶୋଭା ପାଇଥିଲା । ୩୫, ୩୬ ।

ତଦନନ୍ତର ଉଦାରଚେତା ବଳି କୃତକୃତ୍ୟ ହୋଇ ବ୍ରାହ୍ମଣମାନଙ୍କ କର୍ତ୍ତୃକ ଦତ୍ତ ସୁସମୃଦ୍ଧ ରାଜସମ୍ପଦ ଭୋଗ କରିଥିଲେ । ୩୭ ।

---

| | | |
|---|---|---|
| ଦୁର୍ଗମେ କାମରୂପେ ଚରି | ମିଳି ସକଳ ଦେବଗଣେ | ବସିଲା ଇନ୍ଦ୍ରର ଆସନେ |
| ଯହିଁ ପର୍ବତ ବନଘୋର ।୨୭,୩୨ | ଭୟେ ପଶିଲେ ଘୋରବନେ ।୩୩ | ଭୃଗୁବଚନେ ତୋଷମନେ |
| ଏମନ୍ତ ଗୁରୁ ବାକ୍ୟ ଶୁଣି | ଏମନ୍ତେ ରଜନୀ ପ୍ରଭାତେ | ଇନ୍ଦ୍ର ଆସନେ ବସି ତୋଷେ |
| ଅମୃତ ପ୍ରାପ୍ତ ଶତ୍ରୁ ମଣି | ବଳି ଅସୁରଙ୍କ ସମେତେ | ତ୍ରିଲୋକ ସାଧିଲାକ ବଶେ ।୩୪,୩୭ |

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ବଳିବନ୍ଧନେ
ନାମ ପଞ୍ଚଦଶୋଽଧ୍ୟାୟଃ ।

---

| | | |
|---|---|---|
| ବୋଲଇ ବିପ୍ର ଜଗନ୍ନାଥ | ସୁଜନେ ଏଣେ କର ମତ | ମନ ବଚନେ ଭାବ ଚେତେ |
| ଭାଷା ପ୍ରବନ୍ଧେ ଭାଗବତ | ତରିବ ବିଷମ ଦୁର୍ଗତି | ତରିବ ବିଷ୍ଣୁ ମାୟା ଯେତେ ॥ |



## ଷୋଡ଼ଶୋଽଧ୍ୟାୟଃ ।

ଷୋଡ଼ଶେ ପୁତ୍ରନାଶେନ ଶୋଚନ୍ତ୍ୟା ଅଦିତେଃ ପତିଃ ।
ପ୍ରାର୍ଥିତଃ କଶ୍ୟପଃ ପ୍ରାହ ପୟୋବ୍ରତମିତୀର୍ଯ୍ୟତେ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ଏବଂ ପୁତ୍ରେଷୁ ନଷ୍ଟେଷୁ ଦେବମାତାଦିତିସ୍ତଦା ।
ହୃତେ ତ୍ରିବିଷ୍ଟପେ ଦୈତ୍ୟୈଃ ପର୍ଯ୍ୟତପ୍ୟଦନାଥବତ୍ । ୧ ।

---

### ପୁତ୍ରମାନଙ୍କର ଅଦର୍ଶନରେ ଅଦିତିଙ୍କର ଶୋକ ଓ କଶ୍ୟପଙ୍କର ବ୍ରତୋପଦେଶ କଥନ

ଷୋଡ଼ଶ ଅଧ୍ୟାୟରେ ଅଦିତି, ଯୁଦ୍ଧରେ ପୁତ୍ରମାନଙ୍କର ବିନାଶ ହୁଅନ୍ତେ ସ୍ୱାମୀ କଶ୍ୟପଙ୍କଠାରେ ଶରଣ ପଶିଲେ, ଏବଂ କଶ୍ୟପ ପୟୋବ୍ରତ ଉପଦେଶ ଦେବା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ :—

ଏହାପରେ ସ୍ୱୀୟ ପୁତ୍ର ଦେବତାମାନେ ଲୁକ୍କାୟିତ ହୁଅନ୍ତେ ଓ ଦୈତ୍ୟମାନେ ସ୍ୱର୍ଗରାଜ୍ୟ ଅଧିକାର କରନ୍ତେ, ଦେବମାତା ଅଦିତି ବିଳାପ କରିବାକୁ ଲାଗିଲେ ।୧।

---

ପୁତ୍ରଙ୍କ ଲୁଗିଲେ ଅଦିତି, କଶ୍ୟପେ ଶରଣ ପଶନ୍ତି ॥ ସେ ପ୍ରୟୋବ୍ରତ ଉପଦେଶ, ଏମନ୍ତ ବର୍ଣ୍ଣିନ ଷୋଡ଼ଶ ॥

| | | |
|---|---|---|
| ଶ୍ରୀଶୁକଉବାଚ— | ଏମନ୍ତେ ଦେବଙ୍କର ରିଷ୍ଟେ | ଦେବେ ଲୁଚିଲେ ଘୋରବନେ |
| | ସେ ଦେବମାତା ମନ କଷ୍ଟେ | ଶୁଣି ଅଦିତି ଦୁଃଖମନେ |
| ଶୁକ କହନ୍ତି ହେ ନୃପତି | ଇନ୍ଦ୍ରର ଇନ୍ଦ୍ରପଣ ଗଲା | ରାତ୍ର ଦିବସ ନ ଜାଣଇ |
| ପୁତ୍ରଙ୍କ କଷ୍ଟେ ସେ ଅଦିତି | ଗିରି ଦୁର୍ଗମ ଆଶ୍ରେ କଲା | କାନ୍ଦନ୍ତେ ଥାଏ ଗୃହେ ଶୋଇ ।୧। |

ଏକଦା କଶ୍ୟପସ୍ତସ୍ୟା ଆଶ୍ରମଂ ଭଗବାନଗାତ୍ ।
ନିରୁତ୍ସବଂ ନିରାନନ୍ଦଂ ସମାଧେର୍ବିରତଶ୍ଚିରାତ୍ । ୨ ।
ସ ପତ୍ନୀଂ ଦୀନବଦନାଂ କୃତାସନପରିଗ୍ରହଃ ।
ସଭାଜିତୋ ଯଥାନ୍ୟାୟମିଦମାହ କୁରୂଦ୍ୱହ । ୩ ।
ଅପ୍ୟଭଦ୍ରଂ ନ ବିପ୍ରାଣାଂ ଭଦ୍ରେ ଲୋକେଽଧୁନାଗତମ୍ ।
ନ ଧର୍ମ୍ମସ୍ୟ ନ ଲୋକସ୍ୟ ମୃତ୍ୟୋଶ୍ଛନ୍ଦାନୁବର୍ତ୍ତିନଃ । ୪ ।
ଅପି ବାକୁଶଳଂ କିଞ୍ଚିତ୍ ଗୃହେଷୁ ଗୃହମେଧିନି ।
ଧର୍ମ୍ମସ୍ୟାର୍ଥସ୍ୟ କାମସ୍ୟ ଯତ୍ର ଯୋଗୋ ହ୍ୟଯୋଗିନାମ୍ ।୫।

---

ଏକଦା ଭଗବାନ୍ କଶ୍ୟପ ସମାଧିରୁ ଉଠି ଅଦିତିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ତାହା ଦୀର୍ଘକାଳ ଯାବତ୍ ଉତ୍ସବଶୂନ୍ୟ ହୋଇ ଥିବାରୁ ନିରାନନ୍ଦମୟ ହୋଇଥିଲା ।୨।

ହେ କୁରୁକୁଳ ତିଳକ ! ସେହି ଆଶ୍ରମରେ ଭଗବାନ୍ କଶ୍ୟପଙ୍କୁ ପତ୍ନୀ ଅଭ୍ୟର୍ଥନା କରିବାପରେ ସେ ଆସନ ଗ୍ରହଣ କରି ଅଦିତିଙ୍କୁ ମ୍ଳାନମୁଖୀ ଦେଖି ନ୍ୟାୟାନୁମୋଦିତ ଭାବରେ ଏହିପରି କହିଲେ ।୩।

ହେ କଲ୍ୟାଣି ! ଲୋକମାନଙ୍କ ମଧ୍ୟରେ ବିପ୍ରମାନଙ୍କର କୌଣସି ଅମଙ୍ଗଳ ଘଟି ନାହିଁ ତ ? ଧର୍ମ କିମ୍ବା ମୃତ୍ୟୁର ବଶବର୍ତ୍ତୀ ମନୁଷ୍ୟମାନଙ୍କର କୌଣସି ଅମଙ୍ଗଳ ଘଟିନାହିଁ ତ ? ।୪।

ହେ ଗାର୍ହସ୍ଥ୍ୟ ଧର୍ମାବଲମ୍ବିନି ! ତୁମ୍ଭ ଗୃହରେ ଧର୍ମ, ଅର୍ଥ, କାମ ଏହି ତ୍ରିବର୍ଗର କୌଣସି ଅକୁଶଳ ଘଟିନାହିଁ ତ ? ଗୃହାଶ୍ରମ ସାମାନ୍ୟ ନୁହେଁ । ଅଯୋଗୀ ସ୍ୱଧର୍ମାନୁଷ୍ଠାନ କରି ଏଠାରେ ଯୋଗଫଳ ଲାଭ କରି ପାରିଥାନ୍ତି ।୫।

---

ତାର ଭୁବନେ ଏକବେଳେ
କଶ୍ୟପଋଷି ବିଜେ କଲେ
ଅଦିତି ଶୟନ ସମୀପେ
କଶ୍ୟପ ବସି ମନସ୍ତାପେ
ଦେଖିଲେ ଅଦିତି ଭୁବନ
ଅଷ୍ଟ ସମ୍ପଦେ ଅତି ହୀନ
ଉତ୍ସବ ଆନନ୍ଦ ନ ଦିଶେ
ଆଦିତ୍ୟ ଯେସନେ ଧୂମ୍ରବାସେ
ବସିଲେ ସେ କୁଶ ଆସନେ
ଚାହିଁଲେ ଅଦିତି ବଦନେ
ଦେଖିଲେ ମୁଖେ ସୁଖ ନାହିଁ
ଶୋକ ଆକୁଳେ କମ୍ପେ ଦେହି
ଅନାଇଁ ଅଦିତି-ବଦନ
ବୋଲନ୍ତି ମରୀଚି ନନ୍ଦନ ।୨,୩।
ଶୁଣ ସୁନ୍ଦରି ଏକଚିତ୍ତେ
କହିବି ତୋହର ଅଗ୍ରତେ
ବ୍ରହ୍ମା ସର୍ଜିତ ସୃଷ୍ଟି ମଧ୍ୟେ
ବ୍ରାହ୍ମଣେ ବସନ୍ତି ଆନନ୍ଦେ
ତାହାଙ୍କ ଗୃହେ ଦୁଃଖ ନାହିଁ
ଏବେ ବିପରୀତ ଦେଖଇ
ଧନ ସମ୍ପଦ ସୁଖ ନୋହେ
ଶୁଣ ନିଗମ ଯାହା କହେ
ଅଶେଷ ବସ୍ତୁର ଜଗତ
କର୍ମ୍ମର ବଳେ ଆଚ୍ଛାଦିତ
ଶୁଭ ଅଶୁଭ ଭାବବଳେ
କାଳ କ୍ରୀଡ଼ଇ ଅନୁଗତେ
କାଳର ବଶ ଏ ସଂସାର
କେ-ଭୃତ୍ୟ କେ ଅବା ଈଶ୍ୱର
ଭୋଗ ସମ୍ପଦ ଅର୍ଥ ଗୃହେ
ପ୍ରାଣୀ ସାଧନ୍ତି ଅତି ମୋହେ
ଏ ଭାବେ ସଂସାର ରଚିତ
କିବା ହୋଇଲା ଆଚମ୍ବିତ ।୪,୫।

ଅପି ବାତଥୟୋଽଭ୍ୟେତ୍ୟ କୁଟୁମ୍ବାସକ୍ତୟା ତ୍ୱୟା ।
ଗୃହାଦପୂଜିତା ଯାତା ପ୍ରତ୍ୟୁତ୍ଥାନେନ ବା କ୍ୱଚିତ୍ । ୬ ।
ଗୃହେଷୁ ଯେଷ୍ୱତଥୟୋ ନାର୍ଚ୍ଚିତାଃ ସଲିଲୈରପି ।
ଯଦି ନିର୍ଯାନ୍ତି ତେ ନୂନଂ ଫେରୁରାଜଗୃହୋପମାଃ । ୭ ।
ଅପ୍ୟଗ୍ନୟସ୍ତୁ ବେଳାୟାଂ ନ ହୁତା ହବିଷା ସତି ।
ତ୍ୱୟୋଦ୍‌ବିଗ୍ନଧିୟା ଭଦ୍ରେ ପ୍ରୋଷିତେ ମୟି କର୍ହିଚିତ୍ । ୮ ।
ଯତ୍‌ପୂଜୟା କାମଦୁଘାନ୍ ଯାତି ଲୋକାନ୍ ଗୃହାନ୍ୱିତଃ ।
ବ୍ରାହ୍ମଣୋଽଗ୍ନିଶ୍ଚ ବୈ ବିଷ୍ଣୋଃ ସର୍ବଦେବାତ୍ମନୋ ମୁଖମ୍ ।୯।
ଅପି ସର୍ବେ କୁଶଳିନସ୍ତବ ପୁତ୍ରା ମନସ୍ୱିନି ।
ଲକ୍ଷୟେଽସ୍ୱସ୍ଥମାତ୍ମାନଂ ଭବତ୍ୟା ଲକ୍ଷଣୈରହଂ । ୧୦ ।

---

ଅଥବା ଅତିଥିମାନେ ତୁମ୍ଭେ କୁଟୁମ୍ବାସକ୍ତ ଥିଲାବେଳେ ପ୍ରତ୍ୟୁତ୍‌ଥାନାଦି ଦ୍ୱାରା ପୂଜିତ ନ ହୋଇ ଗୃହରୁ ଫେରି ନାହାନ୍ତି ତ ? ।୬।

ଯେଉଁ ଗୃହରୁ ଅତିଥି ସାମାନ୍ୟ ଜଳଦ୍ୱାରା ସୁଦ୍ଧା ଅଭ୍ୟର୍ଥିତ ନ ହୋଇ ଫେରିଯାଏ, ସେ ଗୃହ ଶୃଗାଳ ଗୃହ ତୁଲ୍ୟ । ୭ ।

ହେ ସତି ! ହେ କଲ୍ୟାଣି ! ମୁଁ କେତେବେଳେ ପ୍ରବାସ କଲେ ତୁମ୍ଭେ ଉତ୍କଣ୍ଠିତ ହୋଇ କି ସନ୍ଧ୍ୟାରେ ଘୃତାହୁତି କରି ନାହଁ କି ? ।୮।

ଅଗ୍ନିର ପୂଜାଦ୍ୱାରା ଗୃହସ୍ଥ ଅଭିଳଷିତ ଲୋକପ୍ରାପ୍ତ ହୁଏ । ସର୍ବଦେବାତ୍ମା ବିଷ୍ଣୁଙ୍କର ବ୍ରାହ୍ମଣ ଓ ଅଗ୍ନି ମୁଖ ସ୍ୱରୂପ ।୯।

ହେ ମନସ୍ୱିନି ! ତୁମ୍ଭର ପୁତ୍ରମାନେ କୁଶଳରେ ଅଛନ୍ତି ତ ? ତୁମ୍ଭର ମୁଖମ୍ଳାନ ଦେଖି ତୁମ୍ଭେ ଅପ୍ରକୃତିସ୍ଥ ବୋଲି ମନେ ହେଉଅଛ ।୧୦।

---

ବିପ୍ର ଅତିଥି କିବା ଘରେ
କୁଟୁମ୍ବ ଭରଣ ବେଳରେ
ପୂଜା ନ ପାଇ ଏ ଭବନେ
କି ଅବା ଗଲେ ଦୁଃଖମନେ
ଯା ଘରୁ ଅତିଥି ବାହୁଡ଼େ
ସେ ପ୍ରାଣୀ ପ୍ରେତମୁଖେ ପଡ଼େ
ତାର ସଞ୍ଚିତ ପୁଣ୍ୟ ଯେତେ
ଗଛନ୍ତି ଅତିଥି ସଙ୍ଗତେ ।୬,୭।
ଅଗ୍ନି ବା ଯଥାକାଳେ ହବି
କିବା ନ ପାଇ ପରିଭବି
ମୋର ପ୍ରବାସେ ତୋର ଚିତ୍ତ
କିବା ହୋଇଲା ମୋହ ଗତ
ଅଗ୍ନି ପୂଜନ ଶୁଦ୍ଧମନେ
ସେ କାମଧେନୁ ଯଜମାନେ
ସମ୍ପଦ ବିପ୍ରଜନେ ଦିଅନ୍ତି
ଦେବେ ଯେ କଲ୍ୟାଣ ବାଞ୍ଛନ୍ତି
ବିପ୍ର ଅଗ୍ନିକୁ ନ ପୂଜିଲେ
କଲ୍ୟାଣ ଲଭେ କାହିଁ ଭଲେ
ହରିଙ୍କି କାହୁଁ ସେ ପାଇବ
ଯାକୁ ନ ପାନ୍ତି ବ୍ରହ୍ମା ଶିବ
ଉଭୟ ଲୋକେ ନାହିଁ ସୁଖ
ସର୍ବଦା ଲଭନ୍ତି ବିମୁଖ ।୮,୯।
ତୋର ତନୁଜ ଦେବତାଏ
ସ୍ୱର୍ଗରେ ଛନ୍ତି ନା ନିର୍ଭୟେ ?
ଇନ୍ଦ୍ରର କୁଶଳ ନ ଦେଖି
କିବା ହୋଇଛୁ ମନେ ଦୁଃଖୀ ?
।୧୦।

ଶ୍ରୀ ଅଦିତିରୁବାଚ ।

ଭଦ୍ରଂ ଦ୍ୱିଜଗବାଂ ବ୍ରହ୍ମନ୍ ଧର୍ମସ୍ୟାସ୍ୟ ଜନସ୍ୟ ଚ ।
ତ୍ରିବର୍ଗସ୍ୟ ପରଂ କ୍ଷେତ୍ରଂ ଗୃହମେଧିନ୍ ଗୃହା ଇମେ ।୧୧।
ଅଗ୍ନୟୋଽତିଥୟୋ ଭୃତ୍ୟା ଭିକ୍ଷବୋ ଯେ ଚ ଲିପ୍ସବଃ ।
ସର୍ବଂ ଭଗବତୋ ବ୍ରହ୍ମନ୍ ନନୁ ଧ୍ୟାନାନ୍ନ ରିଷ୍ୟତ ।୧୨।
କୋ ନୁ ମେ ଭଗବନ୍ କାମୋ ନ ସମ୍ପଦ୍ୟେତ ମାନସଃ ।
ଯସ୍ୟା ଭବାନ୍ ପ୍ରଜାଧ୍ୟକ୍ଷ ଏବଂ ଧର୍ମାନ୍ ପ୍ରଭାଷତେ ।୧୩।
ତବୈବ ମାରୀଚମନଃଶରୀରଜାଃ ପ୍ରଜା ଇମାଃ ସତ୍ତ୍ୱରଜସ୍ତମୋଜୁଷଃ ।
ସମୋ ଭବାଂସ୍ତାସ୍ୱସୁରାଦିଷୁ ପ୍ରଭୋ ତଥାପି ଭକ୍ତଂ ଭଜତେ ମହେଶ୍ୱରଃ ।୧୪।

---

ଅଦିତି କହିଲେ—

ହେ ବ୍ରହ୍ମନ୍ ! ବ୍ରାହ୍ମଣ, ଗୋ, ଧର୍ମ ସମସ୍ତ କୁଶଳ । ହେ ଗୃହମେଧିନ୍ ! ଏ ଗୃହ ଧର୍ମ, ଅର୍ଥ, କାମ ଏହି ତ୍ରିବର୍ଗର ଉତ୍ପତ୍ତିସ୍ଥଳ, ତାହାର ମଧ୍ୟ କୁଶଳ ଅଛି ।୧୧।

ହେ ବ୍ରହ୍ମନ୍ ! ମୁଁ ଯେ ଆପଣଙ୍କର ଧ୍ୟାନକରେ, ତହିଁର ପ୍ରଭାବରେ ଅଗ୍ନି, ଅତିଥି, ଭୃତ୍ୟ ଏବଂ ଭିକ୍ଷୁକ ପ୍ରଭୃତି ସମସ୍ତେ ସତ୍କୃତ ହୋଇ ସନ୍ତୁଷ୍ଟ ଥାନ୍ତି । କୌଣସି ଧର୍ମରେ ହାନି ହୋଇନାହିଁ ।୧୨।

ହେ ଭଗବନ୍ ! ଆପଣ ଯେତେବେଳେ ମୋର ପ୍ରଜାପତି ଏବଂ ଧର୍ମୋପଦେଷ୍ଟା ସେତେବେଳେ ମୋର କୌଣସି କାମନା ଅସମ୍ପୂର୍ଣ୍ଣ ନାହିଁ ।୧୩।

ହେ ମରୀଚି ତନୟ ! ସତ୍ତ୍ୱ, ରଜ, ତମ ଗୁଣାବଲମ୍ବୀ ଏହି ପ୍ରଜାମାନେ ଆପଣଙ୍କର ଦେହ ଓ ମନରୁ ଉତ୍ପନ୍ନ ହୋଇଅଛନ୍ତି । ସେହି ଅସୁରାଦି ପ୍ରଜାଙ୍କ ପ୍ରତି ଆପଣ ତୁଲ୍ୟରୂପେ ସ୍ନେହବାନ୍ । ତଥାପି ପ୍ରଭୋ ! ମହେଶ୍ୱର ଯେପରି ଭକ୍ତଙ୍କୁ ରକ୍ଷା କରନ୍ତି, ସେହିପରି ଆପଣ ନିଜର ସନ୍ତାନ ଇନ୍ଦ୍ରାଦି ଦେବତାମାନଙ୍କୁ ରକ୍ଷା କରନ୍ତୁ ।୧୪।

---

ଶୁଣି ଅଦିତି ଶୋକମନେ
କହଇ ସ୍ୱାମୀ ସନ୍ନିଧାନେ

ଶ୍ରୀ ଅଦିତିରୁବାଚ—

ଗୋରୁ ବ୍ରାହ୍ମଣ ସୃଷ୍ଟିଲୋକେ
ଏ ସର୍ବେ ଛନ୍ତି ନାନା ସୁଖେ
ଧର୍ମହିଁ ଅଛି ଏ ସଂସାରେ
ଆଗମ ନିଗମ ବେଦରେ
ତ୍ରିବର୍ଗ ମୋହର ଭୁବନେ
କେତେହେଁ ନ ତୁଟଇ ଧନେ

ଅଗ୍ନି ଅତିଥି ମୋର ଗୃହେ
କେତେହେଁ ନିରାଶେ ନ ରହେ
ସକଳ ସୁଖ ତୁମ୍ଭ ବଳେ
ଭୁଞ୍ଜଇ କର୍ମର କୁଶଳେ
ତୁମ୍ଭେ କହିଲ ଯେତେ ଧର୍ମ
ଗୃହସ୍ଥସ୍ୱଭାବେ ଯେ କର୍ମ
ସର୍ବ ସ୍ୱଧର୍ମେ ମୋର ଚିତ୍ତ
କେବେହେଁ ନୋହେ ମୋହଗତ
ଏ ସର୍ବ ଶୁଭ ତୋ ପ୍ରସାଦେ
ମୁହିଁ ଭୁଞ୍ଜଇ ଅପ୍ରମାଦେ

ତୁମ୍ଭେ ଯେ ଦେବଙ୍କ କୁଶଳେ
ନିରତେ ଭଜ ଯୋଗବଳେ
ଏ ସୃଷ୍ଟି ମଧ୍ୟେ ଯେତେ ଜନ
ସକଳେ ତ୍ରିଗୁଣେ ବନ୍ଧନ
ଅଙ୍କିଲ କର୍ମର ଆମ୍ଭେ
ଜନ୍ତୁ ସର୍ବିଛନ୍ତି ଜଗତେ
ତଥାପି ଭକ୍ତଙ୍କୁ ଭଜନ୍ତି
ବ୍ରହ୍ମା ଶଙ୍କର ଲକ୍ଷ୍ମୀପତି
ଶୁଣ ହେ ସ୍ୱାମି ଋଷିସୁତ
ତୁମ୍ଭ ପ୍ରସାଦେ ମୋର ଚିତ୍ତ

ତସ୍ମାଦୀଶ ଭଜନ୍ତ୍ୟା ମେ ଶ୍ରେୟଶ୍ଚିନ୍ତୟ ସୁବ୍ରତ ।
ହୃତଶ୍ରିୟୋ ହୃତସ୍ଥାନାନ୍ ସପତ୍ନୈଃ ପାହି ନଃ ପ୍ରଭୋ । ୧୫ ।
ପରୈର୍ବ୍ବିବାସିତା ସାହଂ ମଗ୍ନା ବ୍ୟସନସାଗରେ ।
ଐଶ୍ୱର୍ଯ୍ୟଂ ଶ୍ରୀର୍ଯଶଃ ସ୍ଥାନଂ ହୃତାନି ପ୍ରବଲୈର୍ମମ । ୧୬ ।
ଯଥା ତାନି ପୁନଃ ସାଧୋ ପ୍ରପଦ୍ୟେରନ୍ ମମାତ୍ମଜାଃ ।
ତଥା ବିଧେହି କଲ୍ୟାଣଂ ଧିୟା କଲ୍ୟାଣକୃତ୍ତମ । ୧୭ ।

---

ହେ ସୁବ୍ରତ ! ହେ ପ୍ରଭୋ ! ମୁଁ ଆପଣଙ୍କର ଶରଣାଗତା, ଯହିଁରେ ମୋର ମଙ୍ଗଳ ହେବ, ତାହା ଆପଣ ଚିନ୍ତା କରନ୍ତୁ; ଏହାହିଁ ମୋର ପ୍ରାର୍ଥନା । ଶତ୍ରୁ ଦାନବମାନେ ମୋର ସନ୍ତାନମାନଙ୍କର ସମ୍ପଦ ଓ ସ୍ଥାନ ଅପହରଣ କରିଅଛନ୍ତି । ଆପଣ ସେମାନଙ୍କୁ ରକ୍ଷା କରନ୍ତୁ ।୧୫।

ସେହି ଦେବମାତା ମୁଁ ଅସୁରମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ଶୋକ ସାଗରରେ ନିମଗ୍ନ ହୋଇଅଛି ଏବଂ ମୋର ଐଶ୍ୱର୍ଯ୍ୟ, ଶ୍ରୀ,ଯଶ ଓ ସ୍ଥାନ ପ୍ରବଳ ଦୈତ୍ୟମାନେ ଅପହରଣକରି ନେଇ ଅଛନ୍ତି । ହେ ସାଧୋ ! ହେ ମଙ୍ଗଳକାରିନ୍ ? ଯେପରି ସେସବୁ ମୋର ପୁତ୍ରମାନେ ପାଇବେ; ତାହା ଆପଣ ବିଧାନ କରନ୍ତୁ । ୧୬, ୧୭ ।

---

ଦୁର୍ଲ୍ଲଭ ଚତୁର୍ବର୍ଗ ନୋହେ
ସେବକଙ୍କ ପଣେ ତୁମ୍ଭ ସ୍ନେହେ
ତୁମ୍ଭର ଚିତ୍ତ ପ୍ରଜାହିତେ
ଯେ ଧର୍ମ୍ମ କହି ମୋ ଅଗ୍ରତେ
ତୁମ୍ଭର ପୁତ୍ର ଦୁଇମତେ
ଦେବ ଅସୁର ଏ ଜଗତେ
ଏହାଙ୍କ ଭଲ ତୁମ୍ଭେ ଇଛ
ମୁଁ ଏହା ଦେଖଇ ପ୍ରତ୍ୟକ୍ଷ
ମୋ ପୁତ୍ରେ ସତ୍ତ୍ୱଗୁଣେ ଥାନ୍ତି
ଅସୁରେ ରଜତମ ଚିନ୍ତି
ପୀଡ଼ା କରନ୍ତି ସାଧୁଜନେ
ଧର୍ମ୍ମ ରଖନ୍ତି ମୋ ନନ୍ଦନେ

ମୋ ପୁତ୍ରେ ଅସୁରଙ୍କ ଡରେ
ଲୁଚିଲେ ବନ-ଗିରି ଘୋରେ
ଇନ୍ଦ୍ରକୁ ନ ଦେଖି ମୋ ମନ
ନିରତେ ହେଉଛି ଦହନ
କହ କି କରିବି ଉପାୟେ
କେମନ୍ତେ ସ୍ୱର୍ଗ ଇନ୍ଦ୍ର ପାଏ ?
ମୋର ସପତ୍ନୀ ପୁତ୍ର ବଳେ
ବିଶ୍ୱରେ କଲେ ବଳ ଛଳେ
ଶୁକ୍ରର ଯଜ୍ଞ ମନ୍ତ୍ର ତେଜ
ବଳି ବସିଲା ସ୍ୱର୍ଗରାଜ୍ୟ
ମିଳିଲେ ଅନେକ ଦାନବ
ହରିଲେ ଇନ୍ଦ୍ରର ବିଭବ

ସେ ଏବେ ହୋଇ ସ୍ଥାନଭ୍ରଷ୍ଟ
ଅନେକ ପାଉଅଛି କଷ୍ଟ
ମୋ ଡହୁଁ ଦୁଃଖୀ କେ ଶଯ୍ୟଲେ
କହିଲି ତୁମ୍ଭ ପାଦତଳେ
ତୋର କୁମର ଭଲେ ଥିବେ
ମୋ ପୁତ୍ରେ ସ୍ୱସ୍ଥାନେ ରହିବେ
ମୋତେ ଏମନ୍ତ ଆଜ୍ଞାକର
ତୁମ୍ଭେ ଯେ ବୁଦ୍ଧିର ଈଶ୍ୱର
। ୧୧-୧୭ ।

ଶ୍ରୀ ଶୁକ ଉବାଚ ।

ଏବମଭ୍ୟର୍ଥିତୋଽଦିତ୍ୟା କସ୍ତାମାହ ସ୍ମୟନ୍ନିବ ।
ଅହୋ ମାୟାବଳଂ ବିଷ୍ଣୋଃ ସ୍ନେହବଦ୍ଧମିଦଂ ଜଗତ୍ । ୧୮ ।
କ୍ୱ ଦେହୋ ଭୌତିକୋଽନାତ୍ମା କ୍ୱ ଚାତ୍ମା ପ୍ରକୃତେଃ ପରଃ।
କସ୍ୟ କେ ପତିପୁତ୍ରାଦ୍ୟା ମୋହ ଏବ ହି କାରଣମ୍ । ୧୯ ।
ଉପତିଷ୍ଠସ୍ୱ ପୁରୁଷଂ ଭଗବନ୍ତଂ ଜନାର୍ଦ୍ଦନମ୍ ।
ସର୍ବଭୂତଗୁହାବାସଂ ବାସୁଦେବଂ ଜଗଦ୍‌ଗୁରୁମ୍ । ୨୦ ।
ସ ବିଧାସ୍ୟତି ତେ କାମାନ୍ ହରିର୍ଦୀନାନୁକମ୍ପନଃ ।
ଅମୋଘା ଭଗବଦ୍‌ଭକ୍ତିର୍ନେତରେତି ମତିର୍ମମ । ୨୧ ।

---

ଶ୍ରୀ ଶୁକଦେବ କହିଲେ :—

ହେ ସୁଜନ ! ଅଦିତି କଶ୍ୟପଙ୍କୁ ଏହିପରି ପ୍ରାର୍ଥନା କରନ୍ତେ ସେ ଈଷତ୍ ହାସ୍ୟ କରି ଅଦିତିଙ୍କୁ କହିଲେ, କି ଆଶ୍ଚର୍ଯ୍ୟ ! ବିଷ୍ଣୁ ମାୟାର କି ମୋହିନୀ ଶକ୍ତି । ଏହି ମାୟାଶକ୍ତିର ପ୍ରଭାବରେ ଜଗତ୍ ମମତା ବନ୍ଧନରେ ଆବଦ୍ଧ ।୧୮।

ପଞ୍ଚଭୂତୋତ୍ପନ୍ନ ଭୌତିକ ଜଡ଼ଦେହ ବା କେଉଁଠାରେ ? ପ୍ରକୃତିର ଅତୀତ ଆତ୍ମା ବା କେଉଁଠାରେ ? ପତି ପୁତ୍ରାଦି ବା କିଏ ? ପତି, ପୁତ୍ର, କନ୍ୟା ପ୍ରଭୃତି ବା କାହାର ? ମୋହ ଏକମାତ୍ର ଏ ସମସ୍ତର କାରଣ ।୧୯।

ହେ ଅଦିତି ! ସର୍ବଭୂତାନ୍ତର୍ଯ୍ୟାମୀ, ଜଗତ୍‌ଗୁରୁ, ଆଦି ପୁରୁଷ, ବାସୁଦେବ, ଭଗବାନ୍ ଜନାର୍ଦ୍ଦନଙ୍କୁ ଆରାଧନା କର ।୨୦।

ଦୀନଜନ ପ୍ରତି ଅନୁକମ୍ପାକାରୀ ଭଗବାନ୍ ବିଷ୍ଣୁ ତୁମ୍ଭର ପ୍ରାର୍ଥନା ପୂରଣ କରିବେ, କାରଣ ଭଗବତ୍ ସେବା ଅବ୍ୟର୍ଥ, ଅନ୍ୟ କୌଣସି ସେବା ସେପରି ନୁହେଁ, ଏହା ମୋର ମତ । ୨୧ ।

---

ଏମନ୍ତେ ଅଦିତି ବଚନେ
କଶ୍ୟପ ବିଚାରନ୍ତି ମନେ
ଦେଖ ଏ ବିଷ୍ଣୁ-ମାୟାବଳେ
ଜୀବର ବନ୍ଧନ ଶୃଙ୍ଖଳେ
ପାଞ୍ଚଭୌତିକ ଏ ଶରୀର
ଆତ୍ମା ନିର୍ଲେପ ନିରାକାର
ଶରୀର ପତ୍ନୀ ପୁତ୍ରଆଦି
ଏ ବିଷ୍ଣୁ ମାୟାରେ ସମ୍ବାଦ

କେ ଏହା ଅନ୍ୟଥା କରିବ
ବ୍ରହ୍ମା ଶଙ୍କର ବାସୁଦେବ
ତୁ ଏବେ ମୋର ବୋଲ କର
ହରି-ଚରଣ ପଦ୍ମ ସ୍ମର
ସେ ହରି ତୋର ମନଦୁଃଖ
ଦେବାର ଦେବେ ସ୍ୱର୍ଗ-ସୁଖ
ଆରତଜନ ବନ୍ଧୁ ହରି
ଆନ କେ ଆରତ ହରିବ

ଯାର ଚରଣେ ଆଶ୍ରେ କଲେ
ଫଟନ୍ତି ଡରେ ପ୍ରାଣୀ ତରିଲେ
ତାର ଚରଣେ ଆଶ୍ରେ କର
କର୍ଦ୍ଦିମନଦୁଃଖ ଁ ତର ।୧୮,୨୧

ଶ୍ରୀ ଅଦିତିରୁବାଚ ।

କେନାହଂ ବିଧିନା ବ୍ରହ୍ମନ୍ନୁପସ୍ଥାସ୍ୟେ ଜଗତ୍ପତିମ୍ ।
ଯଥା ମେ ସତ୍ୟସଂକଲ୍ପୋ ବିଦଧ୍ୟାତ୍ ସ ମନୋରଥମ୍ । ୨୨ ।
ଆଦିଶ ତ୍ୱଂ ଦ୍ୱିଜଶ୍ରେଷ୍ଠ ବିଧିଂ ତଦୁପଧାବନମ୍ ।
ଆଶୁ ତୁଷ୍ୟତି ମେ ଦେବଃ ସୀଦନ୍ତ୍ୟାଃ ସହ ପୁତ୍ରକୈଃ ।୨୩।

ଶ୍ରୀ କଶ୍ୟପ ଉବାଚ ।

ଏତନ୍ମେ ଭଗବାନ୍ ପୃଷ୍ଟଃ ପ୍ରଜାକାମସ୍ୟ ପଦ୍ମଜଃ ।
ଯଦାହ ତେ ପ୍ରବକ୍ଷ୍ୟାମି ବ୍ରତଂ କେଶବତୋଷଣମ୍ । ୨୪ ।
ଫାଲ୍ଗୁନସ୍ୟାମଳେ ପକ୍ଷେ ଦ୍ୱାଦଶାହଂ ପୟୋବ୍ରତମ୍ ।
ଅର୍ଚ୍ଚୟେଦରବିନ୍ଦାକ୍ଷଂ ଭକ୍ତ୍ୟା ପରମୟାନ୍ୱିତଃ । ୨୫ ।

---

ଶ୍ରୀ ଅଦିତି କହିଲେ :—

ହେ ବ୍ରହ୍ମନ୍ ! ମୁଁ କେଉଁ ପ୍ରକାରେ ଜଗତ୍‌ଗୁରୁ ଶ୍ରୀହରିଙ୍କ ଉପାସନା, କରିବି, ଯଦ୍ୱାରା ସତ୍ୟ ସଙ୍କଳ୍ପ ହରି ମୋର ମନୋରଥ ପୂରଣ କରିବେ ।୨୨।

ହେ ଦ୍ୱିଜଶ୍ରେଷ୍ଠ ! ତାହାଁର ଆରାଧନା ବିଧି ମୋତେ କହନ୍ତୁ । ଯଦ୍ୱାରା ପୁତ୍ରଗଣଙ୍କ ସହିତ ଅବସାଦ ପ୍ରାପ୍ତ ମୋ ପ୍ରତି ଭଗବାନ୍ ଶ୍ରୀହରି ଶୀଘ୍ର ସନ୍ତୁଷ୍ଟ ହେବେ ।୨୩।

ଶ୍ରୀକଶ୍ୟପ କହିଲେ :—

ହେ ଭଦ୍ରେ ! ମୁଁ ପୂର୍ବେ ପ୍ରଜା (ପୁତ୍ର) କାମନାକରି ଭଗବାନ୍ ପଦ୍ମଯୋନିଙ୍କୁ ପଚାରିଥିଲି; ସେ ମୋତେ ହରିତୋଷଣ ବ୍ରତ ପ୍ରସଙ୍ଗ ଯାହା କହିଥିଲେ; ତାହା ତୁମ୍ଭଙ୍କୁ କହୁଅଛି, ଶ୍ରବଣ କର ।୨୪।

ଫାଲ୍‌ଗୁନ ମାସ ଶୁକ୍ଳପକ୍ଷ ଦ୍ୱାଦଶୀଦିନ ପୟୋବ୍ରତ କରିବ । ତାହାଁରେ ଭଗବାନ୍ ପଦ୍ମଲୋଚନଙ୍କୁ ଅର୍ଚ୍ଚନା କରିବ ।୨୫।

---

ଏମନ୍ତ କଶ୍ୟପର ବାଣୀ
ଅଦିତି ଶୁଣି କହେ ପୁଣି
ସ୍ୱାମୀନାଥ ବୁଦ୍ଧି କହ ମୋତେ
ହରିଙ୍କି ସେବିବି କେମନ୍ତେ
ଯେମନ୍ତେ ମୋର ମନୋରଥ
ସଫଳ କରେ ଜଗନ୍ନାଥ
ପୁତ୍ର ବସିବ ଇନ୍ଦ୍ରପଦେ
ସ୍ୱାମୀନାଥ ନମେ ତୋର ପାଦେ
। ୨୨,୨୩ ।

କଶ୍ୟପଉବାଚ—
ଏମନ୍ତେ ପତ୍ନୀ ବାକ୍ୟ ଶୁଣି
ବ୍ରହ୍ମାନନ୍ଦନ ମନେ ଗୁଣି
ବୋଇଲେ ଶୁଣ ମୋ ଘରଣୀ
ହରି ତୋଷଣ ସେବା ବାଣୀ
ଯେ ବ୍ରତେ ପ୍ରଭୁ ହୃଷୀକେଶ
ତୋହର ଉଦରେ ପ୍ରବେଶ
ସେ ବିଷ୍ଣୁ ଦ୍ୱିଜ ଖର୍ବରୂପେ
ବଳିକ ଛଳି ଦାନ କଳ୍ପେ
ତୋର ପୁତ୍ରକୁ ସେ ରଖିବ
ତୁ ଏବେ ହରିପାଦେ ସେବ

ହରି ତୋଷଣ ବ୍ରତ କର
ଏ ଦୁଃଖ-ସାଗରୁ ନିସ୍ତର
ଶୁଣ କହିବା ବେଦମତେ
ଏ ବ୍ରତ କରିବୁ ଯେମନ୍ତେ ।୨୪।
ଫାଲ୍‌ଗୁନ ଶୁକ୍ଳପକ୍ଷ ଯୁତେ
ଦ୍ୱାଦଶ ଦିନ ପୟୋବ୍ରତେ
ଅର୍ଚ୍ଚନ କରି ଭକ୍ତି ବଳେ
ବିଷ୍ଣୁର ଚରଣ କମଳେ
ସେବା କରିବ ଯେବା ମତେ
ଶୁଣ କହିବା କଲ୍ୟ ତୋତେ ।୨୫।

ସିନୀବାଲ୍ୟାଂ ମୃଦାଲିପ୍ୟ ସ୍ନାୟାର୍ଦ୍ କ୍ରୋଡ଼ବଦୀର୍ଣ୍ଣୟା ।
ଯଦ ଲଭ୍ୟେତ ବୈ ସ୍ରୋତସ୍ୟେତଂ ମନ୍ତ୍ରମୁଦୀରୟେତ୍ ।୨୬।
ତ୍ୱଂ ଦେବ୍ୟାଦବରାହେଣ ରସାୟାଃ ସ୍ଥାନମିଚ୍ଛତା ।
ଉଦ୍ଧୃତାସି ନମସ୍ତୁଭ୍ୟଂ ପାପାନାଂ ମେ ପ୍ରଣାଶୟ । ୨୭ ।
ନିର୍ବର୍ତ୍ତିତାତ୍ମନିୟମୋ ଦେବମର୍ଚ୍ଚେତ୍ ସମାହିତଃ ।
ଅର୍ଚ୍ଚାୟାଂ ସ୍ଥଣ୍ଡିଳେ ସୂର୍ଯ୍ୟେ ଜଳେ ବହ୍ନୌ ଗୁରାବପି ।୨୮।
ନମସ୍ତୁଭ୍ୟଂ ଭଗବତେ ପୁରୁଷାୟ ମହୀୟସେ ।
ସର୍ବଭୂତନିବାସାୟ ବାସୁଦେବାୟ ସାକ୍ଷିଣେ । ୨୯ ।
ନମୋଽବ୍ୟକ୍ତାୟ ସୂକ୍ଷ୍ମାୟ ପ୍ରଧାନପୁରୁଷାୟ ଚ ।
ଚତୁର୍ବିଂଶଦ୍ଗୁଣଜ୍ଞାୟ ଗୁଣସଂଖ୍ୟାନହେତବେ । ୩୦ ।

---

ହେ କଲ୍ୟାଣି ! ଯଦି ମିଳେ ବରାହଉତ୍‌ଖାତ ମୃତ୍ତିକା ଗାତ୍ରରେ ଲେପନ କରି ସ୍ରୋତସ୍ୱତ ଜଳରେ ସ୍ନାନ କରିବ, ଏବଂ ସ୍ନାନ କାଳରେ ଏହି ମନ୍ତ୍ର ଉଚ୍ଚାରଣ କରିବ ।୨୬।

ହେ ଦେବି ! ସ୍ଥାନେଚ୍ଛୁ ଭଗବାନ୍ ଆଦି ବରାହ ତୁମ୍ଭଙ୍କୁ ରସାତଳରୁ ଉଦ୍ଧାର କରିଅଛନ୍ତି, ମୁଁ ତୁମ୍ଭଙ୍କୁ ନମସ୍କାର କରୁଅଛି, ତୁମେ ମୋର ପାପ ନାଶ କର ।୨୭।

ନିତେ ନିତ୍ୟ ନୈମିତ୍ତିକ ନିୟମାନୁଷ୍ଠାନ କରି ସମାହିତ ହୋଇ ପ୍ରତିମା କିମ୍ବା ସ୍ଥଣ୍ଡିଳରେ ସୂର୍ଯ୍ୟରେ କିମ୍ବା ଜଳରେ କିମ୍ବା ଅଗ୍ନିରେ କିମ୍ବା ଗୁରୁଙ୍କଠାରେ ବିଷ୍ଣୁଙ୍କୁ ଅର୍ଚ୍ଚନା କରିବ ।୨୮।

ପୂଜା ସମୟରେ ନଅଟି ମନ୍ତ୍ର ବୋଲି ଭଗବାନଙ୍କୁ ଆବାହନ କରିବ, ସେହି ମନ୍ତ୍ର ଯଥା— ହେ ଭଗବାନ୍ ! ହେ ବାସୁଦେବ ! ହେ ମହତ୍ତମ ପୁରୁଷ ! ହେ ସର୍ବ ପ୍ରାଣୀ ନିବାସ ସ୍ଥଳ ! ହେ ସର୍ବସାକ୍ଷୀ ! ଆପଣଙ୍କୁ ନମସ୍କାର ।୨୯।

ସାଂଖ୍ୟ ଯୋଗ ପ୍ରବର୍ତ୍ତକ ଚତୁର୍ବିଂଶତି ତତ୍ତ୍ୱଜ୍ଞ, ସେହି ଅବ୍ୟକ୍ତ ସୂକ୍ଷ୍ମ ପ୍ରଧାନ ପୁରୁଷଙ୍କୁ ନମସ୍କାର ।୩୦।

---

ପ୍ରାତରୁଁ ଅମାବାସ୍ୟା ଦିନେ
ମନ୍ଦିରୁ ଆସିବ ମଉନେ
ବରାହ ଦନ୍ତ ଖାତେ ଯାଇଁ
ମୃତ୍ତିକା ବାମହସ୍ତେ ଲଇଁ
ଶୁଣ ମନ୍ତ୍ରିବ ଯେଉଁ ମନ୍ତ୍ରେ
ଅଙ୍ଗେ ଘେନିବ ଯେଉଁ ଯତ୍ନେ
"ହେ ଦେବି ତୁ ଯେ ଅନ୍ତକାଳେ
ମିଳାଇଥିଲୁ ମହାଜଳେ
ସେ ତାଳେ ସଙ୍କରୂପେ ଥିଲୁ
ବରାହ ଦଶନେ ଉଠିଲୁ
ହରିରଦନ୍ତ ଅଗ୍ରବାସି ।
ତୁ ମୋର ହର ପାପରାଶି"

ଏମନ୍ତେ ମୃତ୍ତିକା ମନ୍ତ୍ରିବ
ଶରୀର ସର୍ବାଙ୍ଗେ ଲେପିବ
ସ୍ନାନ କରିବ ପ୍ରାତଃକାଳେ
ପବିତ୍ରଜଳେ ଉଦବେଳେ
।୨୬,୨୭।
ମାର୍ଜ୍ଜନା ସାରି ଶୁଦ୍ଧ ଗାତ୍ରେ
ସଂଯତ ଆତ୍ମା ଶୁଦ୍ଧ ଚିତ୍ତେ
ମୂର୍ତ୍ତିରେ ଅଥବା ଅନଳେ
ସ୍ଥଣ୍ଡିଳେ ଆଦିତ୍ୟ ମଣ୍ଡଳେ
ଜଳେ ଅଥବା ଗୁରୁଗାତ୍ରେ
ଅର୍ଚ୍ଚନା କରିବ ଏ ମତେ ।୨୮।

ଏମନ୍ତେ ପୂଜାସ୍ଥାନେ ଚଳି
ଶୁଣ କରିବ ଯେବା ସ୍ତୁତି
ନମସ୍ତେ ପ୍ରଭୁ ଭଗବାନ
ମହାପୁରୁଷ ଶୁଦ୍ଧଧାମ । ୨୯ ।
ହେ ଭଗବତ ନମୋଽସ୍ତୁତେ
ସାକ୍ଷୀ ସ୍ୱରୂପ ଏ ଜଗତେ
ସକଳ ଭୂତରେ ନିବାସ
ନମସ୍ତେ ପ୍ରଧାନ ପୁରୁଷ
ଚତୁର୍ବିଂଶତି ଗୁଣ ଜ୍ଞାତା
ଗୁଣସଙ୍ଖ୍ୟାନେ ହେତୁକର୍ତ୍ତା ।୩୦।

ନମୋ ଦ୍ୱିଶୀର୍ଷ୍ଣେ ତ୍ରିପଦେ ଚତୁଃଶୃଙ୍ଗାୟ ତନ୍ତବେ ।
ସପ୍ତହସ୍ତାୟ ଯଜ୍ଞାୟ ତ୍ରୟୀବିଦ୍ୟାତ୍ମନେ ନମଃ । ୩୧ ।
ନମଃ ଶିବାୟ ରୁଦ୍ରାୟ ନମଃ ଶକ୍ତିଧରାୟ ଚ ।
ସର୍ବବିଦ୍ୟାଧିପତୟେ ଭୂତାନାଂ ପତୟେ ନମଃ । ୩୨ ।
ନମୋ ହିରଣ୍ୟଗର୍ଭାୟ ପ୍ରାଣାୟ ଜଗଦାତ୍ମନେ ।
ଯୋଗୈଶ୍ୱର୍ଯ୍ୟଶରୀରାୟ ନମସ୍ତେ ଯୋଗହେତବେ ।୩୩।
ନମସ୍ତେ ଆଦିଦେବାୟ ସାକ୍ଷିଭୂତାୟ ତେ ନମଃ ।
ନାରାୟଣାୟ ଋଷୟେ ନରାୟ ହରୟେ ନମଃ । ୩୪ ।
ନମୋ ମରକତଶ୍ୟାମବପୁଷେଽଧିଗତଶ୍ରିୟେ ।
କେଶବାୟ ନମସ୍ତୁଭ୍ୟଂ ନମସ୍ତେ ପୀତବାସସେ । ୩୫ ।

---

ଯେଉଁ ବିଷ୍ଣୁ, ଯଜ୍ଞ ଫଳଦାତା ଓ ଯଜ୍ଞରୂପୀ, ତାଙ୍କର ଦୁଇଟି ଶିର, ସବନତ୍ରୟ (ତିନୋଟିଚରଣ) ସ୍ୱରୋଟି ଶୃଙ୍ଗ, ( ଚତୁର୍ବେଦ ) ସାତୋଟି ହସ୍ତ ସପ୍ତଛନ୍ଦ, ସେହି ତ୍ରିବିଦ୍ୟା ସ୍ୱରୂପ, ଆପଣଙ୍କୁ ନମସ୍କାର, ମଙ୍ଗଳମୟ ରୁଦ୍ରରୂପୀ ଶକ୍ତିଧର ଆପଣଙ୍କୁ ନମସ୍କାର, ସର୍ବ ବିଦ୍ୟାଧିପତି ଓ ସର୍ବ ଭୂତାଧିପତି ଆପଣଙ୍କୁ ନମସ୍କାର । ୩୧, ୩୨ ।

ସୂତ୍ରାତ୍ମା, ଜଗଦାତ୍ମା, ହିରଣ୍ୟଗର୍ଭ ତୁମ୍ଭଙ୍କୁ ନମସ୍କାର । ଯୋଗଏବଂ ଐଶ୍ୱର୍ଯ୍ୟ ଯାହାଙ୍କର ଶରୀର, ଯୋଗର ଯେ ହେତୁ ତାଙ୍କୁ ନମସ୍କାର ।୩୩।

ହେ ଭଗବନ୍ ! ଆପଣ ଆଦିଦେବ, ସମସ୍ତଙ୍କର ସାକ୍ଷୀ ସ୍ୱରୂପ, ଆପଣ ନାରାୟଣ ଓ ନରଋଷି, ଆପଣ ହରି, ଆପଣଙ୍କୁ ନମସ୍କାର ।୩୪।

ଆପଣ କେଶବ ମରକତ ଶ୍ୟାମରୂପ ପୀତବସନ ଆପଣ ଶ୍ରୀ ଲାଭ କରିଅଛନ୍ତି, ଆପଣଙ୍କୁ ନମସ୍କାର । ୩୫ ।

---

ଦ୍ୱିଶିର ତ୍ରିଚରଣ ରୁହି
ଚତୁର ଶୃଙ୍ଗ ତନ୍ତୁ ଦେହୀ
ସପତ ହସ୍ତ ଯଜ୍ଞ ରୂପୀ
ଆତ୍ମା ତୋ ତ୍ରିନବେଦ-ବ୍ୟାପି ।୩୧
ନମସ୍ତେ ଶିବ ରୁଦ୍ରବର
ନମସ୍ତେ ସର୍ବ ଶକ୍ତିଧର
ସକଳ ବିଦ୍ୟା ଅଧିପତି
ସର୍ବ ଭୂତଙ୍କ ଆତ୍ମାଗତି । ୩୨ ।

ହିରଣ୍ୟଗର୍ଭ ନମୋନମ
ଜଗତ-ପ୍ରାଣ ଆତ୍ମା ନମ
ଯୋଗ ଐଶ୍ୱର୍ଯ୍ୟ ଯା ଶରୀର
ଯୋଗର ହେତୁ ଯୋଗେଶ୍ୱର ।୩୩
ନମସ୍ତେ ଆଦି ଦେବ-ଦେବ
ନମସ୍ତେ ସଂସାର ପ୍ରଭବ
ନମସ୍ତେ ନରନାରାୟଣ
ନମସ୍ତେ ପରମ କଲ୍ୟାଣ ।୩୪।

ନମୋ ମର୍କତ-ଶ୍ୟାମ-ଦେହ
ନମସ୍ତେ କମଳା ଆଶ୍ରୟ
ନମୋ କେଶବ ପୀତବାସ
ନମସ୍ତେ ଭକତ ବିଶ୍ୱାସ ।୩୫।

ତ୍ୱଂ ସର୍ବବରଦଃ ପୁଂସାଂ ବରେଣ୍ୟ ବରଦର୍ଷଭଃ ।
ଅତସ୍ତେ ଶ୍ରେୟସେ ଧୀରାଃ ପାଦରେଣୁମୁପାସତେ । ୩୬ ।
ଅନ୍ୱବର୍ତ୍ତନ୍ତ ଯଂ ଦେବାଃ ଶ୍ରୀଶ୍ଚ ତତ୍ପାଦପଦ୍ମୟୋଃ ।
ସ୍ପୃହୟନ୍ତ ଇବାମୋଦଂ ଭଗବାନ୍ ମେ ପ୍ରସୀଦତାମ୍ ।୩୭।
ଏତୈର୍ମନ୍ତ୍ରୈର୍ହୃଷୀକେଶମାବାହନପୁରସ୍କୃତମ୍ ।
ଅର୍ଚ୍ଚୟେଚ୍ଛ୍ରଦ୍ଧୟା ଯୁକ୍ତଃ ପାଦ୍ୟୋପସ୍ପର୍ଶନାଦିଭିଃ । ୩୮ ।
ଅର୍ଚ୍ଚିତ୍ୱା ଗନ୍ଧମାଲ୍ୟାଦ୍ୟୈଃ ପୟସା ସ୍ନାପୟେଦ୍ୱିଭୁମ୍ ।
ବସ୍ତ୍ରୋପବୀତାଭରଣପାଦ୍ୟୋପସ୍ପର୍ଶନୈସ୍ତତଃ ।
ଗନ୍ଧଧୂପାଦିଭିଶ୍ଚାର୍ଚ୍ଚେଦ୍ଦ୍ୱାଦଶାକ୍ଷରବିଦ୍ୟୟା । ୩୯ ।
ଶୃତଂ ପୟସି ନୈବେଦ୍ୟଂ ଶାଲ୍ୟନ୍ନଂ ବିଭବେ ସତି ।
ସସର୍ପିଃ ସଗୁଡ଼ଂ ଦତ୍ତ୍ୱା ଜୁହୁୟାନ୍ମୂଳବିଦ୍ୟୟା । ୪୦ ।

---

ହେ ବରେଣ୍ୟ ! ହେ ବରଦଶ୍ରେଷ୍ଠ ! ଆପଣ ଜୀବ ସମୂହର ଅଭୀଷ୍ଟଫଳ ପ୍ରଦାନ କରିଥାନ୍ତି । ତେଣୁ ବିବେକୀମାନେ ଆତ୍ମ ମଙ୍ଗଳ ନିମିତ୍ତ ଆପଣଙ୍କର ଚରଣଧୂଳି ଉପାସନା କରିଥାନ୍ତି ।୩୬।

ଦେବତାମାନେ ଏବଂ ସ୍ୱୟଂ ଲକ୍ଷ୍ମୀଦେବୀ ଯାହାଙ୍କର ପାଦପଦ୍ମର ସୌରଭ କାମନା କରି ଯେଉଁ ଭଗବାନଙ୍କୁ ଉପାସନା କରିଥାନ୍ତି; ସେହି ବିଷ୍ଣୁ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।୩୭।

ଏହି ପୂର୍ବୋକ୍ତ ମନ୍ତ୍ର ଓ ଆବାହନାଦି ଦ୍ୱାରା ସତ୍କାର କରି ଶ୍ରଦ୍ଧାଯୁକ୍ତ ହୋଇ ପାଦ୍ୟ ଓ ଆଚମନୀୟ ଦ୍ୱାରା ଭଗବାନ୍ ହୃଷୀକେଶଙ୍କୁ ଅର୍ଚ୍ଚନା କରିବ ।୩୮।

ତଦନନ୍ତର ଗନ୍ଧମାଲ୍ୟ ଦ୍ୱାରା ପୂଜାକରି ଦୁଗ୍‌ଧ ଦ୍ୱାରା ସେହି ବିଭୁଙ୍କୁ ସ୍ନାନ କରାଇବ । ତଦନନ୍ତର ବସ୍ତ୍ର, ଯଜ୍ଞୋପବୀତ, ଅଳଙ୍କାର, ପାଦ୍ୟ, ଆଚମନୀୟ, ଗନ୍ଧ, ଧୂପ ପ୍ରଭୃତି ଦେଇ ଦ୍ୱାଦଶାକ୍ଷର ମନ୍ତ୍ରରେ ପୂଜା କରିବ ( ଓଁ ନମୋ ଭଗବତେ ବାସୁଦେବାୟ ) ।୩୯।

ହେ ସତି ! ଯଦି ବିଭବ ଥାଏ ତେବେ ଦୁଗ୍‌ଧ ପକ୍ୱ ଶାଲ୍ୟନ୍ନ ଦ୍ୱାରା ପ୍ରସ୍ତୁତ ସଘୃତ ଗୁଡ଼ ମିଶ୍ରିତ ପାୟସ ନୈବେଦନ କରି ଦ୍ୱାଦଶାକ୍ଷର ମନ୍ତ୍ରରେ ସମର୍ପଣ କରିବ ।୪୦।

---

ନମସ୍ତେ ସର୍ବ ବରଦାତା
ନମସ୍ତେ ସର୍ବ ପିତାମାତା
ଶରଣ୍ୟ ବରଦାତା ଗୁରୁ
ନମୋ ଭକତ-କଳ୍ପତରୁ
ତୋ ପାଦପଦ୍ମ ରେଣୁ ଶିରେ ।
ମୋକ୍ଷ ସାଧନ ଯୋଗ ଧରେ ।୩୬
ଯେ ପାଦପଦ୍ମ ଭକ୍ତ ସେବେ ।
ଘେନି ଶରନ୍ତି ଦେବୀ ଦେବେ ।

ତୋ ପାଦପଦ୍ମ ଗନ୍ଧବାସେ
ଅଶେଷ ଭବ-ଭୟ ନାଶେ ।୩୭।
ଏମନ୍ତେ ଆବାହନ କରି
ନିର୍ମଳ ଚିତ୍ତେ ସ୍ତବ ଭରି
ଏମନ୍ତେ ପାଦ୍ୟ ଅର୍ଘ୍ୟ ଆଦି
ଶ୍ରଦ୍ଧା ଭକତିରେ ନିବେଦି
ଅର୍ଚ୍ଚନା କରି ଗନ୍ଧମାଲ୍ୟ
ପୂଜିବ ଆସନ ନିର୍ମଳେ

ଉତ୍ତମ ବସ୍ତ୍ର ଅଳଙ୍କାର
ସୁଗନ୍ଧ ଧୂପ ମନୋହର
ନୈବେଦ୍ୟ କରି ଷଡ଼ରସେ
ପୂଜିବ ପ୍ରଧାନ ପାୟସେ
ଦଧି ଶର୍କରା ମଧୁ ଘୃତେ
ସୁଶାଳି-ଅନ୍ନ ଦୁଗ୍‌ଧ ଯୁତେ
ନାନା ପ୍ରକାରେ ଭୋଗଦେଇ
ହୃଦେ ଭକତ ସ୍ତବ ବହି

ନୈବେଦ୍ୟଂ ତଦ୍ଭକ୍ତାୟ ଦଦ୍ୟାତ୍ ଭୁଞ୍ଜୀତ ବା ସ୍ୱୟମ୍ ।
ଦତ୍ତ୍ୱାଚମନମର୍ଚ୍ଚିତ୍ୱା ତାମ୍ବୂଳଞ୍ଚ ନିବେଦୟେତ୍ । ୪୧ ।
ଜପେଦଷ୍ଟୋତ୍ତରଶତଂ ସ୍ତୁବୀତ ସ୍ତୁତିଭିଃ ପ୍ରଭୁମ୍ ।
କୃତ୍ୱା ପ୍ରଦକ୍ଷିଣଂ ଭୂମୌ ପ୍ରଣମେଦ୍ଦଣ୍ଡବନ୍ମୁଦା । ୪୨ ।
କୃତ୍ୱା ଶିରସି ତଚ୍ଛେଷାଂ ଦେବମୁଦ୍ୱାସୟେତ୍ତତଃ ।
ଦ୍ୱ୍ୟବରାନ୍ ଭୋଜୟେଦ୍ ବିପ୍ରାନ୍ ପାୟସେନ ଯଥୋଚିତମ୍ । ୪୩ ।
ଭୁଞ୍ଜୀତ ତୈରନୁଜ୍ଞାତଃ ସେଷ୍ଟଃ ଶେଷଂ ସଭାଜିତୈଃ ।
ବ୍ରହ୍ମଚାର୍ଯ୍ୟଥ ତଦ୍ରାତ୍ର୍ୟାଂ ଶ୍ୱୋଭୂତେ ପ୍ରଥମେଽହନି । ୪୪ ।
ସ୍ନାତଃ ଶୁଚିର୍ଯଥୋକ୍ତେନ ବିଧିନା ସୁସମାହିତଃ ।
ପୟସା ସ୍ନାପୟିତ୍ୱାର୍ଚ୍ଚେଦ୍ୟାବଦ୍‌ବ୍ରତସମାପନମ୍ । ୪୫ ।

---

ତଦନନ୍ତର ନୈବେଦ୍ୟ ପ୍ରସାଦ ଭଗବଦ୍ ଭକ୍ତଙ୍କୁ ପ୍ରଦାନ କରିବ, କିମ୍ବା ସ୍ୱୟଂ ଗ୍ରହଣ କରି ଭୋଜନ କରିବ । ଏହାପରେ ପୂଜାକରି ଆଚମନ ଦେଇ ତାମ୍ବୁଳ ନୈବେଦନ କରିବ ।୪୧।

ତଦନନ୍ତର ଅଷ୍ଟୋତ୍ତର ଶତବାର ( ୧୦୮ ) ସେହି ଦ୍ୱାଦଶାକ୍ଷର ମନ୍ତ୍ର ଜପ କରିବ । ନାନାବିଧ ସ୍ତୋତ୍ର ଦ୍ୱାରା ପ୍ରଭୁଙ୍କୁ ସ୍ତବ କରିବ ଏବଂ ପ୍ରଦକ୍ଷିଣ କରି ହୃଷ୍ଟ ଚିତ୍ତରେ ଭୂମିରେ ସାଷ୍ଟାଙ୍ଗ ପ୍ରଣାମ କରିବ । ୪୨ ।

ନିର୍ମାଲ୍ୟ ମସ୍ତକରେ ଧାରଣ କରି ଦେବତାଙ୍କୁ ବିସର୍ଜନ କରିବ । ପରେ ପାୟସ ଦ୍ୱାରା ଯଥୋଚିତ ଭାବରେ ଅନ୍ୟୂନ ଦୁଇଟି ବ୍ରାହ୍ମଣ ଭୋଜନ କରାଇବ । ୪୩ ।

ପରେ ସେହି ପୂଜିତ ବ୍ରାହ୍ମଣମାନଙ୍କର ଅନୁମତି ଗ୍ରହଣ କରି ଶେଷାନ୍ନ ବନ୍ଧୁ ବାନ୍ଧବ ସହ ସ୍ୱୟଂ ଭୋଜନ କରିବ ଏବଂ ରାତ୍ରରେ ବ୍ରହ୍ମଚାରୀ ହୋଇ ରହିବ ।୪୪।

ପ୍ରଭାତ ହେଲେ ପ୍ରଥମ ଦିନରେ ପ୍ରାତଃ କାଳରେ ଯଥାବିଧି ସ୍ନାନକରି ଶୁଚି ଓ ସମାହିତ ହୋଇ ଦୁଗ୍ଧ ଦ୍ୱାରା ଭଗବାନଙ୍କୁ ସ୍ନାନ କରାଇ ବ୍ରତ ସମାପନ ହେବା ପର୍ଯ୍ୟନ୍ତ ଏହିପରି କରାଇବ ।୪୫।

---

ଏମନ୍ତ୍ରେ ଦ୍ୱାଦଶ ଅକ୍ଷର
ଜପିବ ଶଏ ଆଠ ବାର
ହୋମ କରିବ ହୁତାଶନେ
ବିଚାରି ମୂଳମନ୍ତ୍ର ଧ୍ୟାନେ
ଦ୍ୱିଜାଯୁ ବ୍ରାହ୍ମଣ ବସାଇ
ସୁସ୍ୱାଦୁ ଅନ୍ନ ଭୋଗ ଦେଇ
ବିପ୍ରଙ୍କୁ ଦେଇ ଆଚମନ
ନୈବେଦ୍ୟ ସୁମୁଖ ବାସନ

ଅତିଥି ଜନଙ୍କୁହିଁ ଦେଖି
ତାଙ୍କୁ ଭୋଜନେ କରି ସୁଖୀ
ତାହାଙ୍କୁ ଅନ୍ନଦାନ ଦେଇ
ସନ୍ତୋଷ ଚିତ୍ତେ ଆଜ୍ଞା ନେଇ
ଅନ୍ନ ଭୁଞ୍ଜିବ ସାୟଂକାଳେ
ପାଖେଁ ସାତ ବାନ୍ଧବମେଳେ
।୩୮-୪୪।

ରାତ୍ରେ ବର୍ତ୍ତିବ ଦୃଢ ବ୍ରତେ
ସଂଯତ ବ୍ରହ୍ମଚର୍ଯ୍ୟ ବ୍ରତେ
ରାତ୍ର ଅନ୍ତରେ ପ୍ରାତଃକାଳେ
ସ୍ନାନ କରିବ ଶୁଦ୍ଧ ଜଳେ
ଯଥାର୍ଥ ବିଧି ସମ ଚିତ୍ତେ
ସୁଗନ୍ଧ ଜଳ ଦୁଗ୍ଧ ଯୁତେ

ପୟୋଭକ୍ଷୋ ବ୍ରତମିଦଂ ଚରେଦ୍ବିଷ୍ଣ୍ୱର୍ଚ୍ଚନାଦୃତଃ ।
ପୂର୍ବବଜ୍ଜୁହୁୟାଦଗ୍ନିଂ ବ୍ରାହ୍ମଣାଂଶ୍ଚାପି ଭୋଜୟେତ୍ । ୪୬ ।
ଏବଂ ତ୍ୱହରହଂ କୁର୍ଯ୍ୟାଦ୍ଦ୍ୱାଦଶାହଂ ପୟୋବ୍ରତମ୍ ।
ହରେରାରାଧନଂ ହୋମମର୍ହଣଂ ଦ୍ୱିଜତର୍ପଣମ୍ । ୪୭ ।
ପ୍ରତିପଦ୍ଦିନମାରଭ୍ୟ ଯାବଚ୍ଛୁକ୍ଲତ୍ରୟୋଦଶୀମ୍ ।
ବ୍ରହ୍ମଚର୍ଯ୍ୟମଧଃସ୍ୱପ୍ନଂ ସ୍ନାନଂ ତ୍ରିଷବଣଂ ଚରେତ୍ । ୪୮ ।
ବର୍ଜୟେଦସଦାଲାପଂ ଭୋଗାନୁଚ୍ଚାବଚାଂସ୍ତଥା ।
ଅହିଂସ୍ରଃ ସର୍ବଭୂତାନାଂ ବାସୁଦେବପରାୟଣଃ । ୪୯ ।
ତ୍ରୟୋଦଶ୍ୟାମଥୋ ବିଷ୍ଣୋଃ ସ୍ନପନଂ ପଞ୍ଚକୈର୍ବିଭୋଃ ।
କାରୟେଚ୍ଛାସ୍ତ୍ରଦୃଷ୍ଟେନ ବିଧିନା ବିଧିକୋବିଦୈଃ । ୫୦ ।

---

ବିଷ୍ଣୁ ପୂଜାରେ ଆଗ୍ରହାନ୍ୱିତ ଓ ପୟୋଭକ୍ଷଣ ପରାୟଣ ହୋଇ ଏହି ବ୍ରତ ଆଚରଣ କରିବ, ପୂର୍ବୋକ୍ତ ମତେ ହୋମ କରି ବ୍ରାହ୍ମଣ ଭୋଜନ କରାଇବ । ୪୬ ।

ଏହିପରି ଦ୍ୱାଦଶ ଦିବସ ପର୍ଯ୍ୟନ୍ତ ପୟୋବ୍ରତ କରିବ, ହରି ଆରାଧନା ହୋମ, ପୂଜା, ବ୍ରାହ୍ମଣ ଆଦି ଭୋଜନ କରାଇବ, ପ୍ରତିପଦଠାରୁ ଶୁକ୍ଳା ତ୍ରୟୋଦଶୀ ପର୍ଯ୍ୟନ୍ତ ଭୂମିରେ ଶୟନ କରିବ ଓ ତ୍ରିବାର ସ୍ନାନ କରିବ । ୪୭, ୪୮ ।

ଅସଦାଳାପ ବର୍ଜନ କରିବ, ଉତ୍ତମାଧମ ଭୋଗ ପରିତ୍ୟାଗ କରିବ, ସର୍ବଭୂତରେ ଅହିଂସା ଓ ବାସୁଦେବ ପରାୟଣ ହେବ ।୪୯।

ତ୍ରୟୋଦଶୀରେ ଶାସ୍ତ୍ରୋକ୍ତ ବିଧି ଅନୁସାରେ ବିଧିଜ୍ଞ ପଣ୍ଡିତଙ୍କ ଦ୍ୱାରା ପଞ୍ଚାମୃତରେ ବିଷ୍ଣୁଙ୍କୁ ସ୍ନାନ କରାଇବ ।୫୦।

---

ସ୍ନାନ କରାଇ ଦେବ ମୂର୍ତ୍ତି
ପୟେ ଭକ୍ଷଣେ ପୟୋବ୍ରତୀ
।୪୫,୪୬।

ପୂର୍ବରି ପ୍ରାୟେ ହୋମ କରି
ବିପ୍ରମାନଙ୍କୁ ଭୋଜ୍ୟ ଦେଇ
ଦ୍ୱାଦଶଦିନ ଏହି ମତେ
ବର୍ତ୍ତିବ ଶୁଦ୍ଧ ପୟୋବ୍ରତେ

ଏମନ୍ତେ ହରି ଆରାଧନେ
ହୋମାଗ୍ନି ବ୍ରାହ୍ମଣ ଭୋଜନେ
ପ୍ରତିପ ଦିନୁ ଏ ଅଭ୍ୟାସି
ଯାବତ ଶୁକ୍ଳ ତ୍ରୟୋଦଶୀ
ତ୍ରିକାଳେ କରିବ ସ୍ନାହାନ
ରଜନୀ ଧରଣୀ ଶୟନ
ଅସାଧୁ ଆଳାପ ତେଜିବ
ନିନ୍ଦିତ ଭୋଗ ନ କରିବ ।୪୭,୪୯

ହିଂସା ତ୍ୟଜିବ ସର୍ବଭୂତେ
ବିଷ୍ଣୁ ଆଶ୍ରୟ କରି ଚିତ୍ତେ
ଏମନ୍ତେ ତ୍ରୟୋଦଶୀ ଦିନ
ବିଷ୍ଣୁଙ୍କୁ କରାଇ ସ୍ନାହାନ
ଶାସ୍ତ୍ର ପ୍ରମାଣେ ପଞ୍ଚାମୃତେ
ଯେ ଅବା ବେଦ ବିଧିମତେ
ପୂଜା କରିବ ବିଧିମତେ
ମନ୍ତ୍ର ଉଚ୍ଚାରି ଶୁଦ୍ଧଚିତ୍ତେ

ପୂଜାଞ୍ଚ ମହତୀଂ କୁର୍ଯ୍ୟାଦ୍‌ବିତ୍ତଶାଠ୍ୟବିବର୍ଜିତଃ ।
ଚରୁଂ ନିରୂପ୍ୟ ପୟସି ଶିପିବିଷ୍ଟାୟ ବିଷ୍ଣବେ । ୫୧ ।
ସୂକ୍ତେନ ତେନ ପୁରୁଷଂ ଯଜେତ ସୁସମାହିତଃ ।
ନୈବେଦ୍ୟଂ ଚାତିଗୁଣବଦ୍‌ଦଦ୍ୟାତ୍ପୁରୁଷତୁଷ୍ଟିଦମ୍ । ୫୨ ।
ଆଚାର୍ଯ୍ୟଂ ଜ୍ଞାନସମ୍ପନ୍ନଂ ବସ୍ତ୍ରାଭରଣଧେନୁଭିଃ ।
ତୋଷୟେଦୃତ୍ୱିଜଶ୍ଚୈବ ତଦ୍‌ବିଦ୍ଧ୍ୟାରାଧନଂ ହରେଃ ।୫୩।
ଭୋଜୟେତ୍ ତାନ୍ ଗୁଣବତା ସଦନ୍ନେନ ଶୁଚିସ୍ମିତେ ।
ଅନ୍ୟାଂଶ୍ଚ ବ୍ରାହ୍ମଣାନ୍ ଶକ୍ତ୍ୟା ଯେ ଚ ତତ୍ର ସମାଗତାଃ ।୫୪।
ଦକ୍ଷିଣାଂ ଗୁରବେ ଦଦ୍ୟାଦୃତ୍ୱିଗ୍‌ଭ୍ୟଶ୍ଚ ଯଥାର୍ହତଃ ।
ଅନ୍ନାଦ୍ୟେନାଶ୍ୱପାକାଂଶ୍ଚ ପ୍ରୀଣୟେତ୍ ସମୁପାଗତାନ୍ । ୫୫ ।

---

କୃପଣତା ବର୍ଜ୍ଜନ ପୂର୍ବକ ( ବିତ୍ତଶାଠ୍ୟ ବର୍ଜିତ ହୋଇ ) ମହତ୍ ପୂଜା କରିବ, ପରେ ଦୁଗ୍ଧ ଚରୁ ପ୍ରସ୍ତୁତ କରି ସର୍ବେଶ୍ୱର ବିଷ୍ଣୁଙ୍କୁ ଅର୍ପଣ କରିବ ।୫୧।

ସଂଯତ ହୋଇ ପୂର୍ବୋକ୍ତ ସୂକ୍ତ ଦ୍ୱାରା ପରମ ପୁରୁଷ ବିଷ୍ଣୁଙ୍କ ପ୍ରୀତି କାମିତ୍ୱ ଷଡ଼ରସ ଗୁଣ ସମ୍ପନ୍ନ ନୈବେଦ୍ୟ ପ୍ରଦାନ କରିବ ।୫୨।

ଜ୍ଞାନବାନ ଆଚାର୍ଯ୍ୟ ଓ ଅନ୍ୟାନ୍ୟ ଋତ୍ୱିକମାନଙ୍କୁ ବସ୍ତ୍ର, ଆଭରଣ ଓ ଧେନୁ ପ୍ରଭୃତି ଦ୍ୱାରା ସନ୍ତୁଷ୍ଟ କରିବ, ଆଚାର୍ଯ୍ୟ ପ୍ରଭୃତିଙ୍କ ପରିତୋଷହିଁ ହରିଙ୍କର ଶ୍ରେଷ୍ଠ ଆରାଧନା ।୫୩।

ହେ ଶୁଚିସ୍ମିତେ ( ପ୍ରଫୁଲ୍ଲ ବଦନେ ) ଅତି ଉତ୍କୃଷ୍ଟ ଅନ୍ନଦ୍ୱାରା ସେମାନଙ୍କୁ ଭୋଜନ କରାଇବ । ଏବଂ ଯେଉଁ ସ୍ଥାନରେ ସେମାନେ ସମାଗତ ହୋଇଥିବେ ସେ ସ୍ଥାନରେ ବ୍ରାହ୍ମଣମାନଙ୍କୁ ଶକ୍ତି ଅନୁସାରେ ଭୋଜନ କରାଇବ ।୫୪।

ଗୁରୁଙ୍କୁ ଓ ଅନ୍ୟ ଋତ୍ୱିକମାନଙ୍କୁ ଯଥା ଯୋଗ୍ୟ ଦକ୍ଷିଣା ପ୍ରଦାନ କରିବ ଓ ସମାଗତ ଆଶ୍ୱପାକ ସମସ୍ତ ବ୍ୟକ୍ତିଙ୍କୁ ପ୍ରୀତ କରିବ ।୫୫।

---

ଶ୍ରୀହରି ରୂପ ଧ୍ୟାନେ ଧରି
ଅନଳେ ମନ୍ତ୍ରେ ହୋମ କରି
।୫୦,୫୧।

ନାନାପ୍ରକାରେ ନଇବେଦ୍ୟ
କଟୁ ମଧୁର ଆଦି ସ୍ୱାଦ

ନଇବେଦ୍ୟ ବିଷ୍ଣୁ ତୁଷ୍ଟି ଅର୍ଥେ
ପୂଜା ସମର୍ପି ନାନାମତେ
ଅଗ୍ନି ପୂଜନ କର୍ମସାରି
ଗୁରୁ ଆଚାର୍ଯ୍ୟ ଆଦି କରି
ଧନ ବସନ ଅଳଙ୍କାର
ଯେବା ଦକ୍ଷିଣା ବୃତ୍ତିସାର

ଋତ୍ୱିକଜନ ମନତୋଷି
ଦୁଃଖୀ ଦରିଦ୍ରଙ୍କୁ ଆଶ୍ୱାସି
ଭୋଜନେ ତୋଷି ସର୍ବ-ପ୍ରାଣୀ
ଯେଣେ ସନ୍ତୋଷ ଚକ୍ରପାଣି
ସକଳ ଜ୍ଞାତି-ବନ୍ଧୁମାନେ
ଭୋଜନ କରି ସାନ୍ଧ୍ୟକାଳେ

ଭୁକ୍ତବତ୍ସୁ ଚ ସର୍ବେଷୁ ଦୀନାନ୍ଧକୃପଣାଦଷୁ।
ବିଷ୍ଣୋସ୍ତତ୍‌ପ୍ରୀଣନଂ ବିଦ୍ୱାନ୍ ଭୁଞ୍ଜୀତ ସହ ବନ୍ଧୁଭିଃ ।୫୬।
ନୃତ୍ୟବାଦିତ୍ରଗୀତୈଶ୍ଚ ସ୍ତୁତିଭିଃ ସ୍ୱସ୍ତିବାଚକୈଃ।
କାରୟେତ୍ ତତ୍‌କଥାଭିଶ୍ଚ ପୂଜାଂ ଭଗବତୋଽନ୍ୱହମ୍ ।୫୭।
ଏତତ୍ପୟୋବ୍ରତଂ ନାମ ପୁରୁଷାରାଧନଂ ପରମ୍।
ପିତାମହେନାଭିହିତଂ ମୟା ତେ ସମୁଦାହୃତମ୍ । ୫୮ ।
ତ୍ୱଞ୍ଚାନେନ ମହାଭାଗେ ସମ୍ୟକ୍ ଚୀର୍ଣ୍ଣେନ କେଶବମ୍।
ଆତ୍ମନା ଶୁଦ୍ଧଭାବେନ ନିୟତାତ୍ମା ଭଜାବ୍ୟୟମ୍ । ୫୯ ।
ଅୟଂ ବୈ ସର୍ବଯଜ୍ଞାଖ୍ୟଃ ସର୍ବବ୍ରତମିତି ସ୍ମୃତମ୍।
ତପଃସାରମିଦଂ ଭଦ୍ରେ ଦାନଞ୍ଚେଶ୍ୱରତର୍ପଣମ୍ । ୬୦ ।

---

ସର୍ବଜୀବ ପରିପୋଷଣ ଦ୍ୱାରା ବିଷ୍ଣୁଙ୍କର ପ୍ରୀତି ସାଧିତ ହୁଏ, ଏହା ଜାଣି ଦୀନ, ଅନ୍ଧ, କୃପଣ ସମସ୍ତଙ୍କୁ ଭୋଜନ ଦେବ, ବନ୍ଧୁମାନଙ୍କ ସହିତ ଭୋଜନ କରିବ ।୫୬।

ହେ ଭଦ୍ରେ ! ବ୍ରତକାଳରେ ପ୍ରତିଦିନ ନୃତ୍ୟ, ଗୀତ, ବାଦ୍ୟ, ସ୍ତୁତିପାଠ, ସ୍ୱସ୍ତିବାଚନ, ଭଗବଦ୍‌କଥା ଇତ୍ୟାଦି ଦ୍ୱାରା ଭଗବାନଙ୍କର ଅର୍ଚ୍ଚନା କରିବ ।୫୭।

ହେ ଭଦ୍ରେ ! ମହାପୁରୁଷଙ୍କର ପରମଆରାଧନାତ୍ମକ ଏହି ପୟୋବ୍ରତ ନାମକ ଉପାସନା ପ୍ରସଙ୍ଗ ପିତାମହ ମୋତେ କହିଥିଲେ, ମୁଁ ତାହା ତୁମ୍ଭଙ୍କୁ କହିଲି ।୫୮।

ହେ ମହାଭାଗେ ! ( ଭାଗ୍ୟବତି ) ତୁମ୍ଭେ ଏହି ବ୍ରତ ସମ୍ୟକ୍‌ରୂପେ ଆଚରଣ କର, ଏହାଦ୍ୱାରା ସଂଯତ ଓ ଶୁଦ୍ଧଚିତ୍ତ ହୋଇ ଭଗବାନ୍ ବିଷ୍ଣୁଙ୍କୁ ଆରାଧନା କର ।୫୯।

ହେ ଭଦ୍ରେ ! ଏହାହିଁ ସର୍ବଯଜ୍ଞ; ସର୍ବବ୍ରତ; ସର୍ବ ତପସ୍ୟାର ମଧ୍ୟରେ ସାର, ମହାଦାନ, ଏହାହିଁ ଈଶ୍ୱର ତର୍ପଣ ।୬୦।

---

ବାଦ୍ୟଗନ୍ଧ ନୃତ୍ୟ ଗୀତ ସାର
ଉତ୍ସବ କରି ନିରନ୍ତର
ଏମନ୍ତେ ପୟୋବ୍ରତ କରି
ଯେବା ସଂସାରେ ନର ନାରୀ
ମନବାଞ୍ଛିତ ସେ ଲଭନ୍ତି
ଅନ୍ତେ ସେ ମାଧବ୍ରୁ ତରନ୍ତି ।୫୬,୫୭

ଏ ବ୍ରତ ବ୍ରହ୍ମା-ମୁଖୁଁ ପୂର୍ବେ
ମୁହିଁ ଯେ ଶୁଣିଛି ପ୍ରସ୍ତାବେ
ତୁ ଯେଣୁ ମୋହର ଭାବିନୀ
ତେଣୁ କହିଲି ଭାବ ଘେନି
ଏହା ତୁ ଶୁଦ୍ଧଚିତ୍ତେ ଧର
ଏ ବ୍ରତ ସର୍ବ-ଯଜ୍ଞ ସାର

ହରି ସନ୍ତୋଷେ ବ୍ରତ କର
ଦୁର୍ଗମ ସଙ୍କଟୁଁ ଉଦ୍ଧର
ସର୍ବ ଭୂତଙ୍କ ପୂଜା ଏହି
ଦାନ ଯଜ୍ଞାଦି ଯେତେ ଥାଇ
ଏ ବ୍ରତେ ଈଶ୍ୱର ଅର୍ପଣ
ଚତୁର ବର୍ଗର କାରଣ ।୫୮-୬୦

ତ ଏବ ନିୟମାଃ ସାକ୍ଷାତ୍ ତ ଏବ ଚ ଯମୋତ୍ତମାଃ ।
ତପୋ ଦାନଂ ବ୍ରତଂ ଯଜ୍ଞୋ ଯେନ ତୁଷ୍ୟତ୍ୟଧୋକ୍ଷଜଃ ।୬୧।
ତସ୍ମାଦେତଦ୍ବ୍ରତଂ ଭଦ୍ରେ ପ୍ରୟତା ଶ୍ରଦ୍ଧୟାଚର ।
ଭଗବାନ୍ ପରିତୁଷ୍ଟସ୍ତେ ବରାନାଶୁ ବିଧାସ୍ୟତି । ୬୨ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ କଶ୍ୟପାଦିତିସମ୍ବାଦେ
ପୟୋବ୍ରତକଥନଂ ନାମ ଷୋଡ଼ଶୋଽଧ୍ୟାୟଃ ।

---

ଯଦ୍ଦ୍ୱାରା ଭଗବାନ୍ ଅଧୋକ୍ଷଜ ତୃପ୍ତ ହୁଅନ୍ତି ତାହାହିଁ ନିୟମ, ତାହାହିଁ ଶ୍ରେଷ୍ଠ ସଂଯମ, ତାହାହିଁ ତପସ୍ୟା, ତାହାହିଁ ଦାନ, ତାହାହିଁ ବ୍ରତ, ତାହାହିଁ ଯଜ୍ଞ ।୬୧,୬୨।

ଅତଏବ୍ ହେ ଭଦ୍ରେ ! ତୁମ୍ଭେ ସଂଯତା ହୋଇ ପ୍ରୀତି ପୂର୍ବକ ଏହି ବ୍ରତ ଆଚରଣ କର, ଭଗବାନ୍ ସନ୍ତୁଷ୍ଟ ହୋଇ ଶୀଘ୍ର ତୁମ୍ଭଙ୍କୁ ଅଭିଳଷିତ ବର ପ୍ରଦାନ କରିବେ ।୬୨।

---

ଯମ ନିୟମ ଏଥେ ସାକ୍ଷୀ
ଯେ ଧର୍ମେ ବିଷ୍ଣୁଙ୍କୁ ସନ୍ତୋଷି
ତୁ ଏହା ଏକ-ମନେ ଧର
ହରି ସନ୍ତୋଷେ ବ୍ରତକର

ତୋହି ବାଞ୍ଛିତ ହରି ଦେବେ
ଦେବଙ୍କୁ ନିଶ୍ଚିନ୍ତେ ରଖିବେ ।୬୧
ବୋଲଇ ବିପ୍ର ଜଗନ୍ନାଥ
ଅଦିତି ଶୁଣି ପୟୋବ୍ରତ

ଶିରେ ଚିନ୍ତିଲ ଭଗବାନ
ସୁଜନେ ଏଣେ କରି ଧ୍ୟାନ

---

**ଭାବାର୍ଥ—** ( ଏକାଦଶଠାରୁ ଷୋଡ଼ଶଅଧ୍ୟାୟ ପର୍ଯ୍ୟନ୍ତ )

ଦେବତାମାନେ ବିଷ୍ଣୁଙ୍କର ଅନୁଗ୍ରହ ପାଇଥିଲେ ଏବଂ ବିଷ୍ଣୁଙ୍କର କୃପାରୁ ଅମୃତ ପାନ କରି ପାରିଥିଲେ, କିନ୍ତୁ ଅମୃତର ଅଧିକାରୀ ହେଲେ ମଧ୍ୟ ସେମାନେ ବିନୀତ ନ ହୋଇ ଅସୁରମାନଙ୍କ ପ୍ରତି ନିର୍ଦ୍ଦୟ ହୋଇଥିଲେ । ଭଗବାନଙ୍କର ପରମଭକ୍ତ ନାରଦ ଉପସ୍ଥିତ ହୋଇ ଦେବତା ଓ ଅସୁରମାନଙ୍କୁ ନିବୃତ୍ତ କରାଇଥିଲେ । ବିରୋଚନ ପୁତ୍ର ବଳି ଦାନବରାଜ, ସେ ଭଗବାନଙ୍କର ପରମଭକ୍ତ ପ୍ରହ୍ଲାଦର ନାତି, ସେ ସ୍ୱର୍ଗ ରାଜ୍ୟରେ ଇନ୍ଦ୍ର ହେବାଲାଗି ଅଭିଳାଷୀ, ଶୁକ୍ରାଚାର୍ଯ୍ୟ ଦାନବମାନଙ୍କର ଗୁରୁ, ଶୁକ୍ରାଚାର୍ଯ୍ୟଙ୍କର ଅନୁଗ୍ରହରୁ ସେ ବ୍ରହ୍ମତେଜ ଲାଭ କରି ସ୍ୱର୍ଗରାଜ୍ୟକୁ ଅଧିକାର କରିବାକୁ ଗମନ କରିଥିଲେ, ଏହି ପ୍ରସଙ୍ଗ ପୂର୍ବରୁ ଶ୍ରୀ ଶୁକଦେବ ଚତୁର୍ଦ୍ଦଶ ମନ୍ୱନ୍ତର ପ୍ରସଙ୍ଗ ରାଜା ପରୀକ୍ଷିତଙ୍କୁ କହିଥିଲେ, ସେହି ପ୍ରସଙ୍ଗରେ କହିଥିଲେ ଅଷ୍ଟମ ମନ୍ୱନ୍ତରରେ ବଳି ଇନ୍ଦ୍ର ହେବେ । ଏହି ପ୍ରସଙ୍ଗ ଉତ୍ଥାପନ କରି ବଳି ବାମନ ପ୍ରସଙ୍ଗ ରାଜା ପରୀକ୍ଷିତଙ୍କୁ ଶୁଣାଉଅଛନ୍ତି । ରାଜା ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ ଦୁଇଟି ପ୍ରଶ୍ନ କରିଥିଲେ, ତହିଁର ଉତ୍ତରରେ ଶ୍ରୀ ଶୁକଦେବ ବଳିବାମନ ପ୍ରସଙ୍ଗ କହୁଅଛନ୍ତି ।

ପ୍ରଥମ ପ୍ରଶ୍ନ— ବିଷ୍ଣୁ ଈଶ୍ୱର ହୋଇ ବରଦ୍ ଭାବରେ କିପାଦ ଭୂମି କ ହେତୁରୁ ଦାନ ମାଗିଲେ, ? ଦ୍ୱିତୀୟରେ ନିରପରାଧ ବଳିଙ୍କୁ କ ହେତୁରୁ ବନ୍ଧନ କରିଥିଲେ? ବଳି ସ୍ୱର୍ଗରାଜ୍ୟ ଆକ୍ରମଣ କରନ୍ତେ ଇନ୍ଦ୍ରାଦି ଦେବଗଣ ବୃହସ୍ପତିଙ୍କ ଉପଦେଶରେ ଲୁକ୍କାୟିତ ଭାବରେ ଅବସ୍ଥାନ କରୁଥିଲେ । ବଳି ସ୍ୱର୍ଗରାଜ୍ୟ ଅଧିକାର କରନ୍ତେ ଦେବମାତା ଅଦିତି କଶ୍ୟପଙ୍କୁ ଉପଦେଶ ମାଗିଥିଲେ—କପରି ତାଙ୍କର ସନ୍ତାନମାନେ ଉଦ୍ଧାର ପାଇବେ । କଶ୍ୟପ ସର୍ବବିପଦହନ୍ତା ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ପୟୋବ୍ରତ ଆଚରଣ କରିବା ନିମିତ୍ତ ଅଦିତିଙ୍କୁ ଉପଦେଶ ଦେଇଥିଲେ । ଏବଂ ସେହି ବ୍ରତର ବିଧି କହିଥିଲେ, ଷୋଡ଼ଶ ଅଧ୍ୟାୟର ଶେଷ ଭାଗରେ କଶ୍ୟପ କହିଅଛନ୍ତି ବିଷ୍ଣୁ ବ୍ରତହିଁ ସମସ୍ତ ଯଜ୍ଞ, ଦାନ ଓ ତପସ୍ୟା ମଧ୍ୟରେ ଶ୍ରେଷ୍ଠ, ଶୁଦ୍ଧ ଓ ସମାହିତ ଚିତ୍ତରେ ବିଷ୍ଣୁ ଆରାଧନା କଲେ ସମସ୍ତ ବିପଦ ଦୂର ହୁଏ । ଏବଂ ଅଭୀଷ୍ଟ ଫଳ ପ୍ରାପ୍ତି ହୁଏ ।

---

## ସପ୍ତଦଶୋଽଧ୍ୟାୟଃ ।

**ତତଃ ସପ୍ତଦଶେଽଦିତ୍ୟା କୃତେ ତସ୍ମିନ୍ ବ୍ରତେ ହରିଃ ।**
**ତତ୍କାମପୂରଣାୟାଦୌ ତତ୍ପୁତ୍ରୋଽଭୂଦତୀର୍ଯ୍ୟତେ ॥ ( ଶ୍ରୀଧରସ୍ୱାମୀ )**

**ଶ୍ରୀ ଶୁକ ଉବାଚ ।**
**ଇତ୍ୟୁକ୍ତା ସାଦିତୀ ରାଜନ୍ ସ୍ୱଭର୍ତ୍ରା କଶ୍ୟପେନ ବୈ ।**
**ଅନ୍ୱତିଷ୍ଠଦ୍ ବ୍ରତମିଦଂ ଦ୍ୱାଦଶାହମତନ୍ଦ୍ରିତା । ୧ ।**

---

### ଅଦିତିଙ୍କର ବରଲାଭ ।

ସପ୍ତଦଶ ଅଧ୍ୟାୟରେ ଦେବମାତା ଅଦିତି ପୟୋବ୍ରତ ଅନୁଷ୍ଠାନ କରନ୍ତେ ଭଗବାନ୍ ତାଙ୍କର ଅଭୀଷ୍ଟ ପୂରଣ ନିମିତ୍ତ ଅଦିତିଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । • ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ନିଜର ସ୍ୱାମୀ କଶ୍ୟପଙ୍କଠାରୁ ଏପରି ଉପଦେଶ ଲାଭ କରି ଅଦିତି ଦ୍ୱାଦଶ ଦିବସ ପର୍ଯ୍ୟନ୍ତ ସଂଯତ ଭାବରେ ପୟୋବ୍ରତ ପାଳନ କରିଥିଲେ ।୧।

---

ସପ୍ତଦଶରେ ପୟୋବ୍ରତ, କରି ଅଦିତି ଲଭେ ସୁତ ॥

ଶ୍ରୀଶୁକଉବାଚ—

ଶୁଣ ପରୀକ୍ଷ ନୃପମଣି
କଶ୍ୟପ ମୁଖୁ ବାକ୍ୟ ଶୁଣି
ଚିତ୍ତ କରିଣ ଅନ୍ତର୍ଗତେ
ବିଧି ପୂର୍ବକ ପୟୋବ୍ରତେ
ଦ୍ୱାଦଶ ଦିନ ବିଧିମତେ
ସଂଯମ ରହିଲ ଯୁଗତେ
ଏକାଗ୍ର ଚିତ୍ତେ ହରି ପାଦେ
ସେବା କଲିଲ ଅପ୍ରମାଦେ

ଚିନ୍ତୟନ୍ତ୍ୟେକୟା ବୁଦ୍ଧ୍ୟା ମହାପୁରୁଷମୀଶ୍ୱରମ୍ ।
ପ୍ରଗୃହ୍ୟେନ୍ଦ୍ରିୟଦୁଷ୍ଟାଶ୍ୱାନ୍ ମନସା ବୁଦ୍ଧିସାରଥିଃ । ୨ ।
ମନଶ୍ଚୈକାଗ୍ରୟା ବୁଦ୍ଧ୍ୟା ଭଗବତ୍ୟଖିଳାତ୍ମନି ।
ବାସୁଦେବେ ସମାଧାୟ ଚଚାର ହ ପୟୋବ୍ରତମ୍ । ୩ ।
ତସ୍ୟାଃ ପ୍ରାଦୁରଭୂତ୍ତାତ ଭଗବାନାଦିପୁରୁଷଃ ।
ପୀତବାସାଶ୍ଚତୁର୍ବାହୁଃ ଶଙ୍ଖଚକ୍ରଗଦାଧରଃ । ୪ ।
ତଂ ନେତ୍ରଗୋଚରଂ ବୀକ୍ଷ୍ୟ ସହସୋତ୍ଥାୟ ସାଦରମ୍ ।
ନନାମ ଭୁବି କାୟେନ ଦଣ୍ଡବତ୍ ପ୍ରୀତିବିହ୍ୱଳା । ୫ ।
ସୋତ୍ଥାୟ ବଦ୍ଧାଞ୍ଜଳିରୀଡିତୁଂ ସ୍ଥିତା ନୋତ୍ସେହ ଆନନ୍ଦଜଳାକୁଳେକ୍ଷଣା ।
ବଭୂବ ତୂଷ୍ଣୀଂ ପୁଲକାକୁଳାକୃତିସ୍ତଦ୍ଦର୍ଶନାତ୍ୟୁତ୍ସବଗାତ୍ରବେପଥୁଃ । ୬ ।

---

ସେ ନିଜର ବୁଦ୍ଧିକୁ ସାରଥି କରି ଏବଂ ମନଦ୍ୱାରା ଦୁଷ୍ଟ ଅଶ୍ୱସ୍ୱରୂପ ଇନ୍ଦ୍ରିୟମାନଙ୍କୁ ଆୟତ୍ତ କରି ଏକାଗ୍ର ଚିତ୍ତରେ ପରମପୁରୁଷ ଈଶ୍ୱରଙ୍କୁ ଚିନ୍ତା କରିଥିଲେ ଏବଂ ଭଗବାନ୍ ବାସୁଦେବଙ୍କଠାରେ ଏକାଗ୍ରଚିତ୍ତ ହୋଇ ପୟୋବ୍ରତ ଅନୁଷ୍ଠାନ କରିଥିଲେ ।୨,୩।

ହେ ତାତ ! ପୀତବସନ, ଚତୁର୍ବାହୁ, ଶଙ୍ଖଚକ୍ରଗଦାପଦ୍ମଧାରୀ, ଆଦିପୁରୁଷ, ଭଗବାନ୍ ବିଷ୍ଣୁ ଅଦିତିଙ୍କ ସମ୍ମୁଖରେ ଉପସ୍ଥିତ ହୋଇଥିଲେ ଏବଂ ଅଦିତି ସହସା ତାହାଙ୍କୁ ଦର୍ଶନ କରି ଆନନ୍ଦାଭିଭୂତା ହୋଇ ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ । ୪, ୫ ।

ହେ ରାଜନ୍ ! ପ୍ରୀତିବିହ୍ୱଳା ହୋଇ ଉଠିବା ପରେ ଅଦିତି କୃତାଞ୍ଜଳି ପୁଟରେ ସ୍ତବ କରିବାକୁ ଦଣ୍ଡାୟମାନା ହେଲେ କିନ୍ତୁ ଆନନ୍ଦାଶ୍ରୁରେ ତାଙ୍କର ନେତ୍ରଦ୍ୱୟ ଏପରି ପରିପୂର୍ଣ୍ଣ ହୋଇଗଲା ଏବଂ ଶରୀର ଏପରି ପୁଲକିତ ହୋଇଗଲା ଯେ ସେ ନିର୍ବାକ ହୋଇ ରହିଲେ ।୬।

---

ସୁଦୃଢ ମନ ବୁଦ୍ଧି ବଳେ
ଇନ୍ଦ୍ରିଙ୍କି ଧଇଲା ନିଷ୍ଠେଳେ ।୧,୨।
ଏକାଗ୍ର ଚିତ୍ତେ ହରି ପାଦେ
ଧ୍ୟାନ ଯୋଗରେ ଅପ୍ରମାଦେ
ବିଷ୍ଣୁ ଚିନ୍ତିଲା ଏକ ଚିତ୍ତେ
ଦ୍ୱାଦଶଦିନ ପୟୋବ୍ରତେ ।୩।
ଅଦିତି ପୟୋବ୍ରତ ତୋଷେ
ବିଷ୍ଣୁ ମିଳିଲେ ତାରି ପାଶେ
ଶରୀର ଯେସନ୍ତ ନୀଳ ଘନ
ପୀତ-ବସନ ପରିଧାନ

ଆଜାନୁ ଲମ୍ବେ ଚାରି ଭୁଜେ
ଗଦା କମଳ ଚକ୍ର ସାଜେ
ସମୀପେ ବିଷ୍ଣୁ ରୂପ ଦେଖି
ଉନ୍ମୀଳି କଲା ବେନି ଆଖି
ଉଠିଲା ଅଶ୍ରୁ ଗଦଗଦ
ଶିର ନିବେଶି ପଦ୍ମପାଦ
ଭୂମିରେ ଦଣ୍ଡବତେ ପଡ଼ି
କରି ଅଞ୍ଜଳି ଶିରେ ଯୋଡ଼ି
ଆନନ୍ଦ-ସାଗରେ ବୁଡ଼ିଲା
ନିଜ ଶରୀର ପାଶୋରିଲା

ଶରୀର କମ୍ପିଲା ଝଳକେ
କଣ୍ଠ କୁଣ୍ଠିତ ଅଶ୍ରୁଜଳେ
ବଦନେ ବଚନ ନ ସ୍ଫୁରେ
ପ୍ରାଣ ହୋଇଲା କଣ୍ଠଦ୍ୱାରେ
ଚକୋର ଚନ୍ଦ୍ର ଦେଖି ଯେହ୍ନେ
ଅମୃତ ପିଅଇ ନୟନେ
ମନ ନିବେଶି ବିଷ୍ଣୁ ପାଦେ
ଆନନ୍ଦେ ଶୋକ ଗଦଗଦେ

ପ୍ରୀତ୍ୟା ଶନୈର୍ଗଦ୍ଗଦୟା ଗିରା ହରିଂ ତୁଷ୍ଟାବ ସା ଦେବ୍ୟଦିତିଃ କୁରୂଦ୍ୱହ ।
ଉଦ୍‌ବୀକ୍ଷତୀ ସା ପିବତୀବ ଚକ୍ଷୁଷା ରମାପତିଂ ଯଜ୍ଞପତିଂ ଜଗତ୍ପତିମ୍ । ୭ ।

ଶ୍ରୀ ଅଦିତିରୁବାଚ ।

ଯଜ୍ଞେଶ ଯଜ୍ଞପୁରୁଷାଚ୍ୟୁତତୀର୍ଥପାଦ-
ତୀର୍ଥଶ୍ରବଃ ଶ୍ରବଣମଙ୍ଗଳନାମଧେୟ ।
ଆପନ୍ନଲୋକବୃଜିନୋପଶମୋଦୟାଦ୍ୟ-
ଶଂ ନଃ କୃଧୀଶ ଭଗବନ୍ନସି ଦୀନନାଥଃ । ୮ ।
ବିଶ୍ୱାୟ ବିଶ୍ୱଭବନସ୍ଥିତିସଂଯମାୟ-
ସ୍ୱୈରଂ ଗୃହୀତପୁରୁଶକ୍ତିଗୁଣାୟ ଭୂମ୍ନେ ।
ସ୍ୱସ୍ଥାୟ ଶଶ୍ୱଦୁପବୃଂହିତପୂର୍ଣ୍ଣବୋଧ-
ବ୍ୟାପାଦିତାତ୍ମତମସେ ହରୟେ ନମସ୍ତେ । ୯ ।

---

ହେ କୁରୁକୁଳତିଳକ ! ସେହି ଯଜ୍ଞପତି, ଜଗତ୍‌ପତି, ରମାପତିଙ୍କୁ ଅବଲୋକନ କରି ଦେବମାତା ଅଦିତି ଯେପରି ଚକ୍ଷୁଦ୍ୱାରା ପାନ କରୁ କରୁ ପ୍ରୀତି ଗଦ୍‌ଗଦ ବଚନରେ ଧୀରେ ଧୀରେ ସ୍ତବ କରିବାକୁ ଲାଗିଲେ ।୭।

ଅଦିତି କହିଲେ :—

ହେ ଯଜ୍ଞେଶ ! ହେ ଯଜ୍ଞପୁରୁଷ ! ହେ ଅଚ୍ୟୁତ ! ହେ ତୀର୍ଥପାଦ ! ହେ ତୀର୍ଥକୀର୍ତ୍ତି ! ଆପଣଙ୍କ ନାମଶ୍ରବଣରେ ମଙ୍ଗଳ ହୁଏ । ହେ ବିପନ୍ନଦୁଃଖନାଶନ ! ହେ ଆଦ୍ୟ ! ହେ ଈଶ ! ହେ ଭଗବନ ! ହେ ଦୀନଜନ ପରିପାଳକ ! ଆପଣ ଆମ୍ଭମାନଙ୍କର ମଙ୍ଗଳ ବିଧାନ କରନ୍ତୁ ।୮।

ହେ ଭଗବନ୍ ! ଆପଣ ବିଶ୍ୱରୂପୀ, ବିଶ୍ୱର ଉତ୍ପତ୍ତି, ସ୍ଥିତି; ପ୍ରଳୟର କାରଣ, ସ୍ୱେଚ୍ଛାକ୍ରମେ ଆପଣ ବିପୁଳଶକ୍ତି ମାୟାଗୁଣ ବହନ କରିଅଛନ୍ତି । ଆପଣ ଭୂମା, ସ୍ୱସ୍ଥ, ନିତ୍ୟ, ବୁଦ୍ଧିଶାଳୀ, ପୂର୍ଣ୍ଣଜ୍ଞାନ ଯେଉଁ ପୂର୍ଣ୍ଣବୋଧ ଅର୍ଥାତ୍ ଜ୍ଞାନ ତାହାଦ୍ୱାରା ଆତ୍ମାର ଆବରଣଭୂତ ମାୟାରୂପ ଅନ୍ଧକାରକୁ ଆପଣ ବିନାଶ କରନ୍ତି । ଆପଣ ଦୁଃଖନାଶକ, ମହତ୍ତମ, ଆପଣଙ୍କୁ ନମସ୍କାର ।୯।

---

ବୋଲଇ ବିଷ୍ଣୁ-ମୁଖ ଚାହିଁ
ସାନନ୍ଦେ ଶିରେ କର କରଦେଇ
।୪-୭।
ଶ୍ରୀ ଅଦିତିରୁବାଚ—
ହେ ଯୋଗେଶ୍ୱର ! ଜଗନ୍ନାଥ
ତୋର ଚରଣେ ସର୍ବ ତୀର୍ଥ

ସର୍ବ ମଙ୍ଗଳ ତୋର ନାମ
ରୂପ ଅରୂପ ଅନୁପମ
ଶରଣାଗତ ଦୁଃଖହର
ତୁ ନାଥ କରୁଣା-ସାଗର
କରୁଣାକର ବିଶ୍ୱ-ବ୍ୟାପୀ
ବିଶ୍ୱ-ଭୁବନ ବିଶ୍ୱ-ରୂପୀ

ସ୍ଥିତି ଉତ୍ପତ୍ତି ସଂହାରଣ
ତୁ ନାଥ ପରମ କାରଣ ।୮,୯।

ଆୟୁଃ ପରଂ ବପୁରଭୀଷ୍ଟମତୁଲ୍ୟଲକ୍ଷ୍ମୀର୍ଦ୍ୟୌ ଭୂରସା ସକଳଯୋଗ ଗୁଣାସ୍ତ୍ରିବର୍ଗଃ ।
ଜ୍ଞାନଞ୍ଚ କେବଳମନନ୍ତ ଭବନ୍ତି ତୁଷ୍ଟାତ୍ ତ୍ୱତ୍ତୋ ନୃଣାଂ କିମୁ ସପତ୍ନଜୟାଦିରାଶୀଃ ।୧୦।

ଶ୍ରୀ ଶୁକ ଉବାଚ ।

ଅଦିତ୍ୟୈବଂ ସ୍ତୁତୋ ରାଜନ୍ ଭଗବାନ୍ ପୁଷ୍କରେକ୍ଷଣଃ ।
କ୍ଷେତ୍ରଜ୍ଞଃ ସର୍ବଭୂତାନାମିତି ହୋବାଚ ଭାରତ । ୧୧ ।

ଶ୍ରୀ ଭଗବାନୁବାଚ ।

ଦେବମାତର୍ଭବତ୍ୟା ମେ ବିଜ୍ଞାତଂ ଚିରକାଂକ୍ଷିତମ୍ ।
ଯତ୍ ସପତ୍ନୈର୍ହୃତଶ୍ରୀଣାଂ ଚ୍ୟାବିତାନାଂ ସ୍ୱଧାମତଃ । ୧୨ ।

---

ହେ ଅନନ୍ତ ! କେବଳ ଆପଣ ସନ୍ତୁଷ୍ଟ ହେଲେ ଜୀବ ବ୍ରହ୍ମାଙ୍କ ତୁଲ୍ୟ ଆୟୁ, ଅଭିଳଷିତ ଦେହ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର ଆଧିପତ୍ୟ, ଅଣିମାଦି ଯୋଗସିଦ୍ଧି, ଧର୍ମ, ଅର୍ଥ, କାମ ଏହି ତ୍ରିବର୍ଗ ଏବଂ ଜ୍ଞାନ ସମସ୍ତ ଲାଭ କରିଥାଏ । ସୁତରାଂ ଶତ୍ରୁଜୟାଦି ଯେ ବାସନା ତାହା ପୂର୍ଣ୍ଣହେବ ତହିଁରେ ସନ୍ଦେହ କଣ ?।୧୦

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ହେ ଭାରତ ! ଅଦିତି ଏହିପରି ସ୍ତବ କରନ୍ତେ ସର୍ବଭୂତାନ୍ତର୍ଯ୍ୟାମୀ ପଦ୍ମନେତ୍ରେ ଭଗବାନ୍ କହିଲେ ।୧୧।

ଶ୍ରୀ ଭଗବାନ୍ କହିଲେ :—

ହେ ଦେବମାତା ! ସପତ୍ନୀର ପୁତ୍ରମାନେ ତୁମ୍ଭର ପୁତ୍ରମାନଙ୍କର ସମ୍ପତ୍ତି ହରଣ କରିଅଛନ୍ତି ଏବଂ ସେମାନଙ୍କୁ ନିଜ ନିଜ ସ୍ଥାନରୁ ବିଚ୍ୟୁତ କରିଅଛନ୍ତି । ସୁତରାଂ ତୁମ୍ଭର ଯାହା ଆକାଂକ୍ଷା ତାହା ମୁଁ ଜାଣିଅଛି ।୧୨।

---

ଆୟୁ ସମ୍ପଦ ବୁଦ୍ଧି ଜ୍ଞାନ
ତୋର ପ୍ରସନ୍ନେ ପାନ୍ତି ଜନ
କୈବଲ୍ୟ ଜ୍ଞାନ ତୋ ସନ୍ତୋଷେ
ଅନ୍ତେ ପରମ ପଦେ ମିଶେ
ହେ ନାଥ ! ତୋହର ଚରଣ
ଯେ ପ୍ରାଣୀ ପଶନ୍ତି ଶରଣ
ସମସ୍ତ ଦୁର୍ଗତି ତରନ୍ତି
ଜନ୍ମ-ମରଣୁ ନିସ୍ତରନ୍ତି
ହେ ନାଥ ! ପ୍ରଭୁ ଅଜ-ମୂଜ
ଶୁଣିମା ମୋହର ବଚନ
ଦୁଃଖେ କୁଣ୍ଠିତ ମୋର ପ୍ରାଣ
ପଶିଲି ତୋ ପାଦେ ଶରଣ

ପୁତ୍ରେ ନ ରହି ସ୍ୱର୍ଗପୁରେ
ଲୁଚିଲେ ବନଗିରି ଘୋରେ
ସର୍ବ ଦାନବ ସଙ୍ଗେ ମିଳି
ବସିଲା ଇନ୍ଦ୍ରାସନେ ବଳି
ଶୁକ୍ରର ତେଜ ଯଜ୍ଞ ବଳେ
ଭସ୍ମେ ଶକ୍ତିଲେ ଦିଗପାଳେ
ଇନ୍ଦ୍ର ହୋଇଲା ଅରକ୍ଷିତ
ଅମରେ ବସିଲେ ଦଇତ
ମୋର ପୁତ୍ରଙ୍କୁ ରକ୍ଷା କର
ହେ ନାଥ ! ଶରଣ ତୋହର
ସପତ୍ନୀ ଦୁଃଖ କି ନ ଜାଣୁ
ତୁ ନାଥ ଅନ୍ତର ପ୍ରମାଣୁ ।୧୦।

ଶ୍ରୀଶୁକଉବାଚ—
ଶୁଣି ଅଦିତିର ବଚନ
ବୋଲନ୍ତି କମଳ ଲୋଚନ
ଅଦିତି ବଦନକୁ ଚାହିଁ
ପ୍ରସନ୍ନ ଚିତ୍ତେ ଭବଗ୍ରାହୀ । ୧୧ ।
ଶ୍ରୀଭଗବାନୁବାଚ—
ଶୁଣ ଅଦିତି ଦେବ-ମାତ
ମୁଁ ଜାଣେ ତୋର ମନୋରଥ
ବଳି ଯେ ସ୍ୱର୍ଗ ବଳେ ନେଲା
ବଳରେ ଇନ୍ଦ୍ର ପଳାଇଲା
ତାର ସଙ୍ଗତେ ଦେବଗଣେ
ପଶିଲେ ଗିରି ଘୋର ବନେ

ତାନ୍ ବିନିର୍ଜିତ୍ୟ ସମରେ ଦୁର୍ମ୍ମଦାନସୁରର୍ଷଭାନ୍ ।
ପ୍ରତିଲବ୍‌ଧଜୟଶ୍ରୀଭିଃ ପୁତ୍ରୈରିଚ୍ଛସ୍ୟୁପାସିତୁମ୍ । ୧୩ ।
ଇନ୍ଦ୍ରଜ୍ୟେଷ୍ଠୈଃ ସ୍ୱତନୟୈର୍ହତାନାଂ ଯୁଧି ବିଦ୍ୱିଷାମ୍ ।
ସ୍ତ୍ରିୟୋ ରୁଦତୀରାସାଦ୍ୟ ଦ୍ରଷ୍ଟୁମିଚ୍ଛସି ଦୁଃଖିତାଃ । ୧୪ ।
ଆତ୍ମଜାନ୍ ସୁସମୃଦ୍ଧାଂସ୍ତ୍ୱଂ ପ୍ରତ୍ୟାହୃତଯଶଃଶ୍ରିୟଃ ।
ନାକପୃଷ୍ଠମଧିଷ୍ଠାୟ କ୍ରୀଡ଼ତୋ ଦ୍ରଷ୍ଟୁମିଚ୍ଛସି । ୧୫ ।
ପ୍ରାୟୋଽଧୁନା ତେଽସୁରଯୂଥନାଥା ଅପାରଣୀୟା ଇତି ଦେବି ମେ ମତିଃ ।
ଯତ୍ ତେଽନୁକୂଳେଶ୍ୱରବିପ୍ରଗୁପ୍ତା ନ ବିକ୍ରମସ୍ତତ୍ର ସୁଖଂ ଦଦାତି । ୧୬ ।
ଅଥାପ୍ୟୁପାୟୋ ମମ ଦେବି ଚିନ୍ତ୍ୟଃ ସନ୍ତୋଷିତସ୍ୟ ବ୍ରତଚର୍ଯ୍ୟୟା ତେ ।
ମମାର୍ଚ୍ଚନଂ ନାର୍ହତି ଗନ୍ତୁମନ୍ୟଥା ଶ୍ରଦ୍ଧାନୁରୂପଂ ଫଳହେତୁକତ୍ୱାତ୍ । ୧୭ ।

---

ହେ ଦେବି ! ସେହି ଦୁର୍ମଦ ଅସୁରଶ୍ରେଷ୍ଠମାନଙ୍କୁ ଯୁଦ୍ଧରେ ଜୟକରି ନିଜର ସମ୍ପଦ ଓ ସ୍ଥାନ ଲାଭ କରି ସେମାନେ କିପରି ବିଜୟୀ ହେବେ ଏହାହିଁ ତୁମ୍ଭର ଇଚ୍ଛା ।୧୩।

ଇନ୍ଦ୍ର ପ୍ରଭୃତି ତୁମ୍ଭର ପୁତ୍ରମାନେ ଯୁଦ୍ଧରେ ଶତ୍ରୁମାନଙ୍କୁ ନିଧନ କଲେ ସେମାନଙ୍କର ଦୁଃଖିତା ପତ୍ନୀମାନେ କିପରି ପତିଙ୍କ ମୃତଦେହନିକଟରେ ରୋଦନକରିବେ ଏହାଦେଖିବାକୁ ତୁମ୍ଭେ ଇଚ୍ଛାକରୁଅଛ ।୧୪।

ତୁମ୍ଭର ପୁତ୍ରମାନେ ଭ୍ରଷ୍ଟଶ୍ରୀ ହୋଇଅଛନ୍ତି, ସେମାନେ କିପରି ପୂର୍ବ ସମ୍ପଦ ଲାଭକରି ସ୍ୱର୍ଗରାଜ୍ୟରେ କ୍ରୀଡ଼ା କରିବେ; ଏହା ଦେଖିବାକୁ ତୁମ୍ଭର ଇଚ୍ଛା ।୧୫।

ହେ ଦେବି ! ସେହି ଅସୁରାଧିପତିମାନେ ବର୍ତ୍ତମାନ ଅଜେୟ ବୋଲି ମୋର ମନେ ହୁଏ କାରଣ ଅନୁକୂଳ ସମୟ ପ୍ରଭାବରେ ବର୍ତ୍ତମାନ ସେମାନେ ବ୍ରାହ୍ମଣମାନଙ୍କ କର୍ତ୍ତୃକ ସୁରକ୍ଷିତ, ସୁତରାଂ ବର୍ତ୍ତମାନ ବିକ୍ରମ ପ୍ରକାଶ କଲେ କୌଣସି ଲାଭ ନାହିଁ ।୧୬।

ହେ ଦେବି ! ତୁମ୍ଭର ବ୍ରତାନୁଷ୍ଠାନରେ ମୁଁ ସନ୍ତୋଷ ଲାଭ କରିଅଛି, ବାସନାରୂପ ଫଳଲାଭପାଇଁ ମୋର ଅର୍ଚ୍ଚନା କଦାପି ବ୍ୟର୍ଥ ହୁଏନାହିଁ । ସୁତରାଂ ଏ ବିଷୟରେ ମୁଁ ଉପାୟ ଚିନ୍ତା କରିବି ।୧୭।

---

ଏବେ ସେ ଆସି ସ୍ୱର୍ଗପୁରେ
ଶତ୍ରୁଙ୍କୁ ଜିଣି ରଣ ଘୋରେ
ସ୍ୱର୍ଗେ ସେ ବସିବ ନିଶ୍ଚିନ୍ତେ
ତୁ ଏହାକାଂକ୍ଷିଅଛୁ ଚିତ୍ତେ ।୧୨,୧୩
ସମରେ ଅସୁର ମରଣେ
କାନ୍ଦିବେ ତାଙ୍କ ବଧୂଗଣେ
ସ୍ୱାମୀ-ମରଣେ ଅତି ଦୁଃଖୀ
ତୁ ତାହା ଦେଖି ହେବୁ ସୁଖୀ ।୧୪
ସ୍ୱର୍ଗେ ବସିବ ଇନ୍ଦ୍ର ତୋର
ସଙ୍ଗତେ ଅଶେଷ ଅମର

ସକଳ ସମ୍ପଦ ମିଳିବ
ତ୍ରିଲୋକ ନିଶ୍ଚିନ୍ତେ ପାଳିବ
ଏମନ୍ତ ଚିତ୍ତେ କଳ୍ପୁ ତୁହି
ଶୁଣ କହଇ ତାହା ମୁହିଁ ।୧୫।
ଅସୁରେ ପାଇ ସ୍ୱର୍ଗପୁର
ବଳେ ହୋଇଲେ ବଳୀୟାର
ବଳ ସଙ୍ଗତେ ଘୋର ରଣେ
କାହିଁ ଜିଣିବେ ଦେବଗଣେ
ଏ କଥା ଭଲେ ଜାଣେ ମୁହିଁ
ତୋର ପୁତ୍ରଙ୍କ ଜୟ ନାହିଁ ।୧୬

ଯେମନ୍ତେ ତୋହର କୁମରେ
ସୁଖେ ବସିବେ ସ୍ୱର୍ଗ-ପୁରେ
ତୁ ଯେ ମୋହର ପାଦଯୁଗେ
ସେବିଲୁ ପୟୋବ୍ରତ ମାର୍ଗେ
ସେ କଥା ଅନ୍ୟଥା ନୋହିବ
ଅବଶ୍ୟ ତୋ ମନ ପୂରିବ
ତପେ ତୁ ତୋଷିଅଛୁ ମୋତେ
ଇନ୍ଦ୍ର ସମ୍ପଦ ରକ୍ଷା ଅର୍ଥେ
ମୋହର ସେବା ବ୍ରତ ବଳ
କେବେହେଁ ନୁହଇ ବିଫଳ ।୧୭।

ତ୍ୱୟାର୍ଚ୍ଚିତଶ୍ଚାହମପତ୍ୟ ଗୁପ୍ତୟେ ପୟୋବ୍ରତେନାନୁଗୁଣଂ ସମୀଡ୍ତଃ ।
ସ୍ୱାଂଶେନ ପୁତ୍ରତ୍ୱମୁପେତ୍ୟ ତେ ସୁତାନ୍ ଗୋପ୍ତାସ୍ମି ମାରୀଚତପସ୍ୟଧିଷ୍ଠିତଃ ।୧୮।

ଉପଧାବ ପତିଂ ଭଦ୍ରେ ! ପ୍ରଜାପତିମକଳ୍ମଷମ୍ ।
ମାଞ୍ଚ ଭାବୟତୀ ପତ୍ୟାବେବଂ ରୂପମବସ୍ଥିତମ୍ । ୧୯ ।

ନୈତତ୍ପରସ୍ମା ଆଖ୍ୟେୟଂ ପୃଷ୍ଟୟାପି କଥଞ୍ଚନ ।
ସର୍ବଂ ସମ୍ପଦ୍ୟତେ ଦେବ ! ଦେବଗୁହ୍ୟଂ ସୁସଂବୃତମ୍ । ୨୦ ।

ଶ୍ରୀ ଶୁକ ଉବାଚ ।

ଏତାବଦୁକ୍ତ୍ୱା ଭଗବାଂ ସ୍ତତ୍ରୈବାନ୍ତରଧୀୟତ ।
ଅଦିତିର୍ଦୁର୍ଲ୍ଲଭଂ ଲବ୍ଧ୍ୱା ହରେର୍ଜନ୍ମାତ୍ମନି ପ୍ରଭୋଃ । ୨୧ ।

ଉପାଧାବତ୍ ପତିଂ ଭକ୍ତ୍ୟା ପରୟା କୃତକୃତ୍ୟବତ୍ ।
ସ ବୈ ସମାଧିଯୋଗେନ କଶ୍ୟପସ୍ତଦବୁଧ୍ୟତ ।୨୨।

---

ତୁମ୍ଭେ ସନ୍ତାନମାନଙ୍କ ରକ୍ଷା ନିମିତ୍ତ ପୟୋବ୍ରତଦ୍ୱାରା ମୋର ପୂଜା କରିଅଛ ଏବଂ ଗୁଣାନୁସାରେ ମୋର ସ୍ତବ କରିଅଛ ! ସୁତରାଂ କଶ୍ୟପଙ୍କର ତପୋଜନିତ ତେଜରେ ଅବସ୍ଥାନ କରି ମୁଁ ତୁମ୍ଭର ପୁତ୍ରତ୍ୱ ସ୍ୱୀକାର କରି ତୁମ୍ଭର ପୁତ୍ରମାନଙ୍କୁ ରକ୍ଷା କରିବି ।୧୮।

ହେ ଭଦ୍ରେ ! ନିଜ ପତିଙ୍କଠାରେ ଏହିପରି ଅବସ୍ଥିତ ମୋତେ ଚିନ୍ତାକରି ନିଷ୍ପାପ ପ୍ରଜାପତି, ନିଜର ସ୍ୱାମୀ କଶ୍ୟପଙ୍କୁ ଭଜନା କର ।୧୯।

ହେ ଦେବି ! କେହି ପଚାରିଲେ ସୁଦ୍ଧା ଏହି ଦେବରହସ୍ୟ କାହାରି ନିକଟରେ ପ୍ରକାଶ କରିବ ନାହିଁ । କାରଣ ଦେବ ରହସ୍ୟମାନ ଗୋପନ ରଖିଲେ କାର୍ଯ୍ୟ ସଫଳ ହୋଇଥାଏ ।୨୦।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ଭଗବାନ୍ ବିଷ୍ଣୁ ଏହା କହି ସେ ସ୍ଥାନରୁ ଅନ୍ତର୍ହିତ ହୋଇଗଲେ । ଅଦିତି ତାହାଙ୍କଠାରେ ଭଗବାନ୍ ବିଷ୍ଣୁ ଜନ୍ମଲାଭ କରିବେ ଏହି ଦୁର୍ଲ୍ଲଭ ବରପ୍ରାପ୍ତ ହୋଇ ନିଜକୁ କୃତାର୍ଥ ମନେ କରି ପରମଭକ୍ତି ସହିତ ପତିଙ୍କର ସେବା କରିଥିଲେ । ଅବ୍ୟର୍ଥ ଜ୍ଞାନ ସମ୍ପନ୍ନ ପ୍ରଜାପତି କଶ୍ୟପ

---

ମୁଁ ନିଜ ଅଂଶେ ତୋର ଗର୍ଭେ
ଜନ୍ମିବି ପୟୋବ୍ରତ ଲାଭେ
ଏ ବ୍ରତ ମହିମା ଏମନ୍ତ
ଅବଶ୍ୟ ମୋତେ ଲଭେ ସୁତ
ତୋର ପୁତ୍ରଙ୍କୁ ମୁଁ ରଖିବି
ଶତ୍ରୁଙ୍କ ଭୟ ନିବାରିବି
ନିଶ୍ଚେ ରଖିବି ଦେବକୁଳ
ତୁସ୍ୱାମୀସଙ୍ଗେକରମେଳ ।୧୮,୧୯

ଏ ବ୍ରତ ଫଳ ଯେବେ ପାଇ
ବିଶ୍ୱାସେ ପରକୁ ନ କହି
ସର୍ବ ସମ୍ପଦ ଲଭ ତୁହି
ଦେବ ମାତାଙ୍କୁ ଏତେ କହି
ତକ୍ଷଣେ ହୋଇଲେ ଅନ୍ତର
ଶୁଣ ପରୀକ୍ଷ ନୃପବର । ୨୦,୨୧।
ଏମନ୍ତେ ବିଷ୍ଣୁର ବଚନ
ଶୁଣି ଅଦିତି ତୋଷ ମନ

ଆନନ୍ଦେ ପ୍ରଭୁ ହୃଷୀକେଶ
କଶ୍ୟପ ଶରୀରେ ପ୍ରବେଶ
ବିଷ୍ଣୁର ତେଜେ ବ୍ରହ୍ମଋଷି
ଉଦୟ ରବି ପ୍ରାୟେ ଦିଶି
ଅମର ଗୁରୁ ଲଗ୍ନବେଳେ
ଉଚେ ଅଛନ୍ତି ଗ୍ରହବଳେ
ମୁହୂର୍ତ୍ତ ନାମ ଅଭିଜିତ
ପତି କାମିନୀ ଏକ ଯୁକ୍ତ

ପ୍ରବିଷ୍ଟମାତ୍ମନ ହରେରଂଶଂ ହ୍ୟବିତଥେକ୍ଷଣଃ ।
ସୋଽଦିତ୍ୟାଂ ବୀର୍ଯ୍ୟମଧତ୍ତ ତପସା ଚିରସମ୍ଭୃତମ୍ ।
ସମାହିତମନା ରାଜନ୍ ଦାରୁଣ୍ୟଗ୍ନିଂ ଯଥାନିଳଃ । ୨୩ ।
ଅଦିତେର୍ଧିଷ୍ଠିତଂ ଗର୍ଭଂ ଭଗବନ୍ତଂ ସନାତନମ୍ ।
ହିରଣ୍ୟଗର୍ଭୋ ବିଜ୍ଞାୟ ସମୀଡ଼େ ଗୁହ୍ୟନାମଭିଃ । ୨୪ ।

ଶ୍ରୀ ବ୍ରହ୍ମୋବାଚ ।

ଜୟୋରୁଗାୟ ଭଗବନ୍ନୁରୁକ୍ରମ ନମୋଽସ୍ତୁତେ ।
ନମୋ ବ୍ରହ୍ମଣ୍ୟଦେବାୟ ତ୍ରିଗୁଣାୟ ନମୋନମଃ । ୨୫ ।
ନମସ୍ତେ ପୃଶ୍ନିଗର୍ଭାୟ ବେଦଗର୍ଭାୟ ବେଧସେ ।
ତ୍ରିନାଭାୟ ତ୍ରିପୃଷ୍ଠାୟ ଶିପିବିଷ୍ଟାୟ ବିଷ୍ଣବେ । ୨୬ ।

---

ସମାଧିଯୋଗ ବଳରେ ଭଗବାନଙ୍କର ଏହି ଅଂଶ ଜାଣି ପାରିଥିଲେ । ହେ ରାଜନ୍ ! ପ୍ରଜାପତି କଶ୍ୟପ ବାୟୁ; କାଷ୍ଠରେ ଅଗ୍ନି ଧାରଣ କଲାପରି ଦୀର୍ଘକାଳତପସ୍ୟାଦ୍ୱାରା ସଂରକ୍ଷିତ ବୀର୍ଯ୍ୟଅଦିତିଙ୍କ ଗର୍ଭରେ ସ୍ଥାପନ କରିଥିଲେ ।୨୧, ୨୩।

ହିରଣ୍ୟଗର୍ଭ ବ୍ରହ୍ମା ଜାଣି ପାରିଲେ ଅଦିତିଙ୍କ ଗର୍ଭରେ ସନାତନ ବିଷ୍ଣୁ ପ୍ରବିଷ୍ଟ ହୋଇଅଛନ୍ତି । ତେଣୁ ସେ ଗୁହ୍ୟମାନ ସ୍ତବ ଉଚ୍ଚାରଣ କରିଥିଲେ ।୨୪।

ଶ୍ରୀ ବ୍ରହ୍ମା କହିଲେ :—

ହେ ଉରୁଗାୟ ! ହେ ଭଗବନ୍ ! ଆପଣ ଜୟଯୁକ୍ତ ହୁଅନ୍ତୁ । ହେ ଉରୁକ୍ରମ ! ଆପଣଙ୍କୁ ମୋର ନମସ୍କାର । ହେ ବ୍ରହ୍ମଣ୍ୟଦେବ ଓ ତ୍ରିଗୁଣ ସ୍ୱରୂପ, ଆପଣଙ୍କୁ ମୁଁ ପୁନଃ ପୁନଃ ନମସ୍କାର କରୁଅଛି ।୨୫।

ପୂର୍ବେ ପୃଶ୍ନୀ ନାମରେ ପରିଚିତ ହୋଇ ଆପଣ ଏହି ଅଦିତି ଗର୍ଭରେ ଜନ୍ମଗ୍ରହଣ କରିଥିଲେ । ଆପଣ ବିଧାତା, ସମସ୍ତ ବେଦର ଉତ୍ପତ୍ତି ସ୍ଥଳ, ତ୍ରିଭୁବନ ଆପଣଙ୍କ ନାଭି ଦେଶରେ ବର୍ତ୍ତମାନ, ତ୍ରିଲୋକର ଉପରିସ୍ଥ ସର୍ବଜୀବଠାରେ ଆପଣ ଅନ୍ତର୍ଯ୍ୟାମୀରୂପେ ପ୍ରବିଷ୍ଟ, ଆପଣ ସର୍ବବ୍ୟାପୀ, ଆପଣଙ୍କୁ ମୋର ନମସ୍କାର ।୨୬।

---

ରତି ଆନନ୍ଦେ ରଜ ବୀର୍ଯ୍ୟେ
ଗର୍ଭ ପଶିଁାର ଅତି ତେଜ
ଦାରୁ ସଂଯୋଗେ ଅଗ୍ନି ଯେସନେ
ପ୍ରକାଶ କରେ ଦହନେ ଦହନେ
ଅଦିତି ବିଷ୍ଣୁ ଗର୍ଭେ ଧରି
ଶଶାଙ୍କ ପ୍ରାୟେ ମନୋହାରୀ
ଦିଶଇ ଅତି ରୂପକାନ୍ତି
ଦିନକୁ ଦିନ ଶୁଭ୍ର ଜ୍ୟୋତି,

ଅଦିତି ଉଦର ସଙ୍ଗର
ଏ କଥା ଜାଣି ବେଦବର
ରଜନୀ କାଳେ ବ୍ରହ୍ମା ଆସି
ଅଦିତି ଜାର୍ଦ୍ଧିସ୍ଥାନେ ବସି
ଗର୍ଭକୁ ସ୍ତୁତି ବେଦ-ପଠ
ଆନନ୍ଦେ କଲେ ଦିବ୍ୟ-ସ୍ତୁତ
।୨୨,୨୩।

ବ୍ରହ୍ମୋବାଚ—
ଜୟ ଅନନ୍ତ ଉରୁକ୍ରମ !
ନମୋ ନମସ୍ତେ ତ୍ରିବିକ୍ରମ !
ନମୋ ବ୍ରହ୍ମଣ୍ୟ ଭଗବତ
ନମସ୍ତେ ତ୍ରିଗୁଣ ଅଜିତ ।୨୫।
ନମସ୍ତେ ପୃଶ୍ନି-ଗର୍ଭରୂପୀ
ନମସ୍ତେ ବ୍ରହ୍ମ ବେଦବ୍ୟାପୀ
ତ୍ରିନାଭି ତ୍ରିପୃଷ୍ଠ ତୋ ନାମ
ଶିପିବିଷ୍ଟ ଯେ ତୋର ଧାମ ।୨୬

ତ୍ୱମାଦିରନ୍ତୋ ଭୁବନସ୍ୟ ମଧ୍ୟମନନ୍ତଶକ୍ତିଂ ପୁରୁଷଂ ଯମାହୁଃ ।
କାଲୋ ଭବାନାକ୍ଷିପତୀଶ ବିଶ୍ୱଂ ସ୍ରୋତୋ ଯଥାନ୍ତଃପତିତଂ ଗଭୀରମ୍ ।୨୭।
ତ୍ୱଂ ବୈ ପ୍ରଜାନାଂ ସ୍ଥିରଜଙ୍ଗମାନାଂ ପ୍ରଜାପତୀନାମପି ସମ୍ଭବିଷ୍ଣୁଃ ।
ଦିବୌକସାଂ ଦେବ ଦିବଶ୍ଚ୍ୟୁତାନାଂ ପରାୟଣଂ ନୌରିବ ମଜ୍ଜତୋଽପ୍ସୁ ।୨୮।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ସପ୍ତଦଶୋଽଧ୍ୟାୟଃ ।

---

ହେ ପରମେଶ୍ୱର ! ଆପଣ ଏହି ବିଶ୍ୱର ଆଦି, ମଧ୍ୟ ଓ ଅନ୍ତ । ଜ୍ଞାନୀମାନେ ଆପଣଙ୍କୁ ଅନନ୍ତ ଶକ୍ତି ପୁରୁଷ ବୋଲି କୀର୍ତ୍ତନ କରିଥାନ୍ତି । ନଦୀ ପ୍ରଭୃତିର ସ୍ରୋତ ଯେପରି ଜଳମଗ୍ନ ତୃଣକୁ ଆକର୍ଷଣ କରେ; ଆପଣ ସେହିପରି କାଳରୂପୀ ହୋଇ ଏହି ବିଶ୍ୱକୁ ଆକର୍ଷଣ କରିଥାନ୍ତି ।୨୭।

ଆପଣ ଏହି ସ୍ଥାବର, ଜଙ୍ଗମ ପ୍ରଭୃତି ପ୍ରଜାମାନଙ୍କର ଓ ପ୍ରଜାପତିମାନଙ୍କର ଉତ୍ପାଦକ, ଜଳ ମଧ୍ୟରେ ମଜ୍ଜମାନ ବ୍ୟକ୍ତି ପକ୍ଷରେ ନୌକା ଯେପରି ଆଶ୍ରୟ; ସ୍ୱର୍ଗଚ୍ୟୁତ ଦେବତାମାନଙ୍କ ପକ୍ଷରେ ଆପଣ ସେହିପରି ଏକମାତ୍ର ଆଶ୍ରୟ ।୨୮।

---

ଏ ସୃଷ୍ଟି ଆଦି ମଧ୍ୟ ଅନ୍ତ
ତୁ ନାଥ ବିହିରୁ କାନ୍ତିମନ୍ତ
ତୁ ସେ ଅନନ୍ତ ଶକ୍ତିଧର
ମନ ବଚନ ଅଗୋଚର
ତୁ କାଳରୂପ ଏ ଜଗତ
ସୃଷ୍ଟି ପାଳଣ କରୁ ଅନ୍ତ
ତୃଣ ଯେସନେ ଜଳସ୍ରୋତେ
ପଡ଼ଣ ଜଳଧି ଗର୍ଭଗତେ ।୨୭।
ସ୍ଥାବର ଆଦି ଜନ୍ତୁ ଗିରି
ତୁ ବସୁ ଆତ୍ମାରୂପ ଧରି

ତୋର ମାୟାର ବଳେ ଜନେ
ତୋ ରୂପ ଜାଣିବେ କେମନେ
ଜନ୍ତୁଙ୍କ ବାହ୍ୟ ଅଭ୍ୟନ୍ତରେ
ତୋ ତତ୍ତ୍ୱ କେବା ଅଛି ପରେ
ଜଳେ ପଡ଼ନ୍ତି ଯେତେ ପ୍ରାଣୀ
ସେ ଯେବେ ନ ଲଭେ ତରଣୀ
ସେ କାହିଁ ଜଳଧି ତରିବେ
ଯେ ନ ପଶନ୍ତି ତୋର ଭବେ ।୨୮
ଏମନ୍ତେ କରି ବିବିଧ ସ୍ତୁତି
ନିଜ ଭୁବନେ ପ୍ରଜାପତି

ଆନନ୍ଦ ମନେ ବ୍ରହ୍ମାଗଲେ
ଶୁଣ ରାଜନ ବିଷ୍ଣୁ-ଲୀଳା
ଭାଷା ପ୍ରବନ୍ଧେ ଭାଗବତ
କହିଲେ ଦାସ ଜଗନ୍ନାଥ
ବାମନ ରୂପ ଧରି ଏବେ
ବିଷ୍ଣୁ ଯେ ବଳିକି ଛଳିବେ
ଏ କଥା ଏକମନେ ଶୁଣି
ନିସ୍ତରି ଦୁଃଖ ତରଙ୍ଗିଣୀ
ସଂସାର ଅନ୍ଧକୂପେ ଥାଇ
ଏ ବିନୁ ଉପାୟତ ନାହିଁ



## ଅଷ୍ଟାଦଶୋଽଧ୍ୟାୟଃ ।

ତତସ୍ତ୍ୱଷ୍ଟାଦଶେ ଭୂତ୍ୱା ବାମନଃ ସତ୍‌କୃତୋଽଖିଳୈଃ ।
ଯଜ୍ଞଂ ଗତସ୍ତତସ୍ତେନ ସତ୍‌କୃତେ୍ୟାକ୍ତୋ ବରାନ୍ ବୃଣୁ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ । ଇତ୍ଥଂ ବିରିଞ୍ଚସ୍ତୁତକର୍ମ୍ମବୀର୍ଯ୍ୟଃ ପ୍ରାଦୁର୍ବଭୂବାମୃତଭୂରଦିତ୍ୟାମ୍ ।
ଚତୁର୍ଭୁଜଃ ଶଙ୍ଖଗଦାବ୍ଜଚକ୍ରଃ ପିଶଙ୍ଗବାସା ନଳିନାୟତେକ୍ଷଣଃ । ୧ ।
ଶ୍ୟାମାବଦାତୋ ଝଷରାଜକୁଣ୍ଡଳତ୍ୱିଷୋଲ୍ଲସଚ୍ଛ୍ରୀବଦନାମ୍ବୁଜଃ ପୁମାନ୍ ।
ଶ୍ରୀବତ୍ସବକ୍ଷା ବଳୟାଙ୍ଗଦୋଲ୍ଲସତ୍‌କିରୀଟକାଞ୍ଚୀଗୁଣଚାରୁନୂପୁରଃ । ୨ ।

---

### ବାମନ ଅବତାର ଓ ବଳିବାମନ ସମ୍ବାଦ ।

ଅଷ୍ଟାଦଶ ଅଧ୍ୟାୟରେ ଭଗବାନ୍ ବାମନରୂପ ଗ୍ରହଣକରି ସମସ୍ତଙ୍କ ଦ୍ୱାରା ଆଦୃତ ଓ ପୂଜିତହୋଇ ଦାନବରାଜ ବଳିଙ୍କର ଯଜ୍ଞକୁ ଗମନ କରିଥିଲେ । ଏବଂ ବଳି କର୍ତ୍ତୃକ ବର ପ୍ରାର୍ଥନା କରିବାକୁ ଆଦେଶ ପାଇବା ବିଷୟ ବର୍ଣ୍ଣିତ ହୋଇଅଛି ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ବ୍ରହ୍ମା ଏହିପରି ଭଗବାନଙ୍କର କାର୍ଯ୍ୟ ଓ ବୀର୍ଯ୍ୟର ପ୍ରଶଂସା କରି ସ୍ତବ କରନ୍ତେ ଜନ୍ମମୃତ୍ୟୁ ବିରହିତ ସେହି ଶ୍ରୀହରି ଅଦିତିଙ୍କ ଗର୍ଭରେ ପ୍ରାଦୁର୍ଭୂତ ହୋଇଥିଲେ । ତାହାଙ୍କର ଚାରିବାହୁରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ବିଦ୍ୟମାନ ଓ କଟୀରେ ପୀତବସନ । ୧ ।

ସେ ଶ୍ୟାମବର୍ଣ୍ଣ ଅଥଚ ଉଜ୍ଜ୍ୱଳ, ମକରାକୃତି କୁଣ୍ଡଳ ଦ୍ୱୟ ଦୀପ୍ତିରେ ତାହାଙ୍କର ବଦନ ମଣ୍ଡଳ ଉଦ୍ଭାସିତ, ତାହାଙ୍କ ବକ୍ଷ ସ୍ଥଳରେ ଶ୍ରୀବତ୍ସ ଚିହ୍ନ, ବଳୟ ଏବଂ ଅଙ୍ଗଦ ସହିତ ଉଜ୍ଜ୍ୱଳ କିରୀଟ, କାଞ୍ଚୀ ଓ ମନୋହର ନୂପୁର ଯଥାସ୍ଥାନରେ ଉଲ୍ଲସିତ ହେଉଥିଲା । ୨ ।



ଅଦିତିଙ୍କ ନିକଟରେ ଭଗବାନଙ୍କର ଆବିର୍ଭାବ

---

ବାମନ ହୋଇ ଅବତରି, ଅଖିଳ ଲୋକରେ ପୂଜିତ ॥ ବଳିର ଯଜ୍ଞେ ଉପଗତ, ଅଷ୍ଟାଦଶରେ ଏ ଚରିତ ॥

ଶ୍ରୀଶୁକଉବାଚ—

ଶୁଣ ଅଭିମନ୍ୟୁ ନନ୍ଦନ
ଯେମନ୍ତେ ଜନ୍ମିଲେ ବାମନ
ସେ ହରି ସର୍ବଲୋକନାଥ ଯେତେ
ଜନ୍ମିଲେ ଅବନୀ ମଣ୍ଡଳେ
ତାର ଚରିତ ଶୁଣ ଏବେ
ଯେମନ୍ତେ ବଳିର ପ୍ରସ୍ତାବେ
ବ୍ରହ୍ମାର ସ୍ତୁତି ଶୁଣି ତୋଷେ
ସେ ହରି ପରମ ହରଷେ
ଅଦ୍ଭୁତ ଅଜ ଯା ଶରୀର
ଏବେ ବାମନ ଅବତାର
ଗଗନ ଅର୍ଦ୍ଧେ ଦିନକର
ବାମନ ଉଦରୁଁ ବାହାର
ଅଦିତି ତହୁଁ ଭୂମିଗତେ
ବାମନ ଦେଖିଲେ ଅଗ୍ରତେ
ନୀଳ ନୀରଦ ତନୁବର୍ଣ୍ଣ
ପ୍ରକାଶ କମଳ ଲୋଚନ

ମଧୁବ୍ରତବ୍ରାତବିଘୁଷ୍ଟୟା ସ୍ୱୟା ବିରାଜିତଃ ଶ୍ରୀବନମାଳୟା ହରିଃ ।
ପ୍ରଜାପତେର୍ବେଶ୍ମତମଃ ସ୍ୱରୋଚିଷା ବିନାଶୟନ୍ କଣ୍ଠନିବିଷ୍ଟକୌସ୍ତୁଭଃ ।୩।
ଦିଶଃ ପ୍ରସେଦୁଃ ସଲିଳାଶୟାସ୍ତଦା ପ୍ରଜାଃ ପ୍ରହୃଷ୍ଟା ଋତବୋ ଗୁଣାନ୍ୱିତାଃ ।
ଦ୍ୟୌରନ୍ତରୀକ୍ଷଂ କ୍ଷିତିରଗ୍ନିଜିହ୍ୱା ଗାବୋ ଦ୍ୱିଜାଃ ସଞ୍ଜହୃଷୁର୍ନଗାଶ୍ଚ ।୪।
ଶ୍ରୋଣାୟାଂ ଶ୍ରବଣଦ୍ୱାଦଶ୍ୟାଂ ମୁହୂର୍ତ୍ତେଽଭିଜିତି ପ୍ରଭୁଃ ।
ସର୍ବେ ନକ୍ଷତ୍ରତାରାଦ୍ୟାଶ୍ଚକ୍ରୁସ୍ତଜ୍ଜନ୍ମ ଦକ୍ଷିଣମ୍ ।୫।
ଦ୍ୱାଦଶ୍ୟାଂ ସବିତା ତିଷ୍ଠନ୍ମଧ୍ୟନ୍ଦିନଗତୋ ନୃପ ।
ବିଜୟା ନାମ ସା ପ୍ରୋକ୍ତା ଯସ୍ୟାଂ ଜନ୍ମ ବିଦୁର୍ହରେଃ ।୬।

---

ଭ୍ରମର ପୁଞ୍ଜ ଗୁଞ୍ଜନରେ ନିନାଦିତ ବନମାଳାଦ୍ୱାରା ବିରାଜିତ କୌସ୍ତୁଭ ରତ୍ନଧାରୀ ପରମ ପୁରୁଷ ଭଗବାନ୍ ବିଷ୍ଣୁ ନିଜର କାନ୍ତିଦ୍ୱାରା କଶ୍ୟପଙ୍କ ଗୃହର ଅନ୍ଧକାର ନାଶ କରି ଆବିର୍ଭୂତ ହୋଇଥିଲେ ।୩।

ଭଗବାନ୍ ଆବିର୍ଭୂତ ହେବା ସମୟରେ ଦିକ୍‌ସମୂହ ଓ ନଦୀମାନ ପ୍ରସନ୍ନ ହେଲେ, ଋତୁମାନେ କାଳୋଚିତ ଫଳ କୁସୁମାଦିଗୁଣଦ୍ୱାରା ଶୋଭିତ ହେଲେ । ସ୍ୱର୍ଗ, ଆକାଶ, ପୃଥିବୀ, ଦେବ, ଦ୍ୱିଜ, ଏବଂ ପର୍ବତମାନ ପ୍ରଫୁଲ୍ଲ ହେଲେ ।୪।

ଭାଦ୍ରବ ମାସର ଶୁକ୍ଳପକ୍ଷ ଶ୍ରବଣା ନକ୍ଷତ୍ର ସଂଯୁକ୍ତ ଦ୍ୱାଦଶୀ ତିଥିରେ ଶ୍ରବଣାର ପ୍ରଥମାଂଶ ଅଭିଜିତ୍ ନକ୍ଷତ୍ରରେ ଶ୍ରବଣାଯୁକ୍ତ ରାଶିରେ ଭଗବାନ୍ ବିଷ୍ଣୁ ଆବିର୍ଭୂତ ହେଲେ । ତାହାଙ୍କର ଜନ୍ମକାଳରେ ସମସ୍ତ ନକ୍ଷତ୍ର ଓ ଗ୍ରହମାନେ ଶୁଭସ୍ଥ ହୋଇଥିଲେ ।୫।

ଯେଉଁ ଦ୍ୱାଦଶୀ ତିଥିରେ ସୂର୍ଯ୍ୟଦେବ ମଧ୍ୟରେଖା ଅବଲମ୍ବନ କରି ଅବସ୍ଥାନ କରୁଥିଲେ, ସେହିଦିନ ବିଷ୍ଣୁଙ୍କର ଜନ୍ମ ଅର୍ଥାତ୍ ମଧ୍ୟାହ୍ନ ସମୟରେ ବିଷ୍ଣୁଙ୍କର ଆବିର୍ଭାବ, ବାମନ ଜନ୍ମ ଦ୍ୱାଦଶୀକୁ ବିଜୟା ଦ୍ୱାଦଶୀ ବୋଲିଯାଏ ।୬।

---

ଆଜାନୁ ଲମ୍ବ ଭୁଜବର
ଶଙ୍ଖ କମଳ ଗଦାଧାରୀ
ପୀତ-ବସନ କଟୀତଟେ
ତଡ଼ିତ ଯେସନ୍ତେ ନୀଳ-ମେଘେ
ରତ୍ନ-କୁଣ୍ଡଳ କର୍ଣ୍ଣଯୁଗେ
ଶ୍ରୀବତ୍ସ ଚିହ୍ନ ହୃଦତଟେ
ଉରେ ଲମ୍ବଇ ବନମାଳ
ସୁନ୍ଦର ଅଳକା କପୋଳ
ରତ୍ନ-ମୁକୁଟ ଶିରେ ସାଜେ
ରତ୍ନ-ମେଖଳା କଟୀ ମାଝେ
ନୂପୁର କଙ୍କଣ ବିରାଜେ
ତେଜେ ଅନଙ୍ଗ ଲୁଚେ ଲାଜେ

କଣ୍ଠେ ଶ୍ରୀ କଉସ୍ତୁଭ ମଣି
ଅମୂଲ୍ୟ ରତ୍ନ ସୁଖଖଣି
ପ୍ରସନ୍ନ ଦଶଦିଗ ଦେଶ
ସଲିଳେ କମଳ ପ୍ରକାଶେ
ଜଳଧି ଉଚ୍ଛୁଳେ କଲ୍ଲୋଳେ
କାନନେ ନାନା ପୁଷ୍ପ-ଫଳେ
ଋତୁ ବହଇ ଗୁଣ ମତେ
ପ୍ରସରେ ଶରଦ ବସନ୍ତେ
ସୁଗନ୍ଧ ପବନ ଆମୋଦ
ଗଗନେ ମଙ୍ଗଳ ଶବଦ
ଭୂମିରେ ବିପ୍ରେ ବେଦ ନାଦେ
ଅନଳ ପ୍ରଜ୍ୱଳେ ସମିଧେ

ଗୋ ବିପ୍ର ଦେବ ଭୂ ପର୍ବତ
ଆକାଶ ହୋଇଲ ପ୍ରଫୁଲ୍ଲିତ ।୧-୫।
ଭାଦ୍ରବ ମାସ ଶୁକ୍ଳପକ୍ଷେ
ଦ୍ୱାଦଶୀ ଶ୍ରବଣା ଯେ ଋକ୍ଷେ
ମୁହୂର୍ତ୍ତ ନାମ ଅଭିଜିତେ
ଗ୍ରହ ନକ୍ଷତ୍ରଙ୍କ ପ୍ରଶସ୍ତେ
ସର୍ବ ନକ୍ଷତ୍ର ତାରାଗଣେ
ପ୍ରଶସ୍ତ ମଙ୍ଗଳ ଦକ୍ଷିଣେ
ବିଜୟା ଯୋଗେ ମଧ୍ୟ ଦିନେ
ଶଙ୍ଖ ଦୁନ୍ଦୁଭି ନାଦ ସ୍ୱନେ
ମୃଦଙ୍ଗ ପଟହ ସମାନେ
ଶୁଭନ୍ତି ଭେରୀ ନାଦସ୍ୱନେ

ଶଙ୍ଖଦୁନ୍ଦୁଭୟୋନେଦୁର୍ମୃଦଙ୍ଗପଣବାନକାଃ ।
ଶବ୍ଦବାଦବତୂର୍ଯ୍ୟାଣାଂ ନର୍ଘୋଷସ୍ତୁମୁଲୋଽଭବତ୍ । ୭ ।
ପ୍ରୀତାଶ୍ଚାପ୍ସରସୋଽନୃତ୍ୟନ୍ ଗନ୍ଧର୍ବପ୍ରବରା ଜଗୁଃ ।
ତୁଷ୍ଟୁବୁର୍ମୁନୟୋ ଦେବା ମନବଃ ପିତରୋଽଗ୍ନୟଃ । ୮ ।
ସିଦ୍ଧବିଦ୍ୟାଧରଗଣାଃ ସକିଂପୁରୁଷକିନ୍ନରାଃ ।
ଚାରଣା ଯକ୍ଷରକ୍ଷାଂସି ସୁପର୍ଣ୍ଣା ଭୁଜଗୋତ୍ତମାଃ । ୯ ।
ଗାୟନ୍ତୋଽତିପ୍ରଶଂସନ୍ତୋ ନୃତ୍ୟନ୍ତୋ ବିବୁଧାନୁଗାଃ ।
ଅଦିତ୍ୟା ଆଶ୍ରମପଦଂ କୁସୁମୈଃ ସମବାକିରନ୍ । ୧୦ ।
ଦୃଷ୍ଟ୍ୱାଦିତିସ୍ତଂ ନିଜଗର୍ଭସମ୍ଭବଂ ପରଂ ପୁମାଂସଂ ମୁଦମାପ ବିସ୍ମିତା ।
ଗୃହୀତଦେହଂ ନିଜଯୋଗମାୟୟା ପ୍ରଜାପତିଶ୍ଚାହ ଜୟେତି ବିସ୍ମିତଃ ।୧୧।

---

ଶଙ୍ଖ, ଦୁନ୍ଦୁଭି, ଭେରୀ, ମୃଦଙ୍ଗ, ପଣବ, ଆନକ ପ୍ରଭୃତି ବାଦ୍ୟ ବାଜି ଉଠିଲା ଏବଂ ବିବିଧ ବାଦ୍ୟଦ୍ୱାରା ତୁମୁଳଧ୍ୱନି ଉତ୍ଥିତ ହେଲା ।୭।

ଅପ୍‌ସରାମାନେ ଅତ୍ୟନ୍ତ ପ୍ରୀତ ହୋଇ ନୃତ୍ୟ କଲେ, ଶ୍ରେଷ୍ଠ ଗନ୍ଧର୍ବମାନେ ଗାନ କଲେ; ମୁନିମାନେ, ଦେବତାମାନେ, ପିତୃମାନେ, ମନୁମାନେ, ଅଗ୍ନିମାନେ ବିଷ୍ଣୁଙ୍କର ସ୍ତବ କରିବାକୁ ଲାଗିଲେ ।୮।

ସିଦ୍ଧ ଓ ବିଦ୍ୟାଧର, କିନ୍ନର, ଚାରଣ, ଯକ୍ଷ, ରାକ୍ଷସ, ଗରୁଡ଼ ପ୍ରଭୃତି ପକ୍ଷିମାନେ, ନାଗମାନେ ଉପଦେବମାନେ ଗାନ କଲେ ଓ ଅତୀବ ପ୍ରଶଂସା କରି ନୃତ୍ୟ କଲେ । ଅଦିତିଙ୍କର ଆଶ୍ରମ କୁସୁମବୃଷ୍ଟିରେ ସମାଚ୍ଛନ୍ନ ହେଲା ।୯, ୧୦ ।

ଅଦିତି ପରମପୁରୁଷ ବିଷ୍ଣୁଙ୍କୁ ନିଜ ଗର୍ଭରେ ଆବିର୍ଭୂତ ହେବାର ଦେଖି ଅତ୍ୟନ୍ତ ବିସ୍ମିତ ହୋଇଥିଲେ ଏବଂ ପରମ ଆନନ୍ଦ ଲାଭ କରିଥିଲେ । ସ୍ୱକୀୟ ଯୋଗମାୟା ଦ୍ୱାରା ଦେହଧାରୀ ବିଷ୍ଣୁଙ୍କୁ ଦେଖି ପ୍ରଜାପତି କଶ୍ୟପ ଜୟଧ୍ୱନି କରିଥିଲେ ।୧୧।

---

ବାଜନ୍ତି ଗୋମୁଖ ଆନକ
ତାଣ୍ଡବ ପଟହ ଅନେକ
ଗୀତ ବିନୋଦ ନୃତ୍ୟ ଗୋଳ
ହରି ଉଚ୍ଛୁଳନ୍ତି ତୁମୁଳ
ନାଚନ୍ତି ଅପସରା ବୃନ୍ଦ
ଗନ୍ଧର୍ବେ ତାଳ ଯନ୍ତ୍ର ବାଦ୍ୟ
ଦେବତା-ପିତୃ-ମୁନିଗଣେ
ଅଗ୍ନି ସହିତେ ଜଣେ ଜଣେ

ସ୍ତୁବନ୍ତି ସିଦ୍ଧ ବିଦ୍ୟାଧରେ
ଭୁଲେ କିଂପୁରୁଷ କିନ୍ନରେ
ଚାରଣ ଯକ୍ଷ ରକ୍ଷଆଦି
ସୁପର୍ଣ୍ଣ ଭୁଜଗ ପ୍ରସିଦ୍ଧି
ସ୍ତୁତି ବଚନ ଗୀତସ୍ୱରେ
ପୁଷ୍ପ ବରଷେ ନିରନ୍ତରେ
ଅଦିତି ଗୃହେ ପୁଷ୍ପ ବୃଷ୍ଟି
ଯେସନେ ଖଣ୍ଡିବ ଜଳବୃଷ୍ଟି ।୭-୧୦

ଅଦିତି ନିଜ ପୁତ୍ର ଦେଖି
ନିର୍ମଳ କଲା ଚର୍ମ ଆଖି
ଯେ ହରି ନିଜ ଯୋଗ ତେଜେ
ଜନ୍ମିଲେ କଶ୍ୟପେ ଗୀରୈ
କଶ୍ୟପ ଜୟ ଜୟ ବାଣୀ
ମଙ୍ଗଳ ବେଦ ବାକ୍ୟ ଭଣି ।୧୧।

ଯତଦ୍ବପୁର୍ଭାତି ବିଭୂଷଣାୟୁଧୈରବ୍ୟକ୍ତଚିଦ୍‌ବ୍ୟକ୍ତମଧାରୟଦ୍ଧରିଃ ।
ବଭୂବ ତେନୈବ ସ ବାମନୋ ବଟୁଃ ସମ୍ପଶ୍ୟତୋର୍ଦିବ୍ୟଗତିର୍ଯଥା ନଟଃ ।୧୨।

ତଂ ବଟୁଂ ବାମନଂ ଦୃଷ୍ଟ୍ବା ମୋଦମାନା ମହର୍ଷୟଃ ।
କର୍ମାଣି କାରୟାମାସୁଃ ପୁରସ୍କୃତ୍ୟ ପ୍ରଜାପତିମ୍ । ୧୩ ।
ତସ୍ୟୋପନୀୟମାନସ୍ୟ ସାବିତ୍ରୀଂ ସବିତାବ୍ରବୀତ୍ ।
ବୃହସ୍ପତିର୍ବ୍ରହ୍ମସୂତ୍ରଂ ମେଖଳାଂ କଶ୍ୟପୋଽଦଦାତ୍ । ୧୪ ।
ଦଦୌ କୃଷ୍ଣାଜିନଂ ଭୂମିର୍ଦଣ୍ଡଂ ସୋମୋ ବନସ୍ପତିଃ ।
କୌପୀନାଚ୍ଛାଦନଂ ମାତା ଦ୍ୟୌଶ୍ଛତ୍ରଂ ଜଗତଃ ପତେଃ । ୧୫ ।
କମଣ୍ଡଳୁଂ ବେଦଗର୍ଭଃ କୁଶାନ୍ ସପ୍ତର୍ଷୟୋ ଦଦୁଃ ।
ଅକ୍ଷମାଳାଂ ମହାରାଜ ସରସ୍ବତ୍ୟବ୍ୟୟାତ୍ମନଃ । ୧୬ ।

---

ଶ୍ରୀହରି ଆବରଣ ଓ ଆୟୁଧାଦି କାନ୍ତିଦ୍ୱାରା ଅବ୍ୟକ୍ତ ଚୈତନ୍ୟ ରୂପରେ ଯେଉଁ ଶ୍ରୀ ଧାରଣ କରିଥିଲେ, ସହସା ଅଦ୍ଭୁତ ଚେଷ୍ଟାଶାଳୀ ସେହି ବିଷ୍ଣୁ ଦର୍ଶକ ପିତା ମାତାଙ୍କ ସମ୍ମୁଖରେ ନଟ ବେଶ ପରିବର୍ତ୍ତନ କଲାପରି ବାମନ ଅର୍ଥାତ୍ ଖର୍ବାକୃତି ବ୍ରାହ୍ମଣ ବାଳକରୂପ ଧାରଣ କରିଥିଲେ ।୧୨।

ମହର୍ଷିମାନେ ସେହି ବାମନରୂପୀ ବଟୁଙ୍କୁ ଦର୍ଶନ କରି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ କଶ୍ୟପଙ୍କୁ ଅଗ୍ରରେ ରଖି ଜାତ କର୍ମାଦି ସଂସ୍କାର କରିଥିଲେ ।୧୩।

ଉପନୟନ ଦ୍ୱାରା ସଂସ୍କୃତ ସେହି ବାଳକଙ୍କୁ ସୂର୍ଯ୍ୟଦେବ ସାବିତ୍ରୀ ଉପଦେଶ ଦେଇଥିଲେ । ବୃହସ୍ପତି ଯଜ୍ଞୋପବୀତ ଓ କଶ୍ୟପ ତାହାଙ୍କୁ ମେଖଳା ପ୍ରଦାନ କରିଥିଲେ ।୧୪।

ସେହି ଜଗତ୍ପତି ବାମନଙ୍କୁ ପୃଥିବୀ କୃଷ୍ଣାଜିନ ( କୃଷ୍ଣ ମୃଗଚର୍ମ ), ବନସ୍ପତି ଚନ୍ଦ୍ର ଦଣ୍ଡ, ମାତା ଅଦିତି କୌପୀନ ଓ ଆଚ୍ଛାଦନ ଏବଂ ସ୍ୱର୍ଗ ତାହାଙ୍କୁ ଛତ୍ର ପ୍ରଦାନ କରିଥିଲେ ।୧୫।

ହେ ମହାରାଜ ! ବେଦଗର୍ଭ ବ୍ରହ୍ମା ତାହାଙ୍କୁ କମଣ୍ଡଳୁ, ସପ୍ତର୍ଷିମାନେ କୁଶ ଏବଂ ସରସ୍ୱତୀ ସେହି ଅବ୍ୟୟାତ୍ମା ବିଷ୍ଣୁଙ୍କୁ ଅକ୍ଷମାଳା ପ୍ରଦାନ କରିଥିଲେ ।୧୬।

---

ତକ୍ଷଣେ ପ୍ରଭୁ ଭଗବାନ
ରୂପେ ପ୍ରକାଶିଲେ ବାମନ
ଦେଖିଲେ ସର୍ବ ଜଗପାଳେ
ଦେବ-ଦେବତା ଅନ୍ତରାଳେ ।୧୨
ବଟୁ ବାମନ ରୂପ ଦେଖି
ମୁନିଏ ଆଶ୍ରମ ଉପେକ୍ଷି
ସଘନ ହରଷେ ମିଳିଲେ
ଜନ୍ମ ମଙ୍ଗଳ ସ୍ତୁତି କଲେ

ବିଧାତା ଆଦି ମୁନି ଭୁଲେ
ପୁତ୍ରର ଜାତ-କର୍ମ କଲେ ।୧୩।
ବାମନ ଉପନୟ ଦେଖି
ସବିତା ଗଗନ ଉପେକ୍ଷି
ସାବିତ୍ରୀ ମନ୍ତ୍ର କର୍ଣ୍ଣେ କହେ
ଯେଉଣେ ସବିତା ତେଜ ବହେ
ଗୁରୁ ପଇତା ଦେଲେ କନ୍ଧେ
କଶ୍ୟପ ମେଖଳା ଅନନ୍ଦେ ।୧୪।

ଅବନୀ କୃଷ୍ଣାଜିନ ଦେଲା
ଶଶାଙ୍କ ଦଣ୍ଡ ସମର୍ପିଲା
ଅଦିତି ଦେଲା କଉପୀନ
ଆକାଶ କଲା ଛତ୍ର ଦାନ ।୧୫।
ମୁନିଏ କରେ ଦେଲେ ଦର୍ଭ
କମଣ୍ଡଳୁ ଯେ ବେଦଗର୍ଭ
ଶାରଦା ଦେଲେ ଅକ୍ଷମାଳା
ଯେମନ୍ତେ ବୁଦ୍ଧି ଅନର୍ଗଳା ।୧୬।

ତସ୍ମା ଇତ୍ୟୁପନୀତାୟ ଯକ୍ଷରାଟ୍ ପାତ୍ରିକାମଦାତ୍ ।
ଭିକ୍ଷାଂ ଭଗବତୀ ସାକ୍ଷାଦୁମାଦାଦମ୍ବିକା ସତୀ । ୧୭ ।
ସ ବ୍ରହ୍ମବର୍ଚ୍ଚସେନୈବଂ ସଭାଂ ସମ୍ଭାବିତୋ ବଟୁଃ ।
ବ୍ରହ୍ମର୍ଷିଗଣସଂଜୁ(ଘୁ)ଷ୍ଟାମତ୍ୟରୋଚତ ମାରିଷଃ । ୧୮ ।
ସମିଦ୍ଧମାହୃତଂ ବହ୍ନିଂ କୃତ୍ୱା ପରିସମୂହନମ୍ ।
ପରିସ୍ତୀର୍ଯ୍ୟ ସମଭ୍ୟର୍ଚ୍ଚ୍ୟ ସମିଦ୍ଭିରଜୁହୋଦ୍ଦ୍ୱିଜଃ । ୧୯ ।
ଶ୍ରୁତ୍ୱାଶ୍ୱମେଧୈର୍ଯଜମାନମୂର୍ଜିତଂ ବଲିଂ ଭୃଗୁଣାମୁପକଲ୍ପିତୈସ୍ତତଃ ।
ଜଗାମ ତତ୍ରାଖିଳସାରସମ୍ଭୃତୋ ଭାରେଣ ଗାଂ ସନ୍ନମୟନ୍ ପଦେ ପଦେ । ୨୦ ।
ତଂ ନର୍ମଦାୟାସ୍ତଟ ଉତ୍ତରେ ବଲେର୍ଯ୍ୟ ଋତ୍ୱିଜସ୍ତେ ଭୃଗୁକଚ୍ଛସଂଜ୍ଞକେ ।
ପ୍ରବର୍ତ୍ତୟନ୍ତୋ ଭୃଗବଃ କ୍ରତୂତ୍ତମଂ ବ୍ୟଚକ୍ଷତାରାଦୁଦିତଂ ଯଥା ରବିମ୍ । ୨୧ ।

ଏହାପରେ ଉପନୟନଦ୍ୱାରା ସଂସ୍କୃତ ବାମନ ଦେବଙ୍କୁ ଯକ୍ଷରାଜ ଭିକ୍ଷାପାତ୍ର ପ୍ରଦାନ କରିଥିଲେ ଏବଂ ସାକ୍ଷାତ୍ ସତୀ ଭଗବତୀ ଜଗଦମ୍ବା ଉମା ଭିକ୍ଷା ଦାନ କରିଥିଲେ ।୧୭।

ଏହାପରେ ସମସ୍ତ ଦ୍ରବ୍ୟ ଦ୍ୱାରା ସତ୍କୃତ ହୋଇ ସେହି ସର୍ବଶ୍ରେଷ୍ଠ ବାମନଦେବ ବ୍ରହ୍ମ ତେଜରେ ବ୍ରହ୍ମର୍ଷିଗଣ ସେବିତ ସେହି ସଭାରେ ଅତ୍ୟନ୍ତ ଶୋଭା ପାଇଥିଲେ ।୧୮।

ତଦନନ୍ତର ବାମନରୂପୀ ଭଗବାନ୍ ବିଷ୍ଣୁ ଅଗ୍ନିକୁ ପୁନର୍ବାର ପ୍ରଜ୍ୱଳିତ କରି ଚତୁର୍ଦ୍ଦିଗରେ କୁଶଦ୍ୱାରା ଆସ୍ତରଣ କରି ସମିଧ ଦ୍ୱାରା ଅର୍ଚ୍ଚନା କରି ଅଗ୍ନିରେ ଘୃତାହୂତି ପ୍ରଦାନ କରିଥିଲେ ।୧୯।

ଭୃଗୁବଂଶୀୟ ବ୍ରାହ୍ମଣମାନଙ୍କଦ୍ୱାରା ସମ୍ପାଦିତ ବହୁସଂଖ୍ୟକ ଅଶ୍ୱମେଧଯଜ୍ଞ ସେମାନଙ୍କର ଯଜମାନ ଦାନବରାଜବଳି ଅନୁଷ୍ଠାନ କରିଅଛନ୍ତି ଶୁଣି ଅଖିଳ ବଳ ସମ୍ପନ୍ନ ହୋଇ ପ୍ରତିପଦ ବିକ୍ଷେପରେ ଅବନୀକୁ ଅବନତ କରି ବଳିର ଯଜ୍ଞ ସ୍ଥଳରେ ଉପସ୍ଥିତ ହୋଇଥିଲେ ।୨୦।

ନର୍ମଦା ନଦୀର ଉତ୍ତରତୀରରେ ଭୃଗୁକଚ୍ଛ ନାମକ ତୀର୍ଥରେ ଉତ୍ତମ ଯଜ୍ଞ ପ୍ରବର୍ତ୍ତନକାରୀ ଭୃଗୁବଂଶୀୟ ଶୁକ୍ରପ୍ରମୁଖ ବଳିରାଜାଙ୍କର ଋତ୍ୱିକମାନେ ବାମନରୂପୀ ବିଷ୍ଣୁଙ୍କ ନିକଟରେ ଉଦିତ ହୋଇ ସୂର୍ଯ୍ୟ ତୁଲ୍ୟ ଶୋଭା ପାଇଥିଲେ ।୨୧।

ଯକ୍ଷ ରାଜା ଯେ ଶୁଦ୍ଧ ଚିତ୍ତେ
ଭିକ୍ଷା ପାତ୍ରେକ ଦେଲେ ହସ୍ତେ
ଅମ୍ବିକା ଭିକ୍ଷା ଦେଲେ ଆଣି
ସଙ୍ଗତେ ଘେନି କମଳିନୀ ।୧୭।
ମୁନିଏ ବ୍ରହ୍ମ-ତେଜ ଦେଲେ
ସ୍ତୁତି ବଚନେ ତୋଷ କଲେ
ଯେ ଯାହା ତେଜ ଯୁତ ହୋଇ
ସ୍ଥିତେ ବାମନ୍ସ୍ତୁତି କହି ।୧୮।

ଏମନ୍ତେ ବିପ୍ର ରୂପ ଧରି
ପୂର୍ଣ୍ଣ ଆହୁତି ଦେଲେ ହରି ।୧୯।
ତେବେଣ ଶୁକ୍ର ଯେ ଯଜ୍ଞ ବିଧି
ବଳିର ଶତେ ଅଶ୍ୱମେଧ
କରାଏ ନିଜ ମନ୍ତ୍ର ବଳେ
ଅମରେ ସ୍ଥାପିବ ନିଶ୍ଚଳେ
ସେ କଥା ଜାଣିଣ ବାମନ
ତକ୍ଷଣେ କଲେକ ଗମନ

ବଳି ଭୁବନେ ବିଷ୍ଣୁ ଯାନ୍ତେ
ଭୂମି କମ୍ପଇ ପାଦ ଘାତେ ।୨୦।
ନର୍ମ୍ମଦା ନଦୀର ଉତ୍ତରେ
ଗିରି ପର୍ବତ ବନ ଘୋରେ
ବଳିକି ଯଜମାନେ କରି
ବିପ୍ରେ ଭୃଗୁଙ୍କ ଅଗ୍ରେ କରି

ତେ ଋତ୍ୱିଜୋ ଯଜମାନଃ ସଦସ୍ୟା ହତତ୍ୱିଷୋ ବାମନତେଜସା ନୃପ ।
ସୂର୍ଯ୍ୟଃ କିଲାୟାତ୍ୟୁତ ବା ବିଭାବସୁଃ ସନତ୍କୁମାରୋଽଥ ଦିଦୃକ୍ଷୟା କ୍ରତୋଃ ।୨୨।
ଇତ୍ଥଂ ସଶିଷ୍ୟେଷୁ ଭୃଗୁଷ୍ୱନେକଧା ବିତର୍କ୍ୟମାଣୋ ଭଗବାନ୍ ସ ବାମନଃ ।
ଛତ୍ରଂ ସଦଣ୍ଡଂ ସଜଳଂ କମଣ୍ଡଳୁଂ ବିବେଶ ବିଭ୍ରଦ୍ଧୟମେଧବାଟମ୍ । ୨୩ ।
ମୌଞ୍ଜ୍ୟା ମେଖଳୟାବୀତମୁପବୀତାଜିନୋତ୍ତରମ୍ ।
ଜଟିଳଂ ବାମନଂ ବିପ୍ରଂ ମାୟାମାଣବକଂ ହରିମ୍ । ୨୪ ।

---

ହେ ରାଜନ୍ ! ଋତ୍ୱିକମାନେ ବାମନ ଦେବଙ୍କ ତେଜରେ ନିଷ୍ପ୍ରଭ ହୋଇ ଯଜମାନ ବଳି ଏବଂ ସଦସ୍ୟମାନେ ସମସ୍ତେ ଚିନ୍ତା କରିଥିଲେ ଯେ ଯଜ୍ଞ ଦର୍ଶନ କରିବାକୁ ସ୍ୱୟଂ ସୂର୍ଯ୍ୟଦେବ କିମ୍ବା ଅଗ୍ନି କିମ୍ବା ସନତ୍କୁମାର ଆଗମନ କରିଅଛନ୍ତି ।୨୨।

ବଳି ପ୍ରଭୃତି ଶିଷ୍ୟମାନଙ୍କ ସହିତ ଭୃଗୁବଂଶୀୟ ଶୁକ୍ରାଚାର୍ଯ୍ୟ ପ୍ରଭୃତି ବ୍ରାହ୍ମଣମାନେ ଏହିପରି ଆଲୋଚନା କରୁଅଛନ୍ତି ଏମନ୍ତ ସମୟରେ ଭଗବାନ୍ ବାମନଦେବ ଦଣ୍ଡ, ଛତ୍ର ଓ ଜଳପୂର୍ଣ୍ଣ କମଣ୍ଡଳୁ ଧାରଣ କରି ଅଶ୍ୱମେଧ ଯଜ୍ଞ ସ୍ଥଳରେ ପ୍ରବେଶ କଲେ ।୨୩।

ମୁଞ୍ଜ ତୃଣ ନିର୍ମିତ ମେଖଳାଦ୍ୱାରା ନିବଦ୍ଧ କଟୀଦେଶ, ଉପବୀତ ତୁଲ୍ୟ ମୃଗଚର୍ମ ଉତ୍ତରୀୟଯୁକ୍ତ ଜଟାଧାରୀ ବ୍ରାହ୍ମଣବେଶୀ ମାୟା ବଟୁରୂପୀ ବାମନ ଦେବଙ୍କୁ ଯଜ୍ଞ ସ୍ଥଳରେ ପ୍ରବେଶ କରିବାର ଦେଖି ଏବଂ

---

ଯଜ୍ଞ କରନ୍ତି ମନ୍ତ୍ର ବଳେ
ଯେମନ୍ତେ ଅମଳ ମଣ୍ଡଳେ
ବଳି ବସିବ ଦୃଢ ଚିତ୍ତେ
ଭାର୍ଗବେ କରି ସରଯତ୍ନେ
ଏମନ୍ତେ ବଳି ଯଜ୍ଞ ବାଟେ
ବାମନ ମିଳିଲେ କପଟେ
ଋଷି କରନ୍ତି ଭାଗ୍ୟବନ୍ତ
ଯେମନ୍ତେ ଦଶ ହତଜ୍ୟୋତି
ଭାର୍ଗବ ଆଦି ପୁରୋହିତ
ସଦସ୍ୟ ଯଜମାନ ଯେତେ
ବାମନ ତେଜେ ଅସ୍ତ ଗଲେ
ତମିସ୍ର ଯେହ୍ନେ ପ୍ରାତଃକାଳେ

କେହି ନ ଜାଣେ ଅନୁମାନ
ସର୍ବେ ହୋଇଲେ ହତଜ୍ଞାନ
ରବି ଶଶାଙ୍କ କିବା ବହ୍ନି
ମିଳିଲେ ନିଜ ତେଜ ଘେନି
କିବା ସନତ ବ୍ରହ୍ମା-ସୁତ
ଯଜ୍ଞ ପ୍ରୋକ୍ଷଣେ ଉପଗତ
ଏମନ୍ତେ ଜାଣି ନ ପାରିଲେ
ବାମନ ତେଜେ ଅସ୍ତ ଗଲେ
ମୁହୂର୍ତ୍ତେ ରହି ଖେଦ ମନେ
ଗ୍ଲାନ୍ତି ମୋହିତ ନୟନେ
କରି ନ ପାରି ଅନୁମାନ
ସର୍ବେ ହୋଇଲେ ହତଜ୍ଞାନ

ଉଦକ କମଣ୍ଡଳୁ ଘେନି
କରନ୍ତି ସାମ ବେଦ ଧ୍ୱନି
ବିଷ୍ଣୁ ମିଳିଲେ ଯଜ୍ଞ ବାଟେ
ବଳି ନୃପତିର ନିକଟେ ।୨୨-୨୩।
କଟୀରେ ମୁଞ୍ଜୀର ମେଖଳା
ଯଜ୍ଞୋପବୀତ ଅକ୍ଷୋମାଳା
କନ୍ଧରେ କୃଷ୍ଣାଜିନ ଶୋହେ
ଉତ୍ତରୀ ପ୍ରାୟ ନିଜ ଦେହେ
ଅଦ୍ଭୁତ ବାଳ ସୁକୁମାର
ଶିରେ ବିରାଜେ ଜଟାଭାର
ମାୟା ବାମନ ରୂପ ଦେଖି
ତପଷେ ଆସନ ଉପେକ୍ଷି

ପ୍ରବଷ୍ଟଂ ବୀକ୍ଷ୍ୟ ଭୃଗବଃ ସଶିଷ୍ୟାସ୍ତେ ସହାଗ୍ନିଭିଃ ।
ପ୍ରତ୍ୟଗୃହ୍ଣନ୍ ସମୁତ୍ଥାୟ ସଂକ୍ଷିପ୍ତାସ୍ତସ୍ୟ ତେଜସା । ୨୫ ।
ଯଜମାନୋ ପ୍ରମୁଦିତୋ ଦର୍ଶନୀୟଂ ମନୋରମମ୍ ।
ରୂପାନୁରୂପାବୟବଂ ତସ୍ମା ଆସନମାହରତ୍ । ୨୬ ।
ସ୍ୱାଗତେନାଭିନନ୍ଦ୍ୟାଥ ପାଦୌ ଭଗବତୋ ବଲିଃ ।
ଅବନିଜ୍ୟାର୍ଚ୍ଚୟାମାସମୁକ୍ତସଙ୍ଗଂ ମନୋରମମ୍ । ୨୭ ।
ତତ୍ପାଦଶୌଚଂ ଜନକଲ୍ମଷାପହଂ ସ ଧର୍ମବିନ୍ମୂର୍ଦ୍ଧ୍ନ୍ୟଦଧାତ୍ ସୁମଙ୍ଗଳମ୍ ।
ଯଦ୍ଦେବଦେବୋ ଗିରିଶଶ୍ଚନ୍ଦ୍ରମୌଳିର୍ଦଧାରମୂର୍ଦ୍ଧ୍ନା ପରୟା ଚ ଭକ୍ତ୍ୟା । ୨୮ ।
ଶ୍ରୀ ବଲିରୁବାଚ । ସ୍ୱାଗତଂ ତେ ନମସ୍ତୁଭ୍ୟଂ ବ୍ରହ୍ମନ୍ କିଂ କରବାମ ତେ ।
ବ୍ରହ୍ମର୍ଷୀଣାଂ ତପଃ ସାକ୍ଷାତ୍ ମନ୍ୟେ ତ୍ୱାର୍ଯ୍ୟ ବପୁର୍ଦ୍ଧରମ୍ ।୨୯।

---

ତାଙ୍କର ତେଜଦ୍ୱାରା ଅଭିଭୂତ ହୋଇ ସଶିଷ୍ୟ ଭୃଗୁବଂଶୀୟ ବ୍ରାହ୍ମଣମାନେ ଅଗ୍ନି ସହିତ ତାହାଙ୍କୁ ସାଦର ଅଭ୍ୟର୍ଥନା କରିଥିଲେ । ୨୪, ୨୫ ।

ଯଜମାନବଲି ପ୍ରିୟ ଦର୍ଶନ ମନୋରମ, ସର୍ବାଙ୍ଗ ସୁନ୍ଦର ବାମନରୂପୀ ବିଷ୍ଣୁଙ୍କୁ ଦର୍ଶନ କରି ପ୍ରୀତହୋଇ ତାହାଙ୍କୁ ଆସନ ପ୍ରଦାନ କରିଥିଲେ ।୨୬।

ଦାନବରାଜ ବଳି 'ସ୍ୱାଗତ' ପ୍ରଶ୍ନକରି ଭଗବାନଙ୍କର ଚରଣଦ୍ୱୟ ବନ୍ଦନ କରି ପ୍ରକ୍ଷାଳନ କରିଥିଲେ ଏବଂ ମୁକ୍ତସଙ୍ଗ ଯୋଗିମାନଙ୍କ ଚିତ୍ତର ଆନନ୍ଦଦାୟକ ସେହି ବିଷ୍ଣୁଙ୍କୁ ଅର୍ଚ୍ଚନା କରିଥିଲେ ।୨୭

ଦେବାଧିଦେବ ଶଶିଶେଖର ମହାଦେବ ଯେଉଁ ଚରଣୋଦକ ପରମଭକ୍ତି ସହକାରେ ସ୍ୱୀୟ ମସ୍ତକରେ ଧାରଣ କରିଥାନ୍ତି; ଧର୍ମଜ୍ଞ ଦାନବରାଜବଳି ପ୍ରାଣୀ ସମୂହର ପାପହାରୀ ମଙ୍ଗଳପ୍ରଦ ଭଗବାନ୍ ବିଷ୍ଣୁଙ୍କର ସେହି ଚରଣୋଦକ ମସ୍ତକରେ ଧାରଣ କରିଥିଲେ ।୨୮।

ଶ୍ରୀ ବଳି କହିଲେ :—

ହେ ବ୍ରହ୍ମନ୍ ! ଆପଣ ସୁଖରେ ଆଗମନ କରିଅଛନ୍ତି ତ ? ଆପଣଙ୍କୁ ମୁଁ ନମସ୍କାର କରୁଅଛି । ହେ ଆର୍ଯ୍ୟ ! ଆପଣଙ୍କୁ ବ୍ରହ୍ମର୍ଷିମାନଙ୍କର ମୂର୍ତ୍ତିଧାରୀ ସାକ୍ଷାତ୍ ତପଃ ପ୍ରଭାବ ବୋଲି ମୁଁ ମନେ କରେ ।୨୯।

---

ଭୃଗୁ ସହିତେ ଶିଷ୍ୟ ଯେତେ
ଅଗ୍ନି ହିଁ ଉଠିଲେ ତୁରିତେ
ଅଞ୍ଜଳି-ହସ୍ତ କରି ବେଗେ
ମିଳିଲେ ବାମନର ଆଗେ ।୨୪,୨୫
ବଳି ବାମନ ରୂପ ଚାହିଁ
ଆସନ ଦେଲା ବେଗେ ନେଇ
ଚରଣେ ନମସ୍କାର କରି
କୁଶଳ ବାରତା ପଚାରି
ପ୍ରେମ ଜଳେ ଧୋଇ ପାଦ
ଆନନ୍ଦେ କଣ୍ଠ ଗଦଗଦ

ପାଦ ଉଦକ ଘେନି ଶିରେ
ପ୍ରେମ ହରଷ କଳେବରେ
ଯାହାର ଚରଣ ସଲିଳ
ଖଣ୍ଡଇ ସର୍ବ ଅମଙ୍ଗଳ
ଗିରିଜା ଧବ ଜଟା ଧରେ
ପାଦ ଉଦକ ବହେ ଶିରେ
ବଳି ଯେ ବେନିକର ଯୋଡ଼ି
କହେ ବାମନ ପାଦେ ପଡ଼ି
। ୨୬-୨୮ ।

ବଳିରୁବାଚ—
ହେ ବିପ୍ର ! ନମୁଁ ତୋ ଚରଣେ
ଅଶେଷ କୁଶଳ କାରଣେ
ବ୍ରହ୍ମ-ଋଷିଙ୍କ ତେଜ ପ୍ରାୟେ
ମୁଁ ଯେ ଦେଖଇ ତୁମ୍ଭ ଦେହେ
ତୁ ବ୍ରହ୍ମ ପରମ ସାକ୍ଷାତେ
ତୋ ରୂପ ନାହିଁ ଏ ଜଗତେ
କି ଅର୍ଥେ ତୋହର ଆଗମ
କହ ତୋହର କିସ ନାମ ।୨୯।

ଅଦ୍ୟ ନଃ ପିତରସ୍ତୃପ୍ତା ଅଦ୍ୟ ନଃ ପାବିତଂ କୁଳମ୍ ।
ଅଦ୍ୟ ସ୍ୱିଷ୍ଟଃ କ୍ରତୁରୟଂ ଯଦ୍‌ଭବାନାଗତୋ ଗୃହାନ୍ । ୩୦ ।
ଅଦ୍ୟାଗ୍ନୟୋ ମେ ସୁହୁତା ଯଥାବିଧି ଦ୍ୱିଜାତ୍ମଜ ତ୍ୱଚ୍ଚରଣାବନେଜନୈଃ ।
ହତାଂହସୋ ବାର୍ଭିରିୟଞ୍ଚ ଭୂରହୋ ତଥା ପୁନୀତା ତନୁଭିଃ ପଦୈସ୍ତବ ।୩୧।
ଯଦ୍ୟଦ୍‌ବଟୋ ବାଞ୍ଛସି ତତ୍ ପ୍ରତୀଚ୍ଛ ମେ ତ୍ୱାମର୍ଥିନଂ ବିପ୍ରସୁତାନୁତର୍କୟେ ।
ଗାଂ କାଞ୍ଚନଂ ଗୁଣବଦ୍ଧାମମୃଷ୍ଟଂ ତଥାନ୍ନପେୟମୁତ ବା ବିପ୍ରକନ୍ୟାମ୍ ।
ଗ୍ରାମାନ୍ ସମୃଦ୍ଧାଂସ୍ତୁରଗାନ୍ ଗଜାନ୍ ବା ରଥାଂସ୍ତଥାର୍ହତ୍ତମ ସଂପ୍ରତୀଚ୍ଛ । ୩୨ ।
ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ବଳିବାମନସମ୍ବାଦେ
ଅଷ୍ଟାଦଶୋଽଧ୍ୟାୟଃ ।

---

ଆପଣ ମୋ ଗୃହକୁ ଆଗମନ କରିଅଛନ୍ତି, ତେଣୁ ମୋର ପିତୃପିତାମହଗଣ ପରିତୃପ୍ତ ହୋଇ ଅଛନ୍ତି । ଆଜ ମୋର କୁଳ ପବିତ୍ର, ଆଜି ମୋର ଅଶ୍ୱମେଧ ଯଜ୍ଞ ସୁସମ୍ପନ୍ନ ହୋଇଅଛି ।୩୦।

ହେ ବ୍ରାହ୍ମଣ ତନୟ ! ଆଜ ଅଗ୍ନିରେ ମୋର ଯଥାବିଧି ଆହୁତି ଦିଆ ହୋଇଅଛି । ଆପଣଙ୍କର ଚରଣୋଦକ ସ୍ପର୍ଶକରି ମୁଁ ପାପଶୂନ୍ୟ ହୋଇଅଛି ଏବଂ ଆପଣଙ୍କ ସୁକୋମଳ କ୍ଷୁଦ୍ରଚରଣ ସ୍ପର୍ଶକରି ପୃଥିବୀ ପବିତ୍ର ହୋଇଅଛି । ୩୧ ।

ହେ ବଟୁ ବାମନ ! ଆପଣ କଣ ପ୍ରାର୍ଥନା କରୁଛନ୍ତି ତାହା ମୋ ନିକଟରୁ ଶୀଘ୍ର ଗ୍ରହଣ କରନ୍ତୁ । ଆପଣଙ୍କୁ ପ୍ରାର୍ଥୀ ବୋଲି ମନେ ହେଉଅଛି । ହେ ପୂଜ୍ୟତମ ! ଧେନୁ, ସୁବର୍ଣ୍ଣ, ସର୍ବଗୁଣ ସମ୍ପନ୍ନ ଗୃହ, ଉତ୍କୃଷ୍ଟ ଅନ୍ନ କିମ୍ବା ବିପ୍ରକନ୍ୟା, ସମୃଦ୍ଧି ସମ୍ପନ୍ନ ଗ୍ରାମ, ଅଶ୍ୱ, ହସ୍ତୀ ଅଥବା ରଥ; ଯାହା ଇଚ୍ଛା ତାହା ମୋ ଠାରୁ ଗ୍ରହଣ କର ।୩୨।

---

ମୋ ପିତୃଗଣ ଆଜ ତୋଷ
ପବିତ୍ର ମୋର ଗୃହବାସ
ଆଜ ମୋ ସୁଫଳ ଜୀବନ
ଯେଣୁ ତୁମ୍ଭର ଆଗମନ
ପବିତ୍ର ହୋଇଲା ମୋ କୁଳ
ଲଭିଲି ଶତକ୍ରତୁ ଫଳ ।୩୦।
ଆଜ ଅନଳେ ଘୃତସ୍ରବି
ଶୁଦ୍ଧେ ଜଳିବ ମୋତେ ତୋଷି
ଏ ଭୂମି ପବିତ୍ର ମୋହର
ସ୍ପର୍ଶିଲ ଯେହ୍ନେ ସ୍ୱର୍ଗପୁର
ହେ ବିପ୍ର ! ଦାନ ମାଗ ମୋତେ
ଯେବା ବାଞ୍ଛିତ ତୋର ଚିତ୍ତେ

ଗୋରୁ କାଞ୍ଚନ ଦ୍ରବ୍ୟପୁର
କିବା ପ୍ରାସାଦ ମନୋହର
ଗ୍ରାମ ପାଟଣା କନ୍ୟା ଦାନ
ଅମୂଲ୍ୟ-ରତ୍ନ ବା ସୁବର୍ଣ୍ଣ
ଅନ୍ନ ବସନ ଆଦି ଯେତେ
ହେ ବିପ୍ର ! ମାଗ ଅପ୍ରମିତେ
ଗଜ ତୁରଙ୍ଗ ସୁଖାସନ
ରଥ ପଲଙ୍କ ଯହିଁ ମନ
କି ଅବା ତୋର ଚିତ୍ତେ ଯେତେ
ହେ ବିପ୍ର ! ମାଗ ଅପ୍ରମିତେ
ଦେବି ମୁଁ ସତ୍ୟ ମୋ ବଚନ
ଦାସତନୟମୋଜୀବନ ।୩୧,୩୨।

ଏମନ୍ତେ ବଳି ବ୍ୟଗ୍ର ଚିତ୍ତେ
କହିଲା ବାମନ ଅଗ୍ରତେ
ଏମନ୍ତ ବଳି ବାକ୍ୟ ଶୁଣି
ବିଷ୍ଣୁ ସ୍ୱଭାବେ କୃଷପାଣି
ମଙ୍ଗଳ ସ୍ୱରେ ବେଦ ଧ୍ୱନି
କହନ୍ତି ବଳି ମନ ଘେନି
ତିନି ଭୁବନ କମ୍ପେ ନାଦେ
ସୁଜନେ ଚିନ୍ତି ବିଷ୍ଣୁ-ପାଦେ
କହଇ ବିପ୍ର ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ



## ଊନବିଂଶୋଽଧ୍ୟାୟଃ ।

ଊନବିଂଶେ ତୁ ହରଣା ଯାଚତେ ଚ ପଦତ୍ରୟେ ।
ପ୍ରତଶ୍ରୁତେ ଚ ବଳନା ଜାନନ୍ ଭୃଗୁରବାରୟତ୍ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ଇତ ବୈରୋଚନେର୍ବାକ୍ୟଂ ଧର୍ମ୍ମଯୁକ୍ତଂ ସ ସୁନୃତମ୍ ।
ନିଶମ୍ୟ ଭଗବାନ୍ ପ୍ରୀତଃ ପ୍ରତନନ୍ଦ୍ୟେଦମବ୍ରବୀତ୍ । ୧ ।

ଶ୍ରୀ ଭଗବାନୁବାଚ ।

ବଚସ୍ତବୈତଜ୍ଜନଦେବ ସୁନୃତଂ କୁଳୋଚିତଂ ଧର୍ମ୍ମଯୁତଂ ଯଶସ୍କରମ୍ ।
ଯସ୍ୟ ପ୍ରମାଣଂ ଭୃଗବଃ ସାମ୍ପରାୟେ ପିତାମହଃ କୁଳବୃଦ୍ଧଃ ପ୍ରଶାନ୍ତଃ । ୨ ।

---

### ତ୍ରିପାଦ ଭୂମିଦାନ ପ୍ରାର୍ଥନା ଓ ଶୁକ୍ରଙ୍କର ବଳିଙ୍କୁ ଉପଦେଶ ।

ଊନବିଂଶ ଅଧ୍ୟାୟରେ ମହାରାଜ ବଳିଙ୍କ୍ ମାୟା ବାମନ ତ୍ରିପାଦ ଭୂମି ମାଗିଥିଲେ । ବଳି ଦେବାକୁ ସମ୍ମତ ହେବାର ଜାଣିପାରି ଦୈତ୍ୟଗୁରୁ ଶୁକ୍ର ମନା କରିବା ପ୍ରସଙ୍ଗ କଥିତ ହୋଇଅଛି ॥ • ॥

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ବିରୋଚନ ପୁତ୍ର ବଳିଙ୍କର ଏପରି ଧର୍ମ ଯୁକ୍ତ ସତ୍ୟ ବାକ୍ୟ ଶ୍ରବଣ କରି ଭଗବାନ୍ ବାମନ ପ୍ରୀତ ହେଲେ ଏବଂ ପ୍ରଶଂସା କରି ଏହିପରି କହିଲେ ।୧।

ଶ୍ରୀ ଭଗବାନ୍ କହିଲେ :—

ହେ ରାଜନ୍ ! ଏହି ପ୍ରୀତକର ଧର୍ମଯୁକ୍ତ ଯଶସ୍କର ବାକ୍ୟ ତୁମ୍ଭର କୁଳୋଚିତ ହୋଇଅଛି । ତୁମ୍ଭର ପାରଲୌକିକ ଧର୍ମ ବିଷୟରେ ଭୃଗୁ ବଂଶୀୟ ବ୍ରାହ୍ମଣଗଣ ଏବଂ ତୁମ୍ଭର କୁଳବୃଦ୍ଧ ପିତାମହ ପ୍ରଶାନ୍ତଚେତା ପ୍ରହ୍ଲାଦ ଦୃଷ୍ଟାନ୍ତ ସ୍ଥଳ ।୨।

---

ଊନବିଂଶତରେ ବାମନ, ତ୍ରିପାଦ ଭୂମିମାଗି ଦାନ ॥
ବଳି ବୋଇଲେ ଦେବ ଦାନ, ଶୁକ୍ର ଯେ କଲେକ ବାରଣ ॥

ଶ୍ରୀଶୁକଉବାଚ—

ଏମନ୍ତେ ବଳି ବାକ୍ୟ ଶୁଣି
ସନ୍ତୋଷ ପ୍ରଭୁ ପଦ୍ମପାଣି
ବଳି ବାକ୍ୟକୁ ସ୍ତୁତ କରି
ବଟୁ ବାମନ ରୂପ ଧରି

ବୋଇଲେ ମଧୁର ବଚନ
ଯେ ବାକ୍ୟେ ମୋହେ ପ୍ରାଣି-ମନ

ଶ୍ରୀଭଗବାନୁବାଚ—

ହେ ବଳିରାଜା ତୁହି ! ଧନ୍ୟ
କୁଳ ଉଚିତ ତୋ ବଚନ

ଧର୍ମ୍ମ ସଂଯୁତ ଯଶସ୍କର
ଅର୍ଥୀ ଚକୋର ସୁଧାକର
ଯାହାର ବଂଶେ ସୁସ୍ନେହିତ
ଭୃଗୁ ଯେ ପଦ୍ମ-ଯୋନି ସୁତ
ପ୍ରହ୍ଲାଦ ଯାର ପିତାମହ
ବିଷ୍ଣୁ ଭଜନେ ମହାଶୟ ।୧,୨।

ନ ହ୍ୟେତସ୍ମିନ୍ କୁଳେ କଶ୍ଚିନ୍ନିଃସତ୍ତ୍ୱଃ କୃପଣଃ ପୁମାନ୍ ।
ପ୍ରତ୍ୟାଖ୍ୟାତା ପ୍ରତିଶ୍ରୁତ୍ୟ ଯୋ ବାଦାତା ଦ୍ୱିଜାତୟେ । ୩ ।
ନ ସନ୍ତି ତୀର୍ଥେ ଯୁଧି ଚାର୍ଥିନାର୍ଥିତାଃ ପରାଙ୍‌ମୁଖା ଯେ ତ୍ୱମନସ୍ୱିନୋ ନୃପ ।
ଯୁଷ୍ମତ୍‌କୁଲେ ଯଦ୍ୟଶସାମଲେନ ପ୍ରହ୍ଲାଦ ଆଭାତି ଯଥୋଡୁପଃ ଖେ । ୪ ।
ଯତୋ ଜାତୋ ହିରଣ୍ୟାକ୍ଷଶ୍ଚରନ୍ନେକ ଇମାଂ ମହୀମ୍ ।
ପ୍ରତିବୀରଂ ଦିଗ୍ୱିଜୟେ ନାବିନ୍ଦତ ଗଦାୟୁଧଃ । ୫ ।
ଯଂ ବିନିର୍ଜିତ୍ୟ କୃଚ୍ଛ୍ରେଣ ବିଷ୍ଣୁଃ କ୍ଷ୍ମୋଦ୍ଧାର ଆଗତମ୍ ।
ଆତ୍ମାନଂ ଜୟିନଂ ମେନେ ତଦ୍ୱୀର୍ଯ୍ୟଂ ଭୂର୍ଯ୍ୟନୁସ୍ମରନ୍ । ୬ ।

---

ହେ ରାଜନ୍ ! ତୁମ୍ଭ ବଂଶରେ କୌଣସି ନିର୍ଦ୍ଧନ ଅଥବା କୃପଣବ୍ୟକ୍ତି ଜନ୍ମଗ୍ରହଣ କରିନାହିଁ, ଯେଉଁ ବ୍ୟକ୍ତି ପ୍ରତିଶ୍ରୁତ ହୋଇ ପ୍ରତ୍ୟାଖ୍ୟ ନ କରିଅଛି କିମ୍ବା ଅଙ୍ଗୀକାର କରି ବ୍ରାହ୍ମଣଙ୍କୁ ଦାନକରିନାହିଁ ।୩

ହେ ରାଜନ୍ ! ତୁମ୍ଭବଂଶରେ ଏପରି ଅଜ୍ଞ ବ୍ୟକ୍ତି କେବେ ହେଲେ ଜନ୍ମଗ୍ରହଣ କରିନାହିଁ ଯେ ଯୁଦ୍ଧ ଅବା ଦାନକାଳରେ ଯାଚକ ବ୍ରାହ୍ମଣଙ୍କୁ ଦାନ ନ କରି ବିମୁଖ ହୋଇଅଛି । ଏହି କୁଳରେ ନିର୍ମଳଯଶା ପ୍ରହ୍ଲାଦ ଆକାଶରେ ପୂର୍ଣ୍ଣଚନ୍ଦ୍ର ତୁଲ୍ୟ ଶୋଭା ପାଉଅଛନ୍ତି ।୪।

ତୁମ୍ଭର ବିଖ୍ୟାତ ବଂଶରେ ମହାବୀର ହିରଣାକ୍ଷ ଜନ୍ମଗ୍ରହଣ କରି ଗଦାଧାରଣ ପୂର୍ବକ ଦିଗ୍‌ବିଜୟ ଲାଗି ଏକାକୀ ଏହିମହୀମଣ୍ଡଳରେ ଭ୍ରମଣ କରିଥିଲେ, ତଥାପି କୌଣସିଠାରେ ପ୍ରତିଯୋଦ୍ଧା ପାଇଲେନାହିଁ ।୫

ଭଗବାନ୍ ବିଷ୍ଣୁ ବରାହ ମୂର୍ତ୍ତିଧାରଣ କରି ପୃଥିବୀ ଉଦ୍ଧାର କଲାବେଳେ ଏହି ବୀର ହିରଣାକ୍ଷ ସେଠାରେ ଉପସ୍ଥିତ ହୋଇଥିଲେ । ବିଷ୍ଣୁ ଅତି କଷ୍ଟରେ ତାହାଙ୍କୁ ପରାଜିତ କରିଥିଲେ, ତାଙ୍କର ଅସୀମ ବୀର୍ଯ୍ୟ ପୁନଃ ପୁନଃ ସ୍ମରଣ କରି ନିଜକୁ ଜୟୀ ବୋଲି ମନେ କରିଥିଲେ ।୬।

---

ଏ କୁଳେ ନାହିଁ ବଳହୀନ
ନିସତ୍ତ୍ୱ କୃପଣ ଜୀବନ
ବ୍ରାହ୍ମଣେ ଦାନ ତୁମ୍ଭ କୁଳେ
ପ୍ରସିଦ୍ଧ ଭୁବନ ମଣ୍ଡଳେ । ୩ ।
ଯାହାର ବଂଶେ ରଣ ତୀର୍ଥ
ସଂଗ୍ରାମେ ନୁହନ୍ତି ନିସତ
ଅତିଥି ଆଗମନେ ସୁଖୀ
ଦୁଃଖିଜନଙ୍କ ଦୁଃଖେ ଦୁଃଖୀ
ନିର୍ମଳ ଯଶ ଯାର କୁଳେ
ବିଖ୍ୟାତ ଭୁବନ ମଣ୍ଡଳେ
ପ୍ରହ୍ଲାଦ ଜାତ ଯେଉଁ କୁଳେ
ଯେସନ୍ତେ ଶଶାଙ୍କ ତାରାମେଳେ ।୪

ଯେ ବଂଶେ ହିରଣାକ୍ଷ ବୀର
ଦେବ ଦାନବେ ଅଗୋଚର
ହିରଣାକ୍ଷ ଯେ ଗଦାପାଣି
ଉଦ୍ଦଣ୍ଡେ ଭ୍ରମଇ ଧରଣୀ
ତାହାର ସଙ୍ଗେ ଗଦାଯୁଦ୍ଧେ
କେହି ନ ମିଳେ ରଣ ମଧ୍ୟେ ।୫
ବରାହ ରୂପେ ପୂର୍ବେ ହରି
ଦନ୍ତାଗ୍ରେ ଧରଣୀ ଉଦ୍ଧରି
ଯାହାଙ୍କ ଆଗମନ କାଳେ
ସେ ବୀର ଥିଲା ମହାତଳେ
ବରୁଣ ପୁରେ ଦଇତାରି
ଦନ୍ତାଗ୍ରେ ହିରଣ୍ୟ ବିଦାରି

ଅନେକ ମାୟା ଯୁଦ୍ଧ କଲା
ବିଷ୍ଣୁର ଗଦାଘାତେ ମଲା
ତାର ମହିମା ଚକ୍ରପାଣି
ଆନନ୍ଦେ ରୁଦ୍ର ଆଗେ ଭଣି
ସେ ବିଷ୍ଣୁ ହିରଣାକ୍ଷ ମାରି
ଦନ୍ତାଗ୍ରେ ଧରଣୀ ଉଦ୍ଧରି
ଆତ୍ମାକୁ ବୀର ଜୟୀ ମଣି
ସକଳ ସଭାମଧ୍ୟେ ଭଣି । ୬ ।

ନିଶମ୍ୟ ତଦ୍ବଧଂ ଭ୍ରାତା ହିରଣ୍ୟକଶିପୁଃ ପୁରା ।
ହନ୍ତୁଂ ଭ୍ରାତୃହଣଂ କ୍ରୁଦ୍ଧୋ ଜଗାମ ନିଳୟଂ ହରେଃ ।୭।
ତମାୟାନ୍ତଂ ସମାଲୋକ୍ୟ ଶୂଳପାଣିଂ କୃତାନ୍ତବତ୍ ।
ଚିନ୍ତୟାମାସ କାଳୋଜ୍ଞୋ ବିଷ୍ଣୁର୍ମାୟାବିନାଂ ବରଃ । ୮ ।
ଯତୋ ଯତୋଽହଂ ତତ୍ରାସୌ ମୃତ୍ୟୁଃ ପ୍ରାଣଭୃତାମିବ ।
ଅତୋଽହମସ୍ୟ ହୃଦୟଂ ପ୍ରବେକ୍ଷ୍ୟାମି ପରାଗ୍ଦୃଶଃ । ୯ ।
ଏବଂ ସ ନିଶ୍ଚିତ୍ୟ ରିପୋଃ ଶରୀରମାଧାବତୋ ନିର୍ବିବିଶେଽସୁରେନ୍ଦ୍ର ।
ଶ୍ୱାସାନିଲାନ୍ତର୍ହିତସୂକ୍ଷ୍ମଦେହସ୍ତତ୍ ପ୍ରାଣରନ୍ଧ୍ରେଣ ବିବିଗ୍ନଚେତାଃ । ୧୦ ।

---

ହିରଣ୍ୟାକ୍ଷର ଭ୍ରାତା ହିରଣ୍ୟକଶିପୁ ଭ୍ରାତାର ବଧ ବୃତ୍ତାନ୍ତ ଶ୍ରବଣ କରି ଭ୍ରାତୃହନ୍ତାର ପ୍ରାଣବଧ ନିମିତ୍ତ କ୍ରୁଦ୍ଧ ହୋଇ ହରିଙ୍କର ଆବାସ ସ୍ଥଳକୁ ଗମନ କରିଥିଲେ ।୭।

ମାୟାବିମାନଙ୍କ ମଧ୍ୟରେ ଶ୍ରେଷ୍ଠ ମାୟାବୀ କାଳଜ୍ଞ ଶ୍ରୀହରି ଶୂଳହସ୍ତ ଏହି ଅସୁରକୁ ଯମତୁଲ୍ୟ ଆସିବାର ଦେଖି ଏପରି ଚିନ୍ତା କରିଥିଲେ ।୮।

ଯେଉଁଠାକୁ ଯେଉଁଠାକୁ ମୁଁ ଯାଏ ସେହି ସେହି ସ୍ଥାନରେ ପ୍ରାଣଧାରିମାନଙ୍କର ମୃତ୍ୟୁତୁଲ୍ୟ ଏହି ଦାନବ ଉପସ୍ଥିତ ହୁଏ । ସୁତରାଂ ମୁଁ ଏହି ବହିର୍ଦୃଷ୍ଟି ସମ୍ପନ୍ନ ଦାନବ ହୃଦୟରେ ପ୍ରବେଶ କରିବି ।୯।

ହେ ରାଜନ୍ ! ଭଗବାନ୍ ଏହିପରି ନିଶ୍ଚୟ କରି ଧାବମାନ ସେହି ରିପୁର ନାସାରନ୍ଧ୍ର ବାଟେ ଶରୀର ମଧ୍ୟରେ ପ୍ରବେଶ କରିଥିଲେ । ତଥାପି ସେହି ସୁରେନ୍ଦ୍ର ଶତ୍ରୁର ଶ୍ୱାସବାୟୁରେ ସୂକ୍ଷ୍ମଦେହ ଅନ୍ତର୍ହିତ କରିଥିଲେ ଏବଂ ଉଦ୍‌ବିଗ୍ନ ଚିତ୍ତ ହୋଇଥିଲେ ।୧୦।

---

ତାହାର ବଧ ଶୁଣି ରଣେ
ହିରଣ୍ୟକଶିପୁ ତକ୍ଷଣେ
ଭ୍ରାତା ମରଣେ କ୍ରୋଧକରି
ଉଦଣ୍ଡ ଗଦା କରେ ଧରି
ଅତି କୋପିତ ଖେଦମନେ
ମିଳିଲା ବିଷ୍ଣୁର ଭୁବନେ । ୭ ।
ଗୋବିନ୍ଦ ତାର ଆଗମନ
ଦେଖିଣ ତେଜିଲେ ଆସନ
କୃତାନ୍ତ ପ୍ରାୟ ଗଦା ତୋଳି
ଧାଇଁଲା କୋପେ ମହାବଳୀ ।୮।
ସେ ବିଷ୍ଣୁ ମାୟା ଯୋଗବଳେ
ଅଦ୍ଭୁତ ଦେଖି ପଳାଇଲେ
ଲୀଳା ବିହାରେ ବନମାଳୀ
ଦେଖି ବିସ୍ମରେ ମହାବଳୀ

ଏ ମୋର ମାରି ଅଛି ଭାଇ
ଅସୁର ମନେ କ୍ରୋଧ ବହି
ଏହାକୁ ପ୍ରାଣେ ନାଶ କଲେ
ତେବେ ଜୀବନେ ଥିବି ଭଲେ
ଏମନ୍ତେ ଚିନ୍ତି ଗଦା ଧରି
ପଛେ ଧାଇଁଲା ରୋଷଭରି
ବିଷ୍ଣୁ ପଳାନ୍ତି ତାଙ୍କୁ ଦେଖି
ସମ୍ମୁଖେ ଭୁବନ ଉପେକ୍ଷି
ଯେତେଣେ ପଳାନ୍ତି ନରହରି
ପଛେ ଅସୁର ଗଦା ଧରି
ସେ ବିଷ୍ଣୁ କରନ୍ତି ବିଚାର
ଏହାର ଅକ୍ଷୟ ଶରୀର
ଏହାକୁ ମାୟା ମୁଁ ନ କଲେ
କେମନ୍ତେ ପୁରେ ଥିବି ଭଲେ

ଏହାର ହୃଦୟେ ମୁଁ ପଶି
ମାୟାରେ ମନକୁ ଆକର୍ଷି
ଯେମନ୍ତେ ମୋତେ ଏ ନ ପାଇ
ନିର୍ଭୟେ ନିଜପୁରେ ଯାଇଁ
ମୋର ବିଷୟେ କରି କ୍ରୋଧ
ଅନ୍ତେ ହୋଇବ ପ୍ରାଣେ ବଧ
ଏମନ୍ତ ବିଷ୍ଣୁ ବିଚାରିଲେ
ମାୟାରେ ଅନ୍ତର ହୋଇଲେ
ତାର ଶରୀର ପ୍ରାଣ ରନ୍ଧ୍ରେ
ବିଷ୍ଣୁ ପଶିଲେ ହୃଦ ମଧ୍ୟେ ।୯,୧୦।

ସ ତନ୍ନିକେତଂ ପରିମୃଶ୍ୟ ଶୂନ୍ୟମପଶ୍ୟମାନଃ କୁପିତୋ ନନାଦ ।
କ୍ଷ୍ମାଂ ଦ୍ୟାଂ ଦିଶଃ ଖଂ ବିବରାନ୍ ସମୁଦ୍ରାନ୍ ବିଷ୍ଣୁଂ ବିଚିନ୍ୱନ୍ ନ ଦଦର୍ଶ ବୀରଃ ।୧୧
ଅପଶ୍ୟନ୍ନିତି ହୋବାଚ ମୟାନ୍ୱିଷ୍ଟମିଦଂ ଜଗତ୍ ।
ଭ୍ରାତୃହା ମେ ଗତୋ ନୂନଂ ଯତୋ ନାବର୍ତ୍ତତେ ପୁମାନ୍ ।୧୨।
ବୈରାନୁବନ୍ଧ ଏତାବାନାମୃତ୍ୟୋରିହ ଦେହିନାମ୍ ।
ଅଜ୍ଞାନପ୍ରଭବୋ ମନ୍ୟୁରହଂମାନୋପବୃଂହିତଃ । ୧୩ ।
ପିତା ପ୍ରହ୍ଲାଦପୁତ୍ରସ୍ତେ ତଦ୍ୱିଦ୍ୱାନ୍ ଦ୍ୱିଜବତ୍ସଲଃ ।
ସ୍ୱମାୟୁର୍ଦ୍ୱିଜଲିଙ୍ଗେଭ୍ୟୋ ଦେବେଭ୍ୟୋଽଦାତ୍ ସ ଯାଚିତଃ । ୧୪ ।

---

ସେହି ବୀର ହିରଣ୍ୟକଶିପୁ ବିଷ୍ଣୁଙ୍କ ଗୃହ ଶୂନ୍ୟ ଦେଖି ସର୍ବତ୍ର ଅନ୍ୱେଷଣ କରି ବିଷ୍ଣୁଙ୍କୁ ନ ପାଇ କ୍ରୋଧରେ ସିଂହନାଦ କରିଥିଲେ । ତଦନନ୍ତର ପୃଥିବୀ, ସ୍ୱର୍ଗ, ଆକାଶ, ଦିକ୍‌ସମୂହ, ବିବର, ସାଗର ପ୍ରଭୃତି ସର୍ବତ୍ର ଅନ୍ୱେଷଣ କରି ମଧ୍ୟ ବିଷ୍ଣୁଙ୍କୁ ଦେଖି ପାରିଲେ ନାହିଁ ।୧୧।

ବିଷ୍ଣୁଙ୍କୁ ନ ଦେଖି ପାରି ହିରଣ୍ୟକଶିପୁ କହିଲେ, "ମୁଁ ସମଗ୍ର ଜଗତ୍ର ଅନ୍ୱେଷଣ କରି ସୁଦ୍ଧା ମୋର ଭ୍ରାତୃହନ୍ତା ବିଷ୍ଣୁଙ୍କୁ କୌଣସିଠାରେ ପାଇଲି ନାହିଁ । ମୋର ମନେ ହୁଏ ବିଷ୍ଣୁ ହନ୍ତା ସେହି ସ୍ଥାନକୁ ଯାଇଅଛି, ଯେଉଁ ସ୍ଥାନକୁ ଗଲେ ଜୀବ ଆଉ ଫେରିଆସେ ନାହିଁ ।୧୨।

ହେ ରାଜନ୍ ! ଏହି ସଂସାରରେ ଦେହଧାରୀମାନଙ୍କର ଶତ୍ରୁତ୍ୱ ମୃତ୍ୟୁକାଳ ପର୍ଯ୍ୟନ୍ତ ବିଦ୍ୟମାନ ଥାଏ, ଯେହେତୁ ଅଜ୍ଞାନରୁ ଉତ୍ପନ୍ନ କ୍ରୋଧ ଅଭିମାନ ଦ୍ୱାରା ପରିବର୍ଦ୍ଧିତ ହୋଇଥାଏ ।୧୩।

ସେହି ବ୍ରାହ୍ମଣ ପ୍ରିୟ ପ୍ରହ୍ଲାଦ ପୁତ୍ର ତୁମ୍ଭର ପିତା ବିରୋଚନ ବ୍ରାହ୍ମଣମାନେ ଦେବ କାର୍ଯ୍ୟରେ ଆସି ଅଛନ୍ତି ଜାଣି ବ୍ରାହ୍ମଣମାନଙ୍କ ପ୍ରାର୍ଥନା ପୂରଣ କରି ଦେବତାମାନଙ୍କୁ ନିଜର ପରମାୟୁ ପ୍ରଦାନ କରିଥିଲେ ।୧୪।

---

ବିଷ୍ଣୁ ନ ଦେଖି ମନ କ୍ରୋଧେ
ଗର୍ଜିଲା ଭୟଙ୍କର ନାଦେ
ଶବଦେ ଭୁବନ କମ୍ପିଲା
ସମୁଦ୍ର କୂଳକୁ ଅଇଲା
ସେ ବୀର ବିଚାରଇ ମନେ
ଏତ ଲୁଚିଲା ମନଛନେ
ନିଶ୍ଚୟ ବୈକୁଣ୍ଠକୁ ଗଲା
ଏମନ୍ତ ବୋଲି ବାହୁଡ଼ିଲା
ପଥେ ଚଳନ୍ତେ ମନେ ଭାବ
ବୋଲଇ ନିଶ୍ଚୟ ମାରିବ

ସେ ମୋର ଭ୍ରାତୃ ହତ୍ୟାକାରୀ
ଏମନ୍ତେ ମନେ କ୍ରୋଧ ଧରି
ଜୀବନ ଥିବା ପରିଯନ୍ତେ
ବିଷ୍ଣୁ ନ ଭଜେ କୋପଚିତ୍ତେ
ହରିରେ ତୁଲେ ବାଦ କଲା
ଅନ୍ତେ ସେ ବିଷ୍ଣୁଙ୍କୁ ପାଇଲା ।୧୧,୧୨
ତାର ତନୟ ପ୍ରହଲାଦ
ନିତ୍ୟେ ସେବିଲା ବିଷ୍ଣୁ ପାଦ
ବିଷ୍ଣୁ-ଭକତ ମହାଶୟ
ଦେବ-ଦାନବ ସେ ଦୁର୍ଜ୍ଜୟ

ତାହାର ବଂଶେ ତୁହି ଜାତ
ସ୍ୱଭାବେ ଅଟୁ ଭାଗ୍ୟବନ୍ତ
ବ୍ରହ୍ମାଣ୍ଡେ ମହିମା ତୋହର
ଏ କୁଳେ ଅତି ଯଶସ୍କର
ତିନି ଭୁବନେ ତୁ ଯେ ରାଜା
ସର୍ବେ କରନ୍ତି ପାଦ ପୂଜା
ଏଣୁ ତେ ହରି ହସ୍ତେ ମୁହିଁ
ନିବାସ ଅର୍ଥେ କିଛି ଭୁଇଁ
ମୋହର ପଦେ ପାଦ ତିନି
ମାଗିଣ ଦିଅ ତୁ ମେଦିନୀ

ଭବାନାଚରତାନ୍ ଧର୍ମାନାସ୍ଥିତୋ ଗୃହମେଧିଭିଃ ।
ବ୍ରାହ୍ମଣୈଃ ପୂର୍ବଜୈଃ ଶୂରୈରନ୍ୟୈଶ୍ଚୋଦ୍ଦାମକୀର୍ତ୍ତିଭିଃ ।୧୫।
ତସ୍ମାତ୍ ତ୍ୱତ୍ତୋ ମହୀମୀଷଦ୍‌ବୃଣେଽହଂ ବରଦର୍ଷଭାତ୍ ।
ପଦାନି ତ୍ରୀଣି ଦୈତ୍ୟେନ୍ଦ୍ର ସମ୍ମିତାନି ପଦା ମମ ।୧୬।
ନାନ୍ୟତ୍ ତେ କାମୟେ ରାଜନ୍ ବଦାନ୍ୟାଜ୍ଜଗଦୀଶ୍ୱରାତ୍ ।
ନୈନଃ ପ୍ରାପ୍ନୋତି ବୈ ବିଦ୍ୱାନ୍ ଯାବଦର୍ଥପ୍ରତିଗ୍ରହଃ ।୧୭।

ଶ୍ରୀ ବଳିରୁବାଚ ।

ଅହୋ ବ୍ରାହ୍ମଣଦାୟାଦ ବାଚସ୍ତେ ବୃଦ୍ଧସମ୍ମତାଃ ।
ତ୍ୱଂ ବାଲୋ ବାଲିଶମତିଃ ସ୍ୱାର୍ଥଂ ପ୍ରତ୍ୟବୁଧୋ ଯଥା ।୧୮।
ମାଂ ବଚୋଭିଃ ସମାରାଧ୍ୟ ଲୋକାନାମେକମୀଶ୍ୱରମ୍ ।
ପଦତ୍ରୟଂ ବୃଣୀତେ ଯୋଽବୁଦ୍ଧିମାନ୍ ଦ୍ୱୀପଦାଶୁଷମ୍ ।୧୯।

---

ହେ ନୃପ ! ଗୃହମେଧୀ ବ୍ରାହ୍ମଣଗଣ ଏବଂ ଆପଣଙ୍କର ପୂର୍ବ ପୁରୁଷଗଣ ଓ ଅନ୍ୟାନ୍ୟ ବିପୁଳ କୀର୍ତ୍ତିଶାଳୀ ମହାତ୍ମାର ଗଣଙ୍କ ଆଚରିତ ଧର୍ମ ଆପଣ ଅବଲମ୍ବନ କରିଅଛନ୍ତି ।୧୫।

ହେ ଦାନବେନ୍ଦ୍ର ! ବରଦାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଆପଣଙ୍କ ନିକଟରୁ ମୁଁ ମୋର ପାଦ ପରିମିତ ତ୍ରିପାଦ ଭୂମିମାତ୍ର ପ୍ରାର୍ଥନା କରୁଅଛି ।୧୬।

ହେ ରାଜନ୍ ! ବଦାନ୍ୟ ହେତୁରୁ କୀର୍ତ୍ତିଶାଳୀ ରାଜାଧିରାଜ ତୁମ୍ଭ ନିକଟରୁ ତ୍ରିପାଦ ଭୂମି ବ୍ୟତୀତ ମୁଁ ଅନ୍ୟ କିଛି ପ୍ରାର୍ଥନା କରୁନାହିଁ । ଯେତିକି ଅର୍ଥ ପ୍ରୟୋଜନ ସେତିକି ମାତ୍ର ଗ୍ରହଣ କଲେ ବିଦ୍ୱାନ୍ ବ୍ୟକ୍ତି ପାପଯୁକ୍ତ ହୁଏ ନାହିଁ ।୧୭।

ଶ୍ରୀ ବଳି କହିଲେ ।—ହେ ବ୍ରାହ୍ମଣ ତନୟ ! ତୁମ୍ଭର ବାକ୍ୟ ବୃଦ୍ଧ ସମ୍ମତ ମାତ୍ର ତୁମ୍ଭେ ବାଳକ । ତୁମ୍ଭର ବୁଦ୍ଧି ଅଜ୍ଞାନ ତୁଲ୍ୟ, ସ୍ୱାର୍ଥ ବିଷୟରେ ତୁମ୍ଭର କୌଣସି ଜ୍ଞାନନାହିଁ । ୧୮ ।

ତ୍ରିଲୋକର ଏକମାତ୍ର ଈଶ୍ୱର ମୁଁ ଗୋଟିଏ ଦ୍ୱୀପ ପର୍ଯ୍ୟନ୍ତ ତୁମ୍ଭଙ୍କୁ ଦାନକରି ପାରିଥାନ୍ତି କିନ୍ତୁ ତୁମ୍ଭେ ନିର୍ବୋଧ ତୁଲ୍ୟ ମୋତେ ତ୍ରିପାଦ ମାତ୍ର ଭୂମି ପ୍ରାର୍ଥନା କଲ ? । ୧୯ ।

---

ଦାରା ତନୟ ମୋର ନାହିଁ
କେବଳ ବାସ୍ତୁ ମୁଁ ଇଚ୍ଛଇଁ
ଏ ଭୂମି ଦାନ ଦିଅ ମୋତେ
ଯେମନ୍ତେ ରହିବି ନିଶ୍ଚିନ୍ତେ
ତୁ ଅଟୁ ଜଗତେ ଈଶ୍ୱର
ଅନ୍ୟେ କି ପ୍ରୟୋଜନ ମୋର
ଏମନ୍ତେ ବିଷ୍ଣୁ-ମୁଖୁଁ ଶୁଣି
ବୋଲେଦନୁଜକୀରମଣି ।୧୩-୧୭

ବଳିରୁବାଚ—

ହେ ବିପ୍ର ! ଶୁଣ ମୋ ଉତ୍ତର
ତୁ ଅତି ବାଳକ ଶରୀର
ବୃଦ୍ଧ ସମାନେ କଥା କହୁ
ବିଷ୍ଣୟରେ ବାଳକ ତୁ ନୋହୁ
ସ୍ୱଭାବେ ବାଳ ବୁଦ୍ଧି ଘେନି
ନ ଜାଣୁ ଆତ୍ମା ଲଭ୍ୟ-ହାନି

ଅଜ୍ଞାନୀ ପ୍ରାୟେ କରୁ ଉକ୍ତି
ଏ ତୋର ବିପରୀତ ଗତି ।୧୮।
ମୁଁ ଯେ ତ୍ରିଲୋକେ ଏକେ ରାଜା
ସର୍ବେ କରନ୍ତି ପାଦପୂଜା
ତ୍ରି-ପାଦ ଭୂମି ମାଗୁ ମୋତେ
ଏ ଦାନ ଦେବି ମୁଁ କେମନ୍ତେ
ଲୋକେ କରିବେ ଉପହାସ
ଏ କଥା ନୁହଇ ବିଶ୍ୱାସ ।୧୯।

ନ ପୁମାନ୍ ମାମୁପବ୍ରଜ୍ୟ ଭୂୟୋ ଯାଚିତୁମର୍ହତି ।
ତସ୍ମାଦ୍‌ବୃତ୍ତିକରୀଂ ଭୂମିଂ ବଟୋ କାମଂ ପ୍ରତୀଚ୍ଛ ମେ । ୨୦ ।
ଶ୍ରୀ ଭଗବାନୁବାଚ । ଯାବନ୍ତୋ ବିଷୟାଃ ପ୍ରେଷ୍ଠାସ୍ତ୍ରିଲୋକ୍ୟାମଜିତେନ୍ଦ୍ରିୟମ୍ ।
ନ ଶକ୍ନୁବନ୍ତି ତେ ସର୍ବେ ପ୍ରତିପୂରୟିତୁଂ ନୃପ । ୨୧ ।
ତ୍ରିଭିଃ କ୍ରମୈରସନ୍ତୁଷ୍ଟୋ ଦ୍ୱୀପେନାପି ନ ପୂର୍ଯ୍ୟତେ ।
ନବବର୍ଷସମେତେନ ସପ୍ତଦ୍ୱୀପବରେଚ୍ଛୟା । ୨୨ ।
ସପ୍ତଦ୍ୱୀପାଧିପତୟୋ ନୃପା ବୈଣ୍ୟଗୟାଦୟଃ ।
ଅର୍ଥୈଃ କାମୈର୍ଗତା ନାନ୍ତଂ ତୃଷ୍ଣାୟା ଇତି ନଃ ଶ୍ରୁତମ୍ ।୨୩।
ଯଦୃଚ୍ଛୟୋପପନ୍ନେନ ସନ୍ତୁଷ୍ଟୋ ବର୍ତ୍ତତେ ସୁଖମ୍ ।
ନାସନ୍ତୁଷ୍ଟସ୍ତ୍ରିଭିର୍ଲୋକୈରଜିତାତ୍ମୋପସାଦିତୈଃ । ୨୪ ।

---

ହେ ବ୍ରାହ୍ମଣ ! ମନୁଷ୍ୟମାନେ ମୋ ନିକଟରୁ ଦାନ ଗ୍ରହଣ କରି କୃତାର୍ଥ ହୋଇଅଛନ୍ତି । ସେମାନଙ୍କୁ ପୁନର୍ବାର ଅନ୍ୟତ୍ର ପ୍ରାର୍ଥନା କରିବାକୁ ଯିବାପାଇଁ ପଡ଼ିନାହିଁ । ସୁତରାଂ ତୁମ୍ଭେ ଜୀବିକା ଉପାର୍ଜ୍ଜନ ଭୂମି ପ୍ରାର୍ଥନା କର ।୨୦।

ଶ୍ରୀଭଗବାନ୍ କହିଲେ :—ହେ ନୃପ ! ତ୍ରିଭୁବନରେ ଯେତେ ପ୍ରକାର ପ୍ରିୟତମ ବିଷୟ ଅଛି ସେ ସମସ୍ତ ଅଜିତେନ୍ଦ୍ରିୟ ପୁରୁଷର କାମନା ପୂରଣ କରି ନ ପାରେ ।୨୧।

ତ୍ରିପାଦ ଭୂମିରେ ଯେ ସନ୍ତୁଷ୍ଟ ନୁହେଁ ତାଙ୍କୁ ନବବର୍ଷ ସହିତ ଗୋଟିଏ ଦ୍ୱୀପ ପ୍ରଦାନ କଲେ ମଧ୍ୟ ସେ ସନ୍ତୁଷ୍ଟ ହେବନାହିଁ, ସେ ପୁଣି ଆହୁରି ସପ୍ତଦ୍ୱୀପ ଲାଭ ପାଇଁ ଆକାଙ୍କ୍ଷା କରିବ । ୨୨ ।

ସପ୍ତଦ୍ୱୀପାଧିପତି ହୋଇ ମଧ୍ୟ ବେଣପୁତ୍ର ପୃଥୁ ଓ ଗୟ ପ୍ରଭୃତି ରାଜାମାନଙ୍କର ତୃଷ୍ଣାର ଶେଷ ହୋଇ ନ ଥିଲା । ଏ କଥା ଆମ୍ଭେମାନେ ଶୁଣିଅଛୁଁ । ୨୩ ।

ଯେଉଁ ବ୍ୟକ୍ତି ଯାହା ମିଳିଲା ତହିଁରେ ସନ୍ତୁଷ୍ଟ, ସେ ଯଥାର୍ଥରେ ସୁଖୀ । ଅସନ୍ତୁଷ୍ଟ ଓ ଅଜିତେନ୍ଦ୍ରିୟ ବ୍ୟକ୍ତି ତ୍ରିଭୁବନ ଲାଭ କଲେ ମଧ୍ୟ ସୁଖୀ ହୋଇ ନ ପାରେ ।୨୪।

---

ଯେ ବିପ୍ର ମୋର ଦାନ ନେବ
ସେ କାହିଁ ଆନକୁ ମାଗିବ
ଏଣୁ ବହୁତ ବୃତ୍ତି-କର
ହେ ବିପ୍ର ମାଗ ବସୁନ୍ଧରା
ଏମନ୍ତ ବଳି ମୁଖୁ ଶୁଣି
ବଟୁ ବାମନ କହେ ପୁଣି । ୨୦ ।
ଶ୍ରୀଭଗବାନୁବାଚ—
ଶୁଣ ହୋ ବଳି ନୃପନାଥ
ଅଜିତ ଜନଙ୍କର ମତ
ସମୁଦ୍ର ଆବରଣେ ମହୀ
ଏତେ ସମ୍ପଦ ଯେବେ ହୋଇ
ତେବେହେଁ ଆଶା ନ ପୂରଇ
ଶୁଣ ନୃପତି ମନ ଦେଇ ।୨୧।
ସପତ ଦ୍ୱୀପ ଅଧିପତି
ଥିଲେ ଯେ ଅନେକ ନୃପତି
ମାନ୍ଧାତା ନାମେ ନୃପ ଆଦି
ଅସଂଖ୍ୟ ଅତୁଲ୍ୟ ସମୃଦ୍ଧି
ସେ ଅର୍ଥେ କାମେ ଯେତେ କଲେ
ତୃଷ୍ଣାର ଅନ୍ତ ନ ପାଇଲେ
।୨୨,୨୩।
ପୂର୍ବର କର୍ମ-ଫଳ ଲାଗି
ଯେ ଧନେ ଯେ ଅବା ମିଳଇ
ତେଣେ ସନ୍ତୋଷ ଚିତ୍ତ ଯାର
ସେ ପ୍ରାଣୀ ତ୍ରିଜଗତେ ସାର ।୨୪।

ପୁଂସୋଽୟଂ ସଂସୃତେର୍ହେତୁରସନ୍ତୋଷୋଽର୍ଥକାମୟୋଃ ।
ଯଦୃଚ୍ଛୟୋପପନ୍ନେନ ସନ୍ତୋଷୋ ମୁକ୍ତୟେ ସ୍ମୃତଃ । ୨୫ ।
ଯଦୃଚ୍ଛାଲାଭତୁଷ୍ଟସ୍ୟ ତେଜୋ ବିପ୍ରସ୍ୟ ବର୍ଦ୍ଧତେ ।
ତତ୍ ପ୍ରଶାମ୍ୟତ୍ୟସନ୍ତୋଷାଦମ୍ଭସେବାଶୁଶୁକ୍ଷଣିଃ । ୨୬ ।
ତସ୍ମାତ୍ ତ୍ରୀଣି ପଦାନ୍ୟେବ ବୃଣେ ତ୍ୱଦ୍‌ବରଦର୍ଷଭାତ୍ ।
ଏତାବତୈବ ସିଦ୍ଧୋଽହଂ ବିତ୍ତଂ ଯାବତ୍‌ପ୍ରୟୋଜନମ୍ । ୨୭ ।

ଶ୍ରୀ ଶୁକ ଉବାଚ ।

ଇତ୍ୟୁକ୍ତଃ ସ ହସନ୍ନାହ ବାଞ୍ଛାତଃ ପ୍ରତିଗୃହ୍ୟତାମ୍ ।
ବାମନାୟ ମହୀଂ ଦାତୁଂ ଜଗ୍ରାହ ଜଲଭାଜନମ୍ । ୨୮ ।
ବିଷ୍ଣବେ କ୍ଷ୍ମାଂ ପ୍ରଦାସ୍ୟନ୍ତମୁଶନା ଅସୁରେଶ୍ୱରମ୍ ।
ଜାନଂଶ୍ଚିକୀର୍ଷିତଂ ବିଷ୍ଣୋଃ ଶିଷ୍ୟଂ ପ୍ରାହ ବିଦାଂବରଃ ।୨୯।

ଅର୍ଥ ଓ କାମ ବିଷୟରେ ଯେ ଅସନ୍ତୁଷ୍ଟ ସଂସାର ଗମନାଗମନ କାରଣ ଏବଂ ଯଦୃଚ୍ଛା ଲବ୍ଧ ବିଷୟରେ ସନ୍ତୋଷ ହିଁ ମୁକ୍ତିର ହେତୁ ।୨୫।

ଯଦୃଚ୍ଛାକ୍ରମେ ଲବ୍ଧ ବିଷୟରେ ସନ୍ତୁଷ୍ଟ ବ୍ରାହ୍ମଣମାନଙ୍କର ତେଜ ବର୍ଦ୍ଧିତ ହୁଏ କିନ୍ତୁ ଜଳଦ୍ୱାରା ଯେପରି ଅଗ୍ନି ନିର୍ବାପିତ ହୁଏ ଅସନ୍ତୁଷ୍ଟ ହେବୁ ସେହି ତେଜ ପ୍ରଶମିତ ହୋଇ ନଷ୍ଟ ପ୍ରାପ୍ତ ହୁଏ ।୨୬।

ଅତଏବ ହେ ଦାନଶ୍ରେଷ୍ଠ । ତୁମ୍ଭ ନିକଟରେ ମୋର ତ୍ରିପାଦ ଭୂମି ମାତ୍ର ପ୍ରାର୍ଥନା, ଏତିକ ମାତ୍ର ପାଇଲେ ମୁଁ କୃତାର୍ଥ ହେବି, କାରଣ ପ୍ରୟୋଜନାନୁରୂପ ବିତ୍ତଲାଭ କଲେ ଶାନ୍ତି ହୁଏ ।୨୭।

ଶ୍ରୀ ଶୁକଦେବ କହିଲେ :—

ଭଗବାନ୍ ଏ କଥା କହନ୍ତେ, ବଳି ହସି ହସି କହିଲେ, ହେ ବ୍ରହ୍ମନ୍ । ଆପଣଙ୍କ ଇଚ୍ଛା ଅନୁସାରେ ଦାନ ଗ୍ରହଣ କରନ୍ତୁ । ଏହା କହି ବ୍ରାହ୍ମଣଙ୍କୁ ଭୂମିଦାନ ଦେବା ନିମିତ୍ତ ଜଳପାତ୍ର ଗ୍ରହଣ କରିଥିଲେ ।୨୮।

ଦୈତ୍ୟଗୁରୁ ବିଜ୍ଞ ପ୍ରବର ଶୁକ୍ରାଚାର୍ଯ୍ୟ ଭଗବାନ୍ ବିଷ୍ଣୁଙ୍କର ଅଭିପ୍ରାୟ ବୁଝିପାରି ବିଷ୍ଣୁଙ୍କୁ ଭୂମିଦାନ କରିବାକୁ ଉଦ୍ୟତ ସ୍ୱୀୟ ଶିଷ୍ୟ ବଳିଙ୍କୁ କହିଲେ ।୨୯।

ସନ୍ତୋଷେ ତେଜ ବଢେ ଭଲେ
ଘୃତେ ଅନଳ ଯେମନ୍ତେ ଜଳେ
ଯେ ଅର୍ଥ କାମେ ଅସନ୍ତୋଷ
ହେଲେ ତା ତେଜ ହୋଏ ନାଶ
ଅର୍ଜ୍ଜନେ ଅସନ୍ତୋଷ ହେଲେ
ଅଗ୍ନିକେ ପଡ଼ଇ ପାତାଳେ
ଅଗ୍ନିକି ଜଳ ବିନ୍ଦୁ ହୋଇ
ବିପ୍ରରତେଜସେଲିଭାଇ ।୨୫,୨୬।

ଏଣୁ ସମ୍ପଦେ କାର୍ଯ୍ୟ ନାହିଁ
ତ୍ରି-ପାଦ ଦିଅ ମୋତେ ମହୀ
ଏତିକି ମାତ୍ର ମୋ ଜୀବନ
ଅଧିକେ କିବା ପ୍ରୟୋଜନ ।୨୭।

ଶ୍ରୀଶୁକଉବାଚ—

ଏମନ୍ତ ବିପ୍ର ଯହୁଁ ଭଣି
ସେ ବାକ୍ୟ ଶୁଣି ବଳି ହସି
ବୋଲଇ ଧରି କୁଶ ପାଣି
ତୋ ପାଦ ପ୍ରମାଣେ ଧରଣୀ
ଦେବଇଁ ସତ୍ୟ ମୋ ବଚନ
ଏବେ ବିପ୍ର ତୋଷହୋନ୍ତେ ଘେନ ।୨୮
ଶୁକ୍ର ଯେ ରାଜା ପାଶେ ଥିଲ
ଦାନର ନିଷ୍ଠୟ ଦେଖିଲ
ଏ ବିଷ୍ଣୁ ବୋଲି ଜାଣିପାରି
ବଳକ କହେ ଆଗସରି ।୨୯।

ଶ୍ରୀ ଶୁକ ଉବାଚ ।

ଏଷ ବୈରୋଚନେ ସାକ୍ଷାଦ୍ଭଗବାନ୍ ବିଷ୍ଣୁରବ୍ୟୟଃ ।
କଶ୍ୟପାଦଦିତେର୍ଜାତୋ ଦେବାନାଂ କାର୍ଯ୍ୟସାଧକଃ ।୩୦।
ପ୍ରତିଶ୍ରୁତଂ ତ୍ୱୟୈତସ୍ମୈ ଯଦନର୍ଥମଜାନତା ।
ନ ସାଧୁ ମନ୍ୟେ ଦୈତ୍ୟାନାଂ ମହାନୁପଗତୋଽନୟଃ ।୩୧।
ଏଷ ତେ ସ୍ଥାନମୈଶ୍ୱର୍ଯ୍ୟଂ ଶ୍ରିୟଂ ତେଜୋ ଯଶଃ ଶ୍ରୁତମ୍ ।
ଦାସ୍ୟତ୍ୟାଚ୍ଛିଦ୍ୟ ଶକ୍ରାୟ ମାୟାମାଣବକୋ ହରିଃ ।୩୨।
ତ୍ରିଭିଃ କ୍ରମୈରିମାଂଲ୍ଲୋକାନ୍ ବିଶ୍ୱକାୟଃ କ୍ରମିଷ୍ୟତି ।
ସର୍ବସ୍ୱଂ ବିଷ୍ଣବେ ଦତ୍ତ୍ୱା ମୂଢ଼ ! ବର୍ତ୍ତିଷ୍ୟସେ କଥମ୍ ।୩୩।
କ୍ରମତୋ ଗାଂ ପଦୈକେନ ଦ୍ୱିତୀୟେନ ଦିବଂ ବିଭୋଃ ।
ଖଞ୍ଚ କାୟେନ ମହତା ତାର୍ତ୍ତୀୟସ୍ୟ କୁତୋ ଗତିଃ ।୩୪।

---

ଶ୍ରୀ ଶୁକାଚାର୍ଯ୍ୟ କହିଲେ :—

ହେ ବିରୋଚନ ତନୟ ! ସାକ୍ଷାତ୍ ସନାତନ ବିଷ୍ଣୁ ଦେବକାର୍ଯ୍ୟ ସାଧନ ନିମିତ୍ତ କଶ୍ୟପଙ୍କଠାରୁ ଅଦିତି ଗର୍ଭରେ ଜନ୍ମ ଗ୍ରହଣ କରିଅଛନ୍ତି ।୩୦।

ହେ ଦୈତ୍ୟରାଜ ! ତୁମ୍ଭେ ଅନର୍ଥ ଜାଣିପାରୁ ନାହିଁ, ବିଷ୍ଣୁଙ୍କୁ ତ୍ରିପାଦ ଭୂମିଦାନ କରିବାକୁ ପ୍ରତିଶ୍ରୁତ ହୋଇଅଛ, ମୁଁ ଏହା ଭଲ ମନେ କରୁନାହିଁ । ଏଥିରେ ଦୈତ୍ୟକୁଳର ମହା ଅନର୍ଥ ଘଟିବ ।୩୧।

ହେ ରାଜନ୍ ! ଏହି ମାୟାବାମନ ରୂପୀ ହରି ତୋହର ସ୍ଥାନ ଐଶ୍ୱର୍ଯ୍ୟ, ଶ୍ରୀ, ତେଜ, ଯଶ, ବିଦ୍ୟା ସମସ୍ତ ଅପହରଣ କରି ଇନ୍ଦ୍ରକୁ ପ୍ରଦାନ କରିବେ ।୩୨।

ଏ ବିଶ୍ୱକାୟ ବିରାଟ ପୁରୁଷ, ତ୍ରିପାଦ ଦ୍ୱାରା ତ୍ରିଲୋକ ଆକ୍ରମଣ କରିବ, ରେ ମୂଢ ବିଷ୍ଣୁଙ୍କୁ ସର୍ବସ୍ୱ ଦାନକରି କପରି ଜୀବନ ଧାରଣ କରିବୁ ? ।୩୩।

ଏ ଗୋଟିଏ ପାଦରେ ପୃଥିବୀ ଆକ୍ରମଣ କରିବ, ଦ୍ୱିତୀୟ ପାଦରେ ସ୍ୱର୍ଗ ଆକ୍ରମଣ କରିବ ଏବଂ ତାଙ୍କର ବିଶାଳ ଦେହ ଦ୍ୱାରା ଅନ୍ତରୀକ୍ଷ ପୂର୍ଣ୍ଣ ହେବ । ତୃତୀୟ ପାଦ ପାଇଁ ଆଉ ସ୍ଥାନ କାହିଁ ? ।୩୪।

---

ଶ୍ରୀଶୁକ ଉବାଚ—
ଶୁଣ ହେ ବିରୋଚନ ସୁତ !
ତୋର ଦେଖିଲି ବିପରୀତ
ପାତ୍ର ଅପାତ୍ର ତୁ ନ ଜାଣୁ
ବିପ୍ରଙ୍କୁ ଦାନେ ପରିମାଣୁ
ଦେଖ ଏ ପ୍ରଭୁ ଭଗବାନ
ଶରୀରେ ହୋଇ ବାମନ
ବିବୁଧ-କୁଳ-ରକ୍ଷାକାର୍ଯ୍ୟେ
ଜନ୍ମିଲେ କଶ୍ୟପର ଭାର୍ଯ୍ୟେ
ଅଦିତି ଗର୍ଭେ ଜାତ ହୋଇ
ଅଇଲେ ତୋର ଜ୍ଞାନ ମୋହି ।୩୦।
ଅର୍ଥ ଅନର୍ଥ ତୁ ନ ଜାଣି
ହସ୍ତେ ଧଇଲୁ କୁଶ-ପାଣି,
ଦିତିର ବଂଶେ ଜାତ ହୋଇ
ଏମନ୍ତ ଦେଖିଜତ ନାହିଁ
ଏ ବିଷ୍ଣୁ ତୋର ଯଶ ଶିରୀ
ମାୟା ବାଳକ ରୂପ ଧରି
ଇନ୍ଦ୍ରକୁ ଦେବ ବୁଦ୍ଧି ବଳେ
ତୁ ମୂଢ ପଡ଼ିବୁ ପାତାଳେ ।୩୧ ୩୨
ତିନି ଚରଣେ ତିନି-ପୁର
ସମ୍ପଦ ହରିବେ ତୋହର
ସର୍ବସ୍ୱ ବିଷ୍ଣୁ ହସ୍ତେ ଦେଇ
ତୁ ମୂଢ ବିଶ୍ରାମ ତୁ କାହିଁ ? ।୩୩
ପାଦକେ ଅବନୀ ହରିବ
ଶରୀରେ ଆକାଶେ ପୂରିବ

ନଷ୍ଟାଂ ତେ ନରକେ ମନ୍ୟେ ହ୍ୟପ୍ରଦାତୁଃ ପ୍ରତିଶ୍ରୁତମ୍ ।
ପ୍ରତିଶ୍ରୁତସ୍ୟ ଯୋଽନୀଶଃ ପ୍ରତିପାଦୟିତୁଂ ଭବାନ୍ ।୩୫।
ନ ତଦ୍ଦାନଂ ପ୍ରଶଂସନ୍ତି ଯେନ ବୃତ୍ତିର୍ବିପଦ୍ୟତେ ।
ଦାନଂ ଯଜ୍ଞସ୍ତପଃ କର୍ମ୍ମ ଲୋକେ ବୃତ୍ତିମତୋ ଯତଃ ।୩୬।
ଧର୍ମ୍ମାୟ ଯଶସେଽର୍ଥାୟ କାମାୟ ସ୍ୱଜନାୟ ଚ ।
ପଞ୍ଚଧା ବିଭଜନ୍ ବିତ୍ତମିହାମୁତ୍ର ଚ ମୋଦତେ । ୩୭ ।
ଅତ୍ରାପି ବହ୍ୱୃଚୈର୍ଗୀତଂ ଶୃଣୁ ମେଽସୁରସତ୍ତମ ।
ସତ୍ୟମୋମିତି ଯତ୍ ପ୍ରୋକ୍ତଂ ଯନ୍ନେତ୍ୟାହାନୃତଂ ହି ତତ୍ ।୩୮।
ସତ୍ୟଂ ପୁଷ୍ପଫଳଂ ବିଦ୍ୟାଦାତ୍ମବୃକ୍ଷସ୍ୟ ଗୀୟତେ ।
ବୃକ୍ଷେଽଜୀବତି ତନ୍ନ ସ୍ୟାଦନୃତଂ ମୂଳମାତ୍ମନଃ । ୩୯ ।

---

ମୋର ମନେ ହୁଏ ଏହି ଦାନ ଲାଗି ତୋତେ ନରକକୁ ଯିବାକୁ ହେବ, କାରଣ ପ୍ରତିଶ୍ରୁତ ବସ୍ତୁ ଦାନ ଦେବାକୁ କ୍ଷମତା ତୋର ନାହିଁ ।୩୫।

ପଣ୍ଡିତମାନେ ଏପରି ଦାନର ପ୍ରଶଂସା କରନ୍ତି ନାହିଁ । ଯେଉଁ ଦାନ ଆପଣାର ବୃତ୍ତି ବିପନ୍ନ କରେ, କାରଣ ଇହଲୋକରେ ବୃତ୍ତିମାନ ବ୍ୟକ୍ତିହିଁ ଦାନ, ଯଜ୍ଞ, ତପସ୍ୟା ଓ ପୂଜା ଆଦି କର୍ମ କରିଥାଏ ।୩୬

ଯେଉଁ ବ୍ୟକ୍ତି ଧର୍ମ, ଯଶ, ଅର୍ଥ, କାମ, ସ୍ୱଜନ, ଏମାନଙ୍କ ନିମିତ୍ତ ପାଞ୍ଚଭାଗ ବିତ୍ତ ବିଭାଗ କରି ରଖିଥାଏ, ସେ ଇହକାଳ ଓ ପରକାଳରେ ସୁଖୀ ହୁଏ ।୩୭।

ହେ ଅସୁର ସତ୍ତମ ! ଏ ବିଷୟରେ ପଣ୍ଡିତମାନେ ଯାହା କହନ୍ତି, ତାହା ମୋ ନିକଟରୁ ଶ୍ରବଣ କର । ହିଁ ବୋଲି ସ୍ୱୀକାର କରିବାକୁ ସତ୍ୟ ବୋଲାଯାଏ, ଓ ନାହିଁ ବୋଲି ବାକ୍ୟକୁ ମିଥ୍ୟା ବୋଲାଯାଏ ।୩୮।

ହେ ନୃପ ! ଦେହ ବୃକ୍ଷର ସତ୍ୟ, ପୁଷ୍ପ ଓ ଫଳ, ଏହା କଥିତ ହୋଇଅଛି, ସେହି ବୃକ୍ଷ ଜୀବିତ ନ ଥିଲେ ପୁଷ୍ପ ଓ ଫଳ ଥାଆନ୍ତା ନାହିଁ, ଦେହ ରୂପ ମୂଳ ଅନୃତ ବା ମିଥ୍ୟା ।୩୯।

---

ଦ୍ୱିଜାତ୍ମ ପାଦେ ଦଶଦଶ
ହମେ ସେ ଘେନିବ ଆକାଶ
ସଙ୍କଳି ଯେବେ ତୁ ନ ଦେବୁ
ନିଶ୍ଚୟେ ନରକେ ପଡ଼ିବୁ
ସଙ୍କଳ୍ପ କରି ଦାନ ଅର୍ଥେ
ପଛେ ନ ଦିଅନ୍ତି ଯେ ଜଗତେ
ସେ କାହିଁ ଥିବେ ଏ ସଂସାରେ
ପଡ଼େନରକତମଘୋରେ ।୩୪।୩୫

ଯେ ଦାନେ ବୃତ୍ତି ଯାଏ ନାଶ
କୁଳ-ସମ୍ପଦ-କର୍ମ୍ମ ଯଶ
ସେ ଦାନ କେବେହେଁ ନ କରି
ଯଶ ସମ୍ପଦ ଧର୍ମ୍ମ ହରି । ୩୬ ।
ପୂର୍ବେ ଯେ ସିଦ୍ଧ-ମୁନି ଯେତେ
ଯେ ଧର୍ମ୍ମ କହିଛନ୍ତି ମୋତେ
ତାହା କହିବା ତୋ ଅଗ୍ରତେ
ରାଜନ ଶୁଣ ଏକ ଚିତ୍ତେ

ମନ-ବଚନ ସତ୍ୟ କରି
ଓଁକାର ବାକ୍ୟେ ଯେ ଉଚ୍ଚାରି
ତାହାକୁ ସତ୍ୟ ବୋଲି କହି
ଯେ କହି ତାହା ନ କରଇ
ମିଥ୍ୟା ବୋଲନ୍ତି ତାର ନାମ
ଜାଣ ହେ ଅସୁର ଉତ୍ତମ ।୩୭,୩୮
ଏ ଦେହ ବୃକ୍ଷ ମିଥ୍ୟା ମୂଳ
ସତ୍ୟ ଯେ ତାର ଫୁଲ ଫଳ

ତଦ୍ୟଥା ବୃକ୍ଷ ଉନ୍ମୂଳଃ ଶୁଷ୍ୟତ୍ୟୁଦ୍‌ବର୍ତ୍ତିତୋଽଚିରାତ୍‌ ।
ଏବଂ ନଷ୍ଟାନୃତଃ ସଦ୍ୟ ଆତ୍ମା ଶୁଷ୍ୟେନ୍ନ ସଂଶୟଃ ।୪୦।
ପରାଗ୍‌ରିକ୍ତମପୂର୍ଣ୍ଣଂ ବା ଅକ୍ଷରଂ ଯତ୍ତଦୋମିତି ।
ଯତ୍କିଞ୍ଚିଦୋମିତି ବ୍ରୂୟାତ୍‌ ତେନ ରିଚ୍ୟେତ ବୈ ପୁମାନ୍‌ ।
ଭିକ୍ଷବେ ସର୍ବମୋଙ୍କୁର୍ବନ୍ନାଲଂ କାମେନ ଚାତ୍ମନେ । ୪୧ ।
ଅଥୈତତ୍‌ପୂର୍ଣ୍ଣମଭ୍ୟାତ୍ମଂ ଯଚ୍ଚ ନେତ୍ୟନୃତଂ ବଚଃ ।
ସର୍ବଂ ନେତ୍ୟନୃତଂ ବ୍ରୂୟାତ୍‌ ସ ଦୁଷ୍କୀର୍ତ୍ତିଃ ଶ୍ୱସନ୍‌ ମୃତଃ ।୪୨।
ସ୍ତ୍ରୀଷୁ ନର୍ମ୍ମବିବାହେ ଚ ବୃତ୍ତ୍ୟର୍ଥେ ପ୍ରାଣସଙ୍କଟେ ।
ଗୋବ୍ରାହ୍ମଣାର୍ଥେ ହିଂସାୟାଂ ନାନୃତଂ ସ୍ୟାଜ୍ଜୁଗୁପ୍ସିତମ୍‌ ।୪୩।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟା-
ମଷ୍ଟମସ୍କନ୍ଧେ ବାମନଚରିତେ ଏକୋନବିଂଶୋଽଧ୍ୟାୟଃ ।

---

ଅତଏବ ଯେପରି ବୃକ୍ଷ ଉତ୍ପାଟିତ ହେଲେ ଶୁଷ୍କ ହୋଇଯାଏ ଓ ଅଚିରେ ପତିତ ହୁଏ, ସେହିପରି ଅନୃତ ନଷ୍ଟ ହେଲେ, ଦେହ ସଦ୍ୟ ଶୀର୍ଣ୍ଣ ହୋଇଯାଏ ।୪୦।

ହିଁ ଏହି ଅକ୍ଷର ସମ୍ପତ୍ତିକୁ ଦୂରକୁ ଘେନିଯାଏ । ପୁରୁଷକୁ ଧନଶୂନ୍ୟ କରେ, ଅଥବା ଅପୂର୍ଣ୍ଣ ହୋଇଥାଏ, ଯାଚକର ଆଶାର ଅନ୍ତ ନାହିଁ, ସୁତରାଂ ତାହା ପୂର୍ଣ୍ଣ କରିବା ସମ୍ଭବ ନୁହେଁ । ଯାଚକକୁ ଦେବି ବୋଲି ସ୍ୱୀକାର କରିବା ଉଚିତ ନୁହେଁ, ଦେଲେ ପୁରୁଷକୁ ଅର୍ଥବିଷୟରେ ନ୍ୟୁନ ହେବାକୁ ହୁଏ, ଅତଏବ ମୋର କିଛି ନାହିଁ ଏପରି ମିଥ୍ୟା ବାକ୍ୟ ପ୍ରୟୋଗ କଲେ ନିଜର ଅର୍ଥ ପୂର୍ଣ୍ଣ ଥାଏ କିମ୍ବା ଅନ୍ୟର ଅର୍ଥ ନିଜେ ଆକର୍ଷଣ କରିପାରେ, ଯେଉଁ ବ୍ୟକ୍ତି ସମସ୍ତ ବିଷୟରେ ମିଥ୍ୟା କହେ, ସେ ଦୁଷ୍କୀର୍ତ୍ତି ଭାଗୀ, ଓ ଜୀବନମୃତ ପ୍ରାପ୍ତ ଅବସ୍ଥା ପ୍ରାପ୍ତ ହୁଏ ।୪୧, ୪୨।

ଉକ୍ତାହି ବାକ୍ୟ ଦ୍ୱାରା ସ୍ତ୍ରୀଲୋକମାନଙ୍କର ବଶୀକରଣ ବ୍ୟାପାରରେ, ପରିହାସ ସ୍ଥଳରେ, ବିବାହରେ ଧନ ସମ୍ପଦ ରକ୍ଷାବେଳେ, ପ୍ରାଣ ସଙ୍କଟବେଳେ, ଗୋ ବ୍ରାହ୍ମଣ ହିତାର୍ଥେ କିମ୍ବା କୌଣସି ହିଂସା ବ୍ୟାପାରରେ ମିଥ୍ୟା କହିବା ନିନ୍ଦନୀୟ ନୁହେଁ ।୪୩।

---

ବୃକ୍ଷର ନାଶେ ନାଶ ଯାନ୍ତି
ସେ ବୃକ୍ଷ ମୂଳ ଥିଲେ ଥାନ୍ତି
ସକଳ ମିଥ୍ୟା ନାଶ ଯାନ୍ତେ
ଅଙ୍କୁର ନୁହଇ ବଢ଼ନ୍ତେ ।୩୯, ୪୦
ଅକାର ଉକାର ମକାରେ
ଶବଦ ଉଚ୍ଚାରି "ହିଁ" କରେ
ଯେ ତାହା ଅକ୍ଷରେ କହନ୍ତି
ନିଜ ଶରୀର ନ ଧରନ୍ତି ।୪୧, ୪୨
ପରିହାସରେ ନାରୀସଙ୍ଗେ
ବିବାହେ କନ୍ୟା ବର ଯୋଗେ

ବୃତ୍ତ୍ୟର୍ଥେ ପ୍ରାଣର ସଙ୍କଟେ
ଗୋରୁ ବ୍ରାହ୍ମଣଙ୍କର କଷ୍ଟେ
ମିଥ୍ୟା କହିଲେ ଯେବେ ତରେ
ଏକଥା କେ ଅବା ନ କରେ ? ।୪୩
ଗୁରୁ ଏମନ୍ତ ବାକ୍ୟ କହି
ବଳି ତା ବାକ୍ୟେ ମନ ଦେଇ
ସଂଶୟ ରହିଲେ ଚିତ୍ତେ
ଗୁରୁ ବଚନେ ଧର୍ମ୍ମ ମତେ ।
ବୋଲଇ ବିପ୍ର ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ

ବଳି-ବାମନ ବାକ୍ୟବନ୍ଧେ
ଯେ-ରୂପେ ଶ୍ରୀ ଅଷ୍ଟମସ୍କନ୍ଧେ
ସୁଜନେ ଶୁଣ ଏକଚିତ୍ତେ
ହରି ଚରିତ ଭାଗବତେ
ଗୁରୁ ବଚନ ଧର୍ମ୍ମ ମତେ
ସଂସାରୁ ତରିବ ଯେମନ୍ତେ
ସୁଜନ ଜନେ ଚିତ୍ତେ ସେବ
ଏ ଭବେ ସଂସାରୁ ତରିବ

## ବିଂଶୋଽଧ୍ୟାୟଃ ।

ବିଂଶେ ତ୍ୱନୃତଭୀତୋଽସୌ ଜ୍ଞାତ୍ୱାଽପି କପଟଂ ହରେଃ ।
ଦଦାବେବ ତତୋ ବଷ୍ଟୁଃ ସହସାବର୍ଦ୍ଧତାଦ୍ଭୁତମ୍ ॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ବଲିରେବଂ ଗୃହପତିଃ କୁଲାଚାର୍ଯ୍ୟେଣ ଭାଷିତଃ ।
ତୂଷ୍ଣୀଂ ଭୂତ୍ୱା କ୍ଷଣଂ ରାଜନ୍ନୁବାଚାବହିତୋ ଗୁରୁମ୍ । ୧ ।

ଶ୍ରୀ ବଲିରୁବାଚ । ସତ୍ୟଂ ଭଗବତା ପ୍ରୋକ୍ତଂ ଧର୍ମୋଽୟଂ ଗୃହମେଧିନାମ୍ ।
ଅର୍ଥଂ କାମଂ ଯଶୋ ବୃତ୍ତିଂ ଯୋ ନ ବାଧେତ କର୍ହିଚିତ୍ ।୨।

### ହରିଙ୍କର ଛଳ, ବଳିଙ୍କର ସତ୍ୟପାଳନ ଓ ବିଶ୍ୱରୂପ ଦର୍ଶନ ।

ବିଂଶ ଅଧ୍ୟାୟରେ ଭଗବାନଙ୍କର କପଟ ଜାଣିପାରିସୁଦ୍ଧା ବଳି ସତ୍ୟଭଙ୍ଗ ଭୟରେ ତ୍ରିପାଦ ଭୂମିଦାନ ଦେବାକୁ ସ୍ୱୀକୃତ ହେବାରୁ ବାମନ ହଠାତ୍ ବିଶ୍ୱରୂପ ଧାରଣ କରିଥିଲେ ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! କୁଳାଚାର୍ଯ୍ୟ ଶୁକ୍ରାଚାର୍ଯ୍ୟ ଏପରି କହନ୍ତେ ଗୃହପତି ବଳିରାଜ କ୍ଷଣକାଳ ତୂଷ୍ଣୀହୋଇ ରହିଲେ, ତଦନନ୍ତର ଗୁରୁଙ୍କୁ କହିଲେ । ୧ ।

ଶ୍ରୀ ବଳି କହିଲେ :—

ହେ ଆଚାର୍ଯ୍ୟ ! ଆପଣ ଯାହା କହିଲେ ତାହା ସତ୍ୟ, ଗୃହସ୍ଥମାନଙ୍କର ଧର୍ମ ଏହା— ସେ ଧର୍ମ ଅନୁଷ୍ଠାନରେ ଅର୍ଥ, କାମ, ଯଶ ଏବଂ ଜୀବିକାରେ କଦାପି ବ୍ୟାଘାତ ଘଟେନାହିଁ । ୨ ।



ବଳିଙ୍କର ସତ୍ୟ

ବିଂଶରେ ବଳି ସତ୍ୟପାଳି,ଗୁରୁ ବଚନେ ହେଳାକରି, ଦାନ ଦିଅନ୍ତେ ସେ ବାମନ, ଅଦ୍ଭୁତେ ବଢ଼ିଲେ ତକ୍ଷଣ

ଶ୍ରୀଶୁକଉବାଚ—

ବଳି ଯେ ଅସୁରଙ୍କ ପତି
ସ୍ୱଭାବେ ଧର୍ମେ ତାର ମତି
କୁଳ ଆଚାର୍ଯ୍ୟ ବାକ୍ୟ ଶୁଣି
ଧର୍ମ୍ମ ଅଧର୍ମ୍ମ ମନେ ଗୁଣି
କ୍ଷଣମାତ୍ରକ ତୂନି ହୋଇ
ବୋଲଇ ଗୁରୁ ମୁଖ ଚାହିଁ ।୧।

ବଳିରୁବାଚ—

ହେ ଗୁରୁ ! ସତ୍ୟ ତୁମ୍ଭ କଥା
ଗୃହସ୍ଥ ଜନର ବ୍ୟବସ୍ଥା
ଯେ ଧର୍ମେ ଅର୍ଥ କାମ ଯଶ
ବୃତ୍ତି ସହିତେ ଯିବ ନାଶ
ଏବେ ମୁଁ ଧନେ ହୋଇ ଲୋଭୀ
ବିପ୍ରଙ୍କୁ କେମନ୍ତେ ଲଙ୍ଘିବି
ସର୍ବ ଦେବତା ବିପ୍ର ଦେହେ
ବ୍ରାହ୍ମଣ ଦେହେ ବିଷ୍ଣୁ ରହେ

ସ ଚାହଂ ବିତ୍ତଲୋଭେନ ପ୍ରତ୍ୟାଚକ୍ଷେ କଥଂ ଦ୍ୱିଜମ୍ ।
ପ୍ରତିଶ୍ରୁତ୍ୟ ଦଦାମୀତି ପ୍ରାହ୍ଲାଦିଃ କିତବୋ ଯଥା । ୩ ।
ନ ହ୍ୟସତ୍ୟାତ୍ ପରୋଽଧର୍ମ୍ମ ଇତି ହୋବାଚ ଭୂରିୟମ୍ ।
ସର୍ବଂ ସୋଢୁମଲଂ ମନ୍ୟେ ଋତେଽଲୀକପରଂ ନରମ୍ । ୪ ।
ନାହଂ ବିଭେମି ନିରୟାନ୍ନାଧନ୍ୟାଦସୁଖାର୍ଣ୍ଣବାତ୍ ।
ନ ସ୍ଥାନଚ୍ୟବନାନ୍ମୃତ୍ୟୋର୍ଯଥା ବିପ୍ରପ୍ରଲମ୍ଭନାତ୍ । ୫ ।
ଯଦ୍ୟଦ୍ଧାସ୍ୟତି ଲୋକେଽସ୍ମିନ୍ ସମ୍ପରେତଂ ଧନାଦିକମ୍ ।
ତସ୍ୟ ତ୍ୟାଗେ ନିମିତ୍ତଂ କିଂ ବିପ୍ରସ୍ତୁଷ୍ୟେନ୍ନ ତେନ ଚେତ୍ ।୬।
ଶ୍ରେୟଃ କୁର୍ବନ୍ତି ଭୂତାନାଂ ସାଧବୋ ଦୁସ୍ତ୍ୟଜାସୁଭିଃ ।
ଦଧ୍ୟଙ୍ ଶିବିପ୍ରଭୃତୟଃ କୋ ବିକଳ୍ପୋ ଧରାଦିଷୁ । ୭ ।

---

ପ୍ରହ୍ଲାଦଙ୍କର ପୌତ୍ର ହୋଇ ମୁଁ ଦେବିବୋଲି ପ୍ରତିଜ୍ଞା କରି ସାମାନ୍ୟ ଶଠ ବ୍ୟକ୍ତିପରି ବିତ୍ତଲୋଭରେ କିପରି ବ୍ରାହ୍ମଣକୁ ମନା କରିବି । ୩ ।

ପୃଥିବୀ କହିଅଛନ୍ତି :— ଅସତ୍ୟଠାରୁ ଆଉ ଅଧିକ ଅଧର୍ମ କିଛି ନାହିଁ, ମୁଁ ସବୁ ସହ୍ୟ କରିପାରେ କିନ୍ତୁ ଅସତ୍ୟପରାୟଣ ବ୍ୟକ୍ତିର ଭାର ସହ୍ୟ କରିପାରେ ନାହିଁ ।୪।

ମୁଁ ବ୍ରାହ୍ମଣଙ୍କୁ ବଞ୍ଚନା କରିବାକୁ ଯେପରି ଭୟ କରେ, ନରକ କିମ୍ବା ସର୍ବପ୍ରକାର ଦୁଃଖର ସାଗର, ଦାରିଦ୍ର୍ୟ, ସ୍ଥାନଚ୍ୟୁତି ଏପରି କି ମୃତ୍ୟୁକୁ ସୁଦ୍ଧା ସେପରି ଭୟ କରେ ନାହିଁ ।୫।

ଏହି ପୃଥିବୀରେ ଯେ ସକଳ ଧନାଦି-ବିଷୟ-ସମ୍ପଦ ସେ ସମସ୍ତ ମୃତ ପୁରୁଷକୁ ପରିତ୍ୟାଗ କରେ ଅତଏବ ପ୍ରଦତ୍ତ ଅର୍ଥଦ୍ୱାରା ବ୍ରାହ୍ମଣ ପରିତୁଷ୍ଟ ନ ହେଲେ ମୋର ସେ ଅର୍ଥ ଦାନରେ କି ଫଳ ? ।୬।

ଦଧୀଚି ଏବଂ ଶିବି ପ୍ରଭୃତି ସାଧୁ ବ୍ୟକ୍ତିମାନେ ଦୁସ୍ତ୍ୟଜ୍ୟ ପ୍ରାଣଦ୍ୱାରା ପ୍ରାଣୀମାନଙ୍କର ଉପକାର ସାଧନ କରିଥିଲେ । ସାମାନ୍ୟ ଭୂମିଦାନ ତୁଚ୍ଛ ପଦାର୍ଥ, ତାହା ଦାନ କରିବାରେ ଏତେ ବିଚାର କାଣ ? ।୭

---

ଏକ ବିପ୍ରଙ୍କୁ ଠକାଇଲେ
ବ୍ରହ୍ମାଣ୍ଡ ନାଶ ହୋଏ ଭଲେ
ପ୍ରହ୍ଲାଦର ବଂଶେ ଜାତ
ଏକଥା ଜଗତେ ବିଖ୍ୟାତ
କେମନ୍ତେ ସତ୍ୟବାକ୍ୟ କହି
କୈତବ ପ୍ରାୟେ ମାୟା ବହି
ଲଙ୍ଘିବି ପାପ କର୍ମ ଭଳେ
ଅଯଶ ଲଭିବ ଶୀଘ୍ରକେ ।୨,୩।

ସତ୍ୟ ଉପରେ ଧର୍ମ ନାହିଁ
ଏକଥା ଭୂମି ଅଛି କହି
'ସର୍ବ ଅପ୍ରାଧ ସହିପାରେ
ମିଥ୍ୟାର ଭାରେ ମୁହିଁ ଡରେ' ।୪।
ନ ଡରେ ଦୁଃଖ ପାରାବାରେ
ନରକେ କିବା ମରଣରେ
ସ୍ୱସ୍ଥାନ ଭ୍ରଷ୍ଟେ ନାହିଁ ତାପ
ବିପ୍ର ଲଙ୍ଘନେ ଯେତେ ପାପ ।୫।

ଏ ଭୂମି ଗୃହ ଅନ୍ତ କାଳେ
ମୁହିଁ ଉଦିବ ଅନ୍ତରାଳେ
ସେ ଭୂମି ବିପ୍ରେ ବାକ୍ୟ ଦେଇ
କେମନ୍ତେ ଲଙ୍ଘିବଇଁ ମୁହିଁ ।୬।
ପ୍ରାଣିଙ୍କ ହିତେ ସାଧୁଜନ
ତ୍ୟଜିଲେ, ଏ ଧନ ଜୀବନ
ଦଧୀଚି ଶିବି ଆଦି ଯେହ୍ନେ
ପୂର୍ବେ ଯେ ଥିଲେ ବୀରମାନେ

ତ୍ୟୈଶ୍ଚୟ୍ୟଂ ବୁଭୁଜେ ବ୍ରହ୍ମନ୍ ଦୈତ୍ୟେନ୍ଦ୍ରୈରନିବର୍ତ୍ତିଭିଃ ।
ତେଷାଂ କାଲୋଽଗ୍ରସୀଲ୍ଲୋକାନ୍ ଯଶୋଽଧିଗତଂ ଭୁବି ।୮।
ସୁଲଭା ଯୁଧି ବିପ୍ରର୍ଷେ ହ୍ୟନିବୃତ୍ତାସ୍ତନୁତ୍ୟଜଃ ।
ନ ତଥା ତୀର୍ଥଆୟାତେ ଶ୍ରଦ୍ଧୟା ଯେ ଧନତ୍ୟଜଃ ।୯।
ମନସ୍ୱିନଃ କାରୁଣିକସ୍ୟ ଶୋଭନଂ ଯଦର୍ଥି କାମୋପନୟେନ ଦୁର୍ଗତଃ ।
କୁତଃ ପୁନର୍ବ୍ରହ୍ମବିଦାଂ ଭବାଦୃଶାଂ ତତୋ ବଟୋରସ୍ୟ ଦଦାମି ବାଞ୍ଛିତମ୍ ।୧୦।
ଯଜନ୍ତ ଯଜ୍ଞଂ କ୍ରତୁଭିର୍ଯମାଦୃତା ଭବନ୍ତ ଆମ୍ନାୟବିଧାନକୋବିଦାଃ ।
ସ ଏବ ବିଷ୍ଣୁର୍ବରଦୋଽସ୍ତୁ ବାପରୋ ଦାସ୍ୟାମ୍ୟମୁଷ୍ମୈ କ୍ଷିତମୀପ୍ସିତାଂ ମୁନେ ।୧୧।

---

ହେ ବ୍ରହ୍ମନ୍ ! ସଂଗ୍ରାମରେ ଅପରାଙ୍ମୁଖ ଯେଉଁ ଦୈତ୍ୟମାନେ ଏ ପୃଥିବୀ ଭୋଗ କରୁଅଛନ୍ତି, କାଳକ୍ରମେ ସେମାନଙ୍କର ଐହିକ ଓ ପାରତ୍ରିକ ଭୋଗମାନ ବିନାଶ ହେବ କିନ୍ତୁ ପୃଥିବୀରେ ଲବ୍ଧ କୀର୍ତ୍ତି ବିନଷ୍ଟ ହେବ ନାହିଁ ।୮।

ହେ ବିପ୍ରର୍ଷେ ! ସଂଗ୍ରାମରେ ଅପରାଙ୍ମୁଖ ଦେହତ୍ୟାଗକାରୀ ପୁରୁଷ ଯେପରି ସୁଲଭ, ସତ୍ପାତ୍ର ଉପସ୍ଥିତ ହେଲେ ଶ୍ରଦ୍ଧାର ସହିତ ଧନଦାନକାରୀ ବ୍ୟକ୍ତି ସେପରି ସୁଲଭ ନୁହେଁ । ୯ ।

ହେ ଭଗବନ୍ ! ସାଧାରଣ ଯାଚକ ମାନଙ୍କର କାମନା ପୂରଣରେ ଯଦି ଦାରିଦ୍ର୍ୟ ଉପସ୍ଥିତ ହୁଏ, ତେବେ ଉଦାରଚେତା ଦାନବୀର ପକ୍ଷରେ ତାହା ଶୋଭନୀୟ, ଆପଣଙ୍କ ତୁଲ୍ୟ ବ୍ରହ୍ମବିତ୍ ବ୍ରାହ୍ମଣମାନଙ୍କର ଅଭିଳାଷ ପୂରଣ କରି ଯଦି ମୋର ଦୀନତା ଉପସ୍ଥିତ ହୁଏ; ତାହାହେଲେ ତାହା ଅଧିକ ଆନନ୍ଦର କଥା । ସୁତରାଂ ମୁଁ ଏହି ବ୍ରାହ୍ମଣର ପ୍ରାର୍ଥିତ ବସ୍ତୁ ଦାନ କରିବି । ୧୦ ।

ହେ ମୁନେ ! ବେଦବିଦ୍ୟାପାରଗ ଆପଣମାନେ ଯଜ୍ଞାଦି ଅନୁଷ୍ଠାନ କରି ଯେଉଁ ଯଜ୍ଞମୂର୍ତ୍ତି ବିଷ୍ଣୁଙ୍କୁ ଆରାଧନା କରନ୍ତି; ସେହି ବିଷ୍ଣୁ ମୋ ପ୍ରତି ବରଦ ହେଉନ୍ତୁ ବା ଶତ୍ରୁ ହେଉନ୍ତୁ, ସେ ଯଦି ଦାନ ପାଇଁ ଉପସ୍ଥିତ ହୋଇଥାନ୍ତି, ତାହା ହେଲେ ମୁଁ ସେହି ବାମନଙ୍କୁ ପ୍ରାର୍ଥିତ ଭୂମି ନିଶ୍ଚୟ ଦାନ କରିବି ।୧୧

---

ପୃଥିବୀ ଆତ୍ମବଶ କଲେ
ସଙ୍ଗତେ କିବା ନେଇଗଲେ
ମୋହର ବଂଶେ ଯେ ଦାନବେ
ଏ ଭୂମିପତି ଥିଲେ ପୂର୍ବେ
ସେ ସର୍ବେ କାଳେ ଅସ୍ତଗଲେ
ଯଶ ରହିଲା ମହୀତଳେ ।୭,୮
ରଣେ ବିମୁଖ ନୋହି ବୀର
ସମରେ ତ୍ୟଜନ୍ତି ଶରୀର
ତହୁଁ ଅଧିକ ପାତ୍ରେ ଦାନ
ଯେ କରେ ସେହି ମହାଜନ
ଯେ ସତ୍-ପାତ୍ରେ ଦିଅନ୍ତି ଦାନ
ସେ ସର୍ବେ ସାତ୍ତ୍ୱିକ ଜୀବନ ।୯।
ଏ ସତ୍ୟ ଧର୍ମ ଦୂର କରି
ତୁମ୍ଭ ବଚନ ମନେ ଧରି
ଏ ମୋର ଶରୀର ନ ଥିବ
ଏଥିକୁ ସାକ୍ଷୀ ସଦାଶିବ
ବ୍ରହ୍ମାର ବଂଶେ ଜାତ ହୋଇ
ଏମନ୍ତ କହ କିସ ପାଇଁ
ନିଶ୍ଚେ ଧରଣୀ ଦେବି ଦାନ
ଏଥିକୁ ସାକ୍ଷୀ ଭଗବାନ
ବେଦ ବିଧାନ ଯେ ଜାଣନ୍ତି
ଆତ୍ମାକୁ ସର୍ବଭୂତେ ଚିନ୍ତି
ଅନେକ ଯଜ୍ଞମନେ ଚିନ୍ତି
ଯାର ଚରଣ ବ ଲଭନ୍ତି
ସେ ହରି ଦୟା ମୋତେ କରୁ
ଅଥବା ଶରୀର ସଂହାରୁ
ତହିଁକି ମୋର ଚିନ୍ତା ନାହିଁ
ବିପ୍ରେ ଧରଣୀ ଦେବି ମୁହିଁ
ଅଧର୍ମ ମାର୍ଗେ ଯେବେ ମୋତେ
ବିପ୍ର ମାରିବ କୋପଚିତ୍ତେ

ଯଦ୍ୟପ୍ୟସାବଧର୍ମେଣ ମାଂ ବଧ୍ନୀୟାଦନାଗସମ୍ ।
ତଥାପ୍ୟେନଂ ନ ହିଂସିଷ୍ୟେ ଭୀତଂ ବ୍ରହ୍ମତନୁଂ ରିପୁମ୍ ।୧୨।
ଏଷ ବା ଉତ୍ତମଃ ଶ୍ଳୋକୋ ନ ଜିହାସତ ଯଦ୍‌ଯଶଃ ।
ହତ୍ୱା ମୈନାଂ ହରେଦ୍‌ଯୁଦ୍ଧେ ଶୟୀତ ନିହତୋ ମୟା ।୧୩।

ଶ୍ରୀ ଶୁକ ଉବାଚ । ଏବମଶ୍ରଦ୍ଧିତଂ ଶିଷ୍ୟମନାଦେଶକରଂ ଗୁରୁଃ ।
ଶଶାପ ଦୈବପ୍ରହିତଃ ସତ୍ୟସନ୍ଧଂ ମନସ୍ୱିନମ୍ ।୧୪।
ଦୃଢ଼ଂ ପଣ୍ଡିତମାନ୍ୟଜ୍ଞଃ ସ୍ତବ୍ଧୋଽସ୍ୟସ୍ମଦୁପେକ୍ଷୟା ।
ମଚ୍ଛାସନାତିଗୋ ଯସ୍ତ୍ୱମଚିରାଦ୍‌ଭ୍ରଶ୍ୟସେ ଶ୍ରିୟଃ ।୧୫।
ଏବଂ ଶପ୍ତଃ ସ୍ୱଗୁରୁଣା ସତ୍ୟାନ୍ନ ଚଳିତୋ ମହାନ୍ ।
ବାମନାୟ ଦଦାବେନାମର୍ଚ୍ଚିତ୍ୱୋଦକପୂର୍ବକମ୍ ।୧୬।

---

ମୁଁ ନିରପରାଧ, ଯଦି ସେହି ବାମନ ଅଧର୍ମ ଆଚରଣ କରି ନିରପରାଧ ମୋତେ ବନ୍ଧନ କରନ୍ତି ତଥାପି ମୁଁ ଭୀତ ବ୍ରାହ୍ମଣରୂପୀ ଶତ୍ରୁଙ୍କୁ ହିଂସା କରିବି ନାହିଁ ।୧୨।

ସେ ଯଦି ଉତ୍ତମ ଶ୍ଳୋକ ଭଗବାନ୍ ହୁଅନ୍ତି ଏବଂ ସ୍ୱକୀର୍ତ୍ତି ତ୍ୟାଗ କରିବାକୁ ଇଚ୍ଛା ନ କରନ୍ତି ତେବେ ଯୁଦ୍ଧରେ ମୋତେ ବିନାଶ କରି ଏହି ଭୂମି ହରଣ କରି ପାରନ୍ତି ଅଥବା ମୋ କର୍ତ୍ତୃକ ନିହତ ହୋଇ ଭୂଶାୟୀ ହୋଇ ପାରନ୍ତି ।୧୩।

ଶ୍ରୀ ଶୁକଦେବ କହିଲେ—

ହେ ରାଜନ୍ ! ବଳି ଏହିପରି କହନ୍ତେ ଦୈବ ପ୍ରେରିତ ଗୁରୁ ଶୁକ୍ରାଚାର୍ଯ୍ୟ ଶ୍ରଦ୍ଧାହୀନ ଆଦେଶ-ଲଙ୍ଘନକାରୀ ସତ୍ୟପ୍ରତିଜ୍ଞ, ଉଦାରହୃଦୟ ଶିଷ୍ୟ ବଳିଙ୍କୁ ଅଭିଶାପ ଦେଇଥିଲେ ।୧୪।

ତୁ ନିତାନ୍ତ ମୂର୍ଖ, କିନ୍ତୁ ନିଜକୁ ଅତିଶୟ ପଣ୍ଡିତ ବୋଲି ମନେ କରୁଅଛୁ । ତୁ ମୋତେ ଉପେକ୍ଷା କରି ଗର୍ବିତ ହୋଇଅଛୁ । ସୁତରାଂ ମୋର ଆଦେଶ ଲଙ୍ଘନକାରୀ ତୁ ଅଚିରେ ଶ୍ରୀଭ୍ରଷ୍ଟ ହେବୁ ।୧୫।

ଏପରି ସ୍ୱୀୟ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଦ୍ୱାରା ଅଭିଶପ୍ତ ହୋଇ ମଧ୍ୟ ମହାମନ ବଳି ସତ୍ୟରୁ ବିଚଳିତ ହୋଇ ନ ଥିଲେ । ଅର୍ଚ୍ଚନା ପୂର୍ବକ ଜଳଗ୍ରହଣ କରି ବାମନଙ୍କୁ ଭୂମିଦାନ କରିବାକୁ ଉଦ୍ୟତ ହେଲେ ।୧୬।

---

ଏ ବ୍ରହ୍ମତନୁ ରିପୁ ମୋର
ମୁଁ ତ ଏହାର କିଙ୍କର
ଯେବେ ବ୍ରାହ୍ମଣ ତନୁ ଧରି
ବସ୍ତୁ ମୋ ଅର୍ଥେ କୋପକରି
ଯେବେ ମାରିବେ ଯୁଦ୍ଧେ ମୋତେ
ମୋତହୁଁ ଧନ୍ୟକେଜଗତେ ।୧୨-୧୩

ଶ୍ରୀଶୁକଉବାଚ—

ଏମନ୍ତେ ଶୁଣି ବଳି-ମୁଖେ
ସେ ଭୃଗୁ-ସୁତ ମନ ଦୁଃଖେ
ବଳିର ସତ୍ୟ ବାକ୍ୟ ଦେଖି
କ୍ରୋଧେ ଅରୁଣ ବେନି ଆଖି
କଟାକ୍ଷ ନୟନେ ଅନାଇ
ମୁଖେ କି ଅନଳ ଜଳଇ
ନିର୍ଘାତ କମ୍ପିତ ନିଶ୍ୱାସେ
ବଳିକି ଶାପ ଦେଲେ ରୋଷେ ।୧୪

ଶ୍ରୀଶୁକ ଉବାଚ—

ହେ ସତ୍ୟବାଦୀ ନୃପମଣି
ମୋହର ମହିମା ନ ଜାଣି
ଗର୍ବ ବହିଲୁ ଯେବେ ଦୁଷ୍ଟ
ସର୍ବ ସମ୍ପଦ ହେଉ ନଷ୍ଟ ।୧୫।
ଏମନ୍ତେ ଗୁରୁ ଶାପ ପାଇ
ଧରଣୀ ଦାନେ ମନ ଦେଇ
ବାମନ ବେନି ପାଦ ଧରି
ଉଦକ ପୂର୍ବେ ପୂଜା କରି

ବିନ୍ଧ୍ୟାବଳିସ୍ତଦାଗତ୍ୟ ପତ୍ନୀ ଜାଳକମାଳିନୀ ।
ଆନିନ୍ୟେ କଳସଂ ହୈମମବନେଜନ୍ୟପାଂ ଭୃତମ୍ ।୧୭।
ଯଜମାନଃ ସ୍ୱୟଂ ତସ୍ୟ ଶ୍ରୀମତ୍ପାଦଯୁଗଂ ମୁଦା ।
ଅବନେଜ୍ୟାବହନ୍ମୂର୍ଦ୍ଧ୍ନି ତଦପୋ ବିଶ୍ୱପାବନୀଃ । ୧୮ ।
ତଦାଽସୁରେନ୍ଦ୍ରଂ ଦିବି ଦେବତାଗଣା ଗନ୍ଧର୍ବବିଦ୍ୟାଧରସିଦ୍ଧଚାରଣାଃ ।
ତତ୍କର୍ମ୍ମ ସର୍ବେଽପି ଗୃଣନ୍ତ ଆର୍ଜବଂ ପ୍ରସୂନବର୍ଷୈର୍ବବୃଷୁର୍ମୁଦାନ୍ୱିତାଃ ।୧୯।
ନେଦୁର୍ମୁହୁର୍ଦୁନ୍ଦୁଭୟଃ ସହସ୍ରଶୋ ଗନ୍ଧର୍ବକିଂପୁରୁଷକିନ୍ନରା ଜଗୁଃ ।
ମନସ୍ୱିନାନେନ କୃତଂ ସୁଦୁଷ୍କରଂ ବିଦ୍ୱାନଦାଦ୍ ଯଦ୍ରିପବେ ଜଗତ୍ତ୍ରୟମ୍ । ୨୦ ।

---

ସେତେବେଳେ ମୁକ୍ତାମାଳା ବିଭୂଷିତା ବଳିପତ୍ନୀ ବିନ୍ଧ୍ୟାବଳୀ ସ୍ୱାମୀଙ୍କର ଉଦ୍ଦେଶ୍ୟ ପୂରଣ ନିମିତ୍ତ ଆଗମନ କରି ପାଦ ଧୋଇଦେବା ଲାଗି ଜଳପୂର୍ଣ୍ଣ ସୁବର୍ଣ୍ଣ କଳସ ଆଣି ଥୋଇଲେ । ୧୭ ।

ତଦନନ୍ତର ଯଜମାନ ବଳି ବାମନ ଦେବଙ୍କର ଶ୍ରୀଯୁକ୍ତ ଚରଣ ଦ୍ୱୟ ସାନନ୍ଦରେ ପ୍ରକ୍ଷାଳନ କରି ଜଗତ୍ ପବିତ୍ରକାରୀ ସେହି ଚରଣୋଦକକୁ ମସ୍ତକରେ ଧାରଣ କରିଥିଲେ ।୧୮।

ସେତେବେଳେ ସ୍ୱର୍ଗରେ ଦେବତାମାନେ, ଗନ୍ଧର୍ବ, ବିଦ୍ୟାଧର, ସିଦ୍ଧ, ଚାରଣ ସମସ୍ତେ ବଳିଙ୍କର ସେହି ନିଷ୍କପଟ ଭୂମିଦାନ କାର୍ଯ୍ୟକୁ ପ୍ରଶଂସା କରି ଆନନ୍ଦରେ ଦେବରାଜ ଇନ୍ଦ୍ରଙ୍କ ସହିତ ବଳିଙ୍କ ଉପରେ ପୁଷ୍ପବର୍ଷଣ କରିଥିଲେ ।୧୯।

ବାରମ୍ବାର ସହସ୍ର ସହସ୍ର ଦୁନ୍ଦୁଭି ବାଜି ଉଠିଲା । ଗନ୍ଧର୍ବ, କିନ୍ନର, କିଂପୁରୁଷମାନେ ଗାନ କରିବାକୁ ଲାଗିଲେ ଏବଂ କହିଲେ ହେ ମହାମନା ବଳି ! କି ଦୁଷ୍କର କାର୍ଯ୍ୟ ଅନୁଷ୍ଠାନ କରୁଅଛନ୍ତି, ଜାଣି ସୁଦ୍ଧା ଶତ୍ରୁକୁ ତ୍ରିଜଗତ୍ ପ୍ରଦାନ କରୁଅଛନ୍ତି ।୨୦।

---

ବଳିର ପତ୍ନୀ ବିନ୍ଧ୍ୟାବଳି
କଣ୍ଠେ ଭୂଷଣ ରତ୍ନ-ମାଳି
ଉଦକ ପୂର୍ଣ୍ଣଘଟେ ବେଗେ
ଘେନିମିଳିଲା ସ୍ୱାମୀଆଗେ ।୧୬,୧୭
ବଳି ବାମନ ପାଦଯୁଗେ
ଜଳ ଢାଳିଲା ନେଇ ବେଗେ
ପାଦ ଉଦକ ଘେନି ଶିରେ
ଆନନ୍ଦେ ପୁଲକ ଶରୀରେ
ଯେ ଜଳ ଭୁବନ ପାବନୀ
କାନ୍ତ କାମିନୀ ଶିରେ ଘେନି
କୃତାର୍ଥ ହୋଇ କର ଯୋଡ଼ି
କିଙ୍କର ହୋଇ ପାଦେ ପଡ଼ି

ଆନନ୍ଦ-ସାଗରେ ବୁଡ଼ିଲେ
ଶୂନ୍ୟେ ଯେ ଦେବେ ଦେଖୁଥିଲେ ।୧୮
ଗନ୍ଧର୍ବଗଣ ବିଦ୍ୟାଧର
ସିଦ୍ଧ ଯେ ଚାରଣ କିନ୍ନର
କରନ୍ତି ଜୟ ଜୟ ବାଣୀ
କୁସୁମ କଳିବୃଷ୍ଟି ଆଣି
ସେ ଅଁଣ ମନ୍ଦାକିନୀ ବାରି
ପୁଷ୍ପ ବରଷି ସ୍ତୁତି କରି
ସମସ୍ତେ ଦୁନ୍ଦୁଭିର ନାଦ
ବଜାନ୍ତି ବହୁବିଧ ବାଦ୍ୟ
ନୃତ୍ୟ କରନ୍ତି ଅପସରୀ
ମଙ୍ଗଳ ନାଦେ ମୋଦ ଭରି

ଆଗେ ହୋଇଲା ତାର ରାଣୀ
ବଳି ଯେ ଘେନି କୁଶପାଣୀ
ବେଦ ବଚନେ ବାକ୍ୟ କରି
କାନ୍ତ କାମିନୀ ମୋଦଭରି
ବାମନ କଲେ ସ୍ୱସ୍ତିବାଦ
ଧରଣୀ ଦେଲା ତିନି ପାଦ
ଆମ୍ଭ ସନ୍ତୋଷେ ଯେତେ ଧନ
ଦକ୍ଷିଣା ଦେଲା ଯଜମାନ
ତାର ଦୁର୍ଲ୍ଲଭ କର୍ମ ଶୁଣି
ଦେବେ କରନ୍ତି ଜୟବାଣୀ ।୧୯,୨୦

୬୩

ତତ୍ୱାମନଂ ରୂପମବର୍ଦ୍ଧତାଦ୍ଭୁତଂ ହରେରନନ୍ତସ୍ୟ ଗୁଣତ୍ରୟାତ୍ମକମ୍ ।
ଭୂଃ ଖଂ ଦିଶୋ ଦ୍ୟୌର୍ବିବରାଃ ପୟୋଧୟ-
ସ୍ତିର୍ଯ୍ୟଙ୍‌ନୃଦେବାଋଷୟୋ ଯଦାସତ । ୨୧ ।
କାୟେ ବଲିସ୍ତସ୍ୟ ମହାବିଭୂତେଃ ସହର୍ତ୍ୱିଗାଚାର୍ଯ୍ୟସଦସ୍ୟ ଏତତ୍ ।
ଦଦର୍ଶ ବିଶ୍ୱଂ ତ୍ରିଗୁଣଂ ଗୁଣାତ୍ମକେ ଭୂତେନ୍ଦ୍ରିୟାର୍ଥାଶୟଜୀବଯୁକ୍ତମ୍ । ୨୨ ।
ରସାମଚଷ୍ଟାଙ୍ଘ୍ରିତଳେଽଥ ପାଦୟୋର୍ମହୀଂ ମହୀଧ୍ରାନ୍ ପୁରୁଷସ୍ୟଜଙ୍ଘୟୋଃ ।
ପତତ୍ରିଣୋ ଜାନୁନି ବିଶ୍ୱମୂର୍ତ୍ତେରୂର୍ବୋର୍ଗଣ ମାରୁତମିନ୍ଦ୍ରସେନଃ । ୨୩ ।
ସନ୍ଧ୍ୟାଂ ବିଭୋର୍ବାସସି ଗୁହ୍ୟ ଐକ୍ଷତ୍ ପ୍ରଜାପତୀନ୍ ଜଘନେ ଆତ୍ମମୁଖ୍ୟାନ୍ ।
ନାଭ୍ୟାଂ ନଭଃ କୁକ୍ଷିଷୁ ସପ୍ତ ସିନ୍ଧୂନ୍ ଉରୁକ୍ରମସ୍ୟୋରସି ଚର୍କ୍ଷମାଳାମ୍ । ୨୪ ।

---

ତଦନନ୍ତର ଅନନ୍ତ ଦେବ ହରିଙ୍କର ତ୍ରିଗୁଣ ତ୍ରୟାତ୍ମକ ସେହି ବାମନରୂପ ଅତି ଆଶ୍ଚର୍ଯ୍ୟଭାବରେ ବର୍ଦ୍ଧିତ ହେବାକୁ ଲାଗିଲା । ଏହି ରୂପ ମଧ୍ୟରେ ପୃଥିବୀ, ଆକାଶ, ଦିଗସମୂହ, ଅନ୍ତରୀକ୍ଷ, ବିବର ସମୂହ, ସାଗର, ପଶ୍ୱାଦି ତିର୍ଯ୍ୟକ୍‌ଜାତି, ଦେବ, ମନୁଷ୍ୟ, ଋଷିଗଣ ସମସ୍ତ ଅବସ୍ଥିତ ।୨୧।

ବଳି ସେହି ମହାବିଭୂତି ସମ୍ପନ୍ନ ଭଗବାନ୍ ବାମନଙ୍କର ତ୍ରିଗୁଣାତ୍ମକ ଶରୀର ମଧ୍ୟରେ ଋତ୍ୱିକ ଓ ଆଚାର୍ଯ୍ୟମାନଙ୍କ ସହିତ ପଞ୍ଚଭୂତ ଇନ୍ଦ୍ରିୟ ଶବ୍ଦାଦି ତନ୍ମାତ୍ର, ଅନ୍ତଃକରଣ ଏବଂ ଜୀବ ସମୂହ ଏହି ତ୍ରିଗୁଣାତ୍ମକ ବିଶ୍ୱ ଦର୍ଶନ କରିଥିଲେ ।୨୨।

ତଦନନ୍ତର ଇନ୍ଦ୍ରସେନ ବଳି ବିଶ୍ୱମୂର୍ତ୍ତି ବାମନରୂପୀ ବିଷ୍ଣୁଙ୍କ ପାଦତଳେ ରସାତଳ, ଚରଣ ଦ୍ୱୟରେ ପୃଥିବୀ, ଜଙ୍ଘ ଦ୍ୱୟରେ ପର୍ବତ, ଜାନୁ ଦେଶରେ ପକ୍ଷୀଗଣ, ଉରୁ ଦୁଇରେ ବାୟୁ ସମୂହ ଦର୍ଶନ କରିଥିଲେ ।୨୩।

ବିଶ୍ୱମୂର୍ତ୍ତି ଭଗବାନ୍ ବାମନ ବସ୍ତ୍ରରେ ସନ୍ଧ୍ୟାକୁ, ଗୁହ୍ୟ ଦେଶରେ ପ୍ରଜାପତିମାନଙ୍କୁ, ଜଘନ ଦେଶରେ ବଳିଙ୍କର ସ୍ୱଗଣ ପ୍ରଧାନ ଅସୁରଗଣଙ୍କୁ, ନାଭି ଦେଶରେ ଆକାଶକୁ, କୁକ୍ଷିରେ ସପ୍ତ ସାଗରକୁ, ବକ୍ଷସ୍ଥଳରେ ନକ୍ଷତ୍ରମାନଙ୍କୁ ଦର୍ଶନ କରିଥିଲେ ।୨୪।

---

ବାମନ ହସ୍ତେ ଜଳ ଘେନି
ପାଦକେ ଚାଙ୍କିଲେ ମେଦିନୀ
ବାମନ ବଳି ମୁଖ ଚାହିଁ
ବୋଲନ୍ତି ଆଉ ମହୀ କାହିଁ
ବଳି ବୋଇଲା ଦେବ ସ୍ୱର୍ଗ
ବାମନ ପାଦ ଦେଲେ ବେଗ
ଦ୍ୱିତୀୟ ପାଦ ସ୍ୱର୍ଗ ଝାମ୍ପେ
ଘୋର ଶବଦେ ଦିଗ କମ୍ପେ
ଅଦ୍ଭୁତ ବାମନ ଶରୀର
ପୂରିଲା ସ୍ୱର୍ଗ ଅଭ୍ୟନ୍ତର

ବଳି ଯେ ଆଚାର୍ଯ୍ୟ ସହିତେ
ପ୍ରବେଶ ବାମନ ଅଗ୍ରତେ
ଦେଖଇ ବାମନ ଶରୀର
ଦେବ ମାନବେ ଅଗୋଚର
ତ୍ରିଗୁଣ ଆତ୍ମା ସେ ସ୍ୱଭାବେ
କିବା ଉପମା ଦେବା ଏବେ
ଦେଖି ଚରଣ ଭୂ-ଆକାଶେ
ପର୍ବତ ଦିଶେ ଜଙ୍ଘଦେଶେ
ପତଙ୍ଗଗଣ ଜାନୁ ମୂଳେ
ଉଡ଼ନ୍ତି ଜନ୍ତୁ ଅନ୍ତରୀକ୍ଷେ

ସନ୍ଧ୍ୟା ଦିଶଇ ବସ୍ତ୍ରପ୍ରାନ୍ତେ
କାଳ ସ୍ୱଭାବେ ବିଶ୍ୱ-କାନ୍ତେ
ଗୁହ୍ୟ ଦେଶରେ ପ୍ରଜାପତି
ଜଘନେ ଅସୁରେ ବସନ୍ତି
ନାଭି ପ୍ରଦେଶେ ନଭ ଦିଶେ
ସପତ ସିନ୍ଧୁ କୁକ୍ଷି ଦେଶେ
ହୃଦେ ବିରାଜେ ତାରା ଗଣ
ଯେହ୍ନେ ଅଳଙ୍କାର ଭୂଷଣ ।୨୧-୨୪

ହୃଦ୍ୟଙ୍ଗ ଧର୍ମ୍ମଂ ସ୍ତନୟୋର୍ମୁରାରେର୍ଋତଞ୍ଚ ସତ୍ୟଞ୍ଚ ମନସ୍ୟଥେନ୍ଦୁମ୍ ।
ଶ୍ରିୟଞ୍ଚ ବକ୍ଷସ୍ୟରବିନ୍ଦହସ୍ତାଂ କଣ୍ଠେ ଚ ସାମାନି ସମସ୍ତରେଫାନ୍ । ୨୫ ।
ଇନ୍ଦ୍ରପ୍ରଧାନାନମରାନ୍ ଭୁଜେଷୁ ତତ୍କର୍ଣ୍ଣୟୋଃ କକୁଭୋ ଦ୍ୟୌଶ୍ଚ ମୂର୍ଦ୍ଧ୍ନି ।
କେଶେଷୁ ମେଘାନ୍ ଶ୍ୱସନଂ ନାସିକାୟାମକ୍ଷ୍ଣୋଶ୍ଚ ସୂର୍ଯ୍ୟଂ ବଦନେ ଚ ବହ୍ନିମ୍ ।୨୬।
ବାଣ୍ୟାଞ୍ଚ ଛନ୍ଦାଂସି ରସେ ଜଳେଶଂ ଭ୍ରୁବୋର୍ନିଷେଧଞ୍ଚ ବିଧିଞ୍ଚ ପକ୍ଷ୍ମସୁ ।
ଅହଶ୍ଚ ରାତ୍ରିଞ୍ଚ ପରସ୍ୟ ପୁଂସୋ ମନ୍ୟୁଂ ଲଲାଟେଽଧରଏବ ଲୋଭମ୍ ।୨୭।
ସ୍ପର୍ଶେ ଚ କାମଂ ନୃପ ରେତସାଽମ୍ଭଃ ପୃଷ୍ଠେ ତ୍ୱଧର୍ମଂ କ୍ରମଣେଷୁ ଯଜ୍ଞମ୍ ।
ଛାୟାସୁ ମୃତ୍ୟୁଂ ହସିତେ ଚ ମାୟାଂ ତନୂରୁହେଷ୍ୱୋଷଧିଜାତୟଶ୍ଚ । ୨୮ ।

---

ହେ ରାଜନ୍ ! ତଦନନ୍ତର ଭଗବାନଙ୍କର ହୃଦୟରେ ଧର୍ମ, ସ୍ତନ ଦ୍ୱୟରେ ଋତ ଓ ସତ୍ୟ, ମନରେ ଚନ୍ଦ୍ର, ବକ୍ଷ ସ୍ଥଳରେ ପଦ୍ମହସ୍ତା ଲକ୍ଷ୍ମୀ, କଣ୍ଠରେ ସାମବେଦ ଓ ଆକାରାଦି ବର୍ଣ୍ଣ ସମୂହ ଦର୍ଶନ କରିଥିଲେ ।୨୫।

ଭୁଜମାନଙ୍କରେ ଇନ୍ଦ୍ର ପ୍ରମୁଖ ଦେବତାମାନେ, କର୍ଣ୍ଣ ଦ୍ୱୟରେ ଦିଗମାନେ, ମସ୍ତକରେ ସ୍ୱର୍ଗ, କେଶରେ ମେଘମାଳ, ନାସିକାରେ ବାୟୁ, ଚକ୍ଷୁ ଦ୍ୱୟରେ ସୂର୍ଯ୍ୟ, ବଦନରେ ଅଗ୍ନିଙ୍କୁ ଦର୍ଶନ କରିଥିଲେ ॥

ଏହି ପରମ ପୁରୁଷଙ୍କର ବାକ୍ୟରେ ବେଦସମୂହ, ରସନାରେ ଜଳାଧିପତି ବରୁଣ, ଭ୍ରୂଦ୍ୱୟରେ ବିଧି ଓ ନିଷେଧ, ଅକ୍ଷିପତ୍ର ଦ୍ୱୟରେ ଦିବା ଓ ରାତ୍ରି, ଲଲାଟରେ କ୍ରୋଧ ଏବଂ ଅଧରରେ ଲୋଭ ଦର୍ଶନ କରିଥିଲେ ।୨୭।

ହେ ରାଜନ୍ ! ତାହାଙ୍କର ସ୍ପର୍ଶରେ କାମ, ରେତରେ ଜଳ, ପୃଷ୍ଠରେ ଅଧର୍ମ, ପାଦ ବିନ୍ୟାସରେ ଯଜ୍ଞ, ଛାୟାରେ ମୃତ୍ୟୁ, ହାସ୍ୟରେ ମାୟା ଏବଂ ଲୋମ ସମୂହରେ ଔଷଧି ଦର୍ଶନ କରିଥିଲେ ।୨୮।

---

ଧର୍ମ୍ମ ବିରାଜେ ସ୍ତନ ମଧ୍ୟେ
ନିଜ ଶରୀର ଅଧ ଊର୍ଦ୍ଧ୍ୱେ
ସ୍ତନ ମଣ୍ଡଳେ ଋତ ସତ୍ୟ
ମନେ ବସଇ ନିଶାନାଥ
ଲକ୍ଷ୍ମୀ ଯେ ହୃଦୟେ ବିରାଜେ
ବେନି କମଳ ହସ୍ତେ ସାଜେ
କଣ୍ଠେ ବିରାଜେ ସାମ ବେଦ
ଆବର ଯେ ଅବା ଶବଦ ।୨୫।
ବାସବ ଆଦି ଦିଗପାଳେ
ଭୁଜେ ବସନ୍ତି ଅନ୍ତରାଳେ
ଗଗନ ଦିଶେ ଶିର ଦେଶେ
ମେଘ ଦିଶନ୍ତି କେଶ ପାଶେ
ନାସିକା ମଧ୍ୟେ ବହେ ଶ୍ୱାସ
ମୁଖେ ସମୀର ଅଣଆଁଶ
ବେନି ଲୋଚନେ ରବି ଶଶୀ
ବଦନେ ଅନଳ ପ୍ରକାଶି
ସପତ ଛନ୍ଦ ବାଣୀ ଦେଶେ
ଜିହ୍ୱାରେ ବରୁଣ ପ୍ରକାଶେ
ବିଧି ନିଷେଧ ଭୃରୁ ଦେଶେ
ପକ୍ଷ୍ମେ ଯେ ଦିବା ରାତ୍ରି ଦିଶେ
ଲଲାଟେ କ୍ରୋଧ ପ୍ରକାଶଇ
ଅଧର ଓଷ୍ଠେ ଲୋଭ ବହି ।୨୬,୨୭
ସ୍ପରଶେ ବସେ କାମଦେବ
ରେତେ ବିରାଜେ ସର୍ବ ଅମ୍ବୁ
ଅଧର୍ମ୍ମ ପୃଷ୍ଠଦେଶେ ରହେ
କ୍ରମଣମାର୍ଗେ ଯଜ୍ଞ ଶୋହେ
ଛାୟା ବିରାଜଇ ମରଣେ
ହାସ ତା ମାୟା ଅବଧାନେ
ବୃକ୍ଷ ଓଷଧି ରୋମଗଣ
ଆଶ୍ରିତ ନାନା ପୁଷ୍ପବନ ।୨୮।

ନଦୀଶ୍ଚ ନାଡ଼ୀଷୁ ଶିଳା ନଖେଷୁ ବୁଦ୍ଧାବଜଂ ଦେବଗଣାନୃଷୀଂଶ୍ଚ ।
ପ୍ରାଣେଷୁ ଗାତ୍ରେ ସ୍ଥିରଜଙ୍ଗମାନ ସର୍ବାଣି ଭୂତାନ ଦଦର୍ଶ ବୀରଃ । ୨୯ ।
ସର୍ବାତ୍ମନୀଦଂ ଭୁବନଂ ନିରୀକ୍ଷ୍ୟ ସର୍ବେଽସୁରାଃ କଶ୍ମଲମାପୁରଙ୍ଗ !
ସୁଦର୍ଶନଂ ଚକ୍ରମସହ୍ୟତେଜୋ ଧନୁଶ୍ଚ ଶାର୍ଙ୍ଗଂ ସ୍ତନୟିତ୍ନୁଘୋଷମ୍ । ୩୦ ।
ପର୍ଜନ୍ୟଘୋଷୋ ଜଳଜଃ ପାଞ୍ଚଜନ୍ୟଃ କୌମୋଦକୀ ବିଷ୍ଣୁଗଦା ତରସ୍ୱିନୀ ।
ବିଦ୍ୟାଧରୋଽସିଃ ଶତଚନ୍ଦ୍ରଯୁକ୍ତସ୍ତୂଣୋତ୍ତମାବକ୍ଷୟସାୟକୌ ଚ । ୩୧ ।
ସୁନନ୍ଦମୁଖ୍ୟା ଉପତସ୍ଥୁରୀଶଂ ସ୍ୱପାର୍ଷଦା ଯେ ସହ ଲୋକପାଳାଃ ।
ସ୍ଫୁରତ୍କିରୀଟାଙ୍ଗଦମୀନକୁଣ୍ଡଳଃ ଶ୍ରୀବତ୍ସରତ୍ନୋତ୍ତମମେଖଳାମ୍ବରୈଃ । ୩୨ ।

---

ମହାବୀର ବଳି ତାହାଙ୍କର ନାଡ଼ୀ ସମୂହରେ ନଦୀମାନ, ନଖ ସମୂହରେ ଶିଳାମାନ, ବୁଦ୍ଧିରେ ବ୍ରହ୍ମା, ଇନ୍ଦ୍ରିୟ ସମୂହରେ ଦେବଗଣ ଓ ଋଷିଗଣଙ୍କୁ ଏବଂ ଗାତ୍ରରେ ସ୍ଥାବର ଜଙ୍ଗମାତ୍ମକ ଭୂତମାନଙ୍କୁ ସନ୍ଦର୍ଶନ କରିଥିଲେ ।୨୯।

ହେ ରାଜନ୍ ! ସମସ୍ତ ଅସୁରମାନେ ସର୍ବାତ୍ମା ଭଗବାନଙ୍କଠାରେ ଭୁବନତ୍ରୟ ଓ ଅସହ୍ୟ ତେଜସମ୍ପନ୍ନ ସୁଦର୍ଶନ ନାମକ ଚକ୍ର ଏବଂ ବଜ୍ରତୁଲ୍ୟ ଧ୍ୱନି ବିଶିଷ୍ଟ ଶାର୍ଙ୍ଗ ଧନୁ ଅବଲୋକନ କରି ମୂର୍ଚ୍ଛିତ ହୋଇଥିଲେ ॥

ମେଘ ତୁଲ୍ୟ ଶବ୍ଦଯୁକ୍ତ ପାଞ୍ଚଜନ୍ୟ ଶଙ୍ଖ, ଅତି ବେଗବତୀ କୌମୋଦକୀ ନାମକ ଗଦା, ଶତଚନ୍ଦ୍ର ଚିହ୍ନ ଯୁକ୍ତ ବିଦ୍ୟାଧର ନାମକ ଅସି, ଉତ୍ତମ ଓ ଅକ୍ଷୟ ସାୟକପୂର୍ଣ୍ଣ ତୂଣଦ୍ୱୟ ଏମାନଙ୍କର ଈଶ୍ୱର ସେହି ପରମେଶ୍ୱରଙ୍କୁ ବେଷ୍ଟନ କରି ସୁନନ୍ଦ ପ୍ରଭୃତି ପ୍ରଧାନ ପ୍ରଧାନ ପାର୍ଷଦଗଣ ଲୋକପାଳଗଣଙ୍କ ସହିତ ସ୍ତବ କରିବାକୁ ଲାଗିଲେ, ଭଗବାନ୍ କିରୀଟ, ଅଙ୍ଗଦ, ମକରକୁଣ୍ଡଳ, ଅଳଙ୍କୃତ ଏବଂ ରତ୍ନୋତ୍ତମ, ଶ୍ରୀବତ୍ସ, ମେଖଳା ଏବଂ ବସନଦ୍ୱାରା ଭୂଷିତ ହୋଇଥିଲେ । ୩୧, ୩୨ ।

---

ନଦୀ ସମୂହେ ନାଡ଼ୀ ଦେଶେ
ଅଚଳକୁଳ ନଖେ ବସେ
ବ୍ରହ୍ମା ବିରାଜେ ବୁଦ୍ଧି ମଧ୍ୟେ
ଋଷି ଦେବତା ଇନ୍ଦ୍ରି ମଧ୍ୟେ
ସ୍ଥାବର ଜଙ୍ଗମ ସହିତେ
ଜୀବ ସକଳ ଦିଶେ ଗାତ୍ରେ ।୨୯।
ଚତୁର ଶସ୍ତ୍ର ଚତୁର୍ଭୁଜେ
ଶଙ୍ଖ କମଳ ଚକ୍ର ସାଜେ

ଗଦା ସାରଙ୍ଗ ଅସିବର
ତୂଣ ଅକ୍ଷୟ ବାଣଶର
ସର୍ବାଙ୍ଗେ ଦିଶେ ତନ୍ମୟର
ଦେବ-ମାନବେ ଅଗୋଚର ୩୦, ୩୧
ସୁନନ୍ଦ ଆଦି ପାରିଷଦେ
ସମୀପେ ଖଟନ୍ତି ଆନନ୍ଦେ
ଦଶ ଉଭାରେ ଦିଗପାଳେ
ମୁକ୍ତ ବିବୁଧେ ଅନ୍ତରାଳେ

କିରୀଟ ଅଙ୍ଗଦ ଉଜ୍ଜ୍ୱଳ
ଶ୍ରବଣେ ମକର କୁଣ୍ଡଳ
ଶ୍ରୀବତ୍ସ ଚିହ୍ନ ବନମାଳା
କଟୀରେ ସୁବର୍ଣ୍ଣ ମେଖଳା
ବନମାଳାର ଗନ୍ଧ ବାସେ
ଭ୍ରମର ଉଡୁଛନ୍ତି ପାଶେ
ପାଦକେ ଧରଣୀ ପୂରିଲା
ଦ୍ୱିତୀୟେ ସ୍ୱର୍ଗ ଗ୍ରସ୍ତହେଲା

ମଧୁବ୍ରତସ୍ରଗ୍‌ବନମାଳୟା ବୃତୋ ରରାଜ ରାଜନ୍ ଭଗବାନୁରୁକ୍ରମଃ ।
କ୍ଷିତିଂ ପଦୈକେନ ବଳେର୍ବିଚକ୍ରମେ ନଭଃ ଶରୀରେଣ ଦିଶଶ୍ଚ ବାହୁଭିଃ ।୩୩।
ପଦଂ ଦ୍ୱିତୀୟଂ କ୍ରମତସ୍ତ୍ରିବିଷ୍ଟପଂ ନ ବୈ ତୃତୀୟାୟ ତଦୀୟମଣ୍ୱପି ।
ଉରୁକ୍ରମସ୍ୟାଙ୍ଘ୍ରିରୁପର୍ଯ୍ୟୁପର୍ଯ୍ୟଥୋ ମହର୍ଜନାଭ୍ୟାଂ ତପସଃ ପରଂ ଗତଃ ।୩୪।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ବିଶ୍ୱରୂପଦର୍ଶନଂ
ନାମ ବିଂଶୋଽଧ୍ୟାୟଃ ।

---

ଭ୍ରମର ସଂକୁଳଯୁକ୍ତ, ବନମାଳାଳଙ୍କୃତ ହୋଇ ଭଗବାନ୍ ଅତ୍ୟନ୍ତ ଶୋଭା ପାଉଥିଲେ । ତାହାଙ୍କର ଏକ ପାଦରେ ବଳିର ସମସ୍ତ ଭୂମି, ଶରୀରରେ ଆକାଶ ଏବଂ ବାହୁ ସମୂହରେ ଦିଗସମୂହ ଆକ୍ରମଣ କରିଥିଲେ ।୩୩।

ହେ ରାଜନ୍ ! ଦ୍ୱିତୀୟପଦ କ୍ଷେପଣରେ ସ୍ୱର୍ଗ ପୂର୍ଣ୍ଣ ହୋଇଥିଲା, କିନ୍ତୁ ତୃତୀୟ ଚରଣ ରଖିବାଲାଗି ଆଉ କିଞ୍ଚିନ୍ମାତ୍ର ସ୍ଥାନ ଅବଶିଷ୍ଟ ନଥିଲା । କିନ୍ତୁ ସେହି ଉରୁକ୍ରମଙ୍କର ତୃତୀୟ ଚରଣ ରଖିବା ନିମିତ୍ତ ସ୍ଥାନ ନ ଥିବାରୁ ଏହି ତୃତୀୟ ଚରଣ ମହର୍ଲୋକ, ଜନଲୋକ ଓ ତପୋଲୋକ ପରେ ସତ୍ୟ ଲୋକରେ ଉପସ୍ଥିତ ହେଲା ।୩୪।

---

ଦିଗ ପୂରିଲା ଅଷ୍ଟଭୁଜ
ମେଘ ଦିଶନ୍ତି ଚୂଳମାଝେ
ଏମନ୍ତେ ବାମନର ଦେହ
ତୃତୀୟ ପାଦେ ଠାବ କାହିଁ

ମହତ ଜନ ତପ ଲୋକେ
ଲୁଚିଲେ ବାମନ ମସ୍ତକେ ।୩୨-୩୪
ବୋଲଇ ଦାସ ଜଗନ୍ନାଥ
ଅଦ୍ଭୁତ ବିଷ୍ଣୁର ଚରିତ

ସୁଜନେ ଚିତ୍ତ ଏକଚିତ୍ତେ
ଭାଷା ପ୍ରବନ୍ଧେ ଭାଗବତେ
ବଳି ବାନର ପ୍ରସ୍ତାବ
ଶୁଣି ତ୍ରିତାପୁଁ ନିସ୍ତରିବ ।



# ଏକବିଂଶୋଽଧ୍ୟାୟଃ ।

ଏକବିଂଶେ ପଦାପୂର୍ତ୍ତି-ମୀଷେଣ ବଲବନ୍ଧନମ୍ ।
ବସ୍ତୁନା କୃତମୁତ୍କର୍ଷଂ ତସ୍ୟ ଖ୍ୟାପୟିତୁ ଜନେ ॥୦॥ ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ସତ୍ୟଂ ସମୀକ୍ଷ୍ୟାବ୍ଜଭବୋ ନଖେନ୍ଦୁଭିର୍ହତସ୍ୱଧାମଦ୍ୟୁତିରାବୃତୋଽଭ୍ୟଗାତ୍ ।
ମରୀଚିମିଶ୍ରା ଋଷୟୋ ବୃହଦ୍‌ବ୍ରତାଃ ସନନ୍ଦନାଦ୍ୟା ନରଦେବ ଯୋଗିନଃ । ୧ ।
ବେଦୋପବେଦା ନିୟମା ଯମାନ୍ୱିତାସ୍ତର୍କେତିହାସାଙ୍ଗପୁରାଣସଂହିତାଃ ।
ଯେ ଚାପରେ ଯୋଗସମୀରଦୀପିତ ଜ୍ଞାନାଗ୍ନିନା ରନ୍ଧିତକର୍ମକଲ୍ମଷାଃ । ୨ ।

---

## ତୃତୀୟ ପଦ ପୂରଣ ଛଳରେ ବଳି ବନ୍ଧନ ।

ଏକବିଂଶ ଅଧ୍ୟାୟରେ ପାଦଦ୍ୱାରା ତ୍ରିଭୁବନ ପୂରଣ ଛଳରେ ବଳିଙ୍କୁ ବନ୍ଧନ କରି ସ୍ୱକୃତ ଉତ୍କର୍ଷ ପ୍ରସ୍ଥାପନ ବର୍ଣ୍ଣିତ ହୋଇଅଛି ॥ ୦ ॥

ଶ୍ରୀ ଶୁକଦେବ କହିଲେ :—

ହେ ନରଦେବ ! ପଦ୍ମଯୋନି ବ୍ରହ୍ମା ସତ୍ୟଲୋକ ପ୍ରାପ୍ତ ଭଗବାନଙ୍କର ସେହି ଚରଣ ଦର୍ଶନ କରି ଏହି ଚରଣର ନଖଚନ୍ଦ୍ର ଦୀପ୍ତିରେ ନିଜର ବ୍ରହ୍ମଲୋକର ତେଜ ନଷ୍ଟ ହୁଅନ୍ତେ ସେ ନିଜେ ମଧ୍ୟ ତଦ୍ଦ୍ୱାରା ଜସ୍ତ୍ରୀଭୂତ ହୋଇ ଭଗବାନଙ୍କ ନିକଟକୁ ଆଗମନ କରିଥିଲେ ଏବଂ ମରୀଚ ପ୍ରଭୃତି ଋଷିଗଣ ଓ ମହାବ୍ରତ-ଧାରୀ ପରମଯୋଗୀ ସନନ୍ଦାଦି ମୁନିଗଣ ତାହାଙ୍କ ନିକଟକୁ ଗମନ କରିଥିଲେ ।୧।

ତଦନନ୍ତର ବେଦ, ଉପବେଦ, ନିୟମ, ଯମ, ତର୍କ, ଇତିହାସ, ଶିକ୍ଷା, କଳ୍ପ ପ୍ରଭୃତି ବେଦାଙ୍ଗ, ପୁରାଣ, ସଂହିତା ଏବଂ ଅପରାପର ସମସ୍ତ ଯେଉଁ ମାନଙ୍କର ଯୋଗରୂପ ସମୀରଣପ୍ରଭାବରେ ପ୍ରଦୀପ୍ତ ଜ୍ଞାନାଗ୍ନି ଦ୍ୱାରା କର୍ମବାସନା ଦଗ୍ଧ ହୋଇଅଛି; ସେମାନେ ଯେଉଁ ଭଗବଚ୍ଚରଣ ସ୍ମରଣ ପ୍ରଭାବରେ ସ୍ୱାୟମ୍ଭୁବ ଲୋକ ପ୍ରାପ୍ତ ହୋଇଅଛନ୍ତି; ସେମାନେ ଆଗମନ କରି ଯେଉଁ ଚରଣ କର୍ମଦ୍ୱାରା ଲାଭ କରାଯାଇ ନ ପାରେ ସେହି ଚରଣଙ୍କୁ ବନ୍ଦନା କଲେ ।୨।

---

ଏକବିଂଶରେ ସେ ବାମନ,　　କରିଲେ ବଳିଙ୍କୁ ବନ୍ଧନ ॥

ଶ୍ରୀଶୁକଉବାଚ—
ବାମନ ମୁଖେ ତେଜ ଦେଖି
ବୁଜିଲେ ହର-ବ୍ରହ୍ମା ଆଖି
ଉଠନ୍ତେ ମିଳିଲେ ବସ୍ତୁପାଶେ
ଅଜନ୍ମ ଚରଣ ବିଶ୍ୱାସେ
ଅମର ଆଦି ମୁନିଗଣେ
ମିଳିଲେ ବାମନ ଚରଣେ
ସନନ୍ଦ ଆଦି ଯୋଗୀଜନେ
ବେଦ ଉପବେଦ ସୁମନେ
ଯମ ନିୟମ ବେନିପାଶେ
ସର୍ବେ ମିଳିଲେ ମହାହ୍ଲାସେ
ତର୍କ ପୁରାଣ ଇତିହାସ
ଆଗମ ନିଗମ ପ୍ରକାଶ
ଅପରେ ଯୋଗୀ ସିଦ୍ଧ ଯେତେ
ଜ୍ଞାନ ଅନଳ ଜାଳି ଚିତ୍ତେ
ଅଶେଷ କର୍ମବନ୍ଧ ପାଶି
ଯେ କରିଛନ୍ତି ଭସ୍ମରାଶି
ବେଗେ ମିଳିଲେ ମୋଦଭରି
ସ୍ତୁତି-ବଚନ ମୁଖେ କରି ।୧,୨।

ବବନ୍ଦିରେ ଯତ୍ ସ୍ମରଣାନୁଭାବତଃ ସ୍ୱାୟମ୍ଭୁବଂ ଧାମ ଗତା ଅକର୍ମକମ୍ ।
ଅଥାଙ୍ଘ୍ରୟେ ପ୍ରୋନ୍ନମିତାୟ ବିଷ୍ଣୋରୁପାହରତ୍ ପଦ୍ମଭବୋଽର୍ହଣୋଦକମ୍ ।
ସମର୍ଚ୍ୟ ଭକ୍ତ୍ୟାଭ୍ୟଗୃଣାଚ୍ଛୁଚିଶ୍ରବା ଯନ୍ନାଭିପଙ୍କେରୁହସମ୍ଭବଃ ସ୍ୱୟଂ । ୩ ।
ଧାତୁଃ କମଣ୍ଡଳୁଜଳଂ ତଦୁରୁକ୍ରମସ୍ୟ ପାଦାବନେଜନପବିତ୍ରତୟା ନରେନ୍ଦ୍ର ।
ସ୍ୱର୍ଧୁନ୍ୟଭୂନ୍ନଭସି ସା ପତତୀ ନିମାର୍ଷ୍ଟି ଲୋକତ୍ରୟଂ ଭଗବତୋ ବିଶଦେବ କୀର୍ତ୍ତିଃ ।୪

ବ୍ରହ୍ମାଦୟୋ ଲୋକନାଥା ସ୍ୱନାଥାୟ ସମାଦୃତାଃ ।
ସାନୁଗା ବଲିମାଜହ୍ରୁଃ ସଂକ୍ଷିପ୍ତାତ୍ମବିଭୂତୟେ । ୫ ।

---

ତଦନନ୍ତର ପଦ୍ମଯୋନି ବ୍ରହ୍ମା, ଯାହାଙ୍କ ନାଭିପଦ୍ମରୁ ସ୍ୱୟଂ ଉତ୍ପନ୍ନ ହୋଇ ଅଛନ୍ତି, ସେହି ବିଷ୍ଣୁଙ୍କର ଉନ୍ନତ ଚରଣରେ ଅର୍ଘ୍ୟ ପ୍ରଦାନ କରିଥିଲେ ଏବଂ ଭକ୍ତି ପୂର୍ବକ ତାହାଙ୍କୁ ଅର୍ଚ୍ଚନା କରି ପୂଜା କରିଥିଲେ ।୩।

ହେ ନରେନ୍ଦ୍ର ! ବ୍ରହ୍ମାଙ୍କର ସେହି କମଣ୍ଡଳୁ ଜଳ ଭଗବାନଙ୍କର ଚରଣ ପ୍ରକ୍ଷାଳନରେ ପବିତ୍ର ହୋଇ ସ୍ୱର୍ଗ ଗଙ୍ଗାରେ ପରିଣତ ହେଲା, ଭଗବାନଙ୍କର ନିର୍ମଳ କୀର୍ତ୍ତି ସଦୃଶୀ ସ୍ୱର୍ଗଗଙ୍ଗା ଆକାଶରୁ ପତିତ ହୋଇ ତ୍ରିଭୁବନ ପବିତ୍ର କରୁଅଛି ।୪।

ତଦନନ୍ତର ଅନୁଚରମାନଙ୍କ ସହିତ ସମାଦୃତ ବ୍ରହ୍ମାଦି ଲୋକପାଳଗଣ ବାମନରୂପରେ ଅବସ୍ଥିତ ନିଜର ପ୍ରଭୁ ବିଷ୍ଣୁଙ୍କୁ ପୂଜା ଉପହାରମାନ ସମର୍ପଣ କରିଥିଲେ ।୫।

---

ହରି ବିରଞ୍ଚି ତୋଷମନେ
କରି ସ୍ତୁତି ଉପାସ୍ୟନେ
ବାମନ ପାଦ ତଳେ ଥୋଇ
ତକ୍ଷଣେ ବ୍ରହ୍ମା ଆଗ ହୋଇ
ଯେ ବିଷ୍ଣୁ ନାଭି-ପଦ୍ମ ଜାତ
ଯାହା ସର୍ଜ୍ଜିଲ ଏ ଜଗତ
ଆନନ୍ଦେ ଭରି କମଣ୍ଡଳେ
ଶୁଚି ପବିତ୍ର ଗଙ୍ଗାଜଳେ
ନଲୁ ଉଚ୍ଚାରି ହସ୍ତେ ଘେନି
ଯେ ନାସି ଭୁବନ-ପାବନି
ବାମନ ପାଦ ଶୂନ୍ୟେ ଗଲା
ବାଜନ୍ତେ ବ୍ରହ୍ମାଣ୍ଡ ଫାଟିଲା
ସେ ଅଣ୍ଡ ଭେଦ ଜଳରାଶି
ବେଗେ ବ୍ରହ୍ମାଣ୍ଡମଧ୍ୟେ ପଶି
ବିଷ୍ଣୁ ଚରଣ ପଖାଳିଲା
ପତିତ-ପାବନୀ ସ୍ରବିଲା
ସେ ଜଳ କମଣ୍ଡଳେ ଘେନି
ବିଷ୍ଣୁ ସମୀପେ ପଦ୍ମ-ଯୋନି
ସଙ୍ଗତେ ଘେନି ଦେବଗଣ
ଯେ ସିଦ୍ଧ କଲାରି ସ୍ମରଣ
ଯେ ଯାର ଘେନି ଉପାସ୍ୟନ
ମିଳିଲେ ବିଷ୍ଣୁ ସନ୍ନିଧାନ
ନମି ବାମନ ପାଦମୂଳେ
ନିଜ ଅଧିକାର ନିଷ୍ଠକେ
ଗଙ୍ଗା ଯେ କମଣ୍ଡଳେ ଥିଲା
ବ୍ରହ୍ମା ବିଷ୍ଣୁପାଦେ ଢାଳିଲା
ଶୁଚି ପବିତ୍ର ଜଳରାଶି
ଚରଣ ନଖକୋଣେ ପଶି
ତହିଁ ଉଛୁଳି ଅନ୍ତରୀକ୍ଷେ
ପଡ଼ିଲା ମୁନିଙ୍କ ସମୀପେ
ସୋମ ଆଦିତ୍ୟ ଲୋକ ଛାଡ଼ି
ସ୍ୱର୍ଗେ ପଡ଼ିଲା ତରଙ୍ଗିଣୀ
ସୁମେରୁ ଶିଖେ ଅନ୍ତରୀକ୍ଷେ
ସେ ଜଳ ବହିଲା ପ୍ରତ୍ୟକ୍ଷେ
ଚତୁର୍ଦ୍ଧାରେ ସ୍ୱର୍ଧ ରେ
ପଡ଼ିଲା ଧରଣୀ ଉପରେ
ସମୁଦ୍ରେ ପଶେ ସ୍ୱରଦ୍ଧାରେ
ନଦୀ ସ୍ୱରୂପେ ଅତି ବେଗେ
ଏବେ ହୋ ପୁଣ ମହୀପତି
ଚରଣ ଧୋଇ ପ୍ରଜାପତି ।୩-୫।

ତୋୟୈଃ ସମର୍ହଣୈଃ ସ୍ରଗ୍ଭିର୍ଦିବ୍ୟଗନ୍ଧାନୁଲେପନୈଃ ।
ଧୂପୈର୍ଦୀପୈଃ ସୁରଭିଭିର୍ଲାଜାକ୍ଷତଫଲୋକୁରୈଃ । ୬ ।
ସ୍ତବନୈର୍ଜୟଶବ୍ଦୈଶ୍ଚ ତଦ୍‌ବୀର୍ଯ୍ୟମହିମାଙ୍କିତୈଃ ।
ନୃତ୍ୟବାଦିତ୍ରଗୀତୈଶ୍ଚ ଶଙ୍ଖଦୁନ୍ଦୁଭିନିଃସ୍ୱନୈଃ । ୭ ।
ଜାମ୍ବବାନୃକ୍ଷରାଜସ୍ତୁ ଭେରୀଶବ୍ଦୈର୍ମନୋଜବଃ ।
ବିଜୟଂ ଦିକ୍ଷୁ ସର୍ବାସୁ ମହୋତ୍ସବମଘୋଷୟତ୍ । ୮ ।
ମହୀଂ ସର୍ବାଂ ହୃତାଂ ଦୃଷ୍ଟ୍ୱା ତ୍ରିପଦବ୍ୟାଜୟାଚ୍ଞୟା ।
ଊଚୁଃ ସ୍ୱଭର୍ତ୍ତୁରସୁରା ଦୀକ୍ଷିତସ୍ୟାତ୍ୟମର୍ଷିତାଃ । ୯ ।
ନ ବା ଅୟଂ ବ୍ରହ୍ମବନ୍ଧୁର୍ବିଷ୍ଣୁର୍ମାୟାବିନାଂବରଃ ।
ଦ୍ୱିଜରୂପପ୍ରତିଚ୍ଛନ୍ନୋ ଦେବକାର୍ଯ୍ୟଂ ଚିକୀର୍ଷତି । ୧୦ ।

ସୁଶୀତଳ ଜଳ, ସୁନ୍ଦର ମାଲ୍ୟ, ସୁଗନ୍ଧ ଚନ୍ଦନ ଏବଂ ଅନୁଲେପନ ଦ୍ରବ୍ୟ, ସୁବାସିତ ଧୂପ, ଲଜା (ଖଇ), ଅକ୍ଷତ, ଏବଂ ବିବିଧ ଫଳଦ୍ୱାରା ଭଗବାନଙ୍କୁ ଅର୍ଚ୍ଚନା ଓ ସ୍ତବ କରି ତାହାଙ୍କର ଗୁଣଗାୟନ ପୂର୍ବକ ନୃତ୍ୟ ଗୀତ, ବାଦ୍ୟ, ଶଙ୍ଖ, ଦୁନ୍ଦୁଭି ଧ୍ୱନି ଦ୍ୱାରା ଆନନ୍ଦ ପ୍ରକାଶ କରିଥିଲେ । ୬, ୭ ।

ମନତୁଲ୍ୟ ଦ୍ରୁତଗାମୀ ଋକ୍ଷରାଜ ଜାମ୍ବବାନ୍ ଭେରି ଶବ୍ଦଦ୍ୱାରା ଚତୁର୍ଦ୍ଦିଗରୁ ବାମନ ଦେବଙ୍କର ମହୋତ୍ସବ ଘୋଷଣା କରିଥିଲେ ।୮।

ତ୍ରିପାଦ ଭୂମି ପ୍ରାର୍ଥନା ଛଳରେ ବାମନ ଦେବ ଯଜ୍ଞକାରୀ ବଳି ରାଜାଙ୍କର ସମସ୍ତ ରାଜ୍ୟ ହୃତ ହେବାର ଦେଖି ଅସୁରମାନେ ଅତ୍ୟନ୍ତ କ୍ରୁଦ୍ଧ ହୋଇ କହିଲେ ।୯।

ମାୟାବୀଶ୍ରେଷ୍ଠ ବାମନରୂପୀ ବିଷ୍ଣୁ ପ୍ରକୃତରେ ବ୍ରାହ୍ମଣ ନୁହେଁ । ବ୍ରାହ୍ମଣ ରୂପଦ୍ୱାରା ଆପଣାକୁ ଗୋପନ କରି ଦେବତାମାନଙ୍କ ହିତକାର୍ଯ୍ୟ ସାଧନ କରୁଅଛି ।୧୦।

ସୁଗନ୍ଧ ପୁଷ୍ପମାଲ୍ୟ ଘେନି
ଦେଲେ ଚନ୍ଦନ ଲେପି ପୁଣି
ସନ୍ନିବେଶ ଧୂପ ଦୀପ ଥୋଇ
ଫଳ ଅକ୍ଷତ ଲଜା ଦେଇ
"ଜୟ" ଶବଦେ ସ୍ତୁତି ଭଣି
ନିର୍ମଳ ବାକ୍ୟେ ବେଦ ବାଣୀ
ବିଷ୍ଣୁର ମହିମା ଉକତେ
ତାଣ୍ଡବ ବାଦ୍ୟ ନାଦ ଗୀତେ
ଶଙ୍ଖ-ଦୁନ୍ଦୁଭି ଶବ୍ଦେ ଘୋଷେ
ସର୍ବେ ମିଳିଲେ ବିଷ୍ଣୁ ପାଶେ

ଅତି ଉଲ୍ଲାସେ ଜାମ୍ବବାନ
ମିଳିଲା ବିଷ୍ଣୁ ସନ୍ନିଧାନ
ବିଷ୍ଣୁର ଯଶ ଗାଇ ତୋଷେ
ଯେ ଯଶେ ପୂରେ ଦଶଦିଶେ ।୬-୮
ଏମନ୍ତ ମହୋତ୍ସବ ଦେଖି
ଅସୁରେ ଭୁବନ ଉପେକ୍ଷି
ତ୍ରିପାଦ ଦାନେ ସର୍ବ ମହୀ
ପୂରିଲା ବାମନର ଦେହି
ସ୍ୱସ୍ଥାନେ ରହି ନ ପାରିଲେ
ବଳିର ସମୀପେ ମିଳିଲେ

ସ୍ତୁତି ବଚନ ଘେନି ରୋଷେ
ବୋଲନ୍ତି ବଳିର ଅଗ୍ରତେ । ୯ ।

ଅସୁର ଊଚୁଃ—

ବ୍ରାହ୍ମଣ ନୋହେ ଏ ବାମନ
କପଟେ ମାଗେ ଭୂମିଦାନ
ପ୍ରତ୍ୟକ୍ଷେ ପ୍ରଭୁ ଭଗବାନ
ମାୟାବିମାନଙ୍କ ମୋହନ

ଅନେନ ଯାଚମାନେନ ଶତ୍ରୁଣା ବଟୁରୂପିଣା ।
ସର୍ବସ୍ୱଂ ନୋ ହୃତଂ ଭର୍ତ୍ତୁର୍ନ୍ୟସ୍ତଦଣ୍ଡସ୍ୟ ବର୍ହିଷି ।୧୧।
ସତ୍ୟବ୍ରତସ୍ୟ ସତତଂ ଦୀକ୍ଷିତସ୍ୟ ବିଶେଷତଃ ।
ନାନୃତଂ ଭାଷିତୁଂ ଶକ୍ୟଂ ବ୍ରହ୍ମଣ୍ୟସ୍ୟ ଦୟାବତଃ ।୧୨।
ତସ୍ମାଦସ୍ୟ ବଧୋ ଧର୍ମ୍ମୋ ଭର୍ତ୍ତୁଃ ଶୁଶ୍ରୂଷଣଞ୍ଚ ନଃ ।
ଇତ୍ୟାୟୁଧାନି ଜଗୃହୁର୍ବଳେରନୁଚରାସୁରାଃ ।୧୩।
ତେ ସର୍ବେ ବାମନଂ ହନ୍ତୁଂ ଶୂଳପଟ୍ଟିଶପାଣୟଃ ।
ଅନିଚ୍ଛତୋ ବଳେ ରାଜନ୍ ପ୍ରାଦ୍ରବନ୍ ଜାତମନ୍ୟବଃ ।୧୪।
ତାନଭିଦ୍ରବତୋ ଦୃଷ୍ଟ୍ୱା ଦିତିଜାନୀକପାନ୍ ନୃପ ।
ପ୍ରହସ୍ୟାନୁଚରାଃ ବିଷ୍ଣୋଃ ପ୍ରତ୍ୟଷେଧନ୍ନୁଦାୟୁଧାଃ ।୧୫।

---

ଯଜ୍ଞ କାର୍ଯ୍ୟ ଲାଗି ଆମ୍ଭମାନଙ୍କର ପ୍ରଭୁ ରାଜଦଣ୍ଡ ପରିତ୍ୟାଗ କରି ଆପଣାର ସର୍ବସ୍ୱ ଏହି ବ୍ରାହ୍ମଣ ବାଳକ ରୂପୀ ପରମ ଶତ୍ରୁ ବିଷ୍ଣୁଙ୍କୁ ଦେଇଅଛନ୍ତି । ସେ ସତତ ସତ୍ୟବ୍ରତ ବିଶେଷତଃ ଯଜ୍ଞରେ ଦୀକ୍ଷିତ ବ୍ରାହ୍ମଣ ଭକ୍ତ ଓ ଦୟାଶୀଳ, ସେ କଦାପି ମିଥ୍ୟା କହି ନ ପାରନ୍ତି । ୧୧, ୧୨ ।

ସୁତରାଂ ତାହାଙ୍କର ପ୍ରାଣବଧ କରିବାହିଁ ଧର୍ମ, ଏଥିରେ ଆମ୍ଭମାନଙ୍କର ସ୍ୱାମୀଙ୍କର ମଧ୍ୟ ଶୁଶ୍ରୂଷା ହେବ, ଏହିପରି କହି ଅନୁଚର ଅସୁରମାନେ ଅସ୍ତ୍ରଶସ୍ତ୍ର ଧାରଣ କରିଥିଲେ ।୧୩।

ହେ ରାଜନ୍ ! ବଳିଙ୍କର ଇଚ୍ଛା ନ ଥିଲେ ମଧ୍ୟ ଅସୁରମାନେ କ୍ରୋଧରେ ଶୂଳ ଓ ପଟ୍ଟିଶ ହସ୍ତରେ ବାମନଙ୍କୁ ବଧ କରିବାକୁ ଧାଇଁଥିଲେ ।୧୪।

ହେ ରାଜନ୍ ! ଦୈତ୍ୟ ସେନାପତିମାନଙ୍କୁ ଧାବମାନ ଦେଖି ବିଷ୍ଣୁ ଅନୁଚରମାନେ ହାସ୍ୟକରି ନିଜ ନିଜର ଅସ୍ତ୍ର ଧରି ବାଧା ଦେବାକୁ ଲାଗିଲେ ।୧୫।

---

ମାୟାବିମାନଙ୍କର ବର
ସମ୍ପଦ ହରିଲା ତୋହର ।୧୦,୧୧
ଏ ବଳି ନିତ୍ୟେ ସତ୍ୟବ୍ରତୀ
ବିଶେଷେ ବ୍ରାହ୍ମଣେ ଭକତି
କେବେହେଁ ମିଥ୍ୟା ଏ ନ କହେ
ଦୁଃଖିଜନଙ୍କୁ ଦୟା ବହେ ।୧୨।
ଆମ୍ଭର ପ୍ରଭୁ ଏ ରାଜନ
ନିଶ୍ଚେ ବଧିବ ଏ ବାମନ
ଆସ ଏହାକୁ ବଧ କରି
ବଳିକି ସଙ୍କଟୁ ଉଦ୍ଧରି
ଏ ମଲେ ଶତ୍ରୁ ନାହିଁ ଦୁଜା
ବଳି ହୋଇବ ସ୍ୱର୍ଗେ ରାଜା
ଏମନ୍ତ ବୋଲି ଏକଚିତ୍ତେ
ଅସୁରେ ଧାଇଁଲେ ତୁରିତେ ।୧୩
ଶୂଳ ଖଡ଼ଗ ଘେନି କରେ
ଧାମନ୍ତି ଘୋର ନାଦଭରେ
ଶବଦେ ଆକାଶ ପୂରିଲା
ଧାମନ୍ତେ ଧରଣୀ କମ୍ପିଲା
ତାହାଙ୍କୁ ଦେଖି ବିଷ୍ଣୁଗଣେ
ତକ୍ଷଣେ ଉଠିଲେ ରଣେ
ମିଳିଲେ କରେ ଶସ୍ତ୍ର ଧରି
ଶଙ୍ଖ ଶବଦେ ମୋଦଭରି ।୧୪,୧୫

ନନ୍ଦଃ ସୁନନ୍ଦୋଽଥ ଜୟୋ ବିଜୟଃ ପ୍ରବଲୋ ବଲଃ ।
କୁମୁଦଃ କୁମୁଦାକ୍ଷଶ୍ଚ ବିଶ୍ୱକ୍‌ସେନଃ ପତତ୍ରିରାଟ୍ । ୧୬ ।
ଜୟନ୍ତ ଶ୍ରୁତଦେବଶ୍ଚ ପୁଷ୍ପଦନ୍ତୋଽଥ ସାତ୍ୱତଃ ।
ସର୍ବେ ନାଗାୟୁତପ୍ରାଣାଶ୍ଚମୂଂସ୍ତେ ଜଘ୍ନୁରାସୁରୀଃ । ୧୭ ।
ହନ୍ୟମାନାନ୍ ସ୍ୱକାନ୍ ଦୃଷ୍ଟ୍ୱା ପୁରୁଷାନୁଚରୈର୍ବଳିଃ ।
ବାରୟାମାସ ସଂରବ୍ଧାନ୍ କାବ୍ୟଶାପମନୁସ୍ମରନ୍ । ୧୮ ।
ହେ ବିପ୍ରଚିତ୍ତେ! ହେ ରାହୋ ! ହେ ନେମେ ! ଶ୍ରୂୟତାଂ ବଚଃ ।
ମା ଯୁଧ୍ୟତ ନିବର୍ତ୍ତଧ୍ୱଂ ନ ନଃ କାଲୋଽୟମର୍ଥକୃତ୍ । ୧୯ ।
ଯଃ ପ୍ରଭୁଃ ସର୍ବଭୂତାନାଂ ସୁଖଦୁଃଖୋପପତ୍ତୟେ ।
ତଂ ନାତିବର୍ତ୍ତିତୁଂ ଦୈତ୍ୟାଃ ପୌରୁଷୈରୀଶ୍ୱରଃ ପୁମାନ୍ । ୨୦ ।

---

ନନ୍ଦ, ସୁନନ୍ଦ, ଜୟ, ବିଜୟ, ପ୍ରବଳ, ବଳ, କୁମୁଦ, କୁମୁଦାକ୍ଷ, ବିଶ୍ୱକ୍‌ସେନ, ଗରୁଡ଼, ଜୟନ୍ତ, ଶ୍ରୁତଦେବ, ପୁଷ୍ପଦନ୍ତ, ଏବଂ ସାତ୍ୱତ ପ୍ରଭୃତି ଅଯୁତ ସଂଖ୍ୟକ, ମତ୍ତ ହସ୍ତି ତୁଲ୍ୟ ଅସୁର ସେନାଙ୍କୁ ବିନାଶ କରିବାକୁ ଲାଗିଲେ । ୧୬, ୧୭ ।

ବଳି ମହାପୁରୁଷଙ୍କ ଅନୁଚରମାନଙ୍କ କର୍ତ୍ତୃକ ନିଜର ସୈନ୍ୟମାନେ ନିହତ ହେବାର ଦେଖି ଶୁକ୍ରାଚାର୍ଯ୍ୟ ଅଭିଶାପ ବିଷୟ ସ୍ମରଣ କରି କ୍ରୁଦ୍ଧ ସୈନ୍ୟମାନଙ୍କୁ ନିଷେଧ କରିଥିଲେ ।୧୮।

ସେ କହିଲେ ହେ ବିପ୍ରଚିତ୍ତେ ! ହେ ରାହୁ ! ହେ ନେମେ ! ମୋ କଥା ଶୁଣ, ଆଉ ଯୁଦ୍ଧ କରନାହିଁ, ନିବୃତ୍ତ ହୁଅ, ଏହି ସମୟ ଆମ୍ଭମାନଙ୍କ ପକ୍ଷରେ ଅନୁକୂଳ ନୁହେଁ ।୧୯।

ହେ ଦୈତ୍ୟଗଣ ! ଯେ ସମସ୍ତ ଲୋକଙ୍କର ସୁଖ ଦୁଃଖପ୍ରଦାନର ପ୍ରଭୁ, ପୌରୁଷ ଦ୍ୱାରା କୌଣସି ବ୍ୟକ୍ତି ତାହାଙ୍କୁ ଅତିକ୍ରମ କରିବାକୁ ସମର୍ଥ ନୁହେଁ ।୨୦।

---

ନନ୍ଦ ସୁନନ୍ଦ ଜୟ ଆଦି
ବିଜୟ ପ୍ରବଳ ସୁବୁଦ୍ଧି
ବଳ କୁମୁଦ କୁମୁଦାକ୍ଷ
ବିନତା ସୁତ ଆଦି ଦକ୍ଷ
ବିଶ୍ୱକସେନ ଯେ ଜୟନ୍ତ
ସୁବାହୁ ସିଙ୍ଗୀ ସମସ୍ତ
ସାତ୍ୱତ ପୁଷ୍ପଦନ୍ତ ବୀର
ଶ୍ରୁତଦେବ ଯେ ମନୋହର
ଦଶସହସ୍ର ହସ୍ତିବଳ
ସ୍ୱଭାବେ ତେଜ ଅନର୍ଗଳ
ବେଗେ ମିଳିଲେ ଘୋର ରଣେ
ଲୁଟିଲେ ଯେହ୍ନେ ପଦ୍ମବନେ ।୧୬,୧୭
ଅସୁର ବଳ ନାଶ ଦେଖି
ବଳି ହୋଇଲା ମନେ ଦୁଃଖୀ
ଗୁରୁ ବଚନ ମନେ ସ୍ମରି
ବୋଲଇ ଜଣେ ଜଣେ ଧରି
ହେ ବିପ୍ରଚିତ୍ତ ବ୍ୟଗ୍ରଗତି
ହେ ରାହୁ କଉଣସି ପତି
ମୋର ବଚନ ଚିତ୍ତେ ଧର
କେବେହେଁ ସମର ନ କର
ଆମ୍ଭର ନୋହେ ଜୟ କାଳ
ଈଶ୍ୱର ମାୟା ଅନୁକୂଳ ।୧୮,୧୯
ଯେ ପ୍ରଭୁ ବଡେ ବଳବନ୍ତା
ପ୍ରାଣିଙ୍କ ଦୁଃଖ-ସୁଖ ଦାତା
ସ୍ୱୟଂ ଅଶେଷ ମାୟାଧର
ସଂସାର ଯାର ଖେଳ-ଘର
ସେ ଯାକୁ କାଳେ ବାମ ହୋଇ
ତାହାର ଜୟ ଯଶ କାହିଁ ।୨୦।

ଯୋ ନୋ ଭବାୟ ପ୍ରାଗାସୀଦଭବାୟ ଦିବୌକସାମ୍ ।
ସ ଏବ ଭଗବାନଦ୍ୟ ବର୍ତ୍ତତେ ତଦ୍‌ବିପର୍ଯ୍ୟୟମ୍ । ୨୧ ।
ବଲେନ ସଚିବୈର୍ବୁଦ୍ଧ୍ୟା ଦୁର୍ଗୈର୍ମନ୍ତ୍ରୌଷଧାଦିଭିଃ ।
ସାମାଦିଭିରୁପାୟୈଶ୍ଚ କାଲଂ ନାତ୍ୟେତି ବୈ ଜନଃ । ୨୨ ।
ଭବଦ୍ଭିର୍ନିର୍ଜିତା ହ୍ୟେତେ ବହୁଶୋଽନୁଚରା ହରେଃ ।
ଦୈବେନର୍ଦ୍ଧୈସ୍ତ ଏବାଦ୍ୟ ଯୁଧି ଜିତ୍ୱା ନଦନ୍ତି ନଃ । ୨୩ ।
ଏତାନ୍ ବୟଂ ବିଜେଷ୍ୟାମୋ ଯଦି ଦୈବଂ ପ୍ରସୀଦତି ।
ତସ୍ମାତ୍କାଲଂ ପ୍ରତୀକ୍ଷଧ୍ୱଂ ଯୋ ନୋଽର୍ଥତ୍ୱାୟ କଳ୍ପତେ । ୨୪ ।

ଶ୍ରୀ ଶୁକ ଉବାଚ ।

ପତ୍ୟୁର୍ନିଗଦିତଂ ଶ୍ରୁତ୍ୱା ଦୈତ୍ୟଦାନବଯୂଥପାଃ ।
ରସାଂ ନିର୍ବିବିଶୂ ରାଜନ୍ ବିଷ୍ଣୁପାର୍ଷଦତାଡ଼ିତାଃ । ୨୫ ।

---

ଯେଉଁ ଭଗବାନ୍ ପୂର୍ବେ ଆମ୍ଭମାନଙ୍କ ମଙ୍ଗଳ ନିମିତ୍ତ ଓ ଦେବତାମାନଙ୍କର ଅମଙ୍ଗଳ ନିମିତ୍ତ ଉଦ୍‌ଯୋଗୀ ଥିଲେ; ସେହି ଭଗବାନ୍ ବର୍ତ୍ତମାନ ତହିଁର ବିପରୀତ ହୋଇଅଛନ୍ତି ।୨୧।

ବଳ, ଅମାତ୍ୟ, ଦୁର୍ଗ, ମନ୍ତ୍ର, ଔଷଧି ଓ ସାମାଦି ନୀତିଦ୍ୱାରା କୌଣସି ଉପାୟରେ କେହି କାଳକୁ ଅତିକ୍ରମ କରିବାକୁ ସମର୍ଥ ନୁହେଁ ।୨୨।

ତୁମ୍ଭେମାନେ ଦୈବ ବଳରେ ବର୍ଦ୍ଧିତ ହୋଇ ବହୁବାର ଯେଉଁ ବିଷ୍ଣୁଙ୍କର ଅନୁଚରମାନଙ୍କୁ ଜୟ କରିଅଛ; ସେମାନେ ଆଜି ଯୁଦ୍ଧରେ ଆମ୍ଭମାନଙ୍କୁ ଜୟ କରିବାକୁ ଗର୍ବ କରୁଅଛନ୍ତି ।୨୩।

ଦୈବ ବା କାଳ ଆମ୍ଭମାନଙ୍କର ପ୍ରତି ପୁନର୍ବାର ପ୍ରସନ୍ନ ହେଲେ, ଆମ୍ଭେମାନେ ସେମାନଙ୍କୁ ଜୟ କରିବା, ସୁତରାଂ ସେହି କାଳକୁ ଅପେକ୍ଷା କରି ରୁହ, ତାହା ହେଲେ ଆମ୍ଭର ମଙ୍ଗଳ ହେବ । ୨୪ ।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଦୈତ୍ୟ ଓ ଦାନବ ଯୂଥପତିମାନେ ବଳିଙ୍କର ବାକ୍ୟ ଶ୍ରବଣ କରି ନିରସ୍ତ ହେଲେ, ଏବଂ ବିଷ୍ଣୁଙ୍କ ପାର୍ଷଦମାନଙ୍କ କର୍ତ୍ତୃକ ବିତାଡ଼ିତ ହୋଇ ରସାତଳରେ ପ୍ରବେଶ କଲେ ।୨୫।

---

ଯେବେ ଦଇବ ଆମ୍ଭପକ୍ଷେ
ସୁକାଳ ହୋଇବ ପ୍ରତ୍ୟକ୍ଷେ
ତେବେ ଜିଣିବା ଆମ୍ଭେ ରଣେ
ଏମନ୍ତେ ବୋଧି ଜଣେ ଜଣେ

ବଳି ବଚନ ଶ୍ରୀରେ ଶୁଣି
ଜୟ ଅଜୟ ସରିମାଣି
ପୁଣି ମିଳିବୁଁ ଜୟ କାଳେ
ଏମନ୍ତେ ବୋଲିଣ ପାତାଳେ

ପଶିଲେ ମନେ କ୍ରୋଧ ଭରି
ଏବେ ହୋଇ ଶୁଣ ଦଣ୍ଡଧାରୀ ।୨୧-୨୫

ଅଥ ତାର୍କ୍ଷ୍ୟସୁତୋ ଜ୍ଞାତ୍ୱା ବିରାଟ୍ ପ୍ରଭୁଚିକୀର୍ଷିତମ୍ ।
ବବନ୍ଧ ବାରୁଣୈଃ ପାଶୈର୍ବଲିଂ ସୂତେଽହନି କ୍ରତୌ । ୨୬ ।
ହାହାକାରୋ ମହାନାସୀଦ୍ରୋଦସ୍ୟୋଃ ସର୍ବତୋ ଦିଶମ୍ ।
ନିଗୃହ୍ୟମାଣେ ଦୈତ୍ୟେଶେ ବିଷ୍ଣୁନା ପ୍ରଭବିଷ୍ଣୁନା । ୨୭ ।
ତଂ ବଦ୍ଧଂ ବାରୁଣୈଃ ପାଶୈର୍ଭଗବାନାହ ବାମନଃ ।
ନଷ୍ଟଶ୍ରିୟଂ ସ୍ଥିରପ୍ରଜ୍ଞମୁଦାରଯଶସଂ ନୃପ । ୨୮ ।
ପଦାନି ତ୍ରୀଣି ଦତ୍ତାନି ଭୂମେର୍ମହ୍ୟଂ ତ୍ୱୟାସୁର ।
ଦ୍ୱାଭ୍ୟାଂ କ୍ରାନ୍ତା ମହୀ ସର୍ବା ତୃତୀୟମୁପକଳ୍ପୟ । ୨୯ ।
ଯାବତ୍ ତପତ୍ୟସୌ ଗୋଭିର୍ଯାବଦିନ୍ଦୁଃ ସହୋଡୁଭିଃ ।
ଯାବଦ୍‌ବର୍ଷତି ପର୍ଜନ୍ୟସ୍ତାବତୀ ଭୂରିୟଂ ତବ । ୩୦ ।
ପଦୈକେନ ମୟାକ୍ରାନ୍ତୋ ଭୂର୍ଲୋକଃ ଖଂ ଦିଶସ୍ତନୋଃ ।
ସ୍ୱର୍ଲୋକସ୍ତେ ଦ୍ୱିତୀୟେନ ପଶ୍ୟତସ୍ତେ ସ୍ୱମାତ୍ମନା । ୩୧ ।

ତଦନନ୍ତର ପକ୍ଷୀରାଜ ଗରୁଡ଼ ବିଷ୍ଣୁଙ୍କର ଅଭିପ୍ରାୟ ବୁଝିପାରି ଯଜ୍ଞର ସୋମାଭିଷେକ ଦିବସରେ ବଳିଙ୍କୁ ବରୁଣ ପାଶରେ ବନ୍ଧନ କରିଥିଲେ ।୨୬।

ସାମର୍ଥ୍ୟ ସମ୍ପନ୍ନ ବିଷ୍ଣୁଙ୍କ କର୍ତ୍ତୃକ ଅସୁରାଧିପତି ବଳି ବନ୍ଧ ହେବାରୁ ସ୍ୱର୍ଗ ଓ ପୃଥିବୀ ସର୍ବତ୍ର ହାହାକାର ଧ୍ୱନି ପଡ଼ିଲା ।୨୭।

ବରୁଣ ପାଶ ବଦ୍ଧ, ଭ୍ରଷ୍ଟଶ୍ରୀ, ସ୍ଥିରବୁଦ୍ଧି, କୀର୍ତ୍ତିମାନ୍ ବଳିଙ୍କୁ ବାମନ ଦେବ କହିଲେ ।୨୮।

ହେ ଅସୁର ! ତୁମେ ମୋତେ ତ୍ରିପାଦ ଭୂମି ଦାନ କରିବାକୁ ପ୍ରତିଶ୍ରୁତ ହୋଇଅଛ । ମୋର ଦୁଇପାଦ ଦ୍ୱାରା ସର୍ବସ୍ଥାନ ପରିବ୍ୟାପ୍ତ ହୋଇଅଛି, ବର୍ତ୍ତମାନ ତୃତୀୟ ପାଦ ପୂରଣ କର ।୨୯।

ସୂର୍ଯ୍ୟ କିରଣ ଦ୍ୱାରା ଯେଉଁ ପର୍ଯ୍ୟନ୍ତ ତାପପ୍ରଦାନ କରନ୍ତି, ନକ୍ଷତ୍ରମାନଙ୍କର ସହିତ ଚନ୍ଦ୍ର ଯେଉଁ ପର୍ଯ୍ୟନ୍ତ ପ୍ରକାଶମାନ ହୁଅନ୍ତି ଏବଂ ମେଘମାନେ ଯେଉଁ ପର୍ଯ୍ୟନ୍ତ ବୃଷ୍ଟି କରନ୍ତି; ସେ ପର୍ଯ୍ୟନ୍ତ ଭୂମି ତୁମର । ୩୦ ।

ସର୍ବବ୍ୟାପୀ ମୁଁ ଏକ ପାଦରେ ଭୂଲୋକ, ଶରୀର ଦ୍ୱାରା ଆକାଶ ଓ ଦିଗମାନ ଓ ଦ୍ୱିତୀୟ ପାଦରେ ସ୍ୱର୍ଗଧାମ ଆକ୍ରମଣ କରିଅଛି, ତୁମ୍ଭର ସର୍ବସ୍ୱ ଅପହୃତ ହୋଇଅଛି ।୩୧।

ଗରୁଡ଼ ବିଷ୍ଣୁ ଆଜ୍ଞା ପାଇ
ବଳି ସମୀପେ କ୍ରୋଧ ବହି
ବରୁଣ ପାଶ ଘେନି କରେ
ବଳିକି ବାନ୍ଧିଲା ଗର୍ବରେ

ସୋମ ଅଭିଷେକ ଦିବସେ
ବଳିକି ବାନ୍ଧି ଅତି ରୋଷେ
ଶୁଭିଲା ହାହାକାର ନାଦ
ଅସୁରେ ହୋଇଲେ ବିଷାଦ

ବଳିର ଦେଖିଣ ବନ୍ଧନ
ବୋଲନ୍ତି ପ୍ରଭୁ ଭଗବାନ ।୨୬-୨୮
ତୃତୀୟ ପାଦ ମୋର କରେ
ଦେଲୁ ଯେ ଓଁକାର ଉଚ୍ଚାରେ

ପ୍ରତିଶ୍ରୁତମଦାତୁସ୍ତେ ନିରୟେ ବାସ ଇଷ୍ୟତେ ।
ବିଶ ତ୍ୱଂ ନିରୟଂ ତସ୍ମାତ୍ ଗୁରୁଣା ଚାନୁମୋଦିତଃ । ୩୨ ।
ବୃଥା ମନୋରଥସ୍ତସ୍ୟ ଦୂରଃ ସ୍ୱର୍ଗଃ ପତତ୍ୟଧଃ ।
ପ୍ରତିଶ୍ରୁତସ୍ୟାଦାନେନ ଯୋଽର୍ଥିନଂ ବିପ୍ରଲମ୍ଭତେ । ୩୩ ।
ବିପ୍ରଲବ୍ଧୋ ଦଦାମୀତି ତ୍ୱୟାହଂ ଚାଢ୍ୟମାନିନା ।
ତଦ୍ବ୍ୟଲୀକଫଳଂ ଭୁଙ୍କ୍ଷ୍ୱ ନିରୟଂ କତିଚିତ୍ ସମାଃ । ୩୪ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟା-
ମଷ୍ଟମସ୍କନ୍ଧେ ବଳିନିଗ୍ରହୋ ନାମ ଏକବିଂଶୋଽଧ୍ୟାୟଃ ।

---

ପ୍ରତିଶ୍ରୁତି ଅନୁସାରେ ଭୂମିଦାନ ନ କଲେ ତୁମର ନରକରେ ବାସ କରିବା ଉଚିତ୍, ଅତଏବ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ କର୍ତ୍ତୃକ ଅଭିଶପ୍ତ ତୁମ୍ଭେ ନର୍କକୁ ଗମନ କର ।୩୨।

ଯେଉଁ ବ୍ୟକ୍ତି ବ୍ରାହ୍ମଣ ନିକଟରେ ପ୍ରତିଶ୍ରୁତି ଅନୁସାରେ ଦାନ କରି ନ ପାରେ ତାହାର ମନୋରଥ ବୃଥା, ସ୍ୱର୍ଗ ତାହା ନିକଟରୁ ଦୂରରେ । ସେ ଅଧଃପତିତ ହୋଇଥାଏ ।୩୩।

ତୁମ୍ଭେ ଧନ ମଦରେ ମତ୍ତ ହୋଇ ପ୍ରତିଶ୍ରୁତ ହୋଇ ମୋତେ ବଞ୍ଚନା କରିଅଛ, ସୁତରାଂ ଏହି ମିଥ୍ୟା କଥନର ଫଳ ସ୍ୱରୂପ କେତେକ ବର୍ଷ ତୁମ୍ଭଙ୍କୁ ନରକ ଭୋଗ କରିବାକୁ ହେବ ।୩୪।

---

ତୁମି ଗଗନେ ଦେଲ ପାଦ
ଆଉର ପାଦ ଶୂନ୍ୟେ ଭେଦ
ତୃତୀୟ ପାଦ ଏବେ ଦିଅ
ସକଳ ଦୁଃଖୁ ପାର ହୁଅ
ପବନ ଅନଳ ପ୍ରକାଶେ
ଯାବତ ଚନ୍ଦ୍ର ସୂର୍ଯ୍ୟ ଦିଶେ

ତାବତ ଭୂମି ଏ ତୋହର
ମୁଁ ଯେ ଘେନିଲି ଦେଲ ପୁର
ତୃତୀୟ ପାଦେ ସ୍ଥାନ ଦେଇ
ତୁ ଏବେ ରହ ସୁଖୀ ହୋଇ
ନ ଦେଲେ ପଡ଼ିବୁ ନର୍କେ
ଅପଯଶ ଥିବ ତିନି ଲୋକେ

ଏମନ୍ତ ବଳି ଆଗେ କହି
ବିଷ୍ଣୁ ରହିଲେ ସ୍ଥିର ହୋଇ
।୨୯-୩୪।
ବୋଲଇ ଦାସ ଜଗନ୍ନାଥ
ସୁଜନ ହିତ ଭାଗବତ



# ଦ୍ୱାବିଂଶୋଽଧ୍ୟାୟଃ

ଦ୍ୱାବିଂଶେ ତୁ ପ୍ରସନ୍ନଃସନ୍ ପ୍ରସ୍ଥାପ୍ୟ ସୁତଳଂ ବଳିମ୍ ।
ଦତ୍ତ୍ୱା ବରାନ୍ ହରିର୍ନ୍ନୂନଂ ମଦ୍ୱାତଦ୍ଦ୍ୱାରପୋଽଭବତ୍ ॥ ୦ ॥ (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକଉବାଚ ।

ଏବଂ ବିପ୍ରକୃତୋ ରାଜନ୍ ବଳିର୍ଭଗବତାସୁରଃ ।
ଭିଦ୍ୟମାନୋଽପ୍ୟଭିନ୍ନାତ୍ମା ପ୍ରତ୍ୟାହାବିକ୍ଳବଂ ବଚଃ । ୧ ।

ଶ୍ରୀ ବଳିରୁବାଚ ।

ଯଦ୍ୟୁତ୍ତମଃଶ୍ଳୋକ ଭବାନ୍ମମେରିତଂ ବଚୋ ବ୍ୟଳୀକଂ ସୁରବର୍ଯ୍ୟ ମନ୍ୟତେ ।
କରୋମ୍ୟୃତଂ ତନ୍ନ ଭବେତ୍ ପ୍ରଲମ୍ଭନଂ ପଦଂ ତୃତୀୟଂ କୁରୁ ଶୀର୍ଷ୍ଣି ମେ ନିଜମ୍ ।୨।

---

## ବଳିର ବନ୍ଧନ ମୋଚନ ଓ ଭଗବାନଙ୍କର ବଳିର ଦ୍ୱାରପାଳତ୍ୱ ସ୍ୱୀକାର ।

ଦ୍ୱାବିଂଶ ଅଧ୍ୟାୟରେ ଭଗବାନ୍ ବିଷ୍ଣୁ ଦୈତ୍ୟରାଜ ବଳିଙ୍କ ପ୍ରତି ପ୍ରସନ୍ନ ହୋଇ ତାଙ୍କୁ ସୁତଳକୁ ପଠାଇବା ଏବଂ ତାଙ୍କର ଦ୍ୱାର ଦେଶରେ ନିଜେ ଦ୍ୱାରପାଳ ହୋଇ ରହିବା ବିଷୟ କଥିତ ହୋଇଅଛି ॥୦

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଭଗବାନ୍ ବାମନ ଏହିପରି ଭାବରେ ବଳିଙ୍କୁ ସତ୍ୟଭ୍ରଷ୍ଟ କରିବାର ଚେଷ୍ଟା କଲେ ମଧ୍ୟ ବଳି ଅବିଚଳିତ ଚିତ୍ତରେ ଓ ଅଦୀନ ବାକ୍ୟରେ କହିଲେ ।୧।

ଶ୍ରୀ ବଳି କହିଲେ :—

ହେ ଦେବ ଶ୍ରେଷ୍ଠ ! ହେ ଉତ୍ତମ ଶ୍ଳୋକ ! ଆପଣ ଯଦି ମୋର ପ୍ରତିଶ୍ରୁତ ବାକ୍ୟକୁ ମିଥ୍ୟା କରିବାକୁ ଚେଷ୍ଟା କରନ୍ତି ତଥାପି ମୁଁ ତାହାକୁ ସତ୍ୟ ବୋଲି ପ୍ରତିପାଦନ କରିବି । ତାହା ମିଥ୍ୟା ହେବ ନାହିଁ, ଆପଣଙ୍କର ତୃତୀୟ ଚରଣକୁ ମୋର ମସ୍ତକରେ ସ୍ଥାପନ କରନ୍ତୁ ।୨।

---

ପ୍ରସନ୍ନେ ବଳିକୁ ବାମନ, ସୁତଳେ ଦେଇ ବାସସ୍ଥାନ ॥
ଦ୍ୱାର ରକ୍ଷକ ହେଲେ ତାର, ଚରିତ ଦ୍ୱାବିଂଶ ଅଧ୍ୟାର ॥

ଶ୍ରୀଶୁକଉବାଚ —
ବଳିର ହରି ଯେତେବେଳେ
ବନ୍ଧନ କଲେ ଦାନ ଛଳେ
ବନ୍ଧନ ଦୁଃଖେ ବଳି ମନ
ସାତ୍ୱିକେ ନ ଭଜିଲା ଛନ
ବିଷ୍ଣୁର ପାଦେ ମନ ଦେଇ
ବୋଇଲେ ବାମନ ମୁଖ ଚାହିଁ ।୧।

ବଳିରୁବାଚ —
ହେ ନାଥ ! ମୋର ବାକ୍ୟ ଯେବେ
ମୁହିଁ ଲଙ୍ଘିବି ମୂଢଭାବେ
ଏ କଥା କେବେହେଁ ନ ଘଟେ
ଯଦି ଜୀବନ ମୋର ତୁଟେ
ତୃତୀୟ ପାଦ ତୋର ହସ୍ତେ
ଦେଇ ମୁଁ ଲଙ୍ଘିବି କେମନ୍ତେ
ଚରଣ ଅଛି ଯେବେ ତୋର
ହେ ନାଥ ମୋର ମୁଣ୍ଡେ କର ।୨

ବିଭେମି ନାହଂ ନିରୟାତ୍ପଦଚ୍ୟୁତୋ ନ ପାଶବନ୍ଧାଦ୍‌ବ୍ୟସନାଦ୍ଦୂରତ୍ୟୟାତ୍ ।
ନୈବାର୍ଥକୃଚ୍ଛ୍ରାଦ୍ଭବତୋ ବିନିଗ୍ରହାଦସାଧୁବାଦାଦ୍‌ଭୃଶମୁଦ୍‌ବିଜେ ଯଥା । ୩ ।
ପୁଂସାଂ ଶ୍ଳାଘ୍ୟତମଂ ମନ୍ୟେ ଦଣ୍ଡମର୍ହତ୍ତମାର୍ପିତମ୍ ।
ଯଂ ନ ମାତା ପିତା ଭ୍ରାତା ସୁହୃଦଶ୍ଚାଦିଶନ୍ତି ହି । ୪ ।
ତ୍ୱଂ ନୂନମସୁରାଣାଂ ନ ପରୋକ୍ଷଃ ପରମୋ ଗୁରୁଃ ।
ଯୋ ନୋଽନେକମଦାନ୍ଧାନାଂ ବିଭ୍ରଂଶଂ ଚକ୍ଷୁରାଦିଶତ୍ । ୫ ।
ଯସ୍ମିନ୍ ବୈରାନୁବନ୍ଧେନ ବ୍ୟୂଢେନ ବିବୁଧେତରାଃ ।
ବହବୋ ଲେଭିରେ ସିଦ୍ଧିଂ ଯାମୁ ହୈକାନ୍ତଯୋଗିନଃ । ୬ ।
ତେନାହଂ ନିଗୃହୀତୋଽସ୍ମି ଭବତା ଭୂରିକର୍ମ୍ମଣା ।
ବଦ୍ଧଶ୍ଚ ବାରୁଣୈଃ ପାଶୈର୍ନାତିବ୍ରୀଡ଼େ ନ ଚ ବ୍ୟଥେ । ୭ ।

---

ମୁଁ ଐଶ୍ୱର୍ଯ୍ୟଭ୍ରଷ୍ଟ ହେଲେ ମଧ୍ୟ ଅନେକାଣ୍ଡି ଯେପରି ନ ପ ଏ, ଦୁରତିକ୍ରମଣୀୟ ନରକ ଦୁଃଖ ପାଶ ବନ୍ଧନ ଜନିତ ଦୁଃଖ ଏବଂ ଆପଣଙ୍କର ନିଗ୍ରହ ହେତୁ ଅର୍ଥ କଷ୍ଟ ଯୋଗେ ମୁଁ ଭୀତ ନୁହେଁ ।୩।

ହେ ବ୍ରହ୍ମନ୍ ! ଯୋଗ୍ୟତମ ବ୍ୟକ୍ତି ଯଦି ଦଣ୍ଡ ବିଧାନ କରେ, ତେବେ ତାହା ପୁରୁଷ ପକ୍ଷରେ ଶ୍ଳାଘ୍ୟତମ ବୋଲି ମନେ କରିବାକୁ ହେବ, ଯେଉଁ ଦଣ୍ଡ, ମାତା, ପିତା, ଭ୍ରାତା ବା ସୁହୃତମାନେ ଦେଇ ନ ପାରନ୍ତି ।୪।

ହେ ଭଗବନ୍ ! ଆପଣ ନିଶ୍ଚୟ ଅମ୍ଭ ଅସୁରମାନଙ୍କର ପରୋକ୍ଷରେ ଗୁରୁ, କାରଣ ମଦମତ୍ତ ଆମ୍ଭମାନଙ୍କର ମତ୍ତତା ବିନାଶ କରି ଆପଣ ଜ୍ଞାନଚକ୍ଷୁ ଦେଇଥାନ୍ତି ।୫।

ଆପଣଙ୍କ ପ୍ରତି ବଦ୍ଧମୂଳ ହୋଇ ଶତ୍ରୁଭାବ ଅବଲମ୍ବନକରି ବହୁସଂଖ୍ୟକ ଅସୁର ପରମସିଦ୍ଧି ଲାଭ କରିଅଛନ୍ତି, ଯେଉଁ ସିଦ୍ଧି ଭକ୍ତମାନଙ୍କ ପକ୍ଷରେ ସ୍ପୃହଣୀୟ ।୬।

ପ୍ରଚୁର ମଙ୍ଗଳ କର୍ମକାରୀ ପରମଗୁରୁ ଆପଣଙ୍କ ଦ୍ୱାରା ମୁଁ ନିଗୃହୀତ ଏବଂ ବରୁଣ ପାଶରେ ଆବଦ୍ଧ ହୋଇଅଛି, ସେଥିପାଇଁ ମୋର କୌଣସି ଲଜ୍ଜା ବା ବ୍ୟଥା ନାହିଁ ।୭।

---

ନରକେ ମୋର ଭୟ ନାହିଁ
ତୋର ବନ୍ଧନେ ନ ଡରଇ
ତୋର ନିଗ୍ରହେ ନାହିଁ ଭୟ
ଅସାଧୁ-ବାଦେ ଯେତେ ଭୟ
ତୋ ଅନୁଗ୍ରହ ଯାରେ ହୋଏ
ସେ ପ୍ରାଣୀ ସର୍ବଦୁଃଖସହେ ।୩,୪।
ତୁ ନାଥ ଅସୁରଙ୍କ ପକ୍ଷେ
ପରୋକ୍ଷ ଗୁରୁ ତୁ ପ୍ରତ୍ୟକ୍ଷେ

ଆମ୍ଭର ଚକ୍ଷୁ ମଦେ ଅନ୍ଧ
ସତ୍ୟ ଯେ ମଣୁ ଏ ସମ୍ପଦ
ଏ ମଦେ ଅଞ୍ଜନ ସଦୃଶ
ଦିଅନ୍ତୁ ଯେ କଲୁ ତୁ ପ୍ରକାଶ ।୫।
ବଇର କରି ତୋ ବିଷୟେ
ପୂର୍ବେ ଯେ ଥିଲେ ମହାଶୟେ
ଅନ୍ତେ ଲଭିଲେ ତୋ ଚରଣ
ଯେ ଗତି ମୁକ୍ତ-ସିଦ୍ଧଗଣ ।୬।

ତୁ ନାଥ ମୋତେ ଦୟା କରି
ବରୁଣ-ପାଶେ ବନ୍ଦୀ କରି
ନିଗ୍ରହ କରୁ ଯେତେ ମୋତେ
ସେ ଭୟ ନାହିଁ ମୋର ଚିତ୍ତେ ।୭

ପିତାମହୋ ମେ ଭବଦୀୟସମ୍ମତଃ ପ୍ରହ୍ଲାଦ ଆବିଷ୍କୃତସାଧୁବାଦଃ ।
ଭବଦ୍ବିପକ୍ଷେଣ ବିଚିତ୍ରବୈଶସଂ ସଂପ୍ରାପିତସ୍ତ୍ୱତ୍ପରମଃ ସ୍ୱପିତ୍ରା ।୮।
କିମାତ୍ମନାନେନ ଜହାତି ଯୋଽନ୍ତତଃ କିଂ ରିକ୍ଥହାରୈଃ ସ୍ୱଜନାଖ୍ୟଦସ୍ୟୁଭିଃ ।
କିଂ ଜାୟୟା ସଂସୃତିହେତୁଭୂତୟା ମର୍ତ୍ତ୍ୟସ୍ୟ ଗେହୈଃ କିମିହାୟୁଷୋଽବ୍ୟୟଃ ॥
ଇତ୍ଥଂ ସ ନିଶ୍ଚିତ୍ୟ ପିତାମହୋ ମହାନ୍ ଅଗାଧବୋଧୋ ଭବତଃ ପାଦପଦ୍ମମ୍ ।
ଧ୍ରୁବଂ ପ୍ରପେଦେ ହ୍ୟକୁତୋଽଭୟଂ ଜନାଦ୍ ଭୀତଃ ସ୍ୱପକ୍ଷକ୍ଷପଣସ୍ୟ ସତ୍ତମ ।୧୦।
ଅଥାହମପ୍ୟାତ୍ମରିପୋସ୍ତବାନ୍ତିକଂ ଦୈବେନ ନୀତଃ ପ୍ରସଭଂ ତ୍ୟାଜିତଶ୍ରୀଃ ।
ଇଦଂ କୃତାନ୍ତାନ୍ତିକବର୍ତ୍ତି ଜୀବିତଂ ଯୟାଧ୍ରୁବଂ ସ୍ତବ୍ଧମତିର୍ନ ବୁଧ୍ୟତେ ।୧୧।

---

ଆପଣ ମୋ ପ୍ରତି ଯେଉଁ ଦଣ୍ଡ ବିଧାନ କରିଅଛନ୍ତି; ତାହା ମୋ ପ୍ରତି ଅନୁଗ୍ରହ, ( ଆପଣ ନିଜର ଭକ୍ତର ପୌତ୍ର ବୋଲି ମୋ ପ୍ରତି ଏ ଅନୁଗ୍ରହ ଦେଖାଇଅଛନ୍ତି ) ବିଖ୍ୟାତ କୀର୍ତ୍ତିଶାଳୀ ମୋର ପିତାମହ ପ୍ରହ୍ଲାଦ ଆପଣଙ୍କର ଏକାନ୍ତ ଅନୁଗତ ଥିବାରୁ ଆପଣଙ୍କର ଶତ୍ରୁ ତାହାଙ୍କର ପିତା ହିରଣ୍ୟ କଶିପୁ ଦ୍ୱାରା ବହୁ ଦୁଃଖ ପାଇଲେ ମଧ୍ୟ ଆପଣ ତାହାଙ୍କର ଏକମାତ୍ର ସହାୟ ହୋଇଥିଲେ ।୮।

ଆୟୁ ଶେଷ ହେଲେ ଯେଉଁ ଦେହତ୍ୟାଗ କରିବାକୁ ହେବ, ସେ ଦେହରେ କି ପ୍ରୟୋଜନ ? ସ୍ୱଜନ ରୂପ ଦସ୍ୟୁମାନେ ମୃତ୍ୟୁ ପରେ ବିତ୍ତ ହରଣ କରନ୍ତି । ସେମାନଙ୍କଠାରେ ବା କି ପ୍ରୟୋଜନ ? ଯେଉଁ ସ୍ତ୍ରୀ ସଂସାରର ହେତୁ ଭୂତା ତାଠାରେ ବା କି ପ୍ରୟୋଜନ ? ଗୃହରେ ବା କି ପ୍ରୟୋଜନ ? ଏ ସମସ୍ତରେ କେବଳ ଆୟୁ କ୍ଷୟ ହେଉଥାଏ, ନଚେତ୍ ତହିଁରେ କୌଣସି ସୁଖ ନାହିଁ । ହେ ସତ୍ତମ ! ମୋର ଅଗାଧ ବୁଦ୍ଧିମାନ୍ ପିତାମହ ଏହିପରି ନିଶ୍ଚୟ କରି ଲୋକ ସଙ୍ଗ ଭୀତ ହେବାରୁ ନିଜ କୁଳର ବିନାଶକାରୀ ହେଲେ ମଧ୍ୟ ସମସ୍ତ ପ୍ରକାର ଭୟ ବିରହିତ ହୋଇ ଆପଣଙ୍କର ପାଦପଦ୍ମକୁ ନିଶ୍ଚୟ ଭାବରେ ଆଶ୍ରୟ କରିଥିଲେ । ୯, ୧୦ ।

ହେ ଭଗବନ୍ ! ସମ୍ପଦରେ ମତ୍ତ ହୋଇ ମୂଢବୁଦ୍ଧି ବ୍ୟକ୍ତି ମୃତ୍ୟୁର ସମୀପବର୍ତ୍ତୀ ଏହି ଜୀବନ ଯେ ଅନିତ୍ୟ ତାହା ଜାଣିପାରେ ନାହିଁ । ମୁଁ ଭାଗ୍ୟ ବଳରୁ ବର୍ତ୍ତମାନ ଆପଣଙ୍କର ଶତ୍ରୁ ହୋଇ ଆପଣଙ୍କ ନିକଟକୁ ଆନୀତ ହୋଇଅଛି, ଦୈବ ମୋର ଶ୍ରୀ ନଷ୍ଟ କରିଅଛି ।୧୧।

---

ତୋ ଭକ୍ତ ମୋର ପିତାମହ
ସାଧୁ ସୁଗୁଣ ମହାଶୟ
ତୋର ଚରଣ ଆଶ୍ରେ କରି
ପିତାର ଦଣ୍ଡରୁ ନିସ୍ତରି ।୮।
ଜାଣଇ ମିଥ୍ୟା ଏ ସଂସାର
କେ ମିତ୍ର ବନ୍ଧୁ କେବା ପର
କେବା ଜନନୀ ଭ୍ରାତ ତାତ
କେବା ସମ୍ପଦ ଏ ଜଗତ

ପତ୍ନୀ ତନୟ କେହି ନୋହେ
ସର୍ବେ ଅଛନ୍ତି ମାୟା ମୋହେ
ଏ ଯେତେ ସଂସାର ଦେଖଇ
ଜନ୍ମ ମରଣେ ହେତୁ ହୁଇ
ସେ ପୁଣି ଏମନ୍ତ ବିଚାରି
ତୋ ପାଦେ ଚିତ୍ତ ଦୃଢ଼କରି
ଅନ୍ତେ ପଶିଲା ତୋର ପାଦେ
ମାୟାକୁ ଜିଣି ଅପ୍ରମାଦେ

ରହିଲା ପାରିଷଦ ହୋଇ
ଜନ୍ମ ମରଣ ଆଉ ନାହିଁ
ତୋର ମହିମା ଭବଭ୍ରାନ୍ତି !
ମୁଁ ତା ଜାଣିବି ଅବା କାହିଁ ? ୯-୧୧

ଶ୍ରୀଶୁକ ଉବାଚ ।

ତସ୍ୟୈତ୍ଥଂ ଭାଷମାଣସ୍ୟ ପ୍ରହ୍ଲାଦୋ ଭଗବତ୍ପ୍ରିୟଃ ।
ଆଜଗାମ କୁରୁଶ୍ରେଷ୍ଠ ରାକାପତିରିବୋତ୍ଥିତଃ । ୧୨ ।
ତମିନ୍ଦ୍ରସେନଃ ସ୍ୱପିତାମହଂ ଶ୍ରିୟା ବିରାଜମାନଂ ନଳିନାୟତେକ୍ଷଣମ୍ ।
ପ୍ରାଂଶୁଂ ପିଶଙ୍ଗାମ୍ବରମଞ୍ଜନତ୍ୱିଷଂ ପ୍ରଲମ୍ବବାହୁଂ ସୁଭଗଂ ସମୈକ୍ଷତ । ୧୩ ।
ତସ୍ମୈ ବଲିର୍ବାରୁଣପାଶଯନ୍ତ୍ରିତଃ ସମର୍ହଣଂ ନୋପଜହାର ପୂର୍ବବତ୍ ।
ନନାମ ମୂର୍ଦ୍ଧ୍ନାଶ୍ରୁବିଲୋଲଲୋଚନଃ ସବ୍ରୀଡ଼ନୀଚୀନମୁଖୋ ବଭୂବ ହ । ୧୪ ।
ସ ତତ୍ର ହାସୀନମୁଦୀକ୍ଷ୍ୟ ସତ୍ପତିଂ ହରିଂ ସୁନନ୍ଦାଦ୍ୟନୁଗୈରୁପାସିତମ୍ ।
ଉପେତ୍ୟ ଭୂମୌ ଶିରସା ମହାମନା ନନାମ ମୂର୍ଦ୍ଧ୍ନା ପୁଲକାଶ୍ରୁବିକ୍ଲବଃ । ୧୫ ।

---

ଶ୍ରୀ ଶୁକଦେବ କହିଲେ—

ହେ କୁରୁଶ୍ରେଷ୍ଠ ! ବଳି ଏହିପରି କହୁଥିଲା ବେଳେ ତାହାଙ୍କ ସମକ୍ଷରେ ଉଦିତ ପୂର୍ଣ୍ଣ ଚନ୍ଦ୍ରତୁଲ୍ୟ ଭଗବତ୍ ପ୍ରିୟ ପ୍ରହ୍ଲାଦ ଆସି ଉପସ୍ଥିତ ହେଲେ ।୧୨।

ଇନ୍ଦ୍ରସେନ ବଳି ସେତେବେଳେ ନିଜ ସମୀପରେ ଅପୂର୍ବ କାନ୍ତି ବିଶିଷ୍ଟ,ପଦ୍ମନେତ୍ର, ଅତ୍ୟୁନ୍ନତ ଶରୀର, ପୀତାମ୍ବର, ଶ୍ୟାମାଙ୍ଗ, ଆଜାନୁଲମ୍ବିତ ବାହୁ, ଭାଗ୍ୟବାନ୍ ଶ୍ରେଷ୍ଠ ପିତାମହ ପ୍ରହ୍ଲାଦଙ୍କୁ ଦେଖିଲେ ।୧୩।

ବରୁଣପାଶବଦ୍ଧବଳି ପୂର୍ବପରି ପ୍ରହ୍ଲାଦଙ୍କୁ ପୂଜାକରି ପାରିଲେ ନାହିଁ । କେବଳ ମସ୍ତକ ଦ୍ୱାରା ପ୍ରଣାମ କରି ଅଶ୍ରୁପୂର୍ଣ୍ଣ ଲୋଚନରେ ସଲଜ୍ଜ ଭାବରେ ଅଧୋବଦନରେ ଦଣ୍ଡାୟମାନ ହୋଇ ରହିଲେ ।୧୪।

ହେ ରାଜନ୍ ! ମହାମନା ପ୍ରହ୍ଲାଦ ସୁନନ୍ଦ ପ୍ରଭୃତି ଅନୁଗତ ପାର୍ଷଦଗଣଙ୍କ ଦ୍ୱାରା ପରିସେବିତ ଭକ୍ତବତ୍ସଳ ବାମନଦେବ ବିଷ୍ଣୁଙ୍କୁ ଉପବିଷ୍ଟ ହେବାର ଦେଖି ନତ ମସ୍ତକରେ ନିକଟକୁ ଆଗମନ କରି ପୁଲକାଶ୍ରୁ ବିହ୍ୱଳ ହୋଇ ମସ୍ତକ ଲଗାଇ ଭୂମିରେ ପ୍ରଣାମ କରିଥିଲେ ।୧୫।

---

ଶ୍ରୀଶୁକ ଉବାଚ—
ଏମନ୍ତ କହୁଁ କହୁଁ ବଳି
ପ୍ରତ୍ୟକ୍ଷେ ଯେସନେ ବିଜୁଳି
ଗଗନେ ଶୁଭିଲା ଶଙ୍ଖ ନାଦ
ତକ୍ଷଣେ ମିଳେ ପ୍ରହ୍ଲାଦ ।୧୨।
ବଳି ନମିଲା ତାଙ୍କୁ ଦେଖି
ବାମନ ସଙ୍ଗତ ଉପେକ୍ଷି
ବିଷ୍ଣୁର ପ୍ରାୟେ ତାର ତେଜ
ତୁଲ୍ୟ ନୋହିବେ ଦ୍ୱିଜରାଜ
ପିଶଙ୍ଗ ବସ୍ତ୍ର ପରିଧାନ
ସୁନ୍ଦର ନଳିନ ନୟନ
ପ୍ରଲମ୍ବ ବାହୁ ହୃଦେ ଶୋହେ
ରୂପେ ଅନଙ୍ଗ ସମ ନୋହେ
ଆନନ୍ଦେ ଶୋକ ଗଦଗଦେ
କଣ୍ଠ ଲୁଣ୍ଠିତ ହୋଏ ନାଦେ
ଚରଣେ ଦଣ୍ଡବତେ ଶୋଇ
ମନ କଳ୍ପିତେ ଅର୍ଘ୍ୟ ଦେଇ
ରହିଲେ ପିତାମହ ପାଶେ
ବାମନ ଅନୁଗ୍ରହ ଆଶେ ।୧୩,୧୪
ସେ ପ୍ରହ୍ଲାଦ ଉଠି ବେଗେ
ନମିଲା ବିଷ୍ଣୁ ପାଦ ଯୁଗେ
ଆନନ୍ଦେ ଅଶ୍ରୁଜଳ ଭରି
କରି ଅଞ୍ଜଳି ଶିରେ ଧରି
ଆନନ୍ଦେ ଶୋକ ଗଦଗଦ
ସ୍ତୁତି କରଇ ପ୍ରହ୍ଲାଦ ।୧୫।

ଶ୍ରୀପ୍ରହ୍ଲାଦ ଉବାଚ ।

ତ୍ୱୟୈବ ଦତ୍ତଂ ପଦମୈନ୍ଦ୍ରମୂର୍ଜ୍ଜିତଂ ହୃତଂ ତଦେବାଦ୍ୟ ତଥୈବ ଶୋଭନମ୍ ।
ମନ୍ୟେ ମହାନସ୍ୟ କୃତୋ ହ୍ୟନୁଗ୍ରହୋ ବିଭ୍ରଂଶିତୋ ଯଚ୍ଛ୍ରିୟ ଆତ୍ମମୋହନାତ୍ ।୧୬।
ଯୟା ହି ବିଦ୍ୱାନ ପିମୁହ୍ୟତେ ଯତସ୍ତତ୍ କୋ ବିଚଷ୍ଟେ ଗତିମାତ୍ମନୋ ଯଥା ।
ତସ୍ମୈ ନମସ୍ତେ ଜଗଦୀଶ୍ୱରାୟ ବୈ ନାରାୟଣାୟାଖିଲଲୋକସାକ୍ଷିଣେ । ୧୭ ।

ଶ୍ରୀଶୁକ ଉବାଚ । ତସ୍ୟାନୁଶୃଣ୍ୱତୋ ରାଜନ୍ ପ୍ରହ୍ଲାଦସ୍ୟ କୃତାଞ୍ଜଳେଃ ।
ହିରଣ୍ୟଗର୍ଭୋ ଭଗବାନୁବାଚ ମଧୁସୂଦନମ୍ । ୧୮ ।
ବଦ୍ଧଂ ବୀକ୍ଷ୍ୟ ପତିଂ ସାଧ୍ୱୀ ତତ୍ପତ୍ନୀ ଭୟବିହ୍ୱଳା ।
ପ୍ରାଞ୍ଜଳିଃ ପ୍ରଣତୋପେନ୍ଦ୍ରଂ ବଭାଷେଽବାଙ୍‌ମୁଖୀ ନୃପ । ୧୯ ।

---

ଶ୍ରୀ ପ୍ରହ୍ଲାଦ କହିଲେ :—

ହେ ଭଗବନ୍ ! ଆପଣ ହିଁ ପୂର୍ବେ ବଳିଙ୍କୁ ଇନ୍ଦ୍ରପଦ ପ୍ରଦାନ କରିଥିଲେ । ଆପଣ ହିଁ ଅତଏବ ଉଦ୍ଧତ ହୋଇ ଇନ୍ଦ୍ରପଦ ହରଣ କରିଅଛନ୍ତି । ଏହା ଅତି ଉତ୍ତମ ହୋଇଅଛି ବୋଲି ମୁଁ ମନେ କରେ, ଏହାପ୍ରତି ଆପଣ ବିଶେଷ ଅନୁଗ୍ରହ କରିଅଛନ୍ତି, କାରଣ ଯେଉଁ ସମ୍ପଦ ଆଶାକୁ ମୁଗ୍ଧ କରେ, ସେହି ସମ୍ପଦରୁ ଆପଣ ବଳିଙ୍କୁ ବିଭ୍ରଷ୍ଟ କରିଅଛନ୍ତି ।୧୬।

ଯେଉଁ ଶ୍ରୀ ବା ସମ୍ପଦ ଦ୍ୱାରା ବିଦ୍ୱାନ୍ ଏବଂ ସଂଯତ ଚିତ୍ତ ବ୍ୟକ୍ତି ମଧ୍ୟ ମୁଗ୍ଧ ହୁଏ, ସେହି ସମ୍ପଦ ବର୍ତ୍ତମାନ ଥିଲେ କେହି ଯଥାଯଥ ରୂପେ ଆତ୍ମତତ୍ତ୍ୱ ଦର୍ଶନ କରିପାରେ ନାହିଁ । ସୁତରାଂ ବଳିପ୍ରତି ମହାନ୍ ଅନୁଗ୍ରହକାରୀ ସର୍ବ ଲୋକର ଆଶ୍ରୟ ସ୍ୱରୂପ ସର୍ବାନ୍ତର୍ଯାମୀ ନାରାୟଣ ଜଗଦୀଶ୍ୱର ଆପଣଙ୍କୁ ମୋର ନମସ୍କାର ।୧୭।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ତଦନନ୍ତର ହିରଣ୍ୟଗର୍ଭ ବ୍ରହ୍ମା ଦଣ୍ଡାୟମାନ ହୋଇ କୃତାଞ୍ଜଳି ପୂର୍ବରେ ମହାମନସ୍ୱୀ ପ୍ରହ୍ଲାଦ ଶୁଣି ପାରିବେ ଏପରି ସ୍ୱରରେ ବାମନ ରୂପୀ ଭଗବାନଙ୍କୁ କହିଲେ ।୧୮।

ହେ ରାଜନ୍ ! ସାଧ୍ୱୀ ବଳିପତ୍ନୀ ପତିଙ୍କୁ ବରୁଣ ପାଶରେ ଆବଦ୍ଧ ହୋଇ ଥିବାର ଦେଖି ଭୟବିହ୍ୱଳା ହେଲେ ଏବଂ କୃତାଞ୍ଜଳି ପୂର୍ବରେ ପ୍ରଣାମ କରି ଅଧୋବଦନରେ ବାମନ ଦେବଙ୍କୁ କହିଲେ ।୧୯।

---

ପ୍ରହ୍ଲାଦ ଉବାଚ—

ତୁ ନାଥ ଅନୁଗ୍ରହ ମନେ
ଏହାକୁ ସ୍ଥାପି ଇନ୍ଦ୍ରସ୍ଥାନେ
ପୁଣି ଭ୍ରଂଶାଇ ସୁଖ ସ୍ଥାନୁ
ଯେଣୁ ହୋଇଲା ତୋର ମନ୍ୟୁ
କଷ୍ଟରୁ କଲୁ ଅନୁଗ୍ରହ
ଯେଣୁ ନାଶିଲୁ ମାୟା-ମୋହ ।୧୬

ନମସ୍ତେ ଜଗତ ଈଶ୍ୱର
ନମସ୍ତେ ଚକ୍ର-ଗଦାଧର
ତୁ ନାରାୟଣ ବିଶ୍ୱଗୁରୁ
ମହାମହିମ ମହାମେରୁ
ଆତ୍ମା ପ୍ରକାଶ ସର୍ବ ଭୂତେ
ହେ ନାଥ ନମସ୍ତେ ନମସ୍ତେ ।୧୭

ଶ୍ରୀଶୁକ ଉବାଚ—

ପ୍ରହଲ୍ଲଦର ଭକ୍ତିଦେଖି
ହିରଣଗର୍ଭ ମନେ ସୁଖୀ
ବେଗେ ମିଳିଲେ ବିଷ୍ଣୁ-ପାଦେ
ଚତୁର-ମୁଖେ ବେଦ ନାଦେ ।୧୮
ବଳିର ପତ୍ନୀ ଆସି ବେଗେ
ବିଷ୍ଣୁ ଚରଣେ ଅନୁରାଗେ
ସ୍ୱାମି ନିକଟେ ଅତି ଦୁଃଖୀ
ସ୍ତୁତି କରଇ ଅଧୋମୁଖୀ ।୧୯।

ଶ୍ରୀବନ୍ଧ୍ୟାବଳିରୁବାଚ—

କ୍ରୀଡ଼ାର୍ଥମାତ୍ମନ ଇଦଂ ତ୍ରିଜଗତ୍ କୃତଂ ତେ-
ସ୍ୱାମ୍ୟନ୍ତୁ ତତ୍ର କୁଧିୟୋଽପର ଈଶ ! କୁର୍ଯ୍ୟୁଃ ।
କର୍ତ୍ତୁଃ ପ୍ରଭୋସ୍ତବ କିମସ୍ୟତ ଆବହନ୍ତି
ତ୍ୟକ୍ତହ୍ରିୟସ୍ତ୍ୱଦବରୋପିତ କର୍ତ୍ତୃବାଦାଃ । ୨୦ ।

ଶ୍ରୀବ୍ରହ୍ମୋବାଚ ।

ଭୂତଭାବନଭୂତେଶ ଦେବଦେବ ଜଗନ୍ମୟ ।
ମୁଞ୍ଚୈନଂ ହୃତସର୍ବସ୍ୱଂ ନାୟମର୍ହତି ନିଗ୍ରହମ୍ । ୨୧ ।
କୃତ୍ସ୍ନା ତେଽନେନ ଦତ୍ତା ଭୂର୍ଲୋକାଃ କର୍ମାର୍ଜିତାଶ୍ଚ ଯେ ।
ନିବେଦିତଞ୍ଚ ସର୍ବସ୍ୱମାତ୍ମା ବିକ୍ଲବୟା ଧିୟା । ୨୨ ।

---

ବନ୍ଧ୍ୟାବଳି କହିଲେ :—

ହେ ଭଗବନ୍ ! ଆପଣ ନିଜର କ୍ରୀଡ଼ା ନିମିତ୍ତ ଏହି ଜଗତ ସୃଷ୍ଟି କରିଅଛନ୍ତି । ଅଳ୍ପବୁଦ୍ଧି ଲୋକମାନେ ନିଜକୁ ସ୍ୱାମୀ ବୋଲି ଭାବନ୍ତି, ତୁମ୍ଭର କର୍ତ୍ତୃତ୍ୱ ରହିତ ହୋଇ ନିଜେ କର୍ତ୍ତା ବୋଲି ଅଭିମାନ କରନ୍ତି । ନିର୍ଲଜ୍ଜ ବ୍ୟକ୍ତିମାନେ ଜଗତର ସୃଷ୍ଟି, ସ୍ଥିତି ଓ ସଂହାର କର୍ତ୍ତା ଆପଣଙ୍କୁ ଭୂମି ପ୍ରଭୃତି ଦାନ କରିବାକୁ ଉଦ୍ୟତ ହୁଅନ୍ତି ।୨୦।

ଶ୍ରୀ ବ୍ରହ୍ମା କହିଲେ :—

ହେ ଭୂତ ଭୁବନେଶ ! ହେ ଦେବଦେବ ! ହେ ଜଗନ୍ମୟ ! ହୃତସର୍ବସ୍ୱ ଏହି ବଳିକୁ ମୋଚନ କରନ୍ତୁ । ସର୍ବସ୍ୱଦାତା ଏହି ବଳି ଦଣ୍ଡନୀୟ ହୋଇ ନ ପାରେ ।୨୧।

ନିଷ୍କପଟ ହୃଦୟରେ ଏହି ବଳି ଆପଣଙ୍କୁ ସମଗ୍ର ଭୂମି ଓ କର୍ମାର୍ଜିତ ସ୍ୱର୍ଗାଦି ଲୋକ ସମସ୍ତ ଦାନ କରିଅଛି । ସର୍ବସ୍ୱ ଓ ନିଜର ଦେହ ମଧ୍ୟ ନିବେଦନ କରିଅଛି ।୨୨।

---

ବନ୍ଧ୍ୟାବଳିରୁବାଚ—

ହେ ନାଥ ତୋର କ୍ରୀଡ଼ା ଅର୍ଥେ
ତୋର ପ୍ରକାଶ ଏ ଜଗତେ
ତୋହର ମହିମା ନ ଜାଣି
ଗର୍ବ ବହନ୍ତି ଯେତେ ପ୍ରାଣୀ
ଜନ ହରନ୍ତି ସୁଖ-ଭୋଳେ
ସେ କାହିଁ ଥିବ ଏ ଶରୀରେ ?

ଶ୍ରୀଶୁକ ଉବାଚ—

ବ୍ରହ୍ମା ଯେ ଥିଲେ ସେହିଠାରେ
ସେ କହେ ବାମନ ଛାମୁରେ ।୨୦।

ବ୍ରହ୍ମୋବାଚ—

ଭୂତଭୁବନ ଭୂତ ଈଶ
ହେ ଦେବଦେବ ଜଗଦୀଶ !
ଏହାକୁ ନିଗ୍ରହ ତୁ କଲୁ
ସକଳ ସମ୍ପଦ ହରିଲୁ

ସର୍ବ ସମ୍ପଦ ଦେଇ ତୋତେ
ସମ୍ଭବ ନ କଳନା ଚିତ୍ତେ
ନିର୍ମଳ ଚିତ୍ତେ ତୋର ପାଦେ
ଅର୍ଘ୍ୟ ନିବେଶି ଅପ୍ରମାଦେ
ତ୍ରିଲୋକ ତୋତେ ଦାନ ଦେଲା
ଚିତ୍ତେ ବିଷାଦ ନ ଚିନ୍ତିଲା
ତୁ ନାଥ ବସୁ ସର୍ବ-ଭୂତେ
ଏହାକୁ ବାନ୍ଧିଲୁ କେମନ୍ତେ

ଯତ୍ପାଦୟୋରଶଠଧୀଃ ସଲିଳଂ ପ୍ରଦାୟ ଦୂର୍ବାଙ୍କୁରୈରପି ବିଧାୟ ସତୀଂ ସପର୍ଯ୍ୟାମ୍ ।
ଅପ୍ୟୁତ୍ତମାଂ ଗତିମସୌ ଭଜତେ ତ୍ରିଲୋକୀଂ ଦାଶ୍ୱାନବିକ୍ଲବମନାଃ କଥମାର୍ତ୍ତିମୃଚ୍ଛେତ୍ ॥

ଶ୍ରୀ ଭଗବାନୁବାଚ ।

ବ୍ରହ୍ମନ୍ ଯମନୁଗୃହ୍ଣାମି ତଦ୍‌ବିଶୋ ବିଧୁନୋମ୍ୟହମ୍ ।
ଯନ୍ମଦଃ ପୁରୁଷଃ ସ୍ତବ୍ଧୋ ଲୋକଂ ମାଞ୍ଚାବମନ୍ୟତେ ।୨୪।
ଯଦା କଦାଚଜ୍ଜୀବାତ୍ମା ସଂସରନ୍ନିଜକର୍ମଭିଃ ।
ନାନାଯୋନିଷ୍ୱନୀଶୋଽୟଂ ପୌରୁଷୀଂ ଗତିମାବ୍ରଜେତ୍ । ୨୫ ।
ଜନ୍ମକର୍ମବୟୋରୂପବିଦ୍ୟୈଶ୍ୱର୍ଯ୍ୟଧନାଦିଭିଃ ।
ଯଦ୍ୟସ୍ୟ ନ ଭବେତ୍ ସ୍ତମ୍ଭସ୍ତତ୍ରାୟଂ ମଦନୁଗ୍ରହଃ । ୨୬ ।

---

ହେ ଭଗବନ୍ ! କପଟାଚାରହୀନ ବ୍ୟକ୍ତି ଆପଣଙ୍କର ପଦଦ୍ୱୟରେ ଜଳମାତ୍ର ଅର୍ପଣ କରି ଅଥବା କେବଳ ଦୁର୍ବାଙ୍କୁର ଦ୍ୱାରା ଅର୍ଚ୍ଚନା କରି ମଧ୍ୟ ଉତ୍ତମ ଗତି ଲାଭ କରିଥାଆନ୍ତି । ବଳି ନିର୍ବିକାର ଚିତ୍ତରେ ଆପଣଙ୍କୁ ତ୍ରିଭୁବନ ଦାନ କରିଅଛି । ସୁତରାଂ କି ହେତୁ ଦୁଃଖ ଭୋଗ କରିବ ? ।୨୩।

ଶ୍ରୀ ଭଗବାନ୍ କହିଲେ :—

ହେ ବ୍ରହ୍ମନ୍ ! ମୁଁ ଯାହାକୁ ଅନୁଗ୍ରହ କରେ ତାହାର ଧନାଦି ସମସ୍ତ ଐଶ୍ୱର୍ଯ୍ୟ ମୁଁ ଅପହରଣ କରେ, କାରଣ ତଦ୍ଦ୍ୱାରା ସେ ଗର୍ବିତ ହୋଇ ମୋତେ ଓ ଅନ୍ୟ ଲୋକମାନଙ୍କୁ ଅବଜ୍ଞା କରେ ।୨୪।

ଯଦି କୌଣସି ସମୟରେ ନିଜ କର୍ମଦ୍ୱାରା କୀଟ ପତଙ୍ଗାଦି ନାନା ଯୋନିରେ ଭ୍ରମଣ କରୁ କରୁ ଏହି ଜୀବାତ୍ମା କର୍ମାଧୀନ ହୋଇ ମନୁଷ୍ୟ ଜୀବନ ପ୍ରାପ୍ତ ହୁଏ ଏବଂ ସେହି ମନୁଷ୍ୟ ଜନ୍ମରେ ଜନ୍ମ, କର୍ମ, ବୟସ, ରୂପ, ବିଦ୍ୟା, ଐଶ୍ୱର୍ଯ୍ୟ ଏବଂ ଧନାଦି ଦ୍ୱାରା ଗର୍ବିତ ନ ହୁଏ, ତାହା ହେଲେ ସେ ମୋର ବିଶେଷ ଅନୁଗ୍ରହ ପ୍ରାପ୍ତ ବୋଲି ଜାଣିବ । ୨୫, ୨୬ ।

---

ତୁ ନାଥ ସର୍ବ-ଚିତ୍ତ ଜାଣୁ
କେ ତୋର ମହିମା ବଖାଣୁ ।୨୧-୨୩

ଶ୍ରୀଶୁକ ଉବାଚ—

ବ୍ରହ୍ମାର ବାକ୍ୟ ଶୁଣି ହରି
ବଳିଙ୍କ ଚିତ୍ତେ ଦୟା କରି
ବୋଲନ୍ତି ପ୍ରଭୁ ଭଗବାନ
ବିଧାତା ଶୁଣ ମୋ ବଚନ

ଶ୍ରୀଭଗବାନୁବାଚ—

ମୁଁ ଯାକୁ ଅନୁଗ୍ରହ କରେ
ସର୍ବ ସମ୍ପଦ ବେଗେ ହରେ
ଯେ ଅର୍ଥ-ମଦେ ଅନ୍ଧ ହୋଇ
ପର ଅପର ନ ଜାଣଇ
ମୁଁ ଯେ ବସଇ ସର୍ବ ଭୂତେ
ମୋତେ ନ ମାନେ ଗର୍ବ-ଚିତ୍ତେ

ଯେ ଜୀବଆତ୍ମା କାମ୍ୟ କର୍ମେ
ମାୟାରେ ସର୍ବ-ଭୂତେ ଭ୍ରମେ
ନାନା ଯୋନିରେ ଜନ୍ମ ହୋଏ
ଜ୍ଞାନ ନ ଲଭେ ମାୟା-ମୋହେ ।୨୫
ଜନ୍ମ କର୍ମ ବୟସ ରୂପ
ବିଦ୍ୟା ଐଶ୍ୱର୍ଯ୍ୟ ଧନାଧିପ
ଏ ସବୁ ଗର୍ବ ଯାର ନାହିଁ
ମୋହର ଅନୁଗ୍ରହ ତହିଁ ।୨୬।

ମାନସ୍ତମ୍ଭନିମିତ୍ତାନାଂ ଜନ୍ମାଦୀନାଂ ସମନ୍ତତଃ ।
ସର୍ବଶ୍ରେୟଃ ପ୍ରତୀପାନାଂ ହନ୍ତ ମୁହ୍ୟେନ୍ନ ମତ୍ପରଃ । ୨୭ ।
ଏଷ ଦାନବ ଦୈତ୍ୟାନାମଗ୍ରଣୀଃ କୀର୍ତ୍ତିବର୍ଦ୍ଧନଃ ।
ଅଜୈଷୀଦଜୟାଂ ମାୟାଂ ସୀଦନ୍ନପି ନ ମୁହ୍ୟତି । ୨୮ ।
କ୍ଷୀଣରିକ୍ଥଶ୍ଚ୍ୟୁତଃ ସ୍ଥାନାତ୍ କ୍ଷିପ୍ତୋ ବଦ୍ଧଶ୍ଚ ଶତ୍ରୁଭିଃ ।
ଜ୍ଞାତିଭିଶ୍ଚ ପରିତ୍ୟକ୍ତୋ ଯାତନାମନୁଯାପିତଃ । ୨୯ ।
ଗୁରୁଣା ଭର୍ତ୍ସିତଃ ଶପ୍ତୋ ଜହୌ ସତ୍ୟଂ ନ ସୁବ୍ରତଃ ।
ଛଲୈରୁକ୍ତୋ ମୟା ଧର୍ମ୍ମୋ ନାୟଂ ତ୍ୟଜତି ସତ୍ୟବାକ୍ । ୩୦ ।
ଏଷ ମେ ପ୍ରାପିତଃ ସ୍ଥାନଂ ଦୁଷ୍ପ୍ରାପମମରୈରପି ।
ସାବର୍ଣ୍ଣେରନ୍ତରସ୍ୟାୟଂ ଭବିତେନ୍ଦ୍ରୋ ମଦାଶ୍ରୟଃ । ୩୧ ।

---

ହେ ବ୍ରହ୍ମନ୍ ! ଅଭିମାନ ଓ ଗର୍ବ ସର୍ବପ୍ରକାର ମଙ୍ଗଳର ଅନ୍ତରାୟ, ମୋର ଭକ୍ତ ଜନ୍ମ ଏବଂ ଐଶ୍ୱର୍ଯ୍ୟାଦିରେ ବିମୁଗ୍ଧ ହୁଏ ନାହିଁ ।୨୭।

ଦାନବ ଓ ଦୈତ୍ୟମାନଙ୍କ ଅଗ୍ରଣୀ ସତ୍‌କୀର୍ତ୍ତି ଶାଳୀ ଏହି ବଳି ଦୁର୍ଜ୍ଜୟ ମାୟାକୁ ଜୟ କରିଅଛି, ସୁତରାଂ ବିପନ୍ନ ହେଲେ ମଧ୍ୟ ମୁଗ୍ଧ ନୁହେଁ, ତାହାର ଧନ ନଷ୍ଟ ହେଲା, ସେ ସ୍ଥାନ ଚ୍ୟୁତ ହେଲା, ଶତ୍ରୁମାନଙ୍କ କର୍ତ୍ତୃକ ତିରସ୍କୃତ ହେଲା, ପାଶ ବଦ୍ଧ ହେଲା, ଜ୍ଞାତିମାନଙ୍କ କର୍ତ୍ତୃକ ପରିତ୍ୟକ୍ତ ହେଲା, ଯାତନା ଭୋଗିଲା ତଥାପି ସେ ଅବସନ୍ନ ନୁହେଁ । ୨୮, ୨୯ ।

ଏହି ଦୃଢ଼ ସଂକଳ୍ପ ବଳି ଶୁକ୍ରାଚାର୍ଯ୍ୟଙ୍କ କର୍ତ୍ତୃକ ଅଭିଶପ୍ତ ଏବଂ ତିରସ୍କୃତ, ତଥାପି ସତ୍ୟ ପରିତ୍ୟାଗ କରିନାହିଁ, ମୁଁ ଛଳ ଧର୍ମ କହିଲି ତଥାପି ସେ ସତ୍ୟବାଦୀ ସତ୍ୟଧର୍ମ ତ୍ୟାଗ କରିନାହିଁ ।୩୦।

ମୁଁ ଏହି ବଳିକୁ ଦେବଗଣଙ୍କ ଦୁଷ୍ପ୍ରାପ୍ୟ ସ୍ଥାନ ପ୍ରଦାନ କଲି, ମୋ କର୍ତ୍ତୃକ ସୁରକ୍ଷିତ ହୋଇ ସେ ସାବର୍ଣ୍ଣି ମନ୍ୱନ୍ତରରେ ପୁନର୍ବାର ସ୍ୱର୍ଗାଧିପତି ଇନ୍ଦ୍ର ହେବ ।୩୧।

---

ଯେ ଜନ ମାନ ଗର୍ବ ବହେ
ଧନ ସମ୍ପଦ ରୂପ ଦେହେ
ସେ ମୋତେ ଜାଣିବ କେମନ୍ତେ
ମାୟା-ମୋହିତ ଅନ୍ତରତେ ।୨୭।
ଏ ଯେ ଦାନବ ଦୈତ୍ୟରାଜା
ନିଜ ସ୍ୱଭାବେ ମହାତେଜା
ଅସୁର ବୁଦ୍ଧି ନ ଖେଳିଲା
ଗୁରୁ ବଚନ ନ ମାନିଲା

ବନ୍ଧୁ ବାନ୍ଧବ ଜ୍ଞାତି ଯେତେ
ଏହାଙ୍କୁ ଛାଡ଼ିଲେ ସମସ୍ତେ
କେବେହେଁ ସତ୍ୟ ନ ଛାଡ଼ିଲା
ମୋର ବଚନେ ମନ ଦେଲା
।୨୮-୩୦।
ଏ ଭୂମି ଦାନ ଦେଲା ମୋତେ
ଏ ଲୋକେ ଥିବ ଏ କେମନ୍ତେ

ଏହାକୁ ଦେବି ଦିବ୍ୟ ସ୍ଥାନ
ସ୍ୱର୍ଗରୁ ଦୁର୍ଲ୍ଲଭ ଭୁବନ
ନିର୍ମିତ ବିଶ୍ୱକର୍ମା ପୁର
ଦେବ ଦାନବେ ଅଗୋଚର
ଯେ ପୁରେ ଆଧି ବ୍ୟାଧି ନାହିଁ
କାଳର ତେଜ ନ ଲାଗଇ
ସେ ପୁରେ ଥିବ ଯେନାକେତେ
ସାବର୍ଣ୍ଣି ମନୁ ପର୍ଯ୍ୟନ୍ତେ

ତାବତ୍ ସୁତଳମଧ୍ୟାସ୍ତାଂ ବିଶ୍ୱକର୍ମ୍ମବିନିର୍ମିତମ୍-
ଯତ୍ରାଧୟୋ ବ୍ୟାଧୟଶ୍ଚ କ୍ଲମସ୍ତନ୍ଦ୍ରା ପରାଭବଃ ।
ନୋପସର୍ଗାଶ୍ଚ ବସତାଂ ସମ୍ଭବନ୍ତି ମମେକ୍ଷୟା । ୩୨ ।
ଇନ୍ଦ୍ରସେନ ମହାରାଜ ଯାହି ଭୋ ଭଦ୍ରମସ୍ତୁ ତେ ।
ସୁତଳଂ ସ୍ୱର୍ଗିଭିଃ ପ୍ରାର୍ଥ୍ୟଂ ଜ୍ଞାତିଭିଃ ପରିବାରିତଃ । ୩୩ ।
ନ ତ୍ୱାମଭିଭବିଷ୍ୟନ୍ତି ଲୋକେଶାଃ କିମୁତାପରେ ।
ତ୍ୱଚ୍ଛାସନାତିଗାନ୍ ଦୈତ୍ୟାଂଶ୍ଚକ୍ରଂ ମେ ସୂଦୟିଷ୍ୟତି ।୩୪।
ରକ୍ଷିଷ୍ୟେ ସର୍ବତୋଽହଂ ତ୍ୱାଂ ସାନୁଗଂ ସପରିଚ୍ଛଦମ୍ ।
ସଦାସନ୍ନିହିତଂ ବୀର ତତ୍ର ମାଂ ଦ୍ରକ୍ଷ୍ୟତେ ଭବାନ୍ । ୩୫ ।

---

ସେ ପର୍ଯ୍ୟନ୍ତ ବିଶ୍ୱକର୍ମା ନିର୍ମିତ ସୁତଳରେ ବାସ କରୁଥିବ, ମୋର କୃପାଦୃଷ୍ଟି ହେତୁ ସେ ସ୍ଥାନରେ ବାସକାରୀର ମନଃପୀଡ଼ା, ଦେହପୀଡ଼ା, ଗ୍ଲାନି, ଆଳସ୍ୟ ଏବଂ ପରାଭବ ପ୍ରଭୃତି କୌଣସି ପ୍ରକାର ଉପଦ୍ରବ ହେବାର ସମ୍ଭାବନା ନାହିଁ ।୩୨।

ତଦନନ୍ତର ବଳିଙ୍କୁ କହିଲେ :—

ହେ ଇନ୍ଦ୍ରସେନ ! ହେ ମହାରାଜ ! ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ସ୍ୱଜନଗଣ ପରିବୃତ ହୋଇ ସ୍ୱର୍ଗବାସୀ ଦେବତାମାନଙ୍କର ପ୍ରାର୍ଥନୀୟ ସୁତଳକୁ ଗମନ କର ।୩୩।

ଅନ୍ୟ କଥା ଦୂରେ ଥାଉ ଇନ୍ଦ୍ରାଦି ଲୋକପାଳଗଣ ମଧ୍ୟ ତୁମ୍ଭଙ୍କୁ ପରାସ୍ତ କରି ପାରିବେ ନାହିଁ, ଯେଉଁ ଦୈତ୍ୟମାନେ ତୁମ୍ଭର ଶାସନ ଲଙ୍ଘନ କରିବେ ସେମାନେ ମୋହର ଏହି ଚକ୍ରରେ ନିହତ ହେବେ ।୩୪।

ହେ ବୀର ! ସର୍ବପ୍ରକାର ଉପଦ୍ରବରୁ ମୁଁ ତୁମ୍ଭଙ୍କୁ, ତୁମ୍ଭର ଅନୁଚରବର୍ଗ ଓ ପରିଚ୍ଛଦ ସହ ସର୍ବତୋ ଭାବରେ ରକ୍ଷା କରିବି, ତୁମ୍ଭେ ମୋତେ ସେଠାରେ ସନ୍ନିହିତ ଦେଖିବ ।୩୫।

---

ସେ ମନୁ କାଳେ ସ୍ୱର୍ଗପୁରେ
ବସିବ ଅମର ଗୋଷ୍ଠରେ
ଇନ୍ଦ୍ର ହୋଇବ ସ୍ୱର୍ଗ ଦେଶେ
ମୁଁ ଏବେ ଥିବ ଏହା ପାଶେ
ଜଣ୍ଡିଲ୍ଲ ଥାଉ ଏ ସୁତଳେ
ଦାସ ତନୟ ସହିତ ମେଳେ

ଧନହିଁ ଥିବ ଅପ୍ରମିତ
ଶତ୍ରୁ ନୋହିବ ଉପଗତ
ସୁଦରଶନ ତା ଅଗ୍ରତେ
ଆବୋରି ଥିବ ଅବିରତେ
ଦୈତ୍ୟ ଦାନବ ତାର ସଙ୍ଗେ
ଆବୋରି ଥିବେ ମନ ରଙ୍ଗେ

ମୁହିଁ ଯେ କରେ ଗଦା ଧରି
ଥିବଇଁ ତା ପୁର ଆବୋରି
ଅନାଶେ ଦେଖୁଥିବ ମୋତେ
ଥିବ ମୁଁ ତାହାର ଅଗ୍ରତେ

ତତ୍ର ଦାନବଦୈତ୍ୟାନାଂ ସଙ୍ଗାତ୍ ତେ ଭାବ ଆସୁରଃ ।
ଦୃଷ୍ଟ୍ୱା ମଦନୁଭାବଂ ବୈ ସଦ୍ୟଃ କୁଣ୍ଠୋ ବିନଙ୍କ୍ଷ୍ୟତି । ୩୬ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ବଲିମୋକ୍ଷଣଂ
ନାମ ଦ୍ୱାବିଂଶୋଽଧ୍ୟାୟଃ ।

---

ସେହି ସୁତଳରେ ଦାନବ ଓ ଦୈତ୍ୟଙ୍କର ସଂସର୍ଗ ହେତୁ ତୁମ୍ଭର ଆସୁରୀ ଭାବ ଜନ୍ମିଲେ ମଧ୍ୟ ମୋର ଦର୍ଶନରେ ତାହା ସଦ୍ୟ ବିନଷ୍ଟ ହେବ ।୩୬।

---

ଏମନ୍ତେ କହି ଭଗବାନ
ବଳୀର ଫେଡ଼ିଲେ ବନ୍ଧନ ।୩୧-୩୬

ସେ ହରି ଚରଣ ପଙ୍କଜେ
ବ୍ରାହ୍ମଣ ଜଗନ୍ନାଥ ଭଜେ ।





## ତ୍ରୟୋବିଂଶୋଽଧ୍ୟାୟଃ ।

ତ୍ରୟୋବିଂଶେ ବଲୌ ଯାତେ ସୁତଳଂ ସପିତାମହେ ।
ଉପେନ୍ଦ୍ରେଣ ଦିବଂ ଗତ୍ୱା ପୂର୍ବବନ୍ ମୋଦତେ ହରିଃ ( ଶ୍ରୀଧରସ୍ୱାମୀ )

---

### ବଳିଙ୍କର ସୁତଳ ଗମନ ଓ ଇନ୍ଦ୍ରଙ୍କର ରାଜ୍ୟ ପ୍ରାପ୍ତି ।

ତ୍ରୟୋବିଂଶରେ ବଳି ପିତାମହଙ୍କ ସହିତ ସୁତଳକୁ ଯା'ନ୍ତେ ସ୍ୱର୍ଗରେ ଇନ୍ଦ୍ରଙ୍କୁ ସ୍ଥାପନ କରିବା ବର୍ଣ୍ଣିତ ହୋଇଅଛି ॥ ० ॥

---

ତେଇଶେ ବଳିକୁ ସୁତଳେ,		ସ୍ୱର୍ଗରେ ଇନ୍ଦ୍ରକୁ ସ୍ଥାପିଲେ ॥

ଶ୍ରୀ ଶୁକ ଉବାଚ ।

ଇତ୍ୟୁକ୍ତବନ୍ତଂ ପୁରୁଷଂ ପୁରାତନଂ ମହାନୁଭାବୋଽଖିଳସାଧୁସମ୍ମତଃ ।
ବଦ୍ଧାଞ୍ଜଳିବାଷ୍ପକଳାକୁଳେକ୍ଷଣୋଭକ୍ତ୍ୟୁତ୍କଳୋ ଗଦ୍‌ଗଦୟା ଗିରାବ୍ରବୀତ୍ । ୧ ।

ଶ୍ରୀ ବଳିରୁବାଚ ।

ଅହୋ ପ୍ରଣାମାୟ କୃତଃ ସମୁଦ୍ୟମଃ ପ୍ରପନ୍ନଭକ୍ତାର୍ଥବିଧୌ ସମାହିତଃ ।
ଯଲ୍ଲୋକପାଳୈସ୍ତ୍ୱଦନୁଗ୍ରହୋଽମରୈରଲବ୍ଧପୂର୍ବୋଽପସଦେଽସୁରେଽର୍ପିତଃ ।୨।

ଶ୍ରୀ ଶୁକ ଉବାଚ ।

ଇତ୍ୟୁକ୍ତ୍ୱା ହରିମାନତ୍ୟ ବ୍ରହ୍ମାଣଂ ସଭବଂ ତତଃ ।
ବିବେଶ ସୁତଳଂ ପ୍ରୀତୋ ବଳିର୍ମୁକ୍ତଃ ମହାସୁରୈଃ । ୩ ।

---

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ମହାମନସ୍ୱୀ, ନିଖିଳ ସାଧୁ ସମ୍ମତ ବଳି ଆନନ୍ଦାଶ୍ରୁପୂର୍ଣ୍ଣ ନେତ୍ରରେ ଅଭିଭୂତ ଓ ବିହ୍ୱଳ ହୋଇ ଏହିପରି ଆଦେଶକାରୀ ପୁରାଣ ପୁରୁଷ ବିଷ୍ଣୁଙ୍କୁ କହିଲେ ।୧।

ଶ୍ରୀ ବଳି କହିଲେ :—

ଅହୋ ! ଆପଣଙ୍କୁ ପ୍ରଣାମ କରିବାକୁ ମୁଁ ଉଦ୍ୟୋଗ ମାତ୍ର କରିଅଛି । ଆପଣ ଶରଣାଗତ ଭକ୍ତ ବାଞ୍ଛିତ ଅଭୀଷ୍ଟ ବର ମୋତେ ପ୍ରଦାନ କରିଅଛନ୍ତି । ଯେଉଁ ଅନୁଗ୍ରହ ଦେବଗଣ ବା ଲୋକପାଳଗଣ ଏ ପର୍ଯ୍ୟନ୍ତ ପାଇପାରି ନାହାନ୍ତି; ନୀଚ ଯୋନିଜାତ ଅଧମ ଅସୁର ମୁଁ ସେ ଅନୁଗ୍ରହ ପାଇଅଛି ।୨।

ଶ୍ରୀ ଶୁକଦେବ କହିଲେ :—

ବଳି ଏହିପରି କହି ବାମନରୂପୀ ବିଷ୍ଣୁ, ଶିବ ଓ ବ୍ରହ୍ମାଙ୍କୁ ନମସ୍କାର କରି ବରୁଣ ପାଶରୁ ମୁକ୍ତ ହୋଇ ଅସୁରମାନଙ୍କ ସହିତ ସୁତଳରେ ପ୍ରବେଶ କରିଥିଲେ ।୩।

---

ଶ୍ରୀଶୁକ ଉବାଚ—

ଏମନ୍ତେ ବିଷ୍ଣୁ-ମୁଖୁ ଶୁଣି
ବଳି କୃତାର୍ଥ ପ୍ରାୟେ ମଣି
ସାଧୁ ସୁମତ ସେ ସ୍ୱଭାବେ
ପ୍ରସନ୍ନ ମନେ ପ୍ରେମ ଭାବେ
କର ଅଞ୍ଜଳି ଶିରେ ଧରି
ପ୍ରେମ ପୁଲକେ ଅଶ୍ରୁ ଭରି
ପ୍ରଣାମ କରି ବିଷ୍ଣୁ-ପାଦେ
ବୋଲେ ଆନନ୍ଦ ଗଦଗଦେ । ୧ ।

ବଳିରୁବାଚ—

ମୋହର ଭାଗ୍ୟ ଏ ଜଗତେ
ଦାନ ମୁଁ ଦେଲି ତୋର ହସ୍ତେ
ବ୍ରହ୍ମା ସୃଷ୍ଟିରେ ହୋଇ ଜନ୍ମ
କେବା ଲଭିବ ଏଡ଼େ କର୍ମ୍ମ
ହେ ନାଥ ! ଅନୁଗ୍ରହ ତୋର
ଦିଗପାଳଙ୍କୁ ଅଗୋଚର
ନ ନମୁଁ ତୋର ପଦ୍ମ-ପାଦ
ଦୁଲ୍ଲଭ ଲଭିଲି ପ୍ରସାଦ । ୨ ।

ଶ୍ରୀଶୁକ ଉବାଚ—

ଏମନ୍ତ ବିଷ୍ଣୁ ଆଗେ କହି
ପୁତ୍ର-କଳତ୍ର ସଙ୍ଗେ ନେଇ
ବଳି ଯେ ବସିଲ ନିଷ୍ଠାନେ
ଗୋବିନ୍ଦ ଯୋଗ ମାୟାବଳେ
ହୁଂକାର ନାଦ ବେଗେ କରି
ନାଭିରୁ ପାଦ ଜାତ କରି
ବଳି ଦେଖିଲା ବେଳେ ତୋଳେ
ଗୋବିନ୍ଦ ଚାପିଲେ ପାତାଳେ;

ଏବମିନ୍ଦ୍ରାୟ ଭଗବାନ୍ ପ୍ରତ୍ୟାନୀୟ ତ୍ରିବିଷ୍ଟପମ୍ ।
ପୂରୟିତ୍ୱାଦିତେଃ କାମମଶାସତ୍ ସକଳଂ ଜଗତ୍ । ୪ ।
ଲବ୍ଧପ୍ରସାଦଂ ନିର୍ମୁକ୍ତଂ ପୌତ୍ରଂ ବଂଶଧରଂ ବଲମ୍ ।
ନିଶମ୍ୟ ଭକ୍ତିପ୍ରବଣଃ ପ୍ରହ୍ଲାଦ ଇଦମବ୍ରବୀତ୍ । ୫ ।
ଶ୍ରୀ ପ୍ରହ୍ଲାଦ ଉବାଚ ।
ନେମଂ ବିରିଞ୍ଚୋ ଲଭତେ ପ୍ରସାଦଂ ନ ଶ୍ରୀର୍ନ ଶର୍ବଃ କିମୁତାପରେଽନ୍ୟେ ।
ଯନ୍ନୋଽସୁରାଣାମସି ଦୁର୍ଗପାଲୋ ବିଶ୍ୱାଭିବନ୍ଦ୍ୟୈରଭିବନ୍ଦିତାଙ୍ଘ୍ରିଃ । ୬ ।
ଯତ୍ପାଦପଦ୍ମମକରନ୍ଦନିଷେବଣେନ ବ୍ରହ୍ମାଦୟଃ ଶରଣଦାଶ୍ନୁବତେ ବିଭୂତୀଃ ।
କସ୍ମାଦୟଂ କୁସୃତୟଃ ଖଳଯୋନୟସ୍ତେ ଦାକ୍ଷିଣ୍ୟଦୃଷ୍ଟିପଦବୀଂ ଭବତଃ ପ୍ରଣୀତାଃ ।୭।

---

ବାମନରୂପୀ ବିଷ୍ଣୁ ଏହିପରି ଭାବରେ ବଳଠାରୁ ସ୍ୱର୍ଗରାଜ୍ୟ ଆଣି ଇନ୍ଦ୍ରଙ୍କୁ ପ୍ରତ୍ୟର୍ପଣ କରି ଅଦିତିଙ୍କର ଅଭିଳାଷ ପୂରଣ କରି ସମସ୍ତ ଜଗତ୍ର ପାଳନ କରିଥିଲେ ।୪।

ଭକ୍ତି ପ୍ରବଣ ହୃଦୟ ପ୍ରହ୍ଲାଦ ପୌତ୍ର ବଳିକୁ ପାଶବନ୍ଧନ ମୁକ୍ତ ଏବଂ ଭଗବତ୍ର ଅନୁଗ୍ରହ ପ୍ରାପ୍ତ ଦେଖି କହିଲେ ।୫।

ଶ୍ରୀ ପ୍ରହ୍ଲାଦ କହିଲେ :—

ହେ ଭଗବନ୍ ! ଜଗତ୍ପୂଜ୍ୟ ବ୍ରହ୍ମାଦି ଦେବଗଣ ମଧ୍ୟ ଯାହାଙ୍କର ଚରଣ ବନ୍ଦନା କରନ୍ତି, ସେହି ଆପଣ ଯେ ଆମ୍ଭମାନଙ୍କୁ ଅସୁର ଯୋନିରେ ଜାତ ହୋଇଥିବାର ଜାଣି ସୁଦ୍ଧା ଆମ୍ଭମାନଙ୍କର ଦ୍ୱାର ରକ୍ଷକ ହେଲେ ଏପରି ଅନୁଗ୍ରହ ବ୍ରହ୍ମା, ଲକ୍ଷ୍ମୀ ଏବଂ ଶିବ ପ୍ରଭୃତି କେହି ପାଇନାହାନ୍ତି, ଅନ୍ୟ କଥା ବା କଣ କହିବୁ ।୬।

ହେ ଆଶ୍ରୟଦାତା ! ବ୍ରହ୍ମାଦି ଦେବଗଣ ଯାହାଙ୍କ ପାଦପଦ୍ମ ମକରନ୍ଦ ସେବାଦ୍ୱାରା ନିଜ ନିଜର ବିଭୂତି ବା ଐଶ୍ୱର୍ଯ୍ୟାଦି ଲାଭ କରିଥାନ୍ତି; ଅତ୍ୟନ୍ତ ଦୁର୍ବୃତ୍ତ, ଖଳସ୍ୱଭାବ, ଅସୁର ଯୋନିଜାତ ଆମ୍ଭେମାନେ କିପରି ଆପଣଙ୍କର କୃପାଦୃଷ୍ଟି ଲାଭ କଲୁ; ତାହା ଆମ୍ଭେମାନେ ଜାଣି ପାରୁନାହୁଁ ।୭।

---

ଭକ୍ତ-ବତ୍ସଳ ଭବସ୍ୱାମୀ
ସୁତଳ ପୁରେ ଠାବ ଦେଇ
ତକ୍ଷଣେ ସୁତଳେ ପ୍ରବେଶ
ଶୁଭିଲା ଜୟ ଜୟ ଘୋଷ
ଇନ୍ଦ୍ରକୁ ଆଣି ତୋଷ ମନେ
ସ୍ଥାପିଲେ ଅମର ଭୁବନେ
ଅଦିତି କଲା ସମ୍ପୋବ୍ରତ
ସଫଳ କଲେ ଗୋପୀନାଥ ।୩,୪

ଦେଖିଣ ନିଜ ନାତି ଗତି
ସମ୍ପଦ ନାଶେ ପାଶୁଁ ମୁକ୍ତି
ଖଣ୍ଡିଲେ ଜଗତ ବିଷାଦ
ବଳି ଦେଖିଲା ପଦ୍ମପାଦ
ଏମନ୍ତେ ନମି ବିଷ୍ଣୁ-ପାଦେ
ଆନନ୍ଦେ ଅଶ୍ରୁ ଗଦଗଦେ
ହିରଣ୍ୟକଶିପୁ-କୁମର
ବୋଲଇ ଦେଖ ଭାଗ୍ୟ ମୋର ।୫।

ଜଗନ୍ନାଥଙ୍କ ଏ ପ୍ରସାଦ
ଭୂଲେ ନ ଲଭେ ବ୍ରହ୍ମା-ଶିବ
କମଳା ବକ୍ଷସ୍ଥଳେ ବସେ
କଣ୍ଠାଗ୍ରେ ଜନ ଦୁଃଖ ନାଶେ
ସର୍ବଦା ସମୀପେ ବସନ୍ତି
ପ୍ରସାଦ ଲଭି ନ ପାରନ୍ତି ।୬।
ଯେ ପାଦ-ପଦ୍ମ-ରେଣୁ ଆଶେ
ଯୋଗିଏ ଯୋଗ ସାଧି ପ୍ରାସେ

ଚିତ୍ରଂ ତବେହିତ ମହୋଽମିତଯୋଗମାୟାଲୀଳାବିସୃଷ୍ଟଭୁବନସ୍ୟ ବିଶାରଦସ୍ୟ ।
ସର୍ବାତ୍ମନଃ ସମଦୃଶୋ ବିଷମଃ ସ୍ୱଭାବୋ ଭକ୍ତପ୍ରିୟୋଯଦସିକଳ୍ପତରୁସ୍ୱଭାବଃ । ୮ ।

ଶ୍ରୀ ଭଗବାନୁବାଚ ।

ବତ୍ସ ପ୍ରହ୍ଲାଦ ଭଦ୍ରଂ ତେ ପ୍ରୟାହି ସୁତଳାଳୟମ୍ ।
ମୋଦମାନଃ ସ୍ୱପୌତ୍ରେଣ ଜ୍ଞାତୀନାଂ ସୁଖମାବହ । ୯ ।
ନିତ୍ୟଂ ଦ୍ରଷ୍ଟାସି ମାଂ ତତ୍ର ଗଦାପାଣିମବସ୍ଥିତମ୍ ।
ମଦ୍ଦର୍ଶନମହାହ୍ଲାଦଧ୍ୱସ୍ତକର୍ମନିବନ୍ଧନଃ । ୧୦ ।

ଶ୍ରୀ ଶୁକ ଉବାଚ ।

ଆଜ୍ଞାଂ ଭଗବତୋ ରାଜନ୍ ପ୍ରହ୍ଲାଦୋ ବଳିନା ସହ ।
ବାଢ଼ମିତ୍ୟମଳପ୍ରଜ୍ଞୋ ମୂର୍ଦ୍ଧ୍ନ୍ୟାଧାୟ କୃତାଞ୍ଜଳିଃ । ୧୧ ।

---

ଅହୋ ! ଆପଣଙ୍କର ଅଯାଚିତ କର୍ମ ଅତି ଅଦ୍ଭୁତ, ଆପଣ ଅଚିନ୍ତ୍ୟ ଯୋଗମାୟା ଦ୍ୱାରା ଲୀଳା କରିବା ଲାଗି ଏହି ଭୁବନ ସମୂହ ସୃଷ୍ଟି କରିଅଛନ୍ତି । ଆପଣ ସର୍ବଜ୍ଞ ଓ ସର୍ବଜୀବର ଚୈତନ୍ୟ ସ୍ୱରୂପ ଏବଂ ସମଦର୍ଶୀ, ଆପଣ ଭକ୍ତପ୍ରିୟ ସୁତରାଂ ଭକ୍ତପ୍ରତି ଆପଣଙ୍କର ପ୍ରୀତି ଅସାମାନ୍ୟ, ଏହା ଆପଣଙ୍କର ବିଷମ ସ୍ୱଭାବ, କଳ୍ପତରୁ ଯେପରି ଆଶ୍ରିତ ବ୍ୟକ୍ତିର କାମନା ପୂରଣ କରେ, ଆପଣ ସେହିପରି ଭକ୍ତବାଞ୍ଛା ପୂରଣ କରିଥାନ୍ତି, ଏହା ଆପଣଙ୍କର ଗୁଣର ଉତ୍କର୍ଷର ପରିଚୟ ।୮।

ଶ୍ରୀ ଭଗବାନ୍ କହିଲେ :—

ହେ ବତ୍ସ ପ୍ରହ୍ଲାଦ ! ତୁମ୍ଭେ ସୁତଳକୁ ଗମନକର ସେଠାରେ ନିଜ ପୌତ୍ର ବଳି ସହିତ ବାସକରି ଜ୍ଞାତିମାନଙ୍କର ପ୍ରୀତି ସମ୍ପାଦନ କର, ସେଠାରେ ମୋତେ ସର୍ବଦା ଗଦାପାଣି ହୋଇ ଅବସ୍ଥାନ କରିବାର ଦେଖି ଆନନ୍ଦ ଲାଭ କର, ଏବଂ କର୍ମ ନିବନ୍ଧନରୁ ମୁକ୍ତ ହୁଅ ।୯, ୧୦।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଅସୁରମାନଙ୍କ ମଧ୍ୟରେ ଶ୍ରେଷ୍ଠ ନିର୍ମଳବୁଦ୍ଧିବିଶିଷ୍ଟ ପ୍ରହ୍ଲାଦ ଭଗବାନଙ୍କରଆଜ୍ଞା ଅବନତ

---

ଅଷ୍ଟାଙ୍ଗ ଯୋଗେ ଯାଇ ପ୍ରାପ
ଚରଣେ କରୁଥାନ୍ତି ଆଶ
ସେ କାହିଁ ଲଭିବେ ଚରଣ
ଯାହା ନ ପାନ୍ତି ମୁନିଗଣ ।୭,୮।
ଏମନ୍ତ ପ୍ରହ୍ଲାଦ କହି
ବାମନ ପାଦେ ଶିର ଦେଇ

ଦେଖି ସନ୍ତୋଷ ଭଗବାନ
କହନ୍ତି କମଳଲୋଚନ
ଶ୍ରୀଭଗବାନୁବାଚ—
ପ୍ରହ୍ଲାଦ ଶୁଣ ମୋ ଉତ୍ତର
ବେଗେ ଯା ତୁ ଏବେ ସୁତଳ
ଆନନ୍ଦେ ନିଜ ନାତି ତୁଲେ
ସୁଖେ ବିହର ଜ୍ଞାତିମେଳେ ।୯।

ମୁଁ ଥିବ ଗଦା-ପାଣି ହୋଇ
ନିତ୍ୟେ ଦେଖିବୁ ମୋତେ ତୁହି
ମୋ ଆହ୍ଲାଦ ମୋ ଦର୍ଶନ
ନାଶିବ କର୍ମର ବନ୍ଧନ ।୧୦।
ଶ୍ରୀଶୁକ ଉବାଚ—
ବିଷ୍ଣୁର ବଚନ ଶୁଣିଲ
ଅନେକ ମତେ ସ୍ତୁତି କଲ

ପରିକ୍ରମ୍ୟାଦିପୁରୁଷଂ ସର୍ବାସୁରଚମୂପତିଃ ।
ପ୍ରଣତସ୍ତଦନୁଜ୍ଞାତଃ ପ୍ରବିବେଶ ମହାବଲମ୍ । ୧୨ ।
ଅଥାହୋଶନସଂ ରାଜନ୍ ହରିର୍ନାରାୟଣୋଽନ୍ତିକେ ।
ଆସୀନମୃତ୍ୱିଜାଂ ମଧ୍ୟେ ସଦସି ବ୍ରହ୍ମବାଦିନାମ୍ । ୧୩ ।
ବ୍ରହ୍ମନ୍ ସନ୍ତନୁ ଶିଷ୍ୟସ୍ୟ କର୍ମଚ୍ଛିଦ୍ରଂ ବିତନ୍ୱତଃ ।
ଯତ୍ତତ୍କର୍ମସୁ ବୈଷମ୍ୟଂ ବ୍ରହ୍ମଦୃଷ୍ଟଂ ସମଂ ଭବେତ୍ । ୧୪ ।

ଶ୍ରୀ ଶୁକ ଉବାଚ ।

କୁତସ୍ତତ୍ କର୍ମବୈଷମ୍ୟଂ ଯସ୍ୟ କର୍ମେଶ୍ୱରୋ ଭବାନ୍ ।
ଯଜ୍ଞେଶୋ ଯଜ୍ଞପୁରୁଷଃ ସର୍ବଭାବେନ ପୂଜିତଃ । ୧୫ ।

---

ମସ୍ତକରେ ଓ କୃତାଞ୍ଜଳି ପୂର୍ବରେ ଗ୍ରହଣ କରି ଆଦିପୁରୁଷ ଭଗବାନ୍ ବିଷ୍ଣୁଙ୍କୁ ପ୍ରଦକ୍ଷିଣ ଓ ପ୍ରଣାମ କରି ବଳିଙ୍କ ସହିତ ମହାବଳ ସୁତଳରେ ପ୍ରବେଶ କରିଥିଲେ ।୧୧, ୧୨।

ହେ ରାଜନ୍ ! ଭଗବାନ୍ ଶ୍ରୀହରି ସଭାସ୍ଥ ଋତ୍ୱିକମାନଙ୍କ ମଧ୍ୟରେ ଅବସ୍ଥିତ ଶୁକ୍ରାଚାର୍ଯ୍ୟଙ୍କୁ କହିଲେ ।୧୩

ଶ୍ରୀ ଭଗବାନ୍ କହିଲେ :—

ହେ ବ୍ରହ୍ମନ୍ ! ଯଜ୍ଞାନୁଷ୍ଠାନକାରୀ ଆପଣଙ୍କର ଶିଷ୍ୟଙ୍କର ଯଜ୍ଞରୁ ଯାହା ଅସମ୍ପୂର୍ଣ୍ଣ ଅଛି; ତାହା ଆପଣ ପୂରଣ କରନ୍ତୁ କାରଣ ଯେଉଁ କର୍ମ ଅପୂର୍ଣ୍ଣ ଥାଏ; ବ୍ରାହ୍ମଣମାନେ ତାହା ପୂର୍ଣ୍ଣ କରିଥାନ୍ତି ।୧୪।

ଶ୍ରୀ ଶୁକ୍ରାଚାର୍ଯ୍ୟ କହିଲେ :—

ହେ ଭଗବନ୍ ! ଯେଉଁ ବଳି ସର୍ବକର୍ମ ପ୍ରବର୍ତ୍ତକ ଯଜ୍ଞଫଳଦାତା ଯଜ୍ଞମୟ ମହାପୁରୁଷ ଆପଣଙ୍କୁ ସର୍ବ ପ୍ରକାର ପୂଜା କରିଅଛି, ତାହାର କର୍ମ ଅସମ୍ପୂର୍ଣ୍ଣ ରହିବା କପରି ସମ୍ଭବ ହୋଇପାରେ ।୧୫।

---

ତକ୍ଷଣେ ମିଳିଲା ସୁତଳେ
ବନ୍ଧୁ କୁଟୁମ୍ବ ସଙ୍ଗମେଳେ ।୧୧,୧୨
ଏବେ ହେ। ଶୁଣ ସାବଧାନ
ଅଦ୍ଭୁତ ବିଷ୍ଣୁର ଚରିତ
ଯଜ୍ଞ ପୁରୁଷ ରୂପ ଧରି
ଅନଳ କୁଣ୍ଡୁ ଅବତରି
ଭୃଗୁ ବଦନ ଚାହିଁ ତୋଷେ
ବୋଲନ୍ତି ସୁଧର୍ମ ବିଶ୍ୱାସେ
ଯଜ୍ଞେ ସ୍ୱଭାବେ ବ୍ରହ୍ମା ଆଦି
ବିପ୍ରେ ଅଛନ୍ତି ବେଦବାଦୀ
ତାହାଙ୍କୁ ଗଉରବ କରି
କହନ୍ତି ଯଜ୍ଞରୂପଧାରୀ

ଯଜ୍ଞ-ପୁରୁଷ ଉବାଚ —
ତୁ ଭୃଗୁ, ବଳି ତୋର ଶିଷ୍ୟ
ଜାଣୁ ତୁ ଏ ଭୂତ ଭବିଷ୍ୟ
ଆଗମ ନିଗମ ବିଦିତ
ମୁହିଁ ଦେଖିଲି ବିପରୀତ
ଯଜ୍ଞ ସଂକଳ୍ପ କଲୁ ହାଦେ
ବଳି ବସିବ ଇନ୍ଦ୍ରପଦେ
ଏତେବେ କର୍ମ ଛିଦ୍ର ଦେଖି
ରହିଲୁ ଯଜ୍ଞକୁ ଉପେକ୍ଷି
ଯଜ୍ଞ ଲଙ୍ଘନ କର୍ମ କଲେ
କେମନ୍ତେ ବର୍ତ୍ତିବୁ ତୁ ଭଲେ
ଏ ଯଜ୍ଞ ତୋହର ଗୋଚରେ
ତୁ ଏବେ ପୂର୍ଣ୍ଣାହୁତି କରି

ଫଳ ପାଇବ ଯଜମାନ
ତା କୁଳେ ଥିବ ତୋର ମାନ୍ୟ

ଶ୍ରୀ ଶୁକ ଉବାଚ—

ଏମନ୍ତେ ଯଜ୍ଞ ମୁଖୁଁ ଶୁଣି
ଭୃଗୁ ଅନେକ ସ୍ତୁତି ଭଣି
ଚାହିଁ ସେ ବାମନ ଚରଣ
ଯଜ୍ଞ ସ୍ୱରୂପୀ ନାରାୟଣ
ବୋଲଇ ଯୋଡ଼ି ବେନି କର
ପୁଲକ ଆନନ୍ଦ ଶରୀର ।୧୩,୧୪
"ଶୁଣ ନାଥ ! ଏ ଯଜ୍ଞ ଶରୀର
ଅଶେଷ ଜନ ଉପକାର

ମନ୍ତ୍ରତସ୍ତନ୍ତ୍ରତଶ୍ଛିଦ୍ରଂ ଦେଶକାଲାର୍ହବସ୍ତୁତଃ ।
ସର୍ବଂ କରୋତି ନିଶ୍ଛିଦ୍ରମନୁସଂକୀର୍ତ୍ତନଂ ତବ । ୧୬ ।
ତଥାପି ବଦତୋ ଭୂମନ୍ କରିଷ୍ୟାମ୍ୟନୁଶାସନମ୍ ।
ଏତଚ୍ଛ୍ରେୟଃ ପରଂ ପୁଂସାଂ ଯତ୍ତବାଜ୍ଞାନୁପାଳନମ୍ । ୧୭ ।

ଶ୍ରୀ ଶୁକ ଉବାଚ ।

ପ୍ରତିନନ୍ଦ୍ୟ ହରେରାଜ୍ଞାମୁଶନା ଭଗବାନିତି ।
ଯଜ୍ଞଚ୍ଛିଦ୍ରଂ ସମାଧତ୍ତ ବଲେର୍ବିପ୍ରର୍ଷିଭିଃ ସହ । ୧୮ ।
ଏବଂ ବଲେର୍ମହୀଂ ରାଜନ୍ ଭିକ୍ଷିତ୍ୱା ବାମନୋ ହରିଃ ।
ଦଦୌ ଭ୍ରାତ୍ରେ ମହେନ୍ଦ୍ରାୟ ତ୍ରିଦିବଂ ଯତ୍ ପରୈର୍ହୃତମ୍ । ୧୯ ।
ପ୍ରଜାପତିପତିର୍ବ୍ରହ୍ମା ଦେବର୍ଷିପିତୃଭୂମିପୈଃ ।
ଦକ୍ଷଭୃଗ୍ୱଙ୍ଗିରୋମୁଖ୍ୟୈଃ କୁମାରେଣ ଭବେନ ଚ । ୨୦ ।

---

କର୍ମ ବିଷୟରେ ସ୍ୱରାଦି ଭ୍ରଂଶ ବା ଅନୁଷ୍ଠାନାଦିର ବ୍ୟତିକ୍ରମ ହେତୁ ଦେଶକାଳ ପାତ୍ର ଓ ଦକ୍ଷିଣାଦି ଦ୍ୱାରା ଯାହା ଅସମ୍ପୂର୍ଣ୍ଣ ଥାଏ ସେ ସମସ୍ତ ଆପଣଙ୍କର ନାମ କୀର୍ତ୍ତନରେ ପୂରଣ ହୁଏ ।୧୬।

ହେ ସର୍ବବ୍ୟାପୀ ! ତଥାପି ଆପଣ ଯାହା କହିଲେ ମୁଁ ସେ ଆଜ୍ଞା ପାଳନ କରିବି କାରଣ ଆପଣଙ୍କର ଆଜ୍ଞା ପାଳନହିଁ ମନୁଷ୍ୟର ଶ୍ରେଷ୍ଠ ଧର୍ମ ।୧୭।

ଶ୍ରୀ ଶୁକଦେବ କହିଲେ :—

ଶକ୍ତିମାନ୍ ଶୁକ୍ରାଚାର୍ଯ୍ୟ ଏହାକହି ଶ୍ରୀହରିଙ୍କର ଆଜ୍ଞା ପାଳନ କରି ବିପ୍ରର୍ଷିମାନଙ୍କ ସହିତ ବଳିଙ୍କର ଯଜ୍ଞାନୁଷ୍ଠାନର ଅସମ୍ପୂର୍ଣ୍ଣ କର୍ମମାନ ସମ୍ପାଦନ କରିଥିଲେ ।୧୮।

ହେ ରାଜନ୍ ! ବାମନାବତାରରେ ଶ୍ରୀହରି ଏହିପରି ବଳିଙ୍କ ନିକଟରୁ ପୃଥିବୀ ଭିକ୍ଷାକରି ଶତ୍ରୁମାନଙ୍କ ଅଧିକୃତ ସ୍ୱର୍ଗରାଜ୍ୟ ମହେନ୍ଦ୍ରଙ୍କୁ ସମର୍ପଣ କରିଥିଲେ ।୧୯।

ତହୁଁ ପ୍ରଜାପତିପତି ବ୍ରହ୍ମା, କଶ୍ୟପ, ଅଦିତିଙ୍କର ପ୍ରୀତି ନିମିତ୍ତ ଏବଂ ନିଖିଳ ଲୋକ ମଙ୍ଗଳାର୍ଥ ଦେବର୍ଷିଗଣ, ପିତୃଗଣ, ରାଜର୍ଷିଗଣ, ଦକ୍ଷ, ଭୃଗୁ, ଅଙ୍ଗିରା ଏବଂ ମହାଦେବଙ୍କ ସହିତ ମିଳିତ ହୋଇ

---

କର୍ମର ଈଶ୍ୱର ତୁ ଯହିଁ
ତା କର୍ମ ଛିଦ୍ର ହୋଇ କାହିଁ
ଯେ ମନ୍ତ୍ର ଆଦି ଦେଶ କାଳ
ଯେ ଛିଦ୍ର ହୁଅଇ ସକଳ
ତୋ ନାମ କୀର୍ତ୍ତନେ ସଫଳ
ଅଚ୍ଛିଦ୍ର ହୁଅଇ ସକଳ
ତଥାପି ଆଜ୍ଞା ଘେନି ଶିରେ
ସ୍ରୁବ ଧଇଲି ଦକ୍ଷକରେ ।୧୬-୧୭

ଋତ୍ୱିଜ ଋଷିଗଣ ସଙ୍ଗେ
ଆହୂତି ଦେଲେ ନାନାରଙ୍ଗେ
ଆନନ୍ଦେ ହୋଇ ଦ୍ୱିଜାହୂତ
ଭୃଗୁ ହୋଇଲେ କୃତକୃତ୍ୟ ।୧୮
ଏବେ ତୁ ଶୁଣ ହୋ ରାଜନ
ବାମନ ରୂପେ ଭଗବାନ
ବଳିର ହସ୍ତୁ ଘେନି ଦାନ
କପଟେ ଏ ତିନି ଭୁବନ

ଇନ୍ଦ୍ରକୁ ଇନ୍ଦ୍ର-ପଦେ ସ୍ଥାପି
ତିନି ଭୁବନେ ଦେହ ବ୍ୟାପି
ବିଷ୍ଣୁର ଦେଖି ଦିବ୍ୟଗତି
ସକଳ ଦେବେ ପ୍ରଜାପତି
ଭୃଗୁ ଅଙ୍ଗିରା ଘେନି ଭୁଲେ
ପିତୃ ରାଜର୍ଷି ଦକ୍ଷ ମେଳେ
କୁମାର ମେଳେ ଭୂତପତି
ମିଳିଲେ କଶ୍ୟପ ଅଦିତି

କଶ୍ୟପସ୍ୟାଦିତେଃ ପ୍ରୀତ୍ୟୈ ସର୍ବଭୂତଭବାୟ ଚ ।
ଲୋକାନାଂ ଲୋକପାଳାନାମକରୋଦ୍‌ବାମନଂ ପତିମ୍ । ୨୧ ।
ବେଦାନାଂ ସର୍ବଦେବାନାଂ ଧର୍ମସ୍ୟ ଯଶସଃ ଶ୍ରିୟଃ ।
ମଙ୍ଗଳାନାଂ ବ୍ରତାନାଞ୍ଚ କଳ୍ପଂ ସ୍ୱର୍ଗାପବର୍ଗୟୋଃ । ୨୨ ।
ଉପେନ୍ଦ୍ରଂ କଳ୍ପୟାଞ୍ଚକ୍ରେ ପତିଂ ସର୍ବବିଭୂତୟେ ।
ତଦା ସର୍ବାଣି ଭୂତାନି ଭୃଶଂ ମୁମୁଦିରେ ନୃପ । ୨୩ ।
ତତସ୍ତ୍ୱିନ୍ଦ୍ରଃ ପୁରସ୍କୃତ୍ୟ ଦେବଯାନେନ ବାମନମ୍ ।
ଲୋକପାଳୈର୍ଦିବଂ ନିନ୍ୟେ ବ୍ରହ୍ମଣା ଚାନୁମୋଦିତଃ । ୨୪ ।

---

ବାମନଦେବଙ୍କୁ ସର୍ବଲୋକ ଓ ଲୋକପାଳମାନଙ୍କର ଅଧିପତିତ୍ୱରେ ଅଭିଷେକ କରିଥିଲେ ।୨୦,୨୧।

ଏହିସବୁ ସମସ୍ତ ମଙ୍ଗଳ ନିମିତ୍ତ ବେଦସମୂହ ଦେବଗଣ, ଧର୍ମ, ଯଶ, ଶ୍ରୀ, ମଙ୍ଗଳ, ବ୍ରତ ଏବଂ ସ୍ୱର୍ଗ ଓ ଅପବର୍ଗ ରକ୍ଷା ବିଧାନରେ ସମର୍ଥ ବାମନଦେବଙ୍କୁ ଉପେନ୍ଦ୍ର ରୂପେ କଳ୍ପନା କରିଥିଲେ । ସେତେବେଳେ ପ୍ରାଣୀମାନେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।୨୨, ୨୩।

ତଦନନ୍ତର ବ୍ରହ୍ମାଙ୍କ କର୍ତ୍ତୃକ ଅନୁମୋଦିତ ହୋଇ ଇନ୍ଦ୍ର ଲୋକପାଳମାନଙ୍କ ସହିତ ଦେବ-ଯାନରେ ଆଗ୍ରହଣକରି ବାମନଦେବଙ୍କୁ ଅଗ୍ରଣୀ କରି ସ୍ୱର୍ଗ ଧାମକୁ ଗମନ କରିଥିଲେ ।୨୪।



ଇନ୍ଦ୍ରାଦି ଦେବତାମାନଙ୍କର ବାମନଙ୍କୁ ରଥରେ ବସାଇ ସ୍ୱର୍ଗକୁ ନେବା

---

ଦିଗପାଳଙ୍କୁ ସଙ୍ଗେ ଘେନି
କଳ୍ପ-କୁସୁମ ଗଙ୍ଗାପାଣି
ବାମନ କରି ଅଭିଷେକ,
ସର୍ବ ସମ୍ପଦେ ମନ ସୁଖ ।୧୯-୨୧

ଅଶେଷ ନୃତ୍ୟ ଗୀତ ବାଦ୍ୟ
ବାମନ ସ୍ଥାପି ପତି ପାଦେ
ସର୍ବ ସମ୍ପଦ ସଙ୍ଗେ ଘେନି
ମଙ୍ଗଳ ବେଦନାଦେ ଧ୍ୱନି

ବ୍ରହ୍ମା-ଶଙ୍କର ତୋଷମନେ
ବାମନ ବସାଇ ବିମାନେ;
ଆନନ୍ଦେ ପ୍ରଜାପତି ବୋଲେ
ସକଳେ ସ୍ୱର୍ଗପୁର ଗଲେ ।୨୨-୨୪

ପ୍ରାପ୍ୟ ତ୍ରିଭୁବନଂ ଚେନ୍ଦ୍ର ଉପେନ୍ଦ୍ରଭୁଜପାଳିତଃ ।
ଶ୍ରିୟା ପରମୟା ଜୁଷ୍ଟୋ ମୁମୁଦେ ଗତସାଧ୍ୱସଃ । ୨୫ ।
ବ୍ରହ୍ମା ଶର୍ବଃ କୁମାରଶ୍ଚ ଭୃଗ୍ୱାଦ୍ୟା ମୁନୟୋ ନୃପ ।
ପିତରଃ ସର୍ବଭୂତାନି ସିଦ୍ଧା ବୈମାନିକାଶ୍ଚ ଯେ । ୨୬ ।
ସୁମହତ୍ କର୍ମ ତଦ୍‌ବିଷ୍ଣୋର୍ଗାୟନ୍ତଃ ପରମଦ୍ଭୁତମ୍ ।
ଧିଷ୍ଣ୍ୟାନି ସ୍ୱାନି ତେ ଜଗ୍ମୁରଦିତିଞ୍ଚ ଶଶଂସିରେ ।୨୭।
ସର୍ବମେତନ୍ମୟାଖ୍ୟାତଂ ଭବତଃ କୁଳନନ୍ଦନ ।
ଉରୁକ୍ରମସ୍ୟ ଚରିତଂ ଶ୍ରୋତୃଣାମଘମୋଚନମ୍ । ୨୮ ।
ପାରଂ ମହିମ୍ନ ଉରୁବିକ୍ରମତୋ ଗୃଣାନୋ ଯଃ ପାର୍ଥିବାନି ବିମମେ ସ ରଜାଂସି ମର୍ତ୍ତ୍ୟଃ ।
କିଂ ଜାୟମାନ ଉତ ଜାତ ଉପୈତି ମର୍ତ୍ତ୍ୟ ଇତ୍ୟାହ ମନ୍ତ୍ରଦୃଗୃଷିଃ ପୁରୁଷସ୍ୟ ଯସ୍ୟ ।୨୯

---

ଉପେନ୍ଦ୍ର, ବାମନଦେବଙ୍କର ବାହୁବଳରେ ସୁରକ୍ଷିତ ଇନ୍ଦ୍ର ତ୍ରିଭୁବନ ଲାଭକରି ଭୟବିରହିତ ଏବଂ ସର୍ବସମ୍ପଦଯୁକ୍ତ ହୋଇ ପରମ ଆନନ୍ଦ ଲାଭ କରିଥିଲେ ।୨୫।

ହେ ରାଜନ୍ ! ବ୍ରହ୍ମା, ଶଙ୍କର, କାର୍ତ୍ତିକେୟ ଓ ଭୃଗୁ ପ୍ରଭୃତି ମୁନିମାନେ ପିତୃଗଣ, ପ୍ରାଣୀସମୂହ ଏବଂ ସିଦ୍ଧ, ବିମାନସ୍ଥିତଗଣ ସମସ୍ତେ ବିଷ୍ଣୁଙ୍କର ଏହି ଅଦ୍ଭୁତ କର୍ମ ପ୍ରସଙ୍ଗ ଗାନ କରୁ କରୁ ସ୍ୱସ୍ଥାନକୁ ଗମନ କରିଥିଲେ ଓ ଅଦିତିଙ୍କର ଭୂୟସୀ ପ୍ରଶଂସା କରିଥିଲେ ।୨୬; ୨୭।

ହେ କୁଳତିଳକ ! ଶ୍ରବଣକାରୀର ପାପ ନାଶକ ଭଗବାନ୍ ବାମନଦେବଙ୍କର ଏହି ଚରିତ ମୁଁ ତୁମ୍ଭ ନିକଟରେ ବର୍ଣ୍ଣନା କଲି । ୨୮ ।

ବିବିଧ ପ୍ରସଙ୍ଗରେ ପ୍ରକାଶମାନ ବିଷ୍ଣୁ ମହିମା ବର୍ଣ୍ଣନା କରି ଯେଉଁ ବ୍ୟକ୍ତି ଶେଷ କରିପାରେ, ସେ ମାନବ ପୃଥିବୀର ପରମାଣୁ ସମସ୍ତ ଗଣନା କରିବାକୁ ସମର୍ଥ ହୁଏ, ପରମ ପୁରୁଷ ବିଷ୍ଣୁଙ୍କର ଗୁଣ ବର୍ଣ୍ଣନାପ୍ରସଙ୍ଗରେ ମନ୍ତ୍ର ଦ୍ରଷ୍ଟା, ଋଷି ବଶିଷ୍ଠ କହିଅଛନ୍ତି ଯେ ଏପରି ମାନବ ଜନ୍ମିନାହିଁ କି ଜନ୍ମିବ ନାହିଁ-ଯେ ବିଷ୍ଣୁଙ୍କର ମହିମା କୀର୍ତ୍ତନ କରି ଶେଷ କରିପାରେ ।୨୯।

---

ଇନ୍ଦ୍ର ବାମନ ଭୁଜବଳେ
ସକଳ ହୃଗପାଳ ମେଳେ
ନିଶ୍ଚିନ୍ତେ ସ୍ୱର୍ଗେ ସେ ବସିଲ
ଯେଣୁ ଅଦିତି ବ୍ରତ କଲ । ୨୫ ।
ଏବେ ସେହୁ ସମ୍ପ୍ରକ୍ଷିତ ଶୁଣ
ବ୍ରହ୍ମା ସଙ୍ଗତେ ଦେବଗଣ

ବାମନ ପଦେ ସ୍ତୁତି କଲେ
ନିଶ୍ଚିନ୍ତେ ନିଜପୁରେ ଗଲେ ୨୬, ୨୭
ବଳି ବାମନର ପ୍ରସ୍ତାବେ
ପ୍ରତେ ଯେ କହିଲୁଁ ତୋ ଭାବେ
ତୁ ଯେଣୁ ପଚାରିଲୁ ମୋତେ
ବାମନ ରୂପ ତୋ ଅଗ୍ରତେ

କହିଲି ଆଦି ଅନ୍ତ କରି
ଯେ କଥା ଶ୍ରବଣେ ନିସ୍ତରି
ବିଷ୍ଣୁ ମହିମା କେ କହିବ
ଯାହା ନ ଜାଣେ ବ୍ରହ୍ମାଶିବ
ଭୂମିରେ ରେଣୁ ଅଛି ଯେତେ
ଆକାଶେ ନକ୍ଷତ୍ର ସହିତେ

ଯ ଇଦଂ ଦେବଦେବସ୍ୟ ହରେରଦ୍ଭୁତକର୍ମ୍ମଣଃ ।
ଅବତାରାନୁଚରିତଂ ଶୃଣ୍ୱନ୍ ଯାତି ପରାଂ ଗତିମ୍ ।୩୦।
କ୍ରିୟମାଣେ କର୍ମ୍ମଣୀଦଂ ଦୈବେ ପିତ୍ର୍ୟେଽଥ ମାନୁଷେ ।
ଯତ୍ର ଯତ୍ରାନୁକୀର୍ତ୍ତ୍ୟେତ ତତ୍ତେଷାଂ ସୁକୃତଂ ବିଦୁଃ । ୩୧ ।
ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ 'ପାରମହଂସ୍ୟାଂ ସଂହିତାୟାଂ'
ବୈୟାସିକ୍ୟାମଷ୍ଟମସ୍କନ୍ଧେ ବଳିବାମନଚରିତଂ ନାମ
ତ୍ରୟୋବିଂଶୋଽଧ୍ୟାୟଃ ।

---

ଯେଉଁ ବ୍ୟକ୍ତି ଅଦ୍ଭୁତକର୍ମା ଦେବ ଦେବ ଶ୍ରୀହରିଙ୍କର ଏହି ବାମନାବତାର ପ୍ରସଙ୍ଗ ଶ୍ରବଣ କରେ ସେ ପରମଗତି ଲାଭ କରେ ।୩୦।

ଦେବକାର୍ଯ୍ୟ, ପିତୃକାର୍ଯ୍ୟ, ଅଥବା ମାନବୀୟ ଯେ କୌଣସି କାର୍ଯ୍ୟରେ ଯେଉଁ ବ୍ୟକ୍ତି ଏହି ବାମନଦେବଙ୍କ ଚରିତ କୀର୍ତ୍ତନକରେ ସେ ବ୍ୟକ୍ତି ସଫଳତା ଲାଭକରେ, ଏହା ପଣ୍ଡିତମାନେ ଜାଣନ୍ତି ।୩୧।

---

ମେଘ ବରଷେ ଯେତେ ଧାର
ଏ ଆଦି ଅନ୍ତ କରିବାର
ଏହା ଗଣନ୍ତି ଅତିରେକ
ଜଗତେ ଅଛନ୍ତି ବା ଲୋକେ

ହରି ମହିମା ସଂଖ୍ୟା କରି
ନାହିଁ ସଂସାରେ ଦେହ ଧରି
ସେ ହରି ଚରଣ ପଙ୍କଜେ
ବ୍ରାହ୍ମଣ ଜଗନ୍ନାଥ ଭଜେ ।୨୮,୩୧।



**ସାରାଂଶ :—**

( ସପ୍ତଦଶ ଅଧ୍ୟାୟଠାରୁ ତ୍ରୟୋବିଂଶ ଅଧ୍ୟାୟ )

ଅଦିତି ପୟୋବ୍ରତ ଆଚରଣ କରି ବିଷ୍ଣୁଙ୍କଠାରୁ ବରଲାଭ କରିଥିଲେ । ବିଷ୍ଣୁ ଅଦିତିଙ୍କ ଗର୍ଭରେ ବାମନଦେବରୂପେ ଜନ୍ମଗ୍ରହଣ କରିଥିଲେ, ବଳି ଦାନବରାଜ ହୋଇ ଯଜ୍ଞାନୁଷ୍ଠାନ କରିଥିଲେ, ସେହି ଯଜ୍ଞର ପ୍ରଧାନ ପୁରୋଧା ଥିଲେ ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ, ବାମନଦେବ ସେହି ଯଜ୍ଞସ୍ଥଳରେ ଉପସ୍ଥିତ ହୋଇ ବଳିଙ୍କୁ ତ୍ରିପାଦ ଭୂମିଦାନ ମାଗିଥିଲେ, ଗୁରୁ ଶୁକ୍ରାଚାର୍ଯ୍ୟ ବିଷ୍ଣୁମାୟା ବୁଝିପାରି ବଳିଙ୍କୁ ନିବୃତ୍ତ କରାଇବା ଲାଗି ବହୁଯତ୍ନ କଲେ ମଧ୍ୟ ବଳି ସେ ଉପଦେଶ ଗ୍ରହଣ କରି ନ ଥିଲେ । ଭଗବାନ୍ ବିଷ୍ଣୁ ତ୍ରିପାଦ ଭୂମି ପ୍ରାର୍ଥନା କରିବାର ଦେଖି ବଳି ତାହାଙ୍କୁ ସାମାନ୍ୟ ବ୍ରାହ୍ମଣ ବାଳକ ବୋଲି ଖୁବ ଉପହାସ କରିଥିଲେ । ପ୍ରଥମ ପାଦରେ ସମସ୍ତ ଭୂତଳ, ଦ୍ୱିତୀୟ ପାଦରେ ଆକାଶ ମଣ୍ଡଳ ବ୍ୟାପ୍ତ ହୋଇଥିଲା । ତୃତୀୟ ପାଦ କାହିଁ ବୋଲି ବଳି ପ୍ରଶ୍ନ କରନ୍ତେ ଅଦ୍ଭୁତକର୍ମା ବାମନ ନିଜର ନାଭି ଦେଶରୁ ତୃତୀୟ ପାଦ ବିସ୍ତାର କରିଥିଲେ, ମାତ୍ର ଦାନ ନିମିତ୍ତ ଭୂମି କାହିଁ, ତେଣୁ ବଳି ନିଜର ମସ୍ତକ ସେହି ପାଦପଦ୍ମରେ ସମର୍ପଣ କରିଥିଲେ ।

ବଳିଙ୍କର ଦାନ ପ୍ରତିଶ୍ରୁତି ଲଙ୍ଘନ ହେତୁ ଭଗବାନ୍ ତାହାଙ୍କୁ ବରୁଣ ପାଶରେ ବନ୍ଧନ କରିଥିଲେ । ଦେବତାମାନେ ସେଠାରେ ଉପସ୍ଥିତ ହୋଇ ବାମନ ଦେବଙ୍କୁ ସ୍ତୁତି କରିଥିଲେ, ସେତେବେଳେ ବଳି ସ୍ତବକଲେ, 'ଏହି ବନ୍ଧନହିଁ ତାହାର ମୁକ୍ତି', ଭଗବାନ୍ ବଳିପ୍ରତି ସନ୍ତୁଷ୍ଟ ହୋଇ ତାହାଙ୍କୁ ସୁତଳରେ ସ୍ଥାନ ଦାନ କରିଥିଲେ, ଅବଶେଷରେ ବଳି ଓ ପ୍ରହ୍ଲାଦ କହିଲେ, ଆମ୍ଭେମାନେ ଅସୁରଯୋନି ଜାତ, କପରି ଭଗବାନଙ୍କର ଏ ଅନୁଗ୍ରହ ଲାଭ କରିବାକୁ ସମର୍ଥ ହେଲୁଁ । କିନ୍ତୁ ଭଗବାନଙ୍କ ରାଜ୍ୟରେ ଉଚ୍ଚ ଜାତିରେ ଜନ୍ମ ବା ନୀଚ ଜାତିରେ ଜନ୍ମଦ୍ୱାରା ଭଗବତ୍ କୃପାଲାଭ ବା ତହିଁରୁ ବଞ୍ଚିତ ହେବା ଘଟି ନ ଥାଏ । ଏହି ବଳି ବାମନ ଉପାଖ୍ୟାନରେ ଓ ପ୍ରହ୍ଲାଦ ପ୍ରସଙ୍ଗରେ ଅସୁରଙ୍କପ୍ରତି ଭଗବାନଙ୍କର ଅସୀମଅନୁଗ୍ରହ ପ୍ରଦର୍ଶନ ଏଥିରେ ଉଜ୍ଜ୍ୱଳ ଆଦର୍ଶ, ଭଗବାନ୍ ବଳିଙ୍କର ଗୁଣ ଓ କର୍ମଦ୍ୱାରା ଏପରି ପ୍ରୀତ ହୋଇଥିଲେ ଯେ ତାହାର ଦ୍ୱାରଦେଶରେ ଦ୍ୱାରପାଳ ହେବା ନିମିତ୍ତ ସ୍ୱୀକାର କରିଥିଲେ । ଆଧୁନିକ ଯୁଗରେ ଯବନ ହରିଦାସ ପ୍ରସଙ୍ଗ ଏଠାରେ ଉଲ୍ଲେଖ ଯୋଗ୍ୟ; ଆଜିକାଲି ଯେଉଁମାନେ ହରିଜନମାନଙ୍କୁ ଅସ୍ପୃଶ୍ୟତା ଦୋଷରେ ବର୍ଜ୍ଜନ କରୁଅଛନ୍ତି, ସେମାନେ ମଧ୍ୟ ଏହି ପ୍ରସଙ୍ଗକୁ ଶିକ୍ଷାପ୍ରଦ ବୋଲି ଗ୍ରହଣ କରିବା ଉଚିତ ।

---

## ଚତୁର୍ବିଂଶୋଽଧ୍ୟାୟଃ

ଚତୁର୍ବିଂଶେ ପ୍ରସଙ୍ଗେନ ମତ୍ସ୍ୟରୂପସ୍ୟ ଶାର୍ଙ୍ଗିଣଃ ।
ଲୀଲୋଚ୍ୟତେ ଯତଃ ସତ୍ୟବ୍ରତ ରକ୍ଷା ମହାର୍ଣ୍ଣବେ (ଶ୍ରୀଧରସ୍ୱାମୀ)

ଶ୍ରୀ ରାଜୋବାଚ ।

ଭଗବନ୍ ଶ୍ରୋତୁମିଚ୍ଛାମି ହରେରଦ୍ଭୁତକର୍ମ୍ମଣଃ ।
ଅବତାରକଥାମାଦ୍ୟାଂ ମାୟାମତ୍ସ୍ୟବିଡ଼ମ୍ବନାମ୍ । ୧ ।

---

### ମତ୍ସ୍ୟାବତାର ।

ଚତୁର୍ବିଂଶ ଅଧ୍ୟାୟରେ ଶାର୍ଙ୍ଗ ଧନୁଧାରୀ ଭଗବାନଙ୍କର ମତ୍ସ୍ୟାବତାର ରୂପେ ଲୀଳା କରିବା ବିଷୟ ବର୍ଣ୍ଣନା କରାଯାଇଅଛି ॥ ୦ ॥

ଶ୍ରୀ ରାଜା ପରୀକ୍ଷିତ କହିଲେ :—

ହେ ଭଗବନ୍ ! ଅଦ୍ଭୁତକର୍ମା ହରି ଆଦ୍ୟାବତାରରେ ଯେଉଁ ମାୟାମତ୍ସ୍ୟ ରୂପ ଧାରଣ କରିଥିଲେ ତାହା ମୁଁ ଶୁଣିବାକୁ ଇଚ୍ଛା କରେ ।୧।

---

ମତ୍ସ୍ୟ ଅବତାର ଚରିତ, ଚବିଶ ଅଧ୍ୟାୟେ ବର୍ଣ୍ଣିତ ॥

ଶ୍ରୀବାଦରାୟଣିରୁବାଚ —
ଶୁଣ ହେ ଅଭିମନ୍ୟୁବଳା
ଯେମନ୍ତେ ଈଶ୍ୱରର ଲୀଳା
ସ୍ୱମାୟା କଳିତ ସଂସାରେ
ସମ୍ଭାବ ନାନା ରୂପ ଧରେ

ଧର୍ମ୍ମକୁ ପାଳେ ଯୁଗେ ଯୁଗେ
ସାଧୁଙ୍କୁ ରକ୍ଷେ ଅନୁରାଗେ
ଦୁଷ୍ଟ ଛିଡାଇ ସାଧୁ ପାଳେ
ରୂପ ପ୍ରକାଶେ ଯଥାକାଳେ

ତା ରୂପ କେ କହିବ ଅନ୍ତ
ସ୍ୱଭାବେ ମହିମା ଅନନ୍ତ
ଏମନ୍ତ ଶୁକମୁଖୁ ଶୁଣି
ଆନନ୍ଦେ ରାଜା କୁରୁମଣି

'ଯଦର୍ଥମଦଧାଦ୍ରୂପଂ ମାତ୍ସ୍ୟଂ ଲୋକଜୁଗୁପ୍ସିତମ୍ ।
ତମଃପ୍ରକୃତଂ ଦୁର୍ମ୍ମର୍ଷଂ କର୍ମ୍ମଗ୍ରସ୍ତ ଇବେଶ୍ୱରଃ । ୨ ।
ଏତନ୍ନୋ ଭଗବନ୍ ସର୍ବଂ ଯଥାବଦ୍‌ବକ୍ତୁମର୍ହସି ।
ଉତ୍ତମଃଶ୍ଳୋକଚରିତଂ ସର୍ବଲୋକସୁଖାବହମ୍ । ୩ ।

ଶ୍ରୀ ସୂତ ଉବାଚ ।

ଇତ୍ୟୁକ୍ତୋ ବିଷ୍ଣୁରାତେନ ଭଗବାନ୍ ବାଦରାୟଣିଃ ।
ଉବାଚ ଚରିତଂ ବିଷ୍ଣୋର୍ମତ୍ସ୍ୟରୂପେଣ ଯତ୍ କୃତମ୍ । ୪ ।

ଶ୍ରୀ ଶୁକ ଉବାଚ ।

ଗୋବିପ୍ରସୁରସାଧୂନାଂ ଛନ୍ଦସାମପି ଚେଶ୍ୱରଃ ।
ରକ୍ଷାମିଚ୍ଛଂସ୍ତନୂର୍ଧତ୍ତେ ଧର୍ମ୍ମସ୍ୟାର୍ଥସ୍ୟ ଚୈବ ହି । ୫ ।

---

ହେ ଭଗବନ୍ ଈଶ୍ୱର କର୍ମଗ୍ରସ୍ତ ତୁଲ୍ୟ ତମଃ ପ୍ରକୃତ ହେତୁ ଦୁଃସହ ଏବଂ ଲୋକନିନ୍ଦିତ ମତ୍ସ୍ୟରୂପ କି ହେତୁ ସେ ଧାରଣ କରିଥିଲେ ସର୍ବଲୋକ ସୁଖକର ସେହି ଉତ୍ତମଶ୍ଳୋକ ଶ୍ରୀହରି ଚରିତ ଯଥାଯଥ ଭାବରେ ବର୍ଣ୍ଣନା କରନ୍ତୁ । ୨, ୩ ।

ଶ୍ରୀସୂତ କହିଲେ :—

ପରୀକ୍ଷିତଙ୍କ କର୍ତ୍ତୃକ ଏହିପରି ପୃଷ୍ଟ ହୋଇ ଭଗବାନ୍ ବିଷ୍ଣୁଙ୍କର ମତ୍ସ୍ୟାବତାରର କାର୍ଯ୍ୟାବଳି ଶ୍ରୀ ଶୁକଦେବ ବ୍ୟାଖ୍ୟାନ କରିଥିଲେ ।୪।

ଶ୍ରୀଶୁକଦେବ କହିଲେ—

ଭଗବାନ୍ ଗୋ, ବ୍ରାହ୍ମଣ, ଦେବତା, ସାଧୁ, ବେଦ, ଧର୍ମ, ଅର୍ଥ, ରକ୍ଷା ନିମିତ୍ତ ଇଚ୍ଛାକରି ସମୟ ସମୟରେ ଅବତାର ରୂପେ ଶରୀର ଧାରଣ କରିଥାନ୍ତି ।୫।

---

ଶ୍ରୀପରୀକ୍ଷିତ୍ରୁବାଚ—

ବୋଲେ ଚରଣେ କର ଦେଇ
ହେ ମୁନି ! ନିସ୍ତରିଲି ମୁହିଁ
ବୋଲ ଯେ ମୀନ ଅବତାର
ହୋଇଲେ ଜଗତ ଈଶ୍ୱର
ନିନ୍ଦିତ ଜଳଚର ରୂପେ
ଦେହ ବହିଲେ କେଉଁ କଳ୍ପେ
କେଉଁଣ କାର୍ଯ୍ୟେ କିସ ଅର୍ଥେ
ପ୍ରସନ୍ନେ କହ ମୋ ଅଗ୍ରତେ
ତାହା ଚରିତ ପାଶୁଁ ତାରେ
ଅଶେଷ ପ୍ରାଣୀ ଦୁଃଖ ହରେ
ଅନାଦି ପ୍ରଭୁ ନାରାୟଣ
ମାୟାର ପରମ କାରଣ ।୧-୩।

ଶ୍ରୀସୁତଉବାଚ—

ସୂତ କହନ୍ତି ମୁନି ମଧ୍ୟ
ଅତି ଆନନ୍ଦ ଗଦଗଦେ
ଶୁଣ ସକଳ ଋଷିଜନେ
ଶୁକ ପରୀକ୍ଷେ ଯା ବଖାଣେ ।୪।

ଶ୍ରୀଶୁକ ଉବାଚ—

ଅଶେଷ ବ୍ରହ୍ମାଣ୍ଡ କାରଣ
ଅନାଦି ପ୍ରଭୁ ନାରାୟଣ
ସର୍ଜ୍ଜଇ ପାଳଇ ସଂହାରେ
ସଂସାର ମଧ୍ୟେ ରୂପ ଧରେ
ଧର୍ମ୍ମ ରକ୍ଷଣେ ଦେହ ଧରି
ଅଧର୍ମ୍ମ ସମୂହ ନିବାରି
ଦୁଷ୍ଟଙ୍କୁ କରେ ସଂହାରଣ
ସାଧୁଙ୍କୁ ରଖେ ନାରାୟଣ

ଉଚ୍ଚାବଚେଷୁ ଭୂତେଷୁ ଚରନ୍ ବାୟୁରିବେଶ୍ୱରଃ ।
ନୋଚ୍ଚାବଚତ୍ୱଂ ଭଜତେ ନିର୍ଗୁଣତ୍ୱାଦ୍ଧିୟୋ ଗୁଣୈଃ । ୬ ।
ଆସୀଦତୀତ କଳ୍ପାନ୍ତେ ବ୍ରାହ୍ମୋ ନୈମିତ୍ତିକୋ ଲୟଃ ।
ସମୁଦ୍ରୋପପ୍ଳୁତାସ୍ତତ୍ର ଲୋକା ଭୂରାଦୟୋ ନୃପ । ୭ ।
କାଳେନାଗତନିଦ୍ରସ୍ୟ ଧାତୁଃ ଶିଶୟିଷୋର୍ବଳୀ ।
ମୁଖତୋ ନିଃସୃତାନ୍ ବେଦାନ୍ ହୟଗ୍ରୀବୋଽନ୍ତିକେଽହରତ୍ । ୮ ।
ଜ୍ଞାତ୍ୱା ତଦ୍ଦାନବେନ୍ଦ୍ରସ୍ୟ ହୟଗ୍ରୀବସ୍ୟ ଚେଷ୍ଟିତମ୍ ।
ଦଧାର ଶଫରୀରୂପଂ ଭଗବାନ୍ ହରିରୀଶ୍ୱରଃ । ୯ ।
ତତ୍ର ରାଜର୍ଷିଃ କଶ୍ଚିନ୍ନାମ୍ନା ସତ୍ୟବ୍ରତୋ ମହାନ୍ ।
ନାରାୟଣପରୋଽତପ୍ୟତ୍ ତପଃ ସ ସଲିଳାଶନଃ । ୧୦ ।

---

ଈଶ୍ୱର ବାୟୁ ଭଳି ଉଚ୍ଚ, ନୀଚ ଅର୍ଥାତ୍ ଦେବତା, ମନୁଷ୍ୟ, ତିର୍ଯ୍ୟଗ୍ ପ୍ରଭୃତି ଉନ୍ନତ ବା ଅବନତ ପ୍ରାଣୀ ସମୂହରେ ବିଚରଣ କଲେ ମଧ୍ୟ ସ୍ୱୟଂ ନିର୍ଗୁଣ ବୋଲି ସାଧାରଣ ବୁଦ୍ଧିର ବିଷୟୀଭୂତ ଉତ୍କୃଷ୍ଟ ଅପକୃଷ୍ଟ ଗୁଣ ପ୍ରାପ୍ତ ହୁଅନ୍ତି ।୬।

ହେ ରାଜନ୍ ! ଅତୀତ କଳ୍ପର ଅବସାନରେ ବ୍ରହ୍ମାଙ୍କର ନିଦ୍ରିତାବସ୍ଥାରେ ପ୍ରଳୟ ଉପସ୍ଥିତ ହୁଅନ୍ତେ ଭୂରାଦି ଲୋକମାନେ ସମୁଦ୍ର ଜଳରେ ନିମଗ୍ନ ହେଲେ ।୭।

କାଳବଶରେ ବ୍ରହ୍ମାଙ୍କର ନିଦ୍ରା ଉପସ୍ଥିତ ହୁଅନ୍ତେ ସେ ଶୟନ କରିବାକୁ ଇଚ୍ଛା କରିବାରୁ ତାହାଙ୍କର ମୁଖନିଃସୃତ ବେଦ ସମୂହକୁ ନିକଟବର୍ତ୍ତୀ ବଳବାନ୍ ହୟଗ୍ରୀବ ଅସୁର ଅପହରଣ କରିଥିଲା ।୮।

ଭଗବାନ୍ ଈଶ୍ୱର ହରି ଦାନବେନ୍ଦ୍ର ହୟଗ୍ରୀବଙ୍କର ବେଦହରଣ କାର୍ଯ୍ୟ ଜାଣିପାରି ଶଫରୀ ମତ୍ସ୍ୟ ( ଫଳି ମାଛ ) ରୂପ ଧାରଣ କରିଥିଲେ ।୯।

ସେ ସମୟରେ ସତ୍ୟବ୍ରତ ନାମକ ଜଣେ ରାଜର୍ଷି ଯେ କି ଅତ୍ୟନ୍ତ ହରିଭକ୍ତ ସେ ଜଳରେ ତପସ୍ୟା କରୁଥିଲେ ।୧୦।

---

ଶୁଣ ତୁ ଯେବା ଅର୍ଥେ ହରି
କୁତ୍ସିତ ମୀନରୂପ ଧରି ।୫-୬।
ବ୍ରହ୍ମା ଯେ ସୃଷ୍ଟି ଆଦ୍ୟକାଳେ
ବେଦ-ପୁସ୍ତକ ଥୋଇ ତଳେ
ଜଳେ ପଶିଲେ ସନ୍ଧ୍ୟା କରି
ସେ ବେଦ ହୟଗ୍ରୀବ ହରି
ଅଗାଧ ଜଳେ ପଶିଗଲା
ବିଧାତା ବସ୍ତୁକୁ ଚାହିଁଲା
ଦାନବ ଗତ ବସ୍ତୁ ଜାଣି
ତକ୍ଷଣେ ପ୍ରଭୁ ଚକ୍ରପାଣି
ଯେ ଦୈତ୍ୟ ହୟଗ୍ରୀବ ରୂପୀ
ପଶିଲେ ମହାଜଳେ ବ୍ୟାପୀ
ଯେମନ୍ତେ ମାଇଲେ ଅସୁର
ବେଦ ଉଦ୍ଧରି ଚକ୍ରଧର
ସେ କଥା ଶୁଣ ଏକଚିତ୍ତେ
କହିବେ କହିବି ତୋ ଅଗ୍ରତେ ।୭-୯।
ପ୍ରକାଶେ ବ୍ରହ୍ମାର ରଜନୀ
କଳ୍ପର ନାମ ଦୈନନ୍ଦିନ
ଏମନ୍ତେ ପ୍ରଳୟ ନିକଟେ
ରାଜାଏ ଥିଲା ସିନ୍ଧୁତଟେ
ତାହାର ସତ୍ୟବ୍ରତ ନାମ
ଅଶେଷ ଗୁଣେ ଗୁଣ ଧାମ
ସ୍ୱଭାବେ ବିଷ୍ଣୁପରାୟଣ
ତପ ସାଧଇ ସେ ନିପୁଣ

ଯୋଽସାବସ୍ମିନ୍ ମହାକଳ୍ପେ ତନୟଃ ସ ବିବସ୍ୱତଃ ।
ଶ୍ରାଦ୍ଧଦେବ ଇତି ଖ୍ୟାତୋ ମନୁତ୍ୱେ ହରିଣାର୍ପିତଃ ।୧୧।
ଏକଦା କୃତମାଲାୟାଂ କୁର୍ବତୋ ଜଳତର୍ପଣମ୍ ।
ତସ୍ୟାଞ୍ଜଲ୍ୟୁଦକେ କାଚିଚ୍ଛଫର୍ୟେକାଭ୍ୟପଦ୍ୟତ ।୧୨।
ସତ୍ୟବ୍ରତୋଽଞ୍ଜଳିଗତାଂ ସହ ତୋୟେନ ଭାରତ ।
ଉତ୍ସସର୍ଜ୍ଜ ନଦୀତୋୟେ ଶଫରୀଂ ଦ୍ରବିଡେଶ୍ୱରଃ ।୧୩।
ତମାହ ସାତିକରୁଣଂ ମହାକାରୁଣିକଂ ନୃପମ୍ ।
ଯାଦୋଭ୍ୟୋ ଜ୍ଞାତିଘାତିଭ୍ୟୋ ଦୀନାଂ ମାଂ ଦୀନବତ୍ସଳ ।
କଥଂ ବିସୃଜସେ ରାଜନ୍ ଭୀତାମସ୍ମିନ୍ ସରିଜ୍ଜଳେ ।୧୪।

---

ସେହି ସତ୍ୟବ୍ରତ ମହାକଳ୍ପରେ ସୂର୍ଯ୍ୟ ପୁତ୍ରରୂପେ ଶ୍ରାଦ୍ଧଦେବ ନାମରେ ପ୍ରସିଦ୍ଧି ଲାଭ କରି ଶ୍ରୀହରିଙ୍କ କର୍ତ୍ତୃକ ମନୁ ପଦରେ ଅଭିଷିକ୍ତ ହୋଇଥିଲେ ।୧୧ ।

ଦିନେ ସତ୍ୟବ୍ରତ ମାଳା ସ୍ମରଣ କରି ନଦୀରେ ଜଳ ତର୍ପଣ କରୁ କରୁ ତାହାଙ୍କ ଅଞ୍ଜଳିସ୍ଥିତ ଜଳରେ ଗୋଟିଏ କ୍ଷୁଦ୍ର ମୀନ ପତିତ ହେଲା ।୧୨।

ହେ ଭାରତ ! ଦ୍ରାବିଡେଶ୍ୱର ସତ୍ୟବ୍ରତ ଜଳ ସହିତ ଅଞ୍ଜଳିଗତ ସେହି ଶଫରୀକୁ ନଦୀ ଜଳରେ ନିକ୍ଷେପ କରିଥିଲେ ।୧୩।

ସେହି ସଫରୀ ଅତ୍ୟନ୍ତ କାତର ଭାବରେ ମହା କାରୁଣିକ ସତ୍ୟବ୍ରତ ରାଜାଙ୍କୁ କହିଲେ, "ହେ ଦୀନ ବତ୍ସଳ ମହାରାଜ ! ମୁଁ ଅତିଶୟ ଭୀତ ଓ କାତର; ଆପଣ କିପରି ଜ୍ଞାତିହନ୍ତା ଜଳ ଜନ୍ତୁମାନଙ୍କ ମଧ୍ୟରେ ମୋତେ ନିକ୍ଷେପ କରୁଅଛନ୍ତି ।୧୪।

---

ତପ ସାଧି ସିନ୍ଧୁତୀରେ
ଜଳ ଭକ୍ଷଣେ ଦିନ ହରେ
ସେ ତପ ସାଧି କଳ୍ପ ଅନ୍ତେ
ମନୁ ହୋଇବ ଭବିଷ୍ୟତେ
ଆଦିତ୍ୟ ବୀର୍ଯ୍ୟେ ଜନ୍ମ ହୋଇ
ସେ ଶ୍ରାଦ୍ଧଦେବ ନାମ ବହି
ମନୁ ହୋଇବ ଏ ଜଗତେ
ହରି ସ୍ଥାପିବେ ତୋଷଚିତ୍ତେ ।୧୦,୧୧
ଏବେ ହୋ ଶୁଣ ନରପତି
ସେ ସତ୍ୟବ୍ରତ ରାଜା ଗତି
ତର୍ପଣ ଅର୍ଥେ ସନ୍ଧ୍ୟା ବେଳା
ନଦୀର ନାମ କୃତ ମାଳା

ସେ ନଦୀ ଜଳେ ସ୍ନାନ କରି
ବିଷ୍ଣୁର ନାମ ଚିତ୍ତେ ସ୍ମରି
ସ୍ନାନ କରି ସନ୍ଧ୍ୟା ଅର୍ଥେ
ଜଳ ଅଞ୍ଜଳି ଘେନି ହସ୍ତେ
ତକ୍ଷଣେ ପ୍ରଭୁ ନରହରି
ମାୟାରେ ମୀନ ରୂପ ଧରି
ଶଫରୀ ରୂପେ ଆଦିକନ୍ଦ
ପଡ଼ିଲେ ଜଳାଞ୍ଜଳି ମଧ୍ୟ
ସେ ସତ୍ୟବ୍ରତ ତା ଦେଖିଲ
ଜଳ ଅଞ୍ଜଳି ପକାଇଲ ।୧୨-୧୩
ରାଜାର ହସ୍ତ ପଡ଼ି ଜଳେ
ସେ ମୀନ ଡାକଇ ବିକଳେ

ଅହୋ ଦାରୁଣ ନୃପମଣି !
ମୋହର ଦୁଃଖ ତୁ ନ ଜାଣି
ଜଳେ ଯେ ପକାଇଲୁ ମୋତେ
ମୋ ଜ୍ଞାତି ଶତ୍ରୁ ଏ ସମସ୍ତେ
ମୋତେ ଗିଳିବେ ବୋଲି ଡରେ
ଭୟେ ପଶିଲି ତୋର କରେ
ମୋ ପ୍ରାଣ ରଖ ନୃପମଣି
ମୋତେ ଗିଳିବେ ଏହିକ୍ଷଣି
ପ୍ରାଣି ଜୀବନ ରକ୍ଷାକଲେ
ଆପଣେ ରକ୍ଷାପାଇ ଭଲେ
ଏବେ ମୁଁ ତୋହର ଶରଣ
ପଶିଲି ରଖ ମୋର ପ୍ରାଣ ।୧୪

ତମାତ୍ମନୋଽନୁଗ୍ରହାର୍ଥଂ ପ୍ରୀତ୍ୟା ମତ୍ସ୍ୟବପୁର୍ଧରମ୍ ।
ଅଜାନନ୍ ରକ୍ଷଣାର୍ଥାୟ ଶଫର୍ଯ୍ୟାଃ ସ ମନୋ ଦଧେ । ୧୫ ।
ତସ୍ୟା ଦୀନତରଂ ବାକ୍ୟମାଶ୍ରୁତ୍ୟ ସ ମହୀପତିଃ ।
କଳସାପ୍ସୁ ନିଧାୟୈନାଂ ଦୟାଳୁର୍ନିନ୍ୟ ଆଶ୍ରମମ୍ । ୧୬ ।
ସା ତୁ ତତ୍ରୈକରାତ୍ରେଣ ବର୍ଦ୍ଧମାନା କମଣ୍ଡଳୌ ।
ଅଲବ୍ଧ୍ୱାତ୍ମାବକାଶଂ ବା ଇଦମାହ ମହୀପତିମ୍ । ୧୭ ।
ନାହଂ କମଣ୍ଡଳାବସ୍ମିନ୍ କୃଚ୍ଛ୍ରଂ ବସ୍ତୁମଥୋତ୍ସହେ ।
କଳ୍ପୟୌକଃ ସୁବିପୁଳଂ ଯତ୍ରାହଂ ନିବସେ ସୁଖମ୍ । ୧୮ ।
ସ ଏନାଂ ତତ ଆଦାୟ ନ୍ୟଧାଦୌଦଞ୍ଚନୋଦକେ ।
ତତ୍ର କ୍ଷିପ୍ତା ମୁହୂର୍ତ୍ତେନ ହସ୍ତତ୍ରୟମବର୍ଦ୍ଧତ । ୧୯ ।

---

ରାଜର୍ଷି ସତ୍ୟବ୍ରତ ଜାଣି ନ ଥିଲେ ଯେ ତାଙ୍କ ପ୍ରତି ଅନୁଗ୍ରହ ଦେଖାଇବା ନିମିତ୍ତ ଭଗବାନ୍ ମତ୍ସ୍ୟରୂପ ଧାରଣ କରିଥିଲେ । ତଥାପି ରାଜା ଏହି ମତ୍ସ୍ୟଙ୍କୁ ରକ୍ଷା କରିବା ନିମିତ୍ତ ଚିନ୍ତାକଲେ । ରାଜା ସତ୍ୟବ୍ରତ ମତ୍ସ୍ୟର ଦୀନ ବାକ୍ୟ ଶ୍ରବଣ କରି ତାହା ପ୍ରତି ଦୟା ପରବଶ ହୋଇ ତାହାକୁ କମଣ୍ଡଳୁ ଜଳରେ ସ୍ଥାନ ଦାନ କରିଥିଲେ । ୧୫, ୧୬ ।

ସେହି ଶଫରୀ କମଣ୍ଡଳୁ ମଧ୍ୟରେ ରାତ୍ରିକ ମଧ୍ୟରେ ବର୍ଦ୍ଧିତ ହୋଇ କମଣ୍ଡଳୁ ମଧ୍ୟରେ ଦେହ ରଖି ନ ପାରି ନୃପତିଙ୍କୁ କହିଲା ।୧୭।

ମୁଁ ଏହି ସାମାନ୍ୟ କମଣ୍ଡଳୁ ମଧ୍ୟରେ ଅତି କଷ୍ଟରେ ବାସ କରିପାରୁନାହିଁ, ସୁତରାଂ ମୋର ସୁଖ ବାସ ନିମିତ୍ତ ବିସ୍ତୃତ ସ୍ଥାନ କଳ୍ପନା କରନ୍ତୁ ।୧୮।

ତଦନନ୍ତର ରାଜା ତାହାକୁ ଗ୍ରହଣ କରି ଜଳାଶୟ ମଧ୍ୟରେ ସ୍ଥାପନ କଲେ । ସେଠାରେ ସ୍ଥାପିତ ହେବା ମାତ୍ରକେ ସେହି ଶଫରୀର ଶରୀର ଅତ୍ୟନ୍ତ ବର୍ଦ୍ଧିତ ହେଲା ।୧୯।

---

ଏମନ୍ତେ ଶଫରୀ ବଚନେ
ସେ ରାଜା ଶୁଣି ସାବଧାନେ
କରି ଅଞ୍ଜଳି କରି ହେଳେ
ଭରି ଉଦ୍ଧରି କମଣ୍ଡଳେ
ଜନ୍ତୁ ଜୀବନେ ଦୟା କରି
ସ୍ନେହେ ମିଳିଲେ ଦଣ୍ଡଧାରୀ
ଜଳେ ତର୍ପଣ ବେଗେ ସାରି
ଅଇଲେ କମଣ୍ଡଳେ ଭରି ।୧୫,୧୬

ସେ ମୀନ କମଣ୍ଡଳ ଜଳେ
ରହି ନ ପାରି ରାତ୍ରିକାଳେ
ବଢ଼ିଲେ କରଇ ରୋଦନ
ମେ ପ୍ରାଣ ରଖ ହେ ରାଜନ !
ଚଳି ନ ପାରେ କମଣ୍ଡଳେ
ବେଗେ ତୁ ଥୁଅ ଅନ୍ୟ ଜଳେ ।୧୭,୧୮
ଏମନ୍ତ ଶଫରି ବଚନ
ଶୁଣି ସତ୍ତ୍ୱରେ ସେ ରାଜନ

ସେ ମୀନ କମଣ୍ଡଳୁଁ ନେଇ
କଳସ ଜଳମଧ୍ୟେ ଥୋଇ
ଏମନ୍ତେ ରଜନୀ ପାହିଲା
ତକ୍ଷଣେ ମୀନ ଡ଼ାକ ଦେଲା
ବୋଲଇ ଶୁଣ ଦଣ୍ଡଧର !
କଳସୁଁ ମୋ ପ୍ରାଣ ଉଦ୍ଧର
ମୋ ପ୍ରାଣ କଳସେ ନ ଚଳେ
ବେଗେ ତୁ ଥୁଅ ଅନ୍ୟ ଜଳେ

ନ ମ ଏତଦଲଂ ରାଜନ୍ ସୁଖଂ ବସ୍ତୁମୁଦଞ୍ଚନମ୍ ।
ପୃଥୁ ଦେହି ପଦଂ ମହ୍ୟଂ ଯତ୍ ତ୍ୱାହଂ ଶରଣଂ ଗତଃ । ୨୦ ।
ତତ ଆଦାୟ ସା ରାଜ୍ଞା କ୍ଷିପ୍ତା ରାଜନ୍ ସରୋବରେ ।
ତଦାବୃତ୍ୟାତ୍ମନା ସୋଽୟଂ ମହାମୀନୋଽନ୍ୱବର୍ଦ୍ଧତ । ୨୧ ।
ନୈତନ୍ମେ ସ୍ୱସ୍ତୟେ ରାଜନ୍ନୁଦକଂ ସଲିଲୌକସଃ ।
ନିଧେହି ରକ୍ଷାଯୋଗେନ ହ୍ରଦେ ମାମବିଦାସିନି । ୨୨ ।
ଇତ୍ୟୁକ୍ତଃ ସୋଽନୟନ୍ମତ୍ସ୍ୟଂ ତତ୍ର ତତ୍ରାବିଦାସିନି ।
ଜଳାଶୟେ ସମ୍ମିତଂ ତଂ ସମୁଦ୍ରେ ପ୍ରାକ୍ଷିପଜ୍‌ଝଷମ୍ । ୨୩ ।

---

ହେ ରାଜନ୍ ! ଏହି ଜଳାଶୟରେ ମୋର ରହିବାର ସୁବିଧା ହେଉନାହିଁ । ସୁତରାଂ ମୋତେ ଗୋଟିଏ ପ୍ରଶସ୍ତ ସ୍ଥାନକୁ ନେଇ ଯାଉନ୍ତୁ କାରଣ ଆପଣ ମୋର ଶରଣଦାତା ।୨୦।

ହେ ରାଜନ୍ ! ତଦନନ୍ତର ରାଜା ତାହାଙ୍କୁ ଜଳାଶୟରୁ ସରୋବର ମଧ୍ୟରେ ନିକ୍ଷେପ କରିଥିଲେ । ସେଠାରେ ସେହି ମତ୍ସ୍ୟ ନିଜ ଶରୀର ଦ୍ୱାରା ସରୋବରକୁ ଆବୃତ କରି ବର୍ଦ୍ଧିତ ହେଲା ।୨୧।

ସରୋବରସ୍ଥ ମତ୍ସ୍ୟ କହିଲା :—

ହେ ରାଜନ୍ ! ସରୋବର ଜଳରେ ମୋର ବାସ କରିବା ସୁବିଧା ହେଉନାହିଁ, ଯେଉଁ ହ୍ରଦର ଜଳ ସୁଖିବ ନାହିଁ; ସେହିପରି ଜଳ ମଧ୍ୟରେ ମୋତେ ଆପଣ ସ୍ଥାପନ କରନ୍ତୁ ।୨୨।

ମତ୍ସ୍ୟର ଏହି କଥା ଶ୍ରବଣ କରି ସତ୍ୟବ୍ରତ ତାହାଙ୍କୁ ହ୍ରଦ ମଧ୍ୟରୁ ଆଣିଥିଲେ । କ୍ରମେ ତାହାଙ୍କୁ ପ୍ରଶସ୍ତ ଜଳାଶୟରେ ନିକ୍ଷେପ କରିଥିଲେ ଏବଂ ସେଠାରେ ତାହାର ଆକାର ବର୍ଦ୍ଧିତ ହେବାରୁ ସମୁଦ୍ରରେ ନିକ୍ଷେପ କଲେ । ୨୩ ।

---

ସେ ଜଳେ ଆନନ୍ଦେ ବିହରି
ଅଳପ ଜଳେ ପ୍ରାଣ ହରି
ତକ୍ଷଣେ କଳସୁଁ ଉଦ୍ଧରି
କୂପେ ଥୋଇଲା ଦଣ୍ଡଧାରୀ
ମୁହୂର୍ତ୍ତେ କୂପମଧ୍ୟେ ରହି
ତ୍ରିଗାୟ ହସ୍ତ କଲା ଦେହି
କୂପେ ସେ ତା କହି ବିକଳେ
ହେ ରାଜା ଥୁଅ ଅନ୍ୟ ଜଳେ
କୂପେ ମୁଁ ନ ପାରଇ ରହି
ମୋର ଜୀବନ ରଖ ତୁହି

ଶରଣାଗ୍ରୀ ବାକ୍ୟେ ନୃପମଣି
କୂପୁଁ ଉଦ୍ଧରି ତାକୁ ପୁଣି
ତକ୍ଷଣେ ଖାତଜଳେ ଥୋଇ
ଖାତେ ପୂରିଲା ତାର ଦେହି
ତା କହଇ ଜୀବନ ବିକଳେ
ହେ ନୃପ ! ରଖ ଅନ୍ୟ ଜଳେ
ତକ୍ଷଣେ ଖାତୁଁ ସେ ଉଦ୍ଧରେ
ନେଇ ଥୋଇଲା ସରୋବରେ
ଦିବସେ ସରୋବରେ ରହି
ଜଳେ ନ ଚଳେ ତାର ଦେହି

ପୁଣ ତ କହି ଭୂପଙ୍କରେ
ହେ ନୃପ ! ଥୁଅ ଅନ୍ୟ ନୀରେ
ତକ୍ଷଣେ ତହାଁରୁ ଉଦ୍ଧରି
ହ୍ରଦେ କ୍ଷେପିଲା ଦଣ୍ଡଧାରୀ
ସେ ମୀନ ଦଣ୍ଡେ ହ୍ରଦେ ରହେ
ତହିଁ ବଢିଲା ମହାକାୟେ
ରାଜନ ନରହେ ମୁଁ ହ୍ରଦେ
ପୁଣ ଡାକିଲା ଘୋର ନାଦେ
ତା ଶୁଣି ହ୍ରଦୁ ତୋଳି ବଳେ
କ୍ଷେପିଲା ସମୁଦ୍ରର ଜଳେ ।୧୯-୨୩

କ୍ଷିପ୍ୟମାଣସ୍ତମାହେଦମିହ ମାଂ ମକରାଦୟଃ ।
ଅଦନ୍ତ୍ୟତବଲା ବୀର ମାଂ ନେହୋତ୍ସ୍ରଷ୍ଟୁମର୍ହସି । ୨୪ ।
ଏବଂ ବିମୋହିତସ୍ତେନ ବଦତା ବଲ୍ଗୁ ଭାରତୀମ୍ ।
ତମାହ କୋ ଭବାନସ୍ମାନ୍ ମତ୍ସ୍ୟରୂପେଣ ମୋହୟନ୍ । ୨୫ ।
ନୈବଂବୀର୍ଯ୍ୟୋ ଜଳଚରୋ ଦୃଷ୍ଟୋଽସ୍ମାଭିଃ ଶ୍ରୁତୋଽପି ବା ।
ଯୋ ଭବାନ୍ ଯୋଜନଶତମହ୍ନାଭିବ୍ୟାନଶେ ସରଃ । ୨୬ ।
ନୂନଂ ତ୍ୱଂ ଭଗବାନ୍ ସାକ୍ଷାଦ୍ଧରିର୍ନାରାୟଣୋଽବ୍ୟୟଃ ।
ଅନୁଗ୍ରହାୟ ଭୂତାନାଂ ଧତ୍ସେ ରୂପଂ ଜଳୌକସାମ୍ । ୨୭ ।

---

ସମୁଦ୍ରରେ ନିକ୍ଷେପ କଲାବେଳେ ସେହି ମତ୍ସ୍ୟ ସତ୍ୟବ୍ରତ ରାଜାଙ୍କୁ କହିଲା, ହେ ବୀରବର ! ଆପଣ ମୋତେ ସମୁଦ୍ର ଜଳରେ ନିକ୍ଷେପ କରନ୍ତୁ ନାହିଁ । ସେଠାରେ ମକରାଦି ମହା ବଳବାନ୍ ଜଳଜନ୍ତୁମାନେ ଅଛନ୍ତି ସେମାନେ ମୋତେ ଭକ୍ଷଣ କରିବେ ।୨୪।

ମତ୍ସ୍ୟରୂପୀ ଭଗବାନଙ୍କର ଏହିପରି ସୁମଧୁର ବାକ୍ୟରେ ବିମୁଗ୍ଧ ହୋଇ ରାଜା ସତ୍ୟବ୍ରତ କହିଲେ, "ଆପଣ ମତ୍ସ୍ୟରୂପ ଦ୍ୱାରା ଅମ୍ଭମାନଙ୍କୁ ମୋହିତ କରିଅଛନ୍ତି, ଆପଣ କିଏ ?" ।୨୫।

ଏହିପରି ବୀର୍ଯ୍ୟଶାଳୀ ଜଳଚର ଆମ୍ଭେମାନେ ପୂର୍ବେ କେବେ ଦେଖିନାହୁଁ କିମ୍ବା ଶୁଣିନାହୁଁ । ଆପଣ ଦିନକ ମଧ୍ୟରେ ଏହି ସରୋବର ବ୍ୟାପୀ ଶରୀର ବର୍ଦ୍ଧିତ କରିଅଛନ୍ତି ।୨୬।

ନିଶ୍ଚୟ ଆପଣ ସାକ୍ଷାତ୍ ନାରାୟଣ, ଅବ୍ୟୟ, ହରି ସର୍ବଜୀବର ମଙ୍ଗଳ କାମନା ନିମିତ୍ତ ମତ୍ସ୍ୟରୂପ ଧାରଣ କରିଅଛନ୍ତି ।୨୭।

---

ସେ ମୀନ ପଡ଼ି ସିନ୍ଧୁ ଜଳେ
ତାହାର ଜୀବନ ବିକଳେ
ହେ ନୃପ ! ରଖ ମୋର ପ୍ରାଣ
ତୋହରେ ପଶିଲି ଶରଣ
ଶରଣ ପ୍ରାଣୀ ଉପେକ୍ଷିଲେ
କେ ତାକୁ ପ୍ରଶଂସଇ ଭଲେ
ଏ ଜଳେ ଜୀବ ଛନ୍ତି ଯେତେ
ବଳେ ଭକ୍ଷିବେ ଏବେ ମୋତେ ।୨୪
ଏମନ୍ତେ ମୀନ ମୁଖୁଁ ଶୁଣି
ଚିତ୍ତେ ବିସ୍ମୟେ ନୃପମଣି
କିଏ ଅଦ୍ଭୁତକର୍ମା ମୋତେ
ଦେଖିନି ନାହିଁ ତ୍ରିଜଗତେ

କେଉଁ ଦେବତା ଅବା ବଳେ
ମୋତେ ଛଳଇ ମୀନ ଛଳେ
କି ବୁଦ୍ଧି କରିବଇଁ ମୁହିଁ
ଭାବଇ ମୀନ ମୁଖ ଚାହିଁ
ବିଷ୍ଣୁର ମାୟାରେ ମୋହିତ
ତକ୍ଷଣେ ହୋଇ ସ୍ତମ୍ଭୀଭୂତ
ଶୁଣି ତକ୍ଷଣେ ନୃପବର
କରଯୋଡ଼ି ହୋଇ ବିନୟ କର
ବୋଲଇ ମୀନ ମୁଖ ଚାହିଁ
ମୋହର ଧର୍ମ ରଖ ତୁହି
କେଉଁ ଦେବତା ମାୟା ବଳେ
ମୋ ଚିତ୍ତ ହରିଲୁ ଯେ ଛଳେ

ଏ ତୋର ବିଶ୍ୱରୂପ ଦେହ
ମାୟା ନ କରି ସତ୍ୟ କହ ।୨୫।
ଏମନ୍ତ ଜଳଚର ଦେହ
ଜଗତେ ମୁହିଁ ନ ଦେଖଇ
ହେ ମୀନ ତୋହର ଶରୀରେ
ଶତେ ଯୋଜନ ହ୍ରଦ ପୂରେ
ନିଶ୍ଚେ ଜାଣିଲି ତୋତେ ଆଜ
ତୁ ନାରାୟଣ ଦେବରାଜ
ଅନାଦି ପ୍ରଭୁ ନିରଞ୍ଜନ
ଅବ୍ୟକ୍ତ ପ୍ରଭୁ ଭଗବାନ
ପ୍ରାଣିଙ୍କ ନିସ୍ତାରଣ ଅର୍ଥେ
ମୀନଶରୀର ତୋ ଜଗତେ ।୨୬,୨୭

ନମସ୍ତେ ପୁରୁଷଶ୍ରେଷ୍ଠ ସ୍ଥିତ୍ୟୁତ୍ପତ୍ତ୍ୟପ୍ୟୟେଶ୍ୱର ।
ଭକ୍ତାନାଂ ନଃ ପ୍ରପନ୍ନାନାଂ ମୁଖ୍ୟୋ ହ୍ୟାତ୍ମଗତିର୍ବିଭୋ । ୨୮ ।
ସର୍ବେ ଲୀଳାବତାରାସ୍ତେ ଭୂତାନାଂ ଭୂତହେତବଃ ।
ଜ୍ଞାତୁମିଚ୍ଛାମ୍ୟଦୋ ରୂପଂ ଯଦର୍ଥଂ ଭବତା ଧୃତମ୍ । ୨୯ ।
ନ ତେଽରବିନ୍ଦାକ୍ଷ ପଦୋପସର୍ପଣଂ ମୃଷା ଭବେତ୍ ସର୍ବସୁହୃତ୍ପ୍ରିୟାତ୍ମନଃ ।
ଯଥେତରେଷାଂ ପୃଥଗାତ୍ମନାଂ ସତାମଦୀଦୃଶୋ ଯଦ୍ୱପୁରଦ୍‌ଭୁତଂ ହି ନଃ । ୩୦ ।

ଶ୍ରୀ ଶୁକ ଉବାଚ ।

ଇତି ବ୍ରୁବାଣଂ ନୃପତିଂ ଜଗତ୍ପତିଃ ସତ୍ୟବ୍ରତଂ ମତ୍ସ୍ୟବପୁର୍ଯୁଗକ୍ଷୟେ ।
ବିହର୍ତ୍ତୁକାମଃ ପ୍ରଳୟାର୍ଣ୍ଣବେଽବ୍ରବୀଚ୍ଚିକୀର୍ଷୁରେକାନ୍ତଜନପ୍ରିୟଃ ପ୍ରିୟମ୍ । ୩୧ ।

---

ହେ ପୁରୁଷ ଶ୍ରେଷ୍ଠ ! ଆପଣଙ୍କୁ ନମସ୍କାର । ହେ ବିଭୋ ! ଆପଣ ସୃଷ୍ଟି, ସ୍ଥିତି ଓ ପ୍ରଳୟର ଅଧୀଶ୍ୱର, ଶରଣାଗତ ଭକ୍ତ ଆମ୍ଭମାନଙ୍କର ଏକମାତ୍ର ଆଶ୍ରୟ ।୨୮।

ହେ ଭଗବାନ୍ ! ଆପଣଙ୍କର ସର୍ବ ଲୀଳାବତାର ପ୍ରାଣୀମାନଙ୍କର ମଙ୍ଗଳ ଦାୟକ, ଯେଉଁ କାର୍ଯ୍ୟ ସାଧନ ନିମନ୍ତେ ଆପଣ ଏହି ମତ୍ସ୍ୟାବତାର ଧାରଣ କରିଅଛନ୍ତି ତାହା ମୁଁ ଜାଣିବାକୁ ଇଚ୍ଛା କରେ ।୨୯।

ହେ ପଦ୍ମଲୋଚନ ! ଦେହାଦିରେ ଆତ୍ମାଭିମାନୀ ଧାରଣ ସାଧକମାନଙ୍କର ଉପାସନା ଯେପରି ବିଫଳ ହୁଏ ସମସ୍ତଙ୍କର ପ୍ରିୟ ସୁହୃତ ଓ ଆତ୍ମାରୂପୀ ଆପଣଙ୍କର ପାଦପଦ୍ମ ସେବା ସେପରି ବ୍ୟର୍ଥ ହୁଏ ନାହିଁ କାରଣ ଆପଣ ଆମ୍ଭମାନଙ୍କୁ ସେହି ଅପୂର୍ବ ମୂର୍ତ୍ତି ଦେଖାଇ ଅଛନ୍ତି ।୩୦।

ଶ୍ରୀ ଶୁକଦେବ କହିଲେ :—

ହେ ରାଜନ୍ ! ଯୁଗାନ୍ତ କାଳରେ ମତ୍ସ୍ୟ ଶରୀରଧାରୀ ଭକ୍ତଜନ ପ୍ରିୟ ଜଗତ୍ପତି ଶ୍ରୀହରି ପ୍ରଳୟ ସମୁଦ୍ରରେ ବିହାର କରିବାର ଇଚ୍ଛାରେ ସ୍ତବକାରୀ ନୃପତି ସତ୍ୟବ୍ରତଙ୍କୁ ନିଜର ଅବତାରର ପ୍ରୟୋଜନ ବିଷୟ କହିଥିଲେ ।୩୧।

---

ସ୍ଥିତି ପାଳନ ସଂହାରଣ
ତୁ ନାଥ ! ପରମ-କାରଣ
ନମସ୍ତେ ଜଳଚର ଦେହି
ହେ ନାଥ ! କର ମୋତେ ତ୍ରାହି
ତୋର ମାୟାରେ ଭ୍ରମ ହୋନ୍ତି
ହର ବିରଞ୍ଚି ସୁରପତି

ତୁ ନାଥ ଜନ ଉପକାରେ
ନାନା ଶରୀରେ ଏ ସଂସାରେ
ତୋ ଅବତାର ଏ ଜଗତେ
ସାଧୁଜନଙ୍କ ଶୁଭ ଅର୍ଥେ
କି କାର୍ଯ୍ୟେ ମୀନରୂପ ତୋର
କହ ହେ କମଳାରବର !

ଏମନ୍ତେ ରାଜା ବାକ୍ୟ ଶୁଣି
କହନ୍ତି ପ୍ରଭୁ ଚକ୍ରପାଣି ।୨୮-୩୧

ଶ୍ରୀ ଭଗବାନୁବାଚ ।

ସପ୍ତମେଽଦ୍ୟତନାଦୂର୍ଦ୍ଧ୍ୱମହନ୍ୟେତଦରନ୍ଦମ ।
ନିମଙ୍କ୍ଷ୍ୟତ୍ୟପ୍ୟୟାମ୍ଭୋଧୌ ତ୍ରୈଲୋକ୍ୟଂ ଭୂର୍ଭୁବାଦିକମ୍ । ୩୨ ।
ତ୍ରିଲୋକ୍ୟାଂ ଲୀୟମାନାୟାଂ ସଂବର୍ତ୍ତାମ୍ଭସି ବୈ ତଦା ।
ଉପସ୍ଥାସ୍ୟତି ନୌଃ କାଚିଦ୍ବିଶାଳା ତ୍ୱାଂ ମୟେରିତା । ୩୩ ।
ତ୍ୱଂ ତାବଦୋଷଧୀଃ ସର୍ବା ବୀଜାନ୍ୟୁଚ୍ଚାବଚାନି ଚ ।
ସପ୍ତର୍ଷିଭିଃ ପରିବୃତଃ ସର୍ବସତ୍ତ୍ୱୋପବୃଂହିତଃ । ୩୪ ।
ଆରୁହ୍ୟ ବୃହତୀଂ ନାବଂ ବିଚରିଷ୍ୟସ୍ୟବିକ୍ଲବଃ ।
ଏକାର୍ଣ୍ଣବେ ନିରାଲୋକେ ଋଷୀଣାମେବ ବର୍ଚ୍ଚସା । ୩୫ ।

---

ଶ୍ରୀ ଭଗବାନ୍ କହିଲେ :—ହେ ଶତ୍ରୁନାଶନ ! ଆଜଠାରୁ ସପ୍ତମଦିବସ ମଧ୍ୟରେ ପ୍ରଳୟ ସମୁଦ୍ରରେ ଏହି ଭୂ, ଭୁବଃ, ସ୍ୱ, ଲୋକତ୍ରୟ ନିମଗ୍ନ ହେବ ।୩୨।

ପ୍ରଳୟ ସାଗରରେ ତ୍ରିଲୋକଲୀନ ହେଲେ ମତ୍ ପ୍ରେରିତ ଖଣ୍ଡିଏ ବିଶାଳ ନୌକା ତୁମ୍ଭ ନିକଟରେ ଆସି ଉପସ୍ଥିତ ହେବ ।୩୩।

ହେ ରାଜନ୍ ! ସେତେବେଳେ ତୁମ୍ଭେ ସମସ୍ତ ଔଷଧି ଏବଂ କ୍ଷୁଦ୍ର ଓ ବୃହତ୍ ବିବିଧ ବୀଜ ଗ୍ରହଣ କରି ପ୍ରଧାନ ପ୍ରଧାନ ପ୍ରାଣୀ ଏବଂ ମନୁ କଶ୍ୟପାଦି ସପ୍ତର୍ଷିପରିବୃତ ହୋଇ ସେହି ବିଶାଳ ନୌକା ଆରୋହଣ କରି ସୂର୍ଯ୍ୟାଦି ଆଲୋକ ଶୂନ୍ୟ ମହା ସମୁଦ୍ର ମଧ୍ୟରେ ଋଷିମାନଙ୍କ ତେଜଦ୍ୱାରା ବିନା କ୍ଲେଶରେ ବିଚରଣ କରି ପାରିବ ।୩୪, ୩୫।

---

ଶ୍ରୀଭଗବାନୁବାଚ—

ଶୁଣ ହେ ରାଜା ସତ୍ୟବ୍ରତ !
ତୁ ଯେଣୁ ମୋହର ଭକତ
ଯେ କାର୍ଯ୍ୟେ ମୀନ ରୂପ ମୋର
କହୁଛି ଶୁଣ ନୃପବର—
ଯେଣୁ ଅଇଲି ତୋତେ କହି
ଅଦ୍ଭୁତ ମୀନ ରୂପ ହୋଇ
ମାୟାବୀ ପ୍ରଚଣ୍ଡ ଦାନବ
ନାମ ତାହାର ହୟଗ୍ରୀବ
ବ୍ରହ୍ମାର ବେଦ ହରି ବଳେ
ବେଗେ ପଶିଲା ମହାଜଳେ
ପ୍ରଳୟ ଜଳେ ମୁଁ ବିହରି
ସେ ବେଦ ଉଦ୍ଧାରଣ କରି
ରଖିବି ସଂସାରର ବୀଜ
ହରିବି ହୟଗ୍ରୀବ ତେଜ
ତୁ ଏବେ ରହି ମୋ ବଚନେ
ଆଜଁ ଗଣିବା ସାତ ଦିନେ
ପ୍ରଳୟ ଜଳେ ତିନିପୁର
ନାଶ ହୋଇବ ନୃପବର !
ଅଠର ଖଣ୍ଡ ମେଘ ମିଳି
ସ୍ଫୁରିବ ପ୍ରଚଣ୍ଡେ ବିଜୁଳି
ଗର୍ଜ୍ଜନ ଘାତେ ମେଘମାଳ
ପ୍ରଚଣ୍ଡେ ବରଷିବ ଜଳ
ଷଣ୍ଠେକେ ସିନ୍ଧୁ ଉଚ୍ଛୁଳିବ
ଉଲ୍ଲୋଳେ ଗଗନେ ମିଳିବ
ସପତ ଋଷିଙ୍କ ମଣ୍ଡଳେ
ଜଳଧି ଲାଗିବ ଉଲ୍ଲୋଳେ
ବ୍ରହ୍ମାର ରଜନୀ ହୋଇବ
ଏ ତିନିପୁର ନାଶ ଯିବ
ତୁ ଏବେ ମୋର ବୋଲ କର
ଔଷଧି ବୀଜ ସଙ୍ଗେ ଧର
ତୋର କୁଟୁମ୍ବ ଛନ୍ତି ଯେତେ
ସକଳ ଘେନିଣ ସଙ୍ଗତେ
ଯେ ନାବ ସମୁଦ୍ରର କୂଳେ
ଆସି ମିଳିବ ସନ୍ଧ୍ୟାକାଳେ
ତୁ ତହିଁ ବସ ସର୍ବ ଘେନି
ହୋଇବ ବ୍ରହ୍ମାର ରଜନୀ
ଆଗତ କଳ୍ପ ପରିଜନ୍ତେ
ଥିବୁ ତୁ ଋଷିଙ୍କ ସଙ୍ଗତେ ।୩୨-୩୫।

ଦୋଧୂୟମାନାଂ ତାଂ ନାବଂ ସମୀରେଣ ବଳୀୟସା ।
ଉପସ୍ଥିତସ୍ୟ ମେ ଶୃଙ୍ଗେ ନିବଧ୍ନୀହି ମହାହିନା । ୩୬ ।
ଅହଂ ତ୍ୱାମୃଷିଭିଃ ସାର୍ଦ୍ଧଂ ସହନାବମୁଦନ୍ୱତି ।
ବିକର୍ଷନ ବିଚରିଷ୍ୟାମି ଯାବଦ୍‌ବ୍ରାହ୍ମୀ ନିଶା ପ୍ରଭୋ । ୩୭ ।
ମଦୀୟଂ ମହିମାନଞ୍ଚ ପରବ୍ରହ୍ମେତି ଶବ୍ଦିତମ୍ ।
ବେତ୍ସ୍ୟସ୍ୟନୁଗୃହୀତଂ ମେ ସମ୍ପ୍ରଶ୍ନୈର୍ବିବୃତଂ ହୃଦି । ୩୮ ।
ଇତ୍ଥମାଦିଶ୍ୟ ରାଜାନଂ ହରିରନ୍ତରଧୀୟତ ।
ସୋଽନ୍ୱବୈକ୍ଷତ ତଂ କାଳଂ ଯଂ ହୃଷୀକେଶ ଆଦିଶତ୍ । ୩୯ ।
ଆସ୍ତୀର୍ଯ୍ୟ ଦର୍ଭାନ୍ ପ୍ରାକ୍‌କୂଳାନ୍ ରାଜର୍ଷିଃ ପ୍ରାଗୁଦଙ୍ମୁଖଃ ।
ନିଷସାଦ ହରେଃ ପାଦୌ ଚିନ୍ତୟନ୍ ମତ୍ସ୍ୟରୂପିଣଃ । ୪୦ ।

---

ପ୍ରବଳ ବାୟୁଦ୍ୱାରା ଏହି ତରଣୀ ଅତ୍ୟନ୍ତ କମ୍ପିତ ହେଲେ ମୁଁ ନିକଟରେ ଉପସ୍ଥିତ ହେବି, ମୋର ଶୃଙ୍ଗରେ ମହା ସର୍ପ ରୂପ ରଜ୍ଜୁ ଦ୍ୱାରା ଏହି ତରଣୀକୁ ବନ୍ଧନ କରିବ ।୩୬।

ହେ ରାଜନ୍ ! ଯେତେକାଳ ପର୍ଯ୍ୟନ୍ତ ଏହି ବ୍ରାହ୍ମୀ ରାତ୍ରି ଥିବ ସେତେକାଳ ପର୍ଯ୍ୟନ୍ତ ମୁଁ ଋଷିମାନଙ୍କ ସହିତ ତୁମ୍ଭଙ୍କୁ ଏବଂ ସେ ନୌକାକୁ ଆକର୍ଷଣ କରି ସମୁଦ୍ରରେ ବିଚରଣ କରିବି ।୩୭।

ପରଂବ୍ରହ୍ମ ପଦବାଚ୍ୟ ମୋର ମହିମା, ମୁଁ ତୁମ୍ଭର ପ୍ରଶ୍ନରେ ଯାହା ବିବୃତ କରିବି । ତୁମ୍ଭେ ମୋର ପ୍ରସାଦ ଲାଭ ହେତୁ ସେହି ମହିମା ପ୍ରସଙ୍ଗ ହୃଦୟରେ ଧାରଣ କରିବ ।୩୮।

ରାଜା ସତ୍ୟବ୍ରତଙ୍କୁ ଏହିପରି ଆଦେଶ କରି ଭଗବାନ୍ ଅନ୍ତର୍ହିତ ହେଲେ, ହୃଷୀକେଶଙ୍କ ଆଦେଶ ଅନୁସାରେ ରାଜା ସତ୍ୟବ୍ରତ ସେହି କାଳର ପ୍ରତୀକ୍ଷାରେ ରହିଲେ ।୩୯।

ରାଜର୍ଷି ସତ୍ୟବ୍ରତ ଈଶାନକୋଣାଭିମୁଖୀ ହୋଇ ମତ୍ସ୍ୟରୂପୀ ଶ୍ରୀହରିଙ୍କର ଚରଣ ସ୍ମରଣ ପୂର୍ବକ କୁଶମାନ ଆସ୍ତରଣ କରି ତଦୁପରି ଉପବେଶନ କରିଥିଲେ ।୪୦।

---

ସେ ନାବ ମୋର ଶୃଙ୍ଗେ ବାନ୍ଧି
ମୁହିଁ ବିହରିବି ଜଳଧି
ବ୍ରହ୍ମା ରଜନୀ କାଳ ଯେତେ
ସେ ନାବେ ଥିବୁ ତୁ ନିଶ୍ଚିନ୍ତେ
ସପତ ଋଷି ସଙ୍ଗେ ଘେନି
ବଞ୍ଚିବୁ ବ୍ରହ୍ମାର ରଜନୀ
ସେ ମହାଜଳେ ଯେବେ ନାବ
ପ୍ରଳୟ ପବନେ କମ୍ପିବ
ମୋହର ଶୃଙ୍ଗେ ସେ ନିଶ୍ଚଳେ
ବନ୍ଧନ ଥିବ ଯୋଗବଳେ

ପରମ ବ୍ରହ୍ମ ମେ ମହିମା
ଜାଣି ନ ପାରେ ହର-ବ୍ରହ୍ମା
ମୋ ଅନୁଗ୍ରହେ ମୋତେ ଜାଣି
ସଙ୍କଟୁ ତରି ନୃପମଣି ! ୩୬-୩୮
ଏମନ୍ତ କହି ଚକ୍ରଧର
ତକ୍ଷଣେ ହୋଇଲେ ଅନ୍ତର
ଗୋବିନ୍ଦ ଆଜ୍ଞା ଘେନି ଶିରେ
ରାଜା ମିଳିଲେ ସିନ୍ଧୁ-ତୀରେ
ଘେନାଇ ସର୍ବ ଅଉଷଧି
ରାଜାର ଯେତେକ ସମୃଦ୍ଧି

ସମୁଦ୍ର-ତୀରେ କୁଶ ପାଡ଼ି
କପୋଳେ ବେନି କର ଯୋଡ଼ି
ମୀନ ରୂପକୁ ଧ୍ୟାନ କରି
ବିଷ୍ଣୁ-ଚରଣ ମନେ ଧରି
ସମୁଦ୍ର-ତୀରେ ସେ ରହିଲେ
ଏମନ୍ତେ ରଜନୀ ପାହିଲେ ।୩୯-୪୦

ତତଃ ସମୁଦ୍ର ଉଦ୍‌ବେଲଃ ସର୍ବତଃ ପ୍ଲାବୟନ୍ମହୀମ୍ ।
ବର୍ଦ୍ଧମାନୋ ମହାମେଘୈର୍ବର୍ଷଦ୍‌ଭିଃ ସମଦୃଶ୍ୟତ । ୪୧ ।
ଧ୍ୟାୟନ୍ ଭଗବଦାଦେଶଂ ଦଦୃଶେ ନାବମାଗତାମ୍ ।
ତାମାରୁରୋହ ବିପ୍ରେନ୍ଦ୍ରୈରାଦାୟୌଷଧିବୀରୁଧଃ । ୪୨ ।
ତମୂଚୁର୍ମୁନୟଃ ପ୍ରୀତା ରାଜନ୍ ଧ୍ୟାୟସ୍ୱ କେଶବମ୍ ।
ସ ବୈ ନଃ ସଙ୍କଟାଦସ୍ମାଦବିତା ଶଂ ବିଧାସ୍ୟତି । ୪୩ ।
ସୋଽନୁଧ୍ୟାତସ୍ତତୋ ରାଜ୍ଞା ପ୍ରାଦୁରାସୀନ୍ମହାର୍ଣ୍ଣବେ ।
ଏକଶୃଙ୍ଗଧରୋ ମତ୍ସ୍ୟୋ ହୈମୋ ନିୟୁତଯୋଜନଃ । ୪୪ ।

---

ତଦନନ୍ତର ମହାମେଘମାନେ ଏପରି ଭାବରେ ବର୍ଷଣ କରିବାକୁ ଲାଗିଲେ ଯେ ସମୁଦ୍ର ସମୂହ ସ୍ଫୀତ ହୋଇ ସମଗ୍ର ପୃଥିବୀକୁ ପ୍ଲାବିତ କଲେ ।୪୧।

ତଦନନ୍ତର ରାଜା ସତ୍ୟବ୍ରତ ଶ୍ରୀହରିଙ୍କର ଆଦେଶ ସ୍ମରଣ କରୁ କରୁ ସମାଗତ ନୌକାକୁ ଦେଖିଲେ । ତହୁଁ ସେଥିରେ ଔଷଧି ଓ ଲତା ପ୍ରଭୃତି ସହିତ ଆରୋହଣ କରିଥିଲେ ।୪୨।

ମୁନିମାନେ ପ୍ରୀତ ହୋଇ ରାଜା ସତ୍ୟବ୍ରତଙ୍କୁ କହିଲେ ହେ ରାଜନ୍ ! କେଶବଙ୍କୁ ଧ୍ୟାନ କର । ସେ ଏହି ବିପଦରୁ ଆମ୍ଭମାନଙ୍କୁ ରକ୍ଷାକରି ଆମ୍ଭମାନଙ୍କର ମଙ୍ଗଳ ବିଧାନ କରିବେ ।୪୩।

ତଦନନ୍ତର ରାଜା ସତ୍ୟବ୍ରତ ଚିନ୍ତା କରନ୍ତେ ଏକ ଶୃଙ୍ଗଧାରୀ ନିୟୁତ ଯୋଜନ ପରିମିତ ଶରୀର ବିଶିଷ୍ଟ ସୁବର୍ଣ୍ଣ ମତ୍ସ୍ୟ ସେହି ମହା ସମୁଦ୍ରରେ ଆବିର୍ଭୂତ ହେଲେ ।୪୪।

---

ପ୍ରାତରୁଁ ଶୂନ୍ୟେ ମେଘ ମିଳି
ପ୍ରଚଣ୍ଡ ଚମକ ବିଜୁଳି
ବହେ ପବନ ଅଣଆଁଶ
ଶବଦେ କମ୍ପେ ଦଶଦିଶ
ଘୋର ଶବଦେ ଜଳବର୍ଷି
ହସ୍ତର ଶୁଣ୍ଢ ପ୍ରାୟେ ବର୍ଷି
ସମୁଦ୍ର ଉଛୁଳିଲି ଜଳେ
ଘୋର ପ୍ରଚଣ୍ଡ ବାୟୁବଳେ
ବିଷ୍ଣୁର ଆଜ୍ଞା ପରମାଣେ
ନାବ ମିଳିଲା ତତକ୍ଷଣେ
ଋଷିଏ ଶୂନ୍ୟ-ମାର୍ଗେ ଆସି
ରାଜା ସହିତେ ନାବେ ବସି ।୪୧,୪୨।

ଦେଖିଲେ ସର୍ବ ଅଉଷଧି
ରାଜାର ଯେତେକ ସମୃଦ୍ଧି
ସେ ନାବେ ରାଜା ସଙ୍ଗେ ବସି
ମୁନିଏ ରାଜାଙ୍କୁ ପ୍ରଶଂସି
ବୋଲନ୍ତି ତୁ ଯେ ଭାଗ୍ୟବନ୍ତ
ସଙ୍କଟୁ ରଖିଲୁ ଆମ୍ଭନ୍ତ
ଏବେ ତୁ ଆମ୍ଭ ବୋଲ କର
ଏ ନାବେ ବିଷ୍ଣୁଙ୍କୁ ସୁମର
ତୋହର ଭାବେ ସେ ମାଧବ
ସଙ୍କଟୁ ଆମ୍ଭଙ୍କୁ ରଖିବ । ୪୩ ।
ଏମନ୍ତ ମୁନିଙ୍କ ବଚନେ
ରାଜା ବସିଲା ବିଷ୍ଣୁ ଧ୍ୟାନେ

ତକ୍ଷଣେ ପ୍ରଭୁ ନରହରି
ଅଦ୍ଭୁତ ମୀନ ରୂପ ଧରି
ଏକଇ ଶୃଙ୍ଗ ଶିରେ ସାଜେ
ରୂପେ ସୁବର୍ଣ୍ଣ ତେଜ ଗଞ୍ଜେ
ମେରୁର ପ୍ରାୟେ ଶୃଙ୍ଗ ଦମ୍ଭ
ଲକ୍ଷେ ଯୋଜନ ତାର ଲମ୍ବ
ସେ ଶୃଙ୍ଗେ ନାବ ବାନ୍ଧି ବଳେ
ସେ ରାଜା ବସିଲା କୌତୁକେ
ସେ ନାବେ ମୁନିଙ୍କ ସଙ୍ଗତେ
ବିଷ୍ଣୁଙ୍କୁ ଧ୍ୟାନ କଲା ଚିତ୍ତେ
ମହାପ୍ରଳୟେ ନାବେ ବସି
ଗୋବିନ୍ଦ ବଚନେ ସାହସୀ

ନିବଧ୍ୟ ନାବଂ ତଚ୍ଛୃଙ୍ଗେ ଯଥୋକ୍ତୋ ହରିଣା ପୁରା ।
ବରତ୍ରେଣାହିନା ତୁଷ୍ଟସ୍ତୁଷ୍ଟାବ ମଧୁସୂଦନମ୍ । ୪୫ ।

ଶ୍ରୀ ରାଜୋବାଚ ।

ଅନାଦ୍ୟବିଦ୍ୟୋପହତାତ୍ମସଂବିଦସ୍ତନ୍ମୂଳସଂସାରପରିଶ୍ରମାତୁରାଃ ।
ଯଦୃଚ୍ଛୟେହୋପସୃତା ଯମାପ୍ନୁୟୁର୍ବିମୁକ୍ତିଦୋ ନଃ ପରମୋ ଗୁରୁର୍ଭବାନ୍ ।୪୬
ଜନୋଽବୁଧୋଽୟଂ ନିଜକର୍ମ୍ମବନ୍ଧନଃ ସୁଖେଚ୍ଛୟା କର୍ମ୍ମ ସମୀହତେଽସୁଖମ୍ ।
ଯତ୍‌ସେବୟା ତାଂ ବିଧୁନୋତ୍ୟସନ୍ମତିଂ ଗ୍ରନ୍ଥିଂ ସ ଭିନ୍ଦ୍ୟାଦ୍ଧୃଦୟଂ ସ ନୋ ଗୁରୁଃ ।୪୭

---

ଭଗବାନ୍ ଶ୍ରୀହରିଙ୍କର ଆଦେଶ ଅନୁସାରେ ରଜୁ ରୂପୀ ବାସୁକି ଦ୍ୱାରା ସେ ନୌକାକୁ ସେହି ମତ୍ସ୍ୟ ଶୃଙ୍ଗରେ ବନ୍ଧନ କରି ସନ୍ତୁଷ୍ଟ ଚିତ୍ତରେ ରାଜା ସତ୍ୟବ୍ରତ ମଧୁସୂଦନଙ୍କୁ ସ୍ତବ କରିବାକୁ ଲାଗିଲେ ।୪୫।

ଶ୍ରୀ ରାଜା ସତ୍ୟବ୍ରତ କହିଲେ :—

ଅନାଦି ଅବିଦ୍ୟାଦ୍ୱାରା ଯେଉଁମାନଙ୍କର ଆତ୍ମଜ୍ଞାନ ଆବୃତ ହୋଇଅଛି ଏବଂ ଯେଉଁମାନେ ଅବିଦ୍ୟାମୂଳକ ସଂସାରରେ ପରିଶ୍ରମ କାତର, ସେମାନେ ଏହି ସଂସାରରେ ସୁକୃତ ପ୍ରଭାବରେ ମହାପୁରୁଷ ଆଶ୍ରିତ ହୋଇ ଯାହାଙ୍କୁ ପ୍ରାପ୍ତ ହୁଅନ୍ତି; ଆପଣ ସେହି ପ୍ରଭୁ, ଆମ୍ଭମାନଙ୍କର ପରମ ଗୁରୁ ।୪୬।

ଏମାନେ ଅତ୍ୟନ୍ତ ନିର୍ବୋଧ କାରଣ ନିଜର କର୍ମଦ୍ୱାରା ନିଜେ ଆବଦ୍ଧ ହୋଇ ସୁଖ ଇଚ୍ଛାରେ ଅସୁଖ ଭୋଗ କରିଥାନ୍ତି । ଯେଉଁ ଭଗବାନଙ୍କ ସେବାଦ୍ୱାରା ସେହି ସୁଖେଚ୍ଛାରୂପ ଅସତ୍ ବାସନାକୁ ଦୂରୀଭୂତ କରାଯାଇ ପାରେ ଏବଂ ଯେ ଆମ୍ଭମାନଙ୍କର ହୃଦୟ ଗ୍ରନ୍ଥି ଭେଦ କରିଅଛନ୍ତି; ସେହି ପ୍ରଭୁ ଆମ୍ଭମାନଙ୍କର ପରମ ଗୁରୁ ।୪୭।

---

ଅଞ୍ଜୁଳି ଶିରେ କରି ଦେଇ
ବୋଲଇ ରଖ ଭବଗ୍ରାହି
କପୋଳେ ଦେଇ ବେନିକର
ବିଷ୍ଣୁଙ୍କୁ ଚିନ୍ତେ ନୃପବର
ଏମନ୍ତେ ମୁନିଙ୍କ ବଚନେ
ରାଜା ବସିଲ ଯୋଗଧ୍ୟାନେ
ମନ-ବଚନ ହୃଦେ ଛନ୍ଦି
କଷ୍ଟଲେ ଇନ୍ଦ୍ରିୟ ନିରୋଧି
ଅନ୍ତରେ ମନ ସ୍ଥିର କଲା
ସୁମରି ଗୋବିନ୍ଦର ଲୀଳା ।୪୪,୪୫

ରାଜୋବାଚ—
ହେ ନାଥ ! ସଙ୍କଟ ତାରଣ
ତୋ ପାଦେ ପଶିଲି ଶରଣ
ଅଶେଷ ବ୍ରହ୍ମାଣ୍ଡ ଠାକୁର
ଏ ଘୋର ସଙ୍କଟୁ ଉଦ୍ଧର
ଅନାଦି ଅବିଦ୍ୟାର ବଳେ
ପ୍ରାଣି ଭ୍ରମନ୍ତି ଏ ଶରୀରେ
ଯାବତ ତୋ ପାଦ ନ ଚିନ୍ତେ
ତାବତ ସୁଖୀ କେ ଜଗତେ

ତୁ ନାଥ ତାପ-ତ୍ରୟୁଁ ତାରୁ
ଅଶେଷ ପୁରୁଷଙ୍କ ଗୁରୁ ।୪୬।
ଅଜ୍ଞାନୀ ଜନ ଏ ଜଗତେ
ବନ୍ଧନ କର୍ମର ଆୟତ୍ତେ
ସୁଖର ଲୋଭେ ଦୁଃଖେ ପଡ଼େ
ଯାବତ ଭକ୍ତି-ମାର୍ଗ ଛାଡ଼େ
ତାବତ ସୁଖ ନାହିଁ ତାର
ଲଭଇ ଦୁଃଖ ମହାଘୋର
ଯାବତ ନ ଜାଣଇ ତୋତେ
ତାବତ ଭ୍ରମଇ ଜଗତେ । ୪୭ ।

ଯତ୍ସେବୟାଗ୍ନେରିବ ରୁଦ୍ରରୋଦନଂ ପୁମାନ୍ ବିଜହ୍ୟାନ୍ମଲମାତ୍ମନସ୍ତମଃ ।
ଭଜେତ ବର୍ଣ୍ଣଂ ନିଜମେଷ ସୋଽବ୍ୟୟୋ ଭୂୟାତ୍ ସ ଈଶଃ ପରମୋ ଗୁରୋର୍ଗୁରୁଃ ॥
ନ ଯତ୍ପ୍ରସାଦାୟୁତଭାଗଲେଶମନ୍ୟେ ଚ ଦେବା ଗୁରବୋ ଜନାଃ ସ୍ୱୟମ୍ ।
କର୍ତ୍ତୁଂ ସମେତାଃ ପ୍ରଭବନ୍ତି ପୁଂସସ୍ତମୀଶ୍ୱରଂ ତ୍ୱାଂ ଶରଣଂ ପ୍ରପଦ୍ୟେ । ୪୯ ।
ଅଚକ୍ଷୁରନ୍ଧସ୍ୟ ଯଥାଗ୍ରଣୀଃ କୃତସ୍ତଥା ଜନସ୍ୟାବିଦୁଷୋଽବୁଧୋ ଗୁରୁଃ ।
ତ୍ୱମର୍କଦୃକ୍ ସର୍ବଦୃଶା ସମୀକ୍ଷଣୋ ବୃତୋ ଗୁରୁର୍ନଃ ସ୍ୱଗତିଂ ବୁଭୁତ୍ସତାମ୍ । ୫୦ ।
ଜନୋ ଜନସ୍ୟାଦିଶତେଽସତୀଂ ଗତିଂ ଯୟା ପ୍ରପଦ୍ୟେତ ଦୁରତ୍ୟୟଂ ତମଃ ।
ତ୍ୱଂ ତ୍ୱବ୍ୟୟଂ ଜ୍ଞାନମମୋଘମଞ୍ଜସା ପ୍ରପଦ୍ୟତେ ଯେନ ଜନୋ ନିଜଂ ପଦମ୍ ।୫୧।

---

ଯେପରି ରୁପା ଓ ସୁନା ଅଗ୍ନିଦ୍ୱାରା ନିଜର ମଳିନତା ତ୍ୟାଗକରି ନିଜର ସ୍ୱରୂପ ପ୍ରାପ୍ତ ହୁଏ ସେହିପରି ଭଗବାନଙ୍କର ସେବାଦ୍ୱାରା ଲୋକ ନିଜର ଅଜ୍ଞାନରୂପ ମଳିନତା ପରିତ୍ୟାଗ କରିବାକୁ ସମର୍ଥ ହୁଏ ଏବଂ ସ୍ୱ ସ୍ୱରୂପ ଅର୍ଥାତ୍ ଆତ୍ମତତ୍ତ୍ୱ ଜାଣିପାରେ; ସେହି ଭଗବାନ୍ ଆମ୍ଭମାନଙ୍କର ଆଶ୍ରୟ ହୁଅନ୍ତୁ କାରଣ ସେ ଗୁରୁଙ୍କର ମଧ୍ୟ ପରମ ଗୁରୁ ।୪୮।

ଅନ୍ୟାନ୍ୟ ଦେବଗଣ, ପିତୃଗଣ, ରାଜା ପ୍ରଭୃତି ଶକ୍ତିଶାଳୀ ମାନବଗଣ ସମସ୍ତେ ଏକତ୍ର ମିଳିତ ହେଲେ ମଧ୍ୟ ଭଗବତ୍ ଶକ୍ତି ବ୍ୟତୀତ ଯାହାଙ୍କର ପ୍ରସନ୍ନତାର ଅୟୁତଭାଗର ଏକଭାଗ ମଧ୍ୟ ଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ; ସେହି ସର୍ବେଶ୍ୱର ଆପଣଙ୍କଠାରେ ମୁଁ ଶରଣାଗତ ହେଲି ।୪୯।

ଏକ ଅନ୍ଧ ଯେପରି ଅନ୍ୟ ଅନ୍ଧକୁ ବାଟ ଦେଖାଇଲେ ତାହା ଯେପରି ନିଷ୍ଫଳ ହୋଇଥାଏ ସେହିପରି ଏକ ଅଜ୍ଞାନୀ ଅନ୍ୟ ଏକ ଅଜ୍ଞାନୀକୁ ଗୁରୁ କଲେ ତହିଁରେ କୌଣସି ଫଳ ହୁଏ ନାହିଁ । ଆମ୍ଭେମାନେ ଆତ୍ମତତ୍ତ୍ୱ ଜାଣିବାକୁ ଇଚ୍ଛୁକ ହୋଇ ସମସ୍ତ ଇନ୍ଦ୍ରିୟ ପ୍ରକାଶକ ଓ ସ୍ୱପ୍ରକାଶ ସ୍ୱରୂପ ଆପଣଙ୍କୁ ଗୁରୁରୂପେ ବରଣ କଲୁ ।୫୦।

ଅଜ୍ଞବ୍ୟକ୍ତି ଅଜ୍ଞ ଶିଷ୍ୟକୁ କାମ୍ୟକର୍ମ ସ୍ୱରୂପ ଭୋଗ ବିଷୟକ ଗତି ସମ୍ବନ୍ଧୀୟ ଉପଦେଶ ଦାନ କରନ୍ତି ଏବଂ ଏହି ଅଜ୍ଞ ବ୍ୟକ୍ତି ଭୋଗ ବାସନାଦ୍ୱାରା ଅନତିକ୍ରମଣୀୟ ନରକ ପ୍ରାପକ ସଂସାର ଗତି ଲାଭ କରିଥାନ୍ତି କିନ୍ତୁ ଆପଣ ଜୀବକୁ ଅକ୍ଷୟଜ୍ଞାନ ଉପଦେଶ ଦିଅନ୍ତି, ଯେଉଁ ଜ୍ଞାନଦ୍ୱାରା ମାନବ ଅନାୟାସରେ ଆତ୍ମତତ୍ତ୍ୱ ଲାଭ କରିବାକୁ ସମର୍ଥ ହୁଏ ।୫୧।

---

ତୋହର ମାୟା ଏ ସଂସାର
ଦୁର୍ଗମ ଘୋର ଅନ୍ଧକାର
ତୋର ଭଜନ ରବିଭାସ
ଆମ୍ଭର ତମ କରେ ନାଶ

ଏମନ୍ତ ଭାବେ ଦଣ୍ଡଧାରୀ
ବହୁତ ଅନେକ ସ୍ତୁତି କରି
ରହିଲା ସମାଧି ନିଷ୍ଠଲେ
ନାବେ ଗୋବିନ୍ଦ ପାଦ ମୂଳେ

ଏମନ୍ତେ ଶୁଣ ନୃପମଣି
ତକ୍ଷଣେ ପ୍ରଭୁ ଚକ୍ରପାଣି
ପ୍ରଳୟ-ଜଳେ ମୀନ ରୂପ
ହୟଗ୍ରୀବର ହରି ଦର୍ପ

ତ୍ୱଂ ସର୍ବଲୋକସ୍ୟ ସୁହୃତ୍ ପ୍ରିୟେଶ୍ୱରୋ ହ୍ୟାତ୍ମା ଗୁରୁର୍ଜ୍ଞାନମଭୀଷ୍ଟସିଦ୍ଧିଃ ।
ତଥାପି ଲୋକୋ ନ ଭବନ୍ତମନ୍ୟଧୀର୍ଜାନାତି ସନ୍ତଂ ହୃଦି ବଦ୍ଧକାମଃ । ୫୨ ।
ତ୍ୱଂ ତ୍ୱାମହଂ ଦେବବରଂ ବରେଣ୍ୟଂ ପ୍ରପଦ୍ୟ ଈଶଂ ପ୍ରତିବୋଧନାୟ ।
ଛିନ୍ଧ୍ୟର୍ଥଦୀପୈର୍ଭଗବାନ୍ ବଚୋଭିର୍ଗ୍ରନ୍ଥୀନ୍ ହୃଦୟ୍ୟାନ୍ ବିବୃଣୁ ସ୍ୱମୋକଃ । ୫୩ ।

ଶ୍ରୀ ଶୁକ ଉବାଚ ।

ଇତ୍ୟୁକ୍ତବନ୍ତଂ ନୃପତିଂ ଭଗବାନାଦିପୁରୁଷଃ ।
ମତ୍ସ୍ୟରୂପୀ ମହାମ୍ଭୋଧୌ ବିହରଂସ୍ତତ୍ତ୍ୱମବ୍ରବୀତ୍ । ୫୪ ।
ପୁରାଣସଂହିତାଂ ଦିବ୍ୟାଂ ସାଂଖ୍ୟଯୋଗକ୍ରିୟାବତୀମ୍ ।
ସତ୍ୟବ୍ରତସ୍ୟ ରାଜର୍ଷେରାତ୍ମଗୁହ୍ୟମଶେଷତଃ । ୫୫ ।
ଅଶ୍ରୌଷୀଦୃଷିଭିଃ ସାକମାତ୍ମତତ୍ତ୍ୱମସଂଶୟମ୍ ।
ନାବ୍ୟାସୀନୋ ଭଗବତା ପ୍ରୋକ୍ତଂ ବ୍ରହ୍ମ ସନାତନମ୍ । ୫୬ ।

---

ଆପଣ ସର୍ବ ଲୋକର ବନ୍ଧୁ ; ପ୍ରିୟ, ଈଶ୍ୱର, ଆତ୍ମା, ଜ୍ଞାନ ଏବଂ ଅଭୀଷ୍ଟ ସିଦ୍ଧି ସ୍ୱରୂପ; ତଥାପି ଅବିବେକୀ-କାମନା ପରାୟଣ ଜୀବ; ସ୍ୱହୃଦୟରେ ବିଦ୍ୟମାନ ଅର୍ଥାତ୍ ହୃଦୟରେ ଅବସ୍ଥିତ ଆପଣଙ୍କୁ କଦାପି ଜାଣିପାରେ ନାହିଁ ।୫୨।

ହେ ଭଗବାନ୍ ! ଦେବଶ୍ରେଷ୍ଠ, ପୂଜନୀୟ, ସର୍ବ ଶକ୍ତିମାନ୍ ଆପଣଙ୍କ, ତତ୍ତ୍ୱଜ୍ଞାନ ଲାଭ ନିମିତ୍ତ ମୁଁ ଆଶ୍ରୟ କରୁଅଛି । ପରମାର୍ଥ ପ୍ରକାଶକ ବାକ୍ୟଦ୍ୱାରା ମୋର ହୃଦୟଜାତ ଅହଙ୍କାରଗ୍ରନ୍ଥି ଆପଣ ଛେଦନ କରନ୍ତୁ ଏବଂ ନିଜଧାମ ରୂପ ବାକ୍ୟ ମୋ ନିକଟରେ ପ୍ରକାଶ କରନ୍ତୁ ।୫୩।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ମତ୍ସ୍ୟରୂପୀ ଆଦିପୁରୁଷ ଭଗବାନ୍ ମହାସମୁଦ୍ରରେ ବିଚରଣ କରୁ କରୁ ଏହିପରି ପ୍ରାର୍ଥୀ ରାଜା ସତ୍ୟବ୍ରତଙ୍କୁ ତତ୍ତ୍ୱ ଉପଦେଶ ଦେବାକୁ ଲାଗିଲେ ।୫୪।

ରାଜର୍ଷି ସତ୍ୟବ୍ରତଙ୍କ ନିକଟରେ ଭଗବାନ୍ ସାଙ୍ଖ୍ୟ ଜ୍ଞାନ ଏବଂ ଯୋଗକ୍ରିୟାଦି ଉପଦେଶ ପୂର୍ଣ୍ଣ ଦିବ୍ୟ ପୁରାଣ (ମତ୍ସ୍ୟପୁରାଣ) ଓ ଅତ୍ୟନ୍ତ ଗୋପନୀୟ ଆତ୍ମତତ୍ତ୍ୱ ବିଶେଷରୂପେ କହିଥିଲେ ।୫୫।

ରାଜା ସତ୍ୟବ୍ରତ ସପ୍ତର୍ଷିମାନଙ୍କ ସହିତ ନୌକାରେ ଉପବିଷ୍ଟହୋଇ ଭଗବତ୍ କଥିତ ନିଃସନ୍ଦିଗ୍ଧ ସନାତନ ବ୍ରହ୍ମ ସ୍ୱରୂପ ଆତ୍ମତତ୍ତ୍ୱ ଶ୍ରବଣ କରିଥିଲେ ।୫୬।

---

ଜଳେ ଅସୁର ପ୍ରାଣ ହରି
ବ୍ରହ୍ମାର ବେଦକୁ ଉଦ୍ଧରି
ମିଳିଲେ ନୃପତିର ଆଗେ
ଦୟା ବଚନେ ଅନୁରାଗେ

ବୋଲନ୍ତି ରାଜା ମୁଖ ଚାହିଁ
ସଂସାରେ ଭାଗ୍ୟବନ୍ତ ତୁହି
ଏମନ୍ତ କହି ଭଗବାନ
ଉପଦେଶେ ଦେଲେ ତତ୍ତ୍ୱ-ଜ୍ଞାନ

ବୋଇଲେ ଦିବାକର ବଂଶେ
ଜାତ ହୋଇବୁ କଲ୍ପଶେଷେ
ବଇବସ୍ୱତ ମନୁ ହୋଇ
ପ୍ରଜା ପାଳିବୁ ଧର୍ମ୍ମ ବହି

ଅତୀତପ୍ରଳୟାପାୟ ଉତ୍‌ଥିତାୟ ସ ବେଧସେ ।
ହତ୍ୱାସୁରଂ ହୟଗ୍ରୀବଂ ବେଦାନ୍ ପ୍ରତ୍ୟାହରଦ୍ଧରିଃ । ୫୭ ।
ସ ତୁ ସତ୍ୟବ୍ରତୋ ରାଜା ଜ୍ଞାନବିଜ୍ଞାନସଂଯୁତଃ ।
ବିଷ୍ଣୋଃ ପ୍ରସାଦାତ୍ କଲ୍ପେଽସ୍ମିନ୍ନାସୀଦ୍‌ବୈବସ୍ୱତୋ ମନୁଃ । ୫୮ ।
ସତ୍ୟବ୍ରତସ୍ୟ ରାଜର୍ଷେର୍ମାୟାମତ୍ସ୍ୟସ୍ୟ ଶାର୍ଙ୍ଗିଣଃ ।
ସଂବାଦଂ ମହଦାଖ୍ୟାନଂ ଶ୍ରୁତ୍ୱା ମୁଚ୍ୟେତ କିଲ୍ୱିଷାତ୍ । ୫୯ ।
ଅବତାରୋ ହରେର୍ଯୋଽୟଂ କୀର୍ତ୍ତୟେଦନ୍ୱହଂ ନରଃ ।
ସଂକଳ୍ପାସ୍ତସ୍ୟ ସିଧ୍ୟନ୍ତି ସ ଯାତି ପରମାଂ ଗତିମ୍ । ୬୦ ।
ପ୍ରଳୟପୟସି ଧାତୁଃ ସୁପ୍ତଶକ୍ତେର୍ମୁଖେଭ୍ୟଃ-
ଶ୍ରୁତିଗଣମପନୀତଂ ପ୍ରତ୍ୟୁପାଦାୟ ହତ୍ୱା ।
ଦିତିଜମକଥୟଦ୍ ଯୋ ବ୍ରହ୍ମ ସତ୍ୟବ୍ରତାନାଂ-
ତମହମଖିଳହେତୁଂ ଜିହ୍ମମୀନଂ ନତୋଽସ୍ମି । ୬୧ ।

ସେହି ମତ୍ସ୍ୟରୂପୀ ଭଗବାନ୍ ହୟଗ୍ରୀବ ନାମକ ଅସୁରକୁ ସଂହାରକରି ଅତୀତ କଳ୍ପର ଅବସାନରେ ଉତ୍‌ଥିତ ବ୍ରହ୍ମାଙ୍କୁ ବେଦସମୂହ ପୁନର୍ବାର ପ୍ରତ୍ୟର୍ପଣ କରିଥିଲେ ।୫୭।

ଜ୍ଞାନ ବିଜ୍ଞାନ ସଂଯୁକ୍ତ ରାଜା ସତ୍ୟବ୍ରତ ବିଷ୍ଣୁଙ୍କ ଅନୁଗ୍ରହରୁ ଏହି କଳ୍ପରେ ବୈବସ୍ୱତ ମନୁ ବୋଲି ବିଖ୍ୟାତ ହୋଇଥିଲେ ।୫୮।

ହେ ରାଜନ୍ ! ରାଜର୍ଷି ସତ୍ୟବ୍ରତ ଓ ମାୟା ମତ୍ସ୍ୟରୂପୀ ଶ୍ରୀହରିଙ୍କର ଏହି ମହତ୍ ଆଖ୍ୟାନ ଶ୍ରବଣ କଲେ; ଲୋକ ପାପମୁକ୍ତ ହୁଏ ।।୫୯।

ଯେଉଁ ମାନବ ଶ୍ରୀହରିଙ୍କର ଏହି ମତ୍ସ୍ୟାବତାର ପ୍ରସଙ୍ଗ ପ୍ରତ୍ୟହ କୀର୍ତ୍ତନ କରେ; ତାହାର ସମସ୍ତ ସଙ୍କଳ୍ପ ସିଦ୍ଧ ହୁଏ ଓ ସେ ପରମଗତି ଲଭ କରେ ।୬୦।

ପ୍ରଳୟ ପୟୋଧି ଜଳରେ ନିଦ୍ରିତ ବ୍ରହ୍ମାଙ୍କ ମୁଖରୁ ନିଃସୃତ ଶ୍ରୁତିମାନ ହୟଗ୍ରୀବଙ୍କ କର୍ତ୍ତୃକ ଅପହୃତ ହୁଅନ୍ତେ ଯେଉଁ ଭଗବାନ୍; ହୟଗ୍ରୀବ ଦାନବକୁ ବିନାଶ କରି ଶ୍ରୁତିମାନ ବ୍ରହ୍ମାଙ୍କୁ ପ୍ରତ୍ୟର୍ପଣ କରିଥିଲେ ଏବଂ ବ୍ରହ୍ମ ପ୍ରତିପାଦକ ମତ୍ସ୍ୟ ପୁରାଣ ରାଜର୍ଷି ସତ୍ୟବ୍ରତ ଓ ଋଷିମାନଙ୍କୁ ଉପଦେଶ ଦେଇଥିଲେ; ସେହି ସର୍ବକାରଣ ଭୂତ ମତ୍ସ୍ୟରୂପୀ ଶ୍ରୀହରିଙ୍କୁ, ମୁଁ ପ୍ରଣାମ କରେ ।୬୧।

ଏ ଜ୍ଞାନେ ତୁ ଧର ଜୀବନ
ମନୁଙ୍କ ସଙ୍ଗେ ହୁଅ ଧନ୍ୟ
ଏ ମୋର ମୀନ ଅବତାର
ଧ୍ୟାନେ ରହିବ ତୋ ଅନ୍ତର

ତୋହର ତୁଲେ ମୋ ସମ୍ବାଦ
ଶୁଣନ୍ତେ ତୁଟଇ ପ୍ରମାଦ
ଏମନ୍ତ କହି ଭଗବାନ
ତକ୍ଷଣେହେଲେଅନ୍ତର୍ଦ୍ଧାନ ୪୮।୬୧

ବୋଲଇ ଦିନ ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ
ଅଷ୍ଟମସ୍କନ୍ଧେ ଭାଗବତ
ଚତୁର୍ବିଂଶରେ ସମାପତ

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ମତ୍ସ୍ୟାବତାରଚରିତଂ ନାମ
ଚତୁର୍ବିଂଶୋଽଧ୍ୟାୟଃ ।

---

**ବିଶଦାର୍ଥ :—**

ଚତୁର୍ବିଂଶ ଅଧ୍ୟାୟରେ ରାଜା ପରୀକ୍ଷିତଙ୍କ ପ୍ରଶ୍ନାନୁସାରେ ଶ୍ରୀ ଶୁକଦେବ ଭଗବାନ୍ ଶ୍ରୀହରିଙ୍କର ଆଦ୍ୟାବତାର ମତ୍ସ୍ୟରୂପୀ ଭଗବାନଙ୍କ ପ୍ରସଙ୍ଗ ବର୍ଣ୍ଣନା କରୁଥିଲେ । ଏହି ଅବତାରରେ ପ୍ରଧାନ ନାୟକ ରାଜର୍ଷି ସତ୍ୟବ୍ରତ । ସେ ଦିନେ ଜଳତର୍ପଣ କରୁଥିବାବେଳେ ଗୋଟିଏ କ୍ଷୁଦ୍ର ମୀନ ତାଙ୍କ ଅଞ୍ଜଳି ମଧ୍ୟରେ ପ୍ରବେଶ କଲା । ରାଜା ତାହାକୁ ଜଳରେ ପକାଇ ଦେବାକୁ ଚେଷ୍ଟା କରନ୍ତେ ସେ ଶରଣ ମାଗିଥିଲା । ରାଜା, କ୍ରମେ ନିଜର କମଣ୍ଡଳୁ, ତଦନନ୍ତର ଜଳାଶୟ, ହ୍ରଦ ଇତ୍ୟାଦିରେ ସେହି ମୀନ ଅବସ୍ଥାନ କରି ନ ପାରିବାରୁ ତାହାକୁ ସମୁଦ୍ର ମଧ୍ୟରେ ସ୍ଥାପନ କରିଥିଲେ । ସେହି ମୀନ ଭାବୀ ପ୍ରଳୟ ବାର୍ତ୍ତା ରାଜା ସତ୍ୟବ୍ରତଙ୍କୁ ଜଣାଇଥିଲେ ଏବଂ ତହିଁରୁ ପରିତ୍ରାଣର ଉପାୟ ନିର୍ଦ୍ଦେଶ କରି ଦେଇଥିଲେ । ପ୍ରଳୟ ଉପସ୍ଥିତ ହୁଅନ୍ତେ ଏକଶୃଙ୍ଗଧାରୀ ସେହି ମତ୍ସ୍ୟ ଓ ସୁବୃହତ୍ ନୌକା ଆସି ଉପସ୍ଥିତ ହେଲା । ରାଜା ସତ୍ୟବ୍ରତ ସପ୍ତର୍ଷିଗଣଙ୍କ ସହିତ ସେହି ନୌକାରେ ଅବସ୍ଥାନ କରି ବାସୁକି ସର୍ପକୁ ରଜ୍ଜୁ କରି ସେହି ନୌକାକୁ ମତ୍ସ୍ୟର ଶୃଙ୍ଗରେ ବନ୍ଧନ କରି ରକ୍ଷା ପାଇଥିଲେ । ଏହି ପ୍ରସଙ୍ଗରେ ବର୍ଣ୍ଣିତ ରାଜା ସତ୍ୟବ୍ରତଙ୍କୁ ସତ୍ୟର ପ୍ରତୀକ ବୋଲି କଳ୍ପନା କରାଯାଇପାରେ । ମନୁଷ୍ୟ ହୃଦୟ ମଧ୍ୟରେ ଏହି ପ୍ରବଳ ବାତ୍ୟା ସର୍ବଦା ବହୁଅଛି । ତହିଁରୁ ଉଦ୍ଧାର ପାଇବାର ଶକ୍ତି କେବଳ ସତ୍ୟବ୍ରତାବଲମ୍ବୀ ବ୍ୟକ୍ତିମାନଙ୍କର ଅଛି । ସେମାନେ ଭଗବାନଙ୍କର ପଦତରଣୀ ଆଶ୍ରୟରେ ଉଦ୍ଧାର ପାଇ ପାରନ୍ତି । ଏହାହିଁ ଏ ଉପାଖ୍ୟାନର ସାରତତ୍ତ୍ୱ ।




କଟକ, ଅରୁଣୋଦୟପ୍ରେସର ପ୍ରିଣ୍ଟର ଚୌଧୁରୀ ଶ୍ରୀ ମଧୁସୂଦନ ମହାପାତ୍ରଙ୍କ ଦ୍ୱାରା ମୁଦ୍ରିତ ୧୯୪୮

## ପ୍ରାପ୍ତିସ୍ଥାନ—




୧୯୪୮

ପ୍ରକାଶକଗଣ—

ପ୍ରୋପ୍ରାଇଟର୍ସ—ଶ୍ରୀ ଗୌରଚନ୍ଦ୍ର ଦାନ,

ଶ୍ରୀ ଲକ୍ଷ୍ମୀଧର ଦାନ, ଶ୍ରୀ ବଂଶୀଧର ଦାନ ଓ,

ପ୍ରୋପ୍ରାଇଟ୍ରେସ—

ଶ୍ରୀମତୀକୁମୁଦ ଦେଈଙ୍କ ତରଫରୁ—

ଶ୍ରୀ ମାଧବଚନ୍ଦ୍ର ଦାନ୍ ଅ: ଏ

